

## ଶିକ୍ଷାବିତ୍

# ପ୍ରାଣକୃଷ୍ଣ ପରିଜା

ସଂପାଦନା

ଡକ୍ଟର ଗଦାଧର ମିଶ୍ର

# ଶିକ୍ଷାବିତ୍
# ପ୍ରାଣକୃଷ୍ଣ ପରିଜା

ସଂପାଦନା
ଡକ୍ଟର ଗଦାଧର ମିଶ୍ର

ବିଦ୍ୟାପୁରୀ ।। କଟକ

SIKSHYABIT PRANAKRUSHNA PARIJA
Edited by Dr. Gadadhar Misra
Published by Vidyapuri, Balubazar, Cuttack-753002

ISBN-81-7411-340-1

ପ୍ରଥମ ପ୍ରକାଶ, ଜୁନ୍ ୨୦୦୦

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ଲିପିସଂଯୋଜନ
ବିଦ୍ୟାଶ୍ରୀ ଡିଟିପି ସେଣ୍ଟର
ଆଲାମଚାନ୍ଦବଜାର, କଟକ ୭୫୩୦୦୨

ମୁଦ୍ରଣ
ରୟାଲହାଫ୍‌ଟୋନ୍ କୋ, କଟକ

ମୂଲ୍ୟ ଟ ୧୮୦.୦୦

# ମୁଖବନ୍ଧ

ପ୍ରଫେସର ପ୍ରାଣକୃଷ୍ଣ ପରିଜା ଓଡ଼ିଶାର ତଥା ଭାରତବର୍ଷର ଏକ ବିରାଟ ବ୍ୟକ୍ତିତ୍ୱ, ଏକ ବହୁମୁଖୀ ପ୍ରତିଭାବାନ୍ କିମ୍ବଦନ୍ତୀ ପୁରୁଷ । ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ପୃଥିବୀପ୍ରସିଦ୍ଧ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରୁ ପ୍ରଥମ ଶ୍ରେଣୀରେ ବି.ଏ. ଡିଗ୍ରୀ ଲାଭ କରିବା ଓ ସେଠାରେ ଆଉ ଅଧିକ ଚାରିବର୍ଷ ରହି ଉଦ୍ଭିଦବିଜ୍ଞାନରେ ଗବେଷଣା କରି ଏମ୍.ଏ. ଡିଗ୍ରୀରେ ସମ୍ମାନିତ ହେବା ଓ ବିଲାତରେ ଥାଇ ଇଣ୍ଡିଆନ୍ ଏଜୁକେଶନ ସର୍ଭିସ୍ (ଆଇ.ଇ.ଏସ୍) ଭଳି ସର୍ବଭାରତୀୟ ଶିକ୍ଷା ଚାକିରିକୁ ମନୋନୀତ ହେବା ଜଣେ ଓଡ଼ିଆ ଛାତ୍ର ପକ୍ଷରେ ଗୌରବର ଗୋଟିଏ ଗୋଟିଏ ଉଜ୍ଜ୍ୱଳ ମାଇଲ ଖୁଣ୍ଟ ।

ରେଭେନ୍ସା କଲେଜରେ ଉଦ୍ଭିଦବିଜ୍ଞାନର ପ୍ରଫେସର, ରେଭେନ୍ସା କଲେଜର ଅଧ୍ୟକ୍ଷ, ଓଡ଼ିଶା କୃଷିବିଭାଗର ପ୍ରଥମ ନିର୍ଦ୍ଦେଶକ, ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି ଓ ପରବର୍ତ୍ତୀ ସମୟରେ ଆହୁରି ତିନିଥର କୁଳପତି, ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ପ୍ରୋ-ଭାଇସ୍‌ଚାନ୍‌ସେଲର, ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରୋ-ଚାନ୍‌ସେଲର, ଓଡ଼ିଶା ବ୍ୟବସ୍ଥାପକ ସଭାର ସଦସ୍ୟ ପ୍ରଭୃତି ବିଭିନ୍ନ ପଦପଦବୀ ପ୍ରଫେସର ପରିଜା ତାଙ୍କ ଜୀବନକାଳ ମଧ୍ୟରେ ମଣ୍ଡନ କରି ଉଚ୍ଚଶିକ୍ଷା ଓ କୃଷିର ସର୍ବାଙ୍ଗୀଣ ଉନ୍ନତି ପାଇଁ ତାଙ୍କର ସମଗ୍ର ଜୀବନ ଉତ୍ସର୍ଗ କରିଛନ୍ତି ।

ଭାରତ ସରକାରଙ୍କ ଦ୍ୱାରା ଗଠିତ କେତେକ ସମ୍ମାନାସ୍ପଦ ସର୍ବଭାରତୀୟ କମିଟିରେ ସଦସ୍ୟ ଓ ଚେୟାରମ୍ୟାନ୍‌ର ଗୁରୁଦାୟିତ୍ୱ ପ୍ରଫେସର ପରିଜା ସୁଚାରୁରୂପେ ସମ୍ପାଦନ କରିଛନ୍ତି । ଜଣେ ଉଚ୍ଚକୋଟୀର ଶିକ୍ଷକ ଓ ଶିକ୍ଷାପ୍ରଶାସକ ରୂପେ ତାଙ୍କର ବଳିଷ୍ଠ ବ୍ୟକ୍ତିତ୍ୱର ନିଜସ୍ୱ ଛାପ ସର୍ବତ୍ର ସ୍ୱର୍ଣ୍ଣାକ୍ଷରରେ ଅଙ୍କିତ ହୋଇ ରହିଛି । କେମ୍ବ୍ରିଜରେ ରହଣି ସମୟରେ ସେ ଉଦ୍ଭିଦବିଜ୍ଞାନରେ ଯେଉଁ ଉଚ୍ଚକୋଟୀର ଗବେଷଣା କରିଥିଲେ ତାହା କେମ୍ବ୍ରିଜ ବିଶ୍ୱବିଦ୍ୟାଳୟ ତରଫରୁ ଏକ ପୁସ୍ତକ ଆକାରରେ ପ୍ରକାଶିତ ହୋଇଛି ।

କେମ୍ବ୍ରିଜରୁ ଫେରି ୧୯୨୧ ମସିହାରୁ ପ୍ରଫେସର ପରିଜା ରେଭେନ୍ସା କଲେଜରେ ଉଦ୍ଭିଦବିଜ୍ଞାନରେ ଗବେଷଣା କାର୍ଯ୍ୟର ବୀଜ ବପନ କରିଥିଲେ । ଭାରତର ବିଭିନ୍ନ ପ୍ରାନ୍ତରୁ ଅନେକ ଉଦୀୟମାନ ଛାତ୍ର ତାଙ୍କର ବ୍ୟକ୍ତିତ୍ୱରେ ଆକର୍ଷିତ ହୋଇ ରେଭେନ୍ସା କଲେଜକୁ ଆସି ତାଙ୍କ ତତ୍ତ୍ୱାବଧାନରେ ମୂଲ୍ୟବାନ୍ ଗବେଷଣା କରିଛନ୍ତି । ସାତବର୍ଷ ଧରି ପ୍ରଫେସର ପରିଜା ଇଣ୍ଡିଆନ୍ ବଟାନିକାଲ ସୋସାଇଟିର ଜର୍ଣ୍ଣାଲର ମୁଖ୍ୟ ସମ୍ପାଦକ

ଥିଲେ ଓ ଏକବର୍ଷ ପାଇଁ ସୋସାଇଟିର ସଭାପତି ପଦ ଅଳଙ୍କୃତ କରିଥିଲେ । ପାଞ୍ଚ ବର୍ଷ ପାଇଁ ସେ ନିଖିଳଭାରତ ବିଜ୍ଞାନ କଂଗ୍ରେସର ସମ୍ପାଦକ ଥିଲେ ଓ ଏକବର୍ଷ ପାଇଁ ଏହାର ସଭାପତି ଆସନ ମଣ୍ଡନ କରିଥିଲେ ।

ପ୍ରଫେସର ପରିଜା ଥିଲେ ଜଣେ ସୁସାହିତ୍ୟିକ ଓ ଉତ୍କଳ ସାହିତ୍ୟସମାଜର ସଭାପତି । କଠୋର ନୀତିନିଷ୍ଠ ଜଣେ ପ୍ରଜ୍ଞା ପୁରୁଷ ବହୁଭାବରେ ଓଡ଼ିଶା ଓ ଭାରତର ମୁଖ ଉଜ୍ଜ୍ୱଳ କରିଯାଇଛନ୍ତି । ଓଡ଼ିଶା ତଥା ଭାରତର ବିଭିନ୍ନ ପତ୍ରପତ୍ରିକାରେ ତାଙ୍କର ଉଚ୍ଚକୋଟୀର ନିବନ୍ଧସବୁ ପ୍ରକାଶିତ ହୋଇଛି । ତାଙ୍କର ବିରାଟ ଓ ମହନୀୟ ବ୍ୟକ୍ତିତ୍ୱର ବିଭିନ୍ନ ଝଲକ ବହୁ ଗଣ୍ୟମାନ୍ୟ ବ୍ୟକ୍ତି ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ କରିଛନ୍ତି ।

ମୁଁ କେତେଗୁଡ଼ିଏ ଉପାଦେୟ ପ୍ରବନ୍ଧ ସଂଗ୍ରହ କରିଛି । ଗୁରୁଦେବଙ୍କୁ ମୋର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଜ୍ଞାପନପୂର୍ବକ ଓଡ଼ିଶା ଇତିହାସରେ ଏହି କାଳଜୟୀ ଯୋଗଜନ୍ମା ମହାମନୀଷୀଙ୍କର ସମ୍ୟକ୍ କୃତି ଯେ ଓଡ଼ିଶାର ଭବିଷ୍ୟତ ବଂଶଧରମାନଙ୍କର ବିଶେଷତଃ ଯୁବପିଢ଼ିର ଦିଗ୍‌ଦର୍ଶନ ସ୍ୱରୂପ କାର୍ଯ୍ୟ କରିବ ଏହି ବିଶ୍ୱାସ ହିଁ ଏହି ପୁସ୍ତକର ଭିତ୍ତିଭୂମି ।

ମୋର ସହଧର୍ମିଣୀ ଶ୍ରୀମତୀ ସାବିତ୍ରୀ ଦେବୀଙ୍କ ପ୍ରେରଣା, ଯଥାସମ୍ଭବ ସାହାଯ୍ୟ, ସଦିଚ୍ଛା ତଥା ଈଶ୍ୱର ଚିନ୍ତନ ମୋର ଲେଖନୀ ଚାଳନାର ପରମ ପାଥେୟ । ତାଙ୍କର ଅକୁଣ୍ଠିତ ସ୍ନେହ, ସହାନୁଭୂତି ଓ ଉତ୍ସାହ ଯୋଗୁଁ ଏ ପୁସ୍ତକଟିର ସଂପାଦନା କାର୍ଯ୍ୟ ସମାପ୍ତ ହୋଇପାରିଲା।

ପ୍ରଫେସର ପ୍ରାଣକୃଷ୍ଣ ପରିଜାଙ୍କ ସୁଯୋଗ୍ୟ ପୁତ୍ର ଶ୍ରୀ ଲଲାଟେନ୍ଦୁ ପରିଜାଙ୍କ ଉତ୍ସାହ ମୋର ଶ୍ରମ ଲାଘବ କରିଛି । ଓଡ଼ିଶାର ଯଶସ୍ୱୀ ପୁସ୍ତକ ପ୍ରକାଶନ ପ୍ରତିଷ୍ଠାନ 'ବିଦ୍ୟାପୁରୀ'ର ସ୍ୱତ୍ୱାଧିକାରୀ ଶ୍ରୀ ପୀତାମ୍ବର ମିଶ୍ର ଏଭଳି ଏକ ଗ୍ରନ୍ଥର ପ୍ରକାଶନ ଦାୟିତ୍ୱ ବହନ କରି ଓଡ଼ିଶା ଇତିହାସର ଏକ ଅମୂଲ୍ୟ ସମ୍ପଦ ସର୍ବସାଧାରଣଙ୍କ ଗୋଚରାର୍ଥକୁ ଆଣି ଧନ୍ୟବାଦାର୍ହ ହୋଇଛନ୍ତି ।

**ଗଦାଧର ମିଶ୍ର**
ସଂପାଦକ

ବାଣୀଭବନ,
ପ୍ରଫେସରପଡ଼ା,
କଲେଜସ୍କୋୟାର,
କଟକ ୭୫୩୦୦୩
ମେ ୩୦, ୨୦୦୦

# ଲେଖକ ପରିଚୟ

ଗଡ଼ଜାତଗୁଡ଼ିକରେ ପ୍ରଜାଆନ୍ଦୋଳନକାରୀଙ୍କ ବିରୋଧରେ ହେଉଥିବା ମକଦ୍ଦମାଗୁଡ଼ିକରେ ସେମାନଙ୍କ ତରଫରୁ ଲଢୁଥିବା ନିର୍ଭୀକ ଓକିଲମାନଙ୍କ ମଧ୍ୟରେ ଅନ୍ୟତମ ଅଗ୍ରଗଣ୍ୟ ଓକିଲ । ସୁସାହିତ୍ୟିକ ଓ ସମାଜସେବୀ ।

୫୧. **ରାଧାଚରଣ ଦାସ,** ଏମ୍.ଏସ୍‌ସି. (ଆନ୍ଧ୍ର) ପଦାର୍ଥବିଜ୍ଞାନ, ଏମ୍.ଏସ୍. (କର୍ଣ୍ଣେଲ), ପିଏଚ୍.ଡି. (କର୍ଣ୍ଣେଲ, ଯୁକ୍ତରାଷ୍ଟ୍ର ଆମେରିକା) । ଆଞ୍ଚଳିକ ଶିକ୍ଷା ମହାବିଦ୍ୟାଳୟ ଭୁବନେଶ୍ୱରର ପୂର୍ବତନ ପ୍ରଫେସର ଓ ଅଧ୍ୟକ୍ଷ । ଜାତୀୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ କାଉନ୍‌ସିଲ, ନୂଆଦିଲ୍ଲୀର ପୂର୍ବତନ ଶିକ୍ଷା ବିଭାଗ ପ୍ରଫେସର ଓ ଯୁଗ୍ମ ନିର୍ଦ୍ଦେଶକ । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଭୂତପୂର୍ବ କୁଳପତି । ୨୩୪

୫୨. **ରାଧାନାଥ ରଥ,** ଶିକ୍ଷା – ମାଟ୍ରିକୁଲେସନ । ଜନ୍ମ – ୧୮୯୭ । ପିତା – ସ୍ୱର୍ଗତ ପଣ୍ଡିତ ଜଗନ୍ନାଥ ରଥ । ପତ୍ନୀ – ଶ୍ରୀମତୀ ସାବିତ୍ରୀ ରଥ । ସନ୍ତାନ – ୨ ପୁଅ ଓ ୨ ଝିଅ । 'ସମାଜ' ସମ୍ପାଦକ, ସାମ୍ବାଦିକ, ସୁସାହିତ୍ୟିକ, ଲେଖକ, ଲୋକସେବକ ମଣ୍ଡଳର ସଭାପତି । ୧୯୪୨ ଭାରତ ଛାଡ଼ ଆନ୍ଦୋଳନରେ ଯୋଗଦାନ । ଗଡ଼ଜାତ ପ୍ରଜାମଣ୍ଡଳର ନେତା । ବିଧାୟକ (୧୯୫୨-୧୯୬୭) । ମନ୍ତ୍ରୀ – ଶିକ୍ଷା, ଅର୍ଥ, ଉନ୍ନୟନ ଓ ପୁନର୍ବସତି (୧୯୫୨-୧୯୬୦) । ଭାରତ ସ୍କାଉଟ ଓ ଗାଇଡ ରାଜ୍ୟ ଚିଫ୍ କମିଶନର । ପଦ୍ମଭୂଷଣ ଉପାଧିରେ ସମ୍ମାନିତ (୧୯୬୮) । ୨୩୭

୫୩. **ରେବତୀ ଚରଣ ଦାସ,** ଏମ୍.ଏସ୍‌ସି. (ଉତ୍କଳ), ପିଏଚ୍.ଡି. (ଉତ୍କଳ), ପିଏଚ୍.ଡି. (ଇଂଲଣ୍ଡ) । ୟୁନିଭରସିଟି କଲେଜ ଅଫ୍ ଇଞ୍ଜିନିୟରିଂ, ବୁର୍ଲାର ପୂର୍ବତନ ରସାୟନବିଜ୍ଞାନ ପ୍ରଫେସର । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି । ଓଡ଼ିଶା ପ୍ରଦୂଷଣ ନିୟନ୍ତ୍ରଣ ବୋର୍ଡର ପୂର୍ବତନ ଚେୟାରମ୍ୟାନ୍ । ୨୩୯

୫୪. **ଲଳାଟେନ୍ଦୁ ପରିଜା,** ଏମ୍.ଏସ୍‌ସି. (ଦିଲ୍ଲୀ) ରସାୟନବିଜ୍ଞାନ, ଆଇ.ଏ.ଏସ୍. (ଅବସରପ୍ରାପ୍ତ) । ଓଡ଼ିଶା ସରକାରଙ୍କ ପୂର୍ବତନ ମୁଖ୍ୟ ଶାସନ ସଚିବ । ଓଡ଼ିଶା ପବ୍ଲିକ ସର୍ଭିସ୍ କମିସନ୍‌ର ପୂର୍ବତନ ଚେୟାରମ୍ୟାନ୍ । ବିଶିଷ୍ଟ କ୍ରିକେଟ୍ ଖେଳାଳି ଏବଂ ପ୍ରଫେସର ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କ ମଧ୍ୟମ ପୁତ୍ର । ୨୪୧

୫୫. **ଶଚୀନ୍ଦ୍ରନାଥ ଦାସଗୁପ୍ତ,** ଡି.ଏସ୍‌ସି. (ଲଣ୍ଡନ) । ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟର ପୂର୍ବତନ ସ୍ନାତକୋତ୍ତର ଉଦ୍ଭିଦବିଜ୍ଞାନ ପ୍ରଫେସର । ପଶ୍ଚିମବଙ୍ଗ ପବ୍ଲିକ୍ ସର୍ଭିସ୍ କମିସନ୍, କଲିକତାର ଭୂତପୂର୍ବ ଚେୟାରମ୍ୟାନ୍ । ୨୬୦

୫୬. **ଡାକ୍ତର ଶରତଚନ୍ଦ୍ର ମିଶ୍ର,** ଏମ୍.ଡି. (ପାଟନା) । ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡିକାଲ କଲେଜ, କଟକର ପୂର୍ବତନ ଶିଶୁରୋଗ ପ୍ରଫେସର । ବ୍ରହ୍ମବିଦ୍ୟା ସମିତିର ପୂର୍ବତନ ସଭାପତି, ବିଶିଷ୍ଟ ସମାଜସେବୀ । ସୁସାହିତ୍ୟିକ ଓ କେତେକ ପୁସ୍ତକର ରଚୟିତା । ୨୬୧

୫୭. **ଶରତଚନ୍ଦ୍ର ମିଶ୍ର,** ଏମ୍.ଏ. (ଆହ୍ଲାବାଦ), ଆଇ.ପି.ଏସ୍. (ଅବସରପ୍ରାପ୍ତ) । ପୋଲିସ୍ ବିଭାଗ, ଓଡ଼ିଶାର ପୂର୍ବତନ ଡାଇରେକ୍ଟର ଜେନେରାଲ । ଷ୍ଟାଫ୍ ସିଲେକ୍ସନ୍ ବୋର୍ଡ, ଓଡ଼ିଶାର ପୂର୍ବତନ ଚେୟାରମ୍ୟାନ୍ । ସୁସାହିତ୍ୟିକ ଓ ବହୁ ପୁସ୍ତକର ରଚୟିତା । ୨୬୫

୫୮. **ଶତ୍ରୁଘ୍ନ ନାଥ,** ଏମ୍.ଏ. (ଲଣ୍ଡନ) । ମୌଳିକ ଶିକ୍ଷା ବିଶେଷଜ୍ଞ । ବେସିକ୍‌ଟ୍ରେନିଂ କଲେଜ, ଅନୁଗୋଳର ପୂର୍ବତନ ଅଧ୍ୟକ୍ଷ । ରାଧାନାଥ ଟ୍ରେନିଂ କଲେଜ, କଟକର ପୂର୍ବତନ ପ୍ରଫେସର ଓ ଅଧ୍ୟକ୍ଷ । ସୁଲେଖକ ଓ ଅନେକ ପୁସ୍ତକର ରଚୟିତା । ୨୬୮

୫୯. **ଶୋଭା ରାୟ,** ଏମ୍.ଏ. (କଲିକତା) । ସଂସ୍କୃତ ଭାଷା ଓ ସାହିତ୍ୟରେ ସ୍ୱର୍ଣ୍ଣପଦକପ୍ରାପ୍ତ । ସମ୍ବଲପୁର ମହିଳା ମହାବିଦ୍ୟାଳୟର ପୂର୍ବତନ ଅଧ୍ୟକ୍ଷା । ଓଡ଼ିଶା ଶିକ୍ଷା ନିର୍ଦ୍ଦେଶାଳୟର ପୂର୍ବତନ ଉପ-ଶିକ୍ଷା ନିର୍ଦ୍ଦେଶିକା । ୨୭୫

୬୦. **ଶ୍ୟାମସୁନ୍ଦର ପରିଡ଼ା,** ଏମ୍.ଏ., ଓ.ଏ.ଏସ୍. । ଓଡ଼ିଶା ସରକାରଙ୍କ ପୂର୍ବତନ ଅତିରିକ୍ତ ଜିଲ୍ଲା ପ୍ରଶାସକ । ୨୭୮

୬୧. **ଶ୍ୟାମସୁନ୍ଦର ମିଶ୍ର,** ଏମ୍.ଏ. (ପାଟନା) ଅର୍ଥନୀତି । ବିଶିଷ୍ଟ ସମାଜସେବୀ । ହିନ୍ଦ୍ ସେବକ ସମାଜର ଆଜୀବନ ସଦସ୍ୟ ଓ ଏହାର ପୂର୍ବତନ ସଭାପତି । ଉତ୍କଳ ବିଶ୍ୱବିଦ୍ୟାଳୟ ସିନେଟ୍‌ର ପୂର୍ବତନ ସଦସ୍ୟ । ୨୮୦

୬୨. **ଶ୍ରଦ୍ଧାକର ସୂପକାର,** ଏମ୍.ଏ. (ପାଟନା), ବି.ଏଲ୍., ଏଲ୍.ଏଲ୍.ଏମ୍., ଡି.ଲିଟ୍. (ସମ୍ବଲପୁର) । ଓଡ଼ିଶା ବିଧାନସଭାର ପୂର୍ବତନ ସଦସ୍ୟ । ସମ୍ବଲପୁର ଲାଲା ଲଜପତ୍ ରାୟ ଆଇନ୍ ମହାବିଦ୍ୟାଳୟର ପୂର୍ବତନ ପ୍ରଫେସର ଓ ଅଧ୍ୟକ୍ଷ । ୨୮୫

୬୩. **ଶ୍ରୀନିବାସ ସାହୁ,** ଏମ୍.ଏ. (ଆନ୍ଧ୍ର), ଡି. ଫିଲ୍. (ବନ୍, ଜର୍ମାନୀ), ଦର୍ଶନଶାସ୍ତ୍ର । ପୂର୍ବତନ ଉଚ୍ଚଶିକ୍ଷା ବିଭାଗ, ଓଡ଼ିଶାର ପୂର୍ବତନ ନିର୍ଦ୍ଦେଶକ । ସମ୍ବଲପୁର ବିଶ୍ୱବିଦ୍ୟାଳୟ ଓ ଉତ୍କଳ ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି । ଭୂତପୂର୍ବ ରୋଟାରୀ ଜିଲ୍ଲା ଗଭର୍ଣ୍ଣର । ୨୮୯



ସହଧର୍ମିଣୀ ସୁନ୍ଦରମଣିଙ୍କ ସହିତ ପ୍ରାଣକୃଷ୍ଣ ପରିଚ୍ଛା, ୧୯୨୨



ପରିବାରଙ୍କ ଗହଣରେ ପ୍ରାଣକୃଷ୍ଣ ପରିଜା



୧୯୩୦ରେ ଆଲାହାବାଦରେ ଅନୁଷ୍ଠିତ ନବମ ଭାରତୀୟ ଉଦ୍ଭିଦ ବିଜ୍ଞାନ ସମ୍ମିଳନୀରେ ପ୍ରଫେସର ପରିଜା



ରେଭେନ୍ସା କଲେଜର ଅଧକ୍ଷ ପ୍ରଫେସର ଶ୍ୟାମଚନ୍ଦ୍ର ତ୍ରିପାଠୀ ଓ
ଇତିହାସ ବିଭାଗର ମୁଖ୍ୟ ଅଧ୍ୟାପକ ଘନଶ୍ୟାମ ଦାଶଙ୍କ ଗହଣରେ ପ୍ରଫେସର ପ୍ରାଣକୃଷ୍ଣ ପରିଜା, ୧୯୩୮



ଉଦ୍ଭିଦବିଜ୍ଞାନ ଓ ପ୍ରାଣିବିଜ୍ଞାନ ଅଧ୍ୟାପକମାନଙ୍କ ଗହଣରେ
ରେଭେନ୍ସା କଲେଜର ଅଧ୍ୟକ୍ଷ ପ୍ରଫେସର ପ୍ରାଣକୃଷ୍ଣ ପରିଜା, ୧୯୪୧



ରେଭେନ୍ସା କଲେଜର ନୂତନ ଅଧ୍ୟକ୍ଷ ପ୍ରଫେସର ସଚ୍ଚିଦାନନ୍ଦ ରାୟ ଓ
ଅନ୍ୟାନ୍ୟ ଅଧ୍ୟାପକମାନଙ୍କ ଗହଣରେ ବିଦାୟକାଳୀନ ଅଧ୍ୟକ୍ଷ ପ୍ରଫେସର ପରିଡ଼ା, ୧୯୪୫



ଉତ୍କଳ ବିଶ୍ୱବିଦ୍ୟାଳୟ ସମାବର୍ତ୍ତନ ଉତ୍ସବରେ ଭାରତର ରାଷ୍ଟ୍ରପତି
ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କ ଗହଣରେ କୁଳପତି ପ୍ରଫେସର ପ୍ରାଣକୃଷ୍ଣ ପରିଜା



ଓଡ଼ିଶାର ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବ ଓ ପ୍ରଫେସର ପ୍ରାଣକୃଷ୍ଣ ପରିଜା

ୟୁନିଭରସିଟି ଗ୍ରାଣ୍ଟସ୍ କମିସନ୍‌ର ଚେୟାରମ୍ୟାନ୍ ଓ ପୂର୍ବତନ କେନ୍ଦ୍ରମନ୍ତ୍ରୀ ଚିନ୍ତାମନ୍ ଦେଶମୁଖ୍,
ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ପ୍ରଫେସର ପ୍ରାଣକୃଷ୍ଣ ପରିଜା ଓ ଦିଲ୍ଲୀ ବିଶ୍ୱବିଦ୍ୟାଳୟର
ଉଦ୍ଭିଦବିଜ୍ଞାନ ପ୍ରଫେସର ଡ: ପଞ୍ଚାନନ ମାହେଶ୍ୱରୀ, ୧୯୫୭



ତିନି ପ୍ରସିଦ୍ଧ ଉଦ୍ଭିଦ ବିଜ୍ଞାନୀ କୁଳପତି
ଆହ୍ଲାବାଦ ବିଶ୍ୱବିଦ୍ୟାଳୟର କୁଳପତି ପ୍ରଫେସର ଶ୍ରୀରଞ୍ଜନ,
ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ପ୍ରଫେସର ପ୍ରାଣକୃଷ୍ଣ ପରିଜା ଓ
ପଞ୍ଜାବ ବିଶ୍ୱବିଦ୍ୟାଳୟର କୁଳପତି ପ୍ରଫେସର ଅମରଚାନ୍ଦ ଜୋଷୀ, ୧୯୫୭



ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ପ୍ରଫେସର ପ୍ରାଣକୃଷ୍ଣ ପରିଜା, ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହରୁ,
ଓଡ଼ିଶାର ରାଜ୍ୟପାଳ ଶ୍ରୀ ସୁଖଠଙ୍କର, ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୟାନନ୍ଦ ପଟ୍ଟନାୟକ,
ଉଦ୍ଭିଦବିଜ୍ଞାନ ପ୍ରଫେସର ଡକ୍ଟର ବଂଶୀଧର ସାମନ୍ତରାୟ, ମନସ୍ତତ୍ତ୍ୱ ବିଭାଗ ପ୍ରଫେସର ଡକ୍ଟର ରାଧାନାଥ ରଥ



୧୯୬୦ରେ ବମ୍ବେଠାରେ ଅନୁଷ୍ଠିତ ୪୭ତମ ଭାରତୀୟ ବିଜ୍ଞାନ କଂଗ୍ରେସରେ ବିଶିଷ୍ଟ ବୈଜ୍ଞାନିକ ଓ
ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହରୁ ପ୍ରମୁଖ ବହୁ ବିଶିଷ୍ଟ ନେତୃସ୍ଥାନୀୟ ବ୍ୟକ୍ତିଙ୍କ ଗହଣରେ ସଭାପତି ପ୍ରଫେସର ପରିଜା



ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହରୁଙ୍କ ସହିତ ନିଖିଳ ଭାରତ ବିଜ୍ଞାନ କଂଗ୍ରେସର ସାଧାରଣ ସଭାପତି ପ୍ରଫେସର ପ୍ରାଣକୃଷ୍ଣ ପରିଜା । ବମ୍ବେ, ୧୯୬୦



ଭାରତର ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦ, ପ୍ରଫେସର ପ୍ରାଣକୃଷ୍ଣ ପରିଜାଙ୍କୁ
'ପଦ୍ମଭୂଷଣ' ଉପାଧି ପ୍ରଦାନ କରି ସମ୍ମାନିତ କରୁଛନ୍ତି, ୧୯୫୫

# ପୂର୍ବାଭାସ

ବିଲାତରେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରୁ ଏମ୍. ଏ. ଡିଗ୍ରୀ ଲାଭକରି ୧୯୨୧ ମସିହାରେ ଯେଉଁଦିନ ପରିଜାସାହେବ ରେଭେନ୍ସା କଲେଜରେ ଯୋଗ ଦେଲେ, ଆମେ ଛାତ୍ରମାନେ ଆବାକାବା ହୋଇ ତାଙ୍କୁ ଦୂରରୁ ଦେଖୁଥାଉ । ଲମ୍ବା ଚେହେରା, ଉଦ୍ଭାସିତ ମୁଖମଣ୍ଡଳ, ପ୍ୟାଣ୍ଟ ବେଲ୍ଟ ପରିହିତ, ଠକ୍ ଠକ୍ ଚଞ୍ଚଳ ଚାଲି, ଆର୍ଟସ୍ ବ୍ଲକ ଓପର ମହଲା ବାରଣ୍ଡାରେ ଆସି ପ୍ରିନ୍ସିପାଲ ଲାମ୍ବର୍ଟସାହେବଙ୍କ ଅଫିସ ଘରେ ପଶିଲେ । ସେହିଦିନଠାରୁ ଓଡ଼ିଶାର ସର୍ବତ୍ର, ବିଶେଷକରି ପୁରୁଷାନୁକ୍ରମେ ଛାତ୍ରମହଲରେ ସେ ନମସ୍ୟ ରହିଆସିଛନ୍ତି ପରିଜାସାହେବ ନାମରେ । ଆମେ ତାଙ୍କୁ ଆମର ଆଦର୍ଶ ରୂପେ ଗ୍ରହଣ କରିଥିଲୁ । ମୂଳରୁ ଅଧ୍ୟାପକ (ପ୍ରୋଫେସର), ପରେ ରେଭେନ୍ସା କଲେଜର ଅଧ୍ୟକ୍ଷ, ତା'ପରେ (ଉତ୍କଳ) ବିଶ୍ୱବିଦ୍ୟାଳୟର କୁଳପତି ହେବାରେ ସେ ଓଡ଼ିଶାରେ ସର୍ବପ୍ରଥମ ବ୍ୟକ୍ତି । ଉଦ୍ଭିଦବିଜ୍ଞାନରେ ତାଙ୍କର ଗବେଷଣାମୂଳକ ଅବଦାନ ଅକ୍ଷତ ସମ୍ମାନ ଲାଭ କରିଚାଲିଛି । ଏ ସବୁ ଯେକୌଣସି ବ୍ୟକ୍ତି ପକ୍ଷରେ ଗୌରବ । କିନ୍ତୁ ତାକୁ ଅତିକ୍ରମ କରିଥିଲା ପରିଜାସାହେବଙ୍କର ବ୍ୟକ୍ତିତ୍ୱ, ନିଷ୍ଠାପର ଜୀବନଧାରା, ସଦାଚାର ମନୋବୃତ୍ତି ।

ଗୋଟିଏ ଘଟଣା ଉଲ୍ଲେଖ କରୁଛି ତାଙ୍କର ଅସାଧାରଣ ଦୃଢ଼ତାର ନିଦର୍ଶନ ରୂପେ । ସେ ୧୯୨୧ରେ ବିଲାତରୁ ଆସିଲେ ଓ ଶିକ୍ଷାକ୍ଷେତ୍ରର ସର୍ବୋଚ୍ଚ ସରକାରୀ ପାହ୍ୟାରେ ଯୋଗ ଦେଇ ରେଭେନ୍ସା କଲେଜରେ ପ୍ରଫେସର ଓ ପଶ୍ଚିମ ଛାତ୍ରାବାସର ଓ୍ୱାର୍ଡେନ୍ ହେଲେ । ୧୯୨୪ ମସିହାରେ ଓଡ଼ିଶା ଛାତ୍ର ସମ୍ମିଳନୀ ଆମେମାନେ (ମୁଁ ବି. ଏ. ଶେଷ ଶ୍ରେଣୀ ଛାତ୍ର ଥିଲି) କଲେଜହଲ୍‌ରେ କାମ କରିବା ପାଇଁ ଇଚ୍ଛା କଲି । ଏକ ଅଭ୍ୟର୍ଥନା ସମିତି ଗଠନ କରିବା ଉଦ୍ଦେଶ୍ୟରେ ପରିଜାସାହେବଙ୍କୁ ସଭାପତି ହେବା ପାଇଁ ଅନୁରୋଧ କରିବାରେ ସେ ସମ୍ମତି ପ୍ରଦାନ କଲେ । ଲକ୍ଷ୍ମୀନାରାୟଣ ସାହୁ (Servants of India Society ଓଡ଼ିଶା ଶାଖାର ମୁଖ୍ୟ ସଦସ୍ୟ) ସମ୍ପାଦନ ଓ କଂଗ୍ରେସ ଯୁବଗୋଷ୍ଠୀର ଜନପ୍ରିୟ କର୍ମୀ ଯଦୁମଣି ମଙ୍ଗରାଜ ଓ ମୁଁ ସହକାରୀ ସମ୍ପାଦକ ହୋଇ ଅଭ୍ୟର୍ଥନା ସମିତି ଗଢ଼ାଗଲା । କେତେକ ଛାତ୍ରଙ୍କ ଛଡ଼ା କଟକସହରର କେତେଜଣ ଲବ୍ଧପ୍ରତିଷ୍ଠ ବ୍ୟକ୍ତି ଆମମାନଙ୍କ ସହିତ ସଭ୍ୟ ହୋଇ ଆମକୁ ଉତ୍ସାହିତ କରୁଥାନ୍ତି । ସେତେବେଳେ କଂଗ୍ରେସର ଅସହଯୋଗ ଆନ୍ଦୋଳନ ଚାଲିଥାଏ । ଇଂରେଜ ଶାସକଙ୍କ କୋପଦୃଷ୍ଟି ତାହା ଉପରେ ପ୍ରବଳ ଥାଏ । ଅଭ୍ୟର୍ଥନା ସମିତିରେ ସ୍ଥିର ହେଲା

ଗୋଦାବରୀଶବାବୁଙ୍କୁ (ପଣ୍ଡିତ ଗୋଦାବରୀଶ ମିଶ୍ର, ସତ୍ୟବାଦୀ ବନବିଦ୍ୟାଳୟର ପ୍ରଖ୍ୟାତ ଶିକ୍ଷକ, ପଣ୍ଡିତ ଗୋପବନ୍ଧୁ ଦାସଙ୍କ ନେତୃତ୍ୱରେ ଚାଲିଥିବା କଂଗ୍ରେସ ଆନ୍ଦୋଳନର ଅନ୍ୟତମ ନେତୃସ୍ଥାନୀୟ ବ୍ୟକ୍ତି) ସମ୍ମିଳନୀର ସଭାପତି କରିବା ପାଇଁ । ମୁଁ ତାଙ୍କର ସ୍ୱୀକୃତି ଆଣିଲି । କଲେଜ ପୂର୍ବଛାତ୍ରାବାସରେ ମୁଁ ଥାଏ । ତା'ର ଓ୍ୟାର୍ଡନ୍ ଥାଆନ୍ତି ଇଂରାଜୀ ଅଧ୍ୟାପକ ଅକ୍ଟର୍‌ଲୋନିସାହେବ । ତାଙ୍କର ଅନୁମତିକ୍ରମେ ସେହି ଛାତ୍ରାବାସର ଗୋଟିଏ ରୁମ୍‌ରେ ଅଭ୍ୟର୍ଥନା ସମିତିର ଅଫିସ କରାଯାଇଥିଲା । ଗୋଦାବରୀଶବାବୁ ସଭାପତି ହେବା କଥା ପ୍ରକାଶ ପାଇଲା ପରେ କଟକର ଜିଲ୍ଲା ମାଜିଷ୍ଟ୍ରେଟ ବିଲ୍‌ସାହେବ ଓ ପୁଲିସ ସୁପରିଣ୍ଟେଣ୍ଡେଣ୍ଟ (ଜଣେ ଇଂରେଜ), ଓଡ଼ିଶା କମିଶନରଙ୍କ (ଇଂରେଜ) ନିର୍ଦ୍ଦେଶରେ ବାହାରି ପଡ଼ିଲେ ସମ୍ମିଳନୀ ନ କରାଇଦେବା ପାଇଁ । କାରଣ ଦେଲେ ଦୁଇଟି । ଛାତ୍ର ସମ୍ମିଳନୀ ନାଁରେ କଂଗ୍ରେସ ସଭା ହେଉଛି ସରକାରୀ କଲେଜହଲ୍‌ରେ କଂଗ୍ରେସର ଜଣେ ନେତାଙ୍କ ସଭାପତିତ୍ୱରେ; ଦ୍ୱିତୀୟରେ ଅଭ୍ୟର୍ଥନା ସମିତିର ସମ୍ପାଦକ ଓ ଜଣେ ସହକାରୀ ସମ୍ପାଦକ ଅଣଛାତ୍ର । କଲେଜ ପ୍ରିନ୍ସିପାଲ ଥାଆନ୍ତି ଲାମର୍ଟସାହେବ । ସେ ପରିଜାଙ୍କୁ ଏ ଆପତ୍ତି ଜଣାଇ ମତେ ଡକାଇ ପଠାଇଲେ । କଲେଜରେ ମହା ହୁଲସ୍ଥୁଲ ପିଲାଙ୍କ ଭିତରେ । ସହରରେ ଆଲୋଡ଼ନ କଂଗ୍ରେସ ମହଲରେ । ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ଯାଇ ପ୍ରିନ୍ସିପାଲଙ୍କୁ କହିଲେ ସମ୍ମିଳନୀ ପାଇଁ କଲେଜ ହଲ୍ ମନା କରିଦେବା ପାଇଁ । ପରିଜାଙ୍କ ଉପରେ ଚାପ ପଡ଼ିଲା ସଭାପତି ପଦରୁ ଓହରିଯିବାପାଇଁ । କଲେଜ ଛାତ୍ର ଅଧିକାଂଶ କଂଗ୍ରେସ ସପକ୍ଷରେ । ପରିଜାସାହେବ ଅଭ୍ୟର୍ଥନା ସମିତି ଛାଡ଼ି ଦେଇଥିଲେ, ଆମର ସମ୍ମିଳନୀ କଲେଜହଲ୍‌ରେ କରିବା ସମ୍ଭବ ହୋଇ ନ ଥାନ୍ତା । ବାହାରେ ଅନ୍ୟଠି ଏତେ ଅଳ୍ପଦିନ (ସାତଦିନ ବାକି ଥାଏ) ମଧ୍ୟରେ କରିବା କଷ୍ଟକର ଓ ବ୍ୟୟସାଧ୍ୟ ଥିଲା । ଗୋଦାବରୀଶବାବୁ ସମ୍ମିଳନୀ ପାଇଁ ଆସି ପରିଜାଙ୍କ ଓ୍ୱାର୍ଡନ କ୍ୱାର୍ଟର୍ସରେ ରହିବା ସ୍ଥିର ହୋଇଥିଲା । ପରିସ୍ଥିତିକୁ ଏପରି ଚିତ୍ର ଦିଆହେଲା ଯେ ପରିଜାସାହେବ କଂଗ୍ରେସକୁ ପ୍ରକାଶ୍ୟରେ ସାହାଯ୍ୟ କରୁଛନ୍ତି । ତାଙ୍କର ଚାକିରି ମାତ୍ର ୪ ବର୍ଷ ହୋଇଥାଏ । ସେ ମତେ ଡକାଇ କହିଲେ ଯେ ପ୍ରିନ୍ସିପାଲ ଲାମର୍ଟସାହେବ କହିଛନ୍ତି, ଲକ୍ଷ୍ମୀନାରାୟଣ ସାହୁ, ଯଦୁମଣି ମଙ୍ଗରାଜ ସମ୍ପାଦକ ଏବଂ ସହକାରୀ ସମ୍ପାଦକ ପଦରୁ ଇସ୍ତଫା ଦେଇଦିଅନ୍ତୁ । ତାହାହେଲେ ଏହା ଛାତ୍ରମାନଙ୍କର ଉଦ୍ୟମ ବୋଲି କହିହେବ । ସେ ଚେଷ୍ଟା ମତେ କରିବାକୁ ହେଲା; ଲକ୍ଷ୍ମୀନାରାୟଣବାବୁ ସାଙ୍ଗେ ସାଙ୍ଗେ ମଙ୍ଗିଗଲେ, କିନ୍ତୁ ମଙ୍ଗରାଜଙ୍କୁ ମଙ୍ଗାଇବାକୁ ଛଅଘଣ୍ଟା ଲାଗିଲା । ମୁଁ ହେଲି ଏକମାତ୍ର ସମ୍ପାଦକ । ଲାମର୍ଟସାହେବଙ୍କୁ, ପରିଜାସାହେବ ଓ ମୁଁ ଯାଇ କହିଲୁ, ଗୋଦାବରୀଶବାବୁ ଜଣେ ଶିକ୍ଷକ ଓ ଶିକ୍ଷାବିତ୍, ସେହି ଦୃଷ୍ଟିରୁ ତାଙ୍କୁ ଡାକିଛୁ । ବିଶେଷ ଉଲ୍ଲେଖଯୋଗ୍ୟ ଯେ

ସରକାରୀ ଉଚ୍ଚ କର୍ମକର୍ତ୍ତାମାନଙ୍କ କୋପ ଦୃଷ୍ଟିକୁ ଭ୍ରୂକ୍ଷେପ ନ କରି ପରିଜାସାହେବ ସ୍ପଷ୍ଟ କରି କହିଲେ ସେ ଅଭ୍ୟର୍ଥନା ସମିତିର ଅଧ୍ୟକ୍ଷତା ଶେଷ ମୁହୂର୍ତ୍ତରେ ପରିତ୍ୟାଗ କରି ଛାତ୍ରମାନଙ୍କୁ ଅହେତୁକ ଅସୁବିଧାର ସମ୍ମୁଖୀନ କରିବା ତାଙ୍କ ପକ୍ଷରେ ଦାୟିତ୍ୱହୀନତା ହେବ । ସେ ତାହା କରିପାରିବେ ନାହିଁ । ଗୋଦାବରୀଶବାବୁଙ୍କୁ ସେ ଜଣାଇ ସାରିଛନ୍ତି ତାଙ୍କ ଘରେ ଆତିଥ୍ୟ ଗ୍ରହଣ କରିବା ପାଇଁ । ତାହା ସେ ମଧ୍ୟ ମନା କରିପାରିବେ ନାହିଁ । ଫଳାଫଳ ଯା ହେଉ, ସେଥିପାଇଁ ସେ ପ୍ରସ୍ତୁତ । ତାଙ୍କର ଏ ଦୃଢ଼ତା ଦେଖି ଲାମ୍ବର୍ଟସାହେବ କଲେଜହଲ୍ ସମ୍ମିଳନୀ କରିବା ପାଇଁ ନ ଦେବା କଥା ଆଉ ଉଠାଇଲେ ନାହିଁ । ପରେ ଜଣାଗଲା ସେ କମିସନରଙ୍କୁ ପରିସ୍ଥିତି ଅଧିକ ଜଟିଳ ନ କରିବା ପାଇଁ ପରାମର୍ଶ ଦେଲେ ଓ ସେ ମାନିଗଲେ । ମାତ୍ର କଲେକ୍ଟର ବିଲ୍‌ସାଲେବ ଓ ପୁଲିସ ସୁପରିଣ୍ଟେଣ୍ଡେଣ୍ଟ କଟକ ଟାଉନ୍‌ରେ ଥିବା ସ୍କୁଲମାନଙ୍କର ହେଡ୍‌ମାଷ୍ଟରମାନଙ୍କୁ ଭୟଭୀତ କରି ପିଲାମାନଙ୍କୁ ସଭାକୁ ନ ଛାଡ଼ିବାକୁ ତାଗିଦ ଅବ୍ୟାହତ ରଖିଲେ । କଟକ ବାହାରୁ ବହୁତ ଛାତ୍ର ଆସିଲେ, ରେଭେନ୍ସା କଲେଜ ଛାତ୍ର ହଲ୍‌ରେ ଭରପୂର । ସମ୍ମିଳନୀ ହେଲା । ସରକାରଙ୍କର ସମ୍ମିଳନୀକୁ ବାଧା ଦେବାର ଚେଷ୍ଟା ବିରୋଧରେ ପ୍ରତିବାଦ ପ୍ରସ୍ତାବ ପରିଜାସାହେବଙ୍କ ଉପସ୍ଥିତିରେ ଗୃହୀତ ହେଲା । ସତୁରି ବର୍ଷ ତଳେ ଏହା ହେବ । କେତେ କଷ୍ଟ କରି ତାହା ଆଜି ଅନୁମାନ କରିହେବ ନାହିଁ । ପରିଜାସାହେବଙ୍କ ବ୍ୟକ୍ତିତ୍ୱର ଏ ପ୍ରକାର ନିରହଙ୍କାର ମହନୀୟ ଦୃଢ଼ତା ଜୀବନର ସବୁ କ୍ଷେତ୍ରରେ ସହଜ ଭାବରେ ପ୍ରକାଶ ପାଉଥିବାରୁ ସେ ସମସ୍ତଙ୍କର ବିଶ୍ୱାସ ଓ ସମ୍ମାନଭାଜନ ହେଉଥିଲେ ।

ପ୍ରଫେସର ଡକ୍ଟର ଗଦାଧର ମିଶ୍ର ପ୍ରଫେସର ପ୍ରାଣକୃଷ୍ଣ ପରିଜାଙ୍କ ସମ୍ବନ୍ଧରେ ତାଙ୍କର ପ୍ରତ୍ୟକ୍ଷ ସଂପର୍କରେ ଆସିଥିବା କେତେକ ପ୍ରତିଷ୍ଠିତ ବ୍ୟକ୍ତିଙ୍କ ଠାରୁ ଲେଖା ସଂଗ୍ରହ କରି ଏହି ପୁସ୍ତକରେ ସନ୍ନିବେଶିତ କରିଛନ୍ତି । ଏହା ଏକ ଅତି ସାଧୁ ଉଦ୍ୟମ । ପରିଜାସାହେବଙ୍କର ପୂର୍ଣ୍ଣକାୟ ଜୀବନୀ ଲେଖାର ଏହା ବହୁ ପରିମାଣରେ ସାହାଯ୍ୟ କରିବ । ତାଙ୍କ ପରି ଜଣେ ଯୁଗଜନ୍ମା ବ୍ୟକ୍ତି ଆମର ଭବିଷ୍ୟତ ବଂଶଧରମାନଙ୍କର ଆଦର୍ଶ ହୋଇ ରହିବା ଅତୀବ ବାଞ୍ଛନୀୟ ।

ହରିହର ମହାପାତ୍ର
ଜଷ୍ଟିସ୍

# ପ୍ରଫେସର ପ୍ରାଣକୃଷ୍ଣ ପରିଜାଙ୍କ ସହିତ ଗୋଟିଏ ମୁହୂର୍ତ୍ତ

**ଅନ୍ନଦାଶଙ୍କର ରାୟ**

ମୁଁ ରେଭେନ୍ସା କଲେଜରେ ଅଧ୍ୟୟନ କରୁଥିଲା ବେଳେ ଉଦ୍ଭିଦବିଜ୍ଞାନ ମୋର ଅଧ୍ୟୟନର ବିଷୟବସ୍ତୁ ନ ଥିଲା କିମ୍ବା ପ୍ରଫେସର ପ୍ରାଣକୃଷ୍ଣ ପରିଜା ଯେଉଁ ପଶ୍ଚିମ ଛାତ୍ରାବାସର ୱାର୍ଡେନ (warden)ଥିଲେ ମୁଁ ସେ ଛାତ୍ରାବାସର ଅନ୍ତେବାସୀ ନ ଥିଲି । ମୁଁ ମୋର ଛାତ୍ରାବସ୍ଥାରେ ଥରେ ମାତ୍ର ପ୍ରଫେସର ପ୍ରାଣକୃଷ୍ଣ ପରିଜାଙ୍କ ସମ୍ପର୍କରେ ଆସିବାର ସୁଯୋଗ ଲାଭ କରିଥିଲି । ମହାତ୍ମା ଗାନ୍ଧିଙ୍କ ଡାକରେ ସାରା ଭାରତବର୍ଷରେ ୧୯୨୨ ମସିହା ପ୍ରାରମ୍ଭରେ ଆରମ୍ଭ ହେବାକୁ ଥିବା ଅସହଯୋଗ ଆନ୍ଦୋଳନରେ ମୋର ସହପାଠୀ ଶରତ ଚନ୍ଦ୍ର ମୁଖାର୍ଜୀ ଓ ମୁଁ ନିର୍ବୋଧରେ ଝାସ ଦେବାକୁ ସ୍ଥିର କଲୁ । ଆମେ ଦୁହେଁ ବିଚାର କଲୁ ଯେ ଜଣେ ଅତି ସମ୍ମାନାସ୍ପଦ ଅଧ୍ୟାପକ ଆମର ନେତୃତ୍ୱ ନେଲେ ଆମ ପାଇଁ ସୁବିଧା ହୁଅନ୍ତା । ଆମ୍ଭମାନଙ୍କ ମୂଲ୍ୟବୋଧ ନିର୍ଦ୍ଧାରଣରେ ସେହି ଅଧ୍ୟାପକଜଣକ ପ୍ରଫେସର ପ୍ରାଣକୃଷ୍ଣ ପରିଜାଙ୍କ ବ୍ୟତୀତ ଆଉ କେହି ନୁହେଁ ।

ତେଣୁ ଆମେ ଦୁହେଁ ଦିନେ ପ୍ରଫେସର ପରିଜାଙ୍କ ବାସଭବନକୁ ଗଲୁ ଏବଂ ତାଙ୍କୁ ଅତି ବିଶ୍ୱାସରେ ଆମ ମନକଥା କହିଲୁ । ସେ ଅତି ସୌଜନ୍ୟତାର ସହିତ ତାଙ୍କର ଅକ୍ଷମତା ପ୍ରକାଶ କଲେ ଓ ସେଥିରୁ ନିବୃତ୍ତ ରହିଲେ । ସେ କହିଲେ ଯେ ଯଦି ସେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେବା ପାଇଁ ଚାକିରିରୁ ଇସ୍ତଫା ପ୍ରଦାନ କରନ୍ତି ତାହାହେଲେ ଇଂରେଜ ସରକାର ବିଲାତରେ ତାଙ୍କର ଉଚ୍ଚଶିକ୍ଷା ପାଇଁ ଯେଉଁ ଅର୍ଥ ଖର୍ଚ୍ଚ କରିଛନ୍ତି ସେ ଅର୍ଥ ତାଙ୍କୁ ଅର୍ଥାତ୍ ସରକାରଙ୍କୁ ଫେରସ୍ତ ଦେବାକୁ ପଡ଼ିବ, କାରଣ ଉଚ୍ଚଶିକ୍ଷା ପାଇଁ ଆର୍ଥିକ ଅନୁଦାନ ଗ୍ରହଣ କଲାବେଳେ ଏକ ସର୍ତ୍ତ ରହିଛି ଯେ ସେ ଭାରତକୁ ଫେରି ଅନ୍ତତଃ ପାଞ୍ଚବର୍ଷ ପାଇଁ ସରକାରୀ ଚାକିରି କରିବେ । ଭାରତର ସ୍ୱାଧୀନତା ଆନ୍ଦୋଳନରେ ପ୍ରଫେସର ପରିଜାଙ୍କୁ ଆମର ନେତାରୂପେ ବରଣ କରିବାର ପ୍ରଚେଷ୍ଟାରେ ବିଫଳ ହେବାରୁ ଆମେ ଦୁଇ ସାଙ୍ଗ ମଧ୍ୟ କଲେଜ ତ୍ୟାଗ କରି ଜେଲ୍ ଯିବା ପାଇଁ ସିଦ୍ଧାନ୍ତରୁ କ୍ଷାନ୍ତ ହେଲୁ ।

(ମୂଳ ଇଂରାଜୀ ରଚନାରୁ ଡକ୍ଟର ଗଦାଧର ମିଶ୍ରଙ୍କ ଦ୍ୱାରା ଓଡ଼ିଆରେ ଅନୂଦିତ)

# ପରିଜାସାହେବ

ଅନନ୍ତ ପ୍ରସାଦ ମହାନ୍ତି

ଆମେ ଯେତେବେଳେ ସ୍କୁଲ ପାଠ ସାରି କଲେଜକୁ ଆସିଲୁ ସ୍ନ ୧୯୩୮ ମସିହାରେ— କଲେଜରେ ସେତେବେଳେ ପ୍ରିନ୍ସିପାଲ ଥିଲେ, ''ପରିଜାସାହେବ'' । ତାଙ୍କ କଥା ଶୁଣିଲୁ ହଷ୍ଟେଲର ପୁରୁଖା ପୁରୁଖା ପିଲାଙ୍କଠୁ । ଭାରୀ କଡ଼ା ଲୋକ ପରା ସିଏ । ପାଠ ତ ଢେର୍ ପଢ଼ିଛନ୍ତି— ବଟାନିରେ କେମ୍ବ୍ରିଜରୁ ଏମ୍.ଏ. ତାଙ୍କର ରିସାର୍ଚ୍ଚରେ କ'ଣ ଗୋଟେ ନୂଆ ଆବିଷ୍କାର କରିଛନ୍ତି ଯେ ସେଇଟା ପରିଜାଥିଓରୀ ବୋଲି କାଳେ କୁହାଯାଏ— ପଢୁଆ ପିଲା ଫେସନ୍ ହେଲେ, ମୁଣ୍ଡକୁଣ୍ଡାଇଲା ବେଳେ ଟେରି କଲେ କାଳେ ପରିଜାସାହେବ ବିଗଡ଼ନ୍ତି ଖୁବ୍ । ମୋଟ୍ ଉପରେ କ୍ରମଓ୍ୱେଲ୍ ଭଳିଆ ଗୋଟେ ଛବି ତାଙ୍କର ମୋ ମନରେ ଆଙ୍କି ହେଇଯାଇଥାଏ । ଦୂରରୁ ତାଙ୍କୁ ଦେଖିଲି କଲେଜ ବାରନ୍ଦାରେ— ଲମ୍ବା ଚେହେରା, ସାହେବି ପୋଷାକ; ମୁହଁର ଭଙ୍ଗି ଗମ୍ଭୀର, ଡଗ ଡଗ କରି ଚାଲିଥାନ୍ତି ତାଙ୍କର ଅଫିସ୍ ଆଡ଼େ— ବାଟରେ ଅନ୍ୟ ପିଲାମାନେ ସବୁ ଛିନ୍ନଛତର ହୋଇ ବାଟରୁ ପଳେଇ ଯାଉଥାନ୍ତି ।

ନାମ ଲେଖେଇବାକୁ କଲେଜ ଅଫିସ୍‌କୁ ଗଲୁ— ମୁଁ ଆଉ ମୋର ସାଙ୍ଗ ଦୁଇଜଣ ଭୁବନ ଓ ଶଚି । କଲେଜ ଅଫିସର୍ ଆମକୁ କହିଲେ ଆମେ ବିଜ୍ଞାନ ଶ୍ରେଣୀରେ ନାମ ଲେଖେଇପାରିବା ନାହିଁ— ପ୍ରିନ୍ସିପାଲଙ୍କ ହୁକୁମ । କିଓ ଆମେ କ'ଣ କଲୁ ? ବିଜ୍ଞାନ ପଢ଼ିପାରିବୁନି କି ? ଅଫିସ୍‌ରେ କହିଲେ ଥାର୍ଡ ଡିଭିଜନରେ ପାସ୍ କରିଥିବା ପିଲାମାନେ କେବଳ ଆର୍ଟସ୍‌ରେ ନାମ ଲେଖେଇ ପାରିବେ ବିଜ୍ଞାନରେ ନୁହେଁ— ପ୍ରିନ୍ସିପାଲସାହେବଙ୍କର କଡ଼ା ହୁକୁମ । ମୁଣ୍ଡରେ ତ ବିଛା କାମୁଡ଼ିଲା ମୋର । ଭବିଷ୍ୟତଟା ଅନ୍ଧାର ଦିଶିଲା । ବିଜ୍ଞାନ ପଢ଼ିଲେ ସିନା ଡାକ୍ତରି, ଇଂଜିନିୟରିଂ କିମ୍ୱା ଆଉ କିଛି ପଢ଼ିହବ— ଭବିଷ୍ୟତରେ ଚାକିରିବାକିରି ପାଇଁ ସୁବିଧା ହେବ । ଆର୍ଟସ୍‌ରେ କ'ଣ ଅଛି ? ସେତେବେଳେ ବ୍ରିଟିଶ୍ ସରକାରଙ୍କର ଯୁଗ । ଦେଶଟାଯାକ ଡିପ୍ରେସନ ଦାଉରେ ହନ୍ତସନ୍ତ ହେଉଥାଏ । ଦି ପଇସା ରୋଜଗାର କରିବାକୁ ବାଟ ନ ଥାଏ— ଆମୁକୁ ତ ବାଟ ଦିଶୁ ନ ଥାଏ ସେତେବେଳେ । ଅଫିସ୍‌ରେ କାକୁତି ମିନତି କଲାରୁ ସେଠାରେ ବଡ଼ବାବୁ କହିଲେ ପ୍ରିନ୍ସିପାଲସାହେବ କହିଲେ ଯାଇ ନାମ ଲେଖା ହେବ । ଶୁଣିକି ତ ଭାଳେଣି

ପଡ଼ିଲା । କିଏ ଯିବ ପରିଜାସାହେବଙ୍କ ପାଖକୁ ? ସମସ୍ତଙ୍କର ତ ଡର । ଥୋକେ ତ ଆର୍ଟସ୍‌ରେ ନାମ ଲେଖେଇଦେଲେ । ମୁଁ ଆଉ ପାଞ୍ଚ ଛଅ ଜଣ ବସି ମସୁଧା କଲୁ କଣ କରିବୁ । ଠିକଣା ହେଲା, ଥରେ କହିବା ଯାଇକି ପରିଜାସାହେବଙ୍କୁ, ସେ ତ ଆଉ ଆମକୁ ଜିଅନ୍ତା ଗିଳିଦେବେନି ? ଦଳବାନ୍ଧିକି ପ୍ରିନ୍ସିପାଲସାହେବଙ୍କ ଅଫିସ୍ ପର୍ଯ୍ୟନ୍ତ ଗଲୁ । ଦୁଆର ମୁହଁଠେଇଁ ସମସ୍ତେ ରହିଗଲେ । କବାଟ ଖଟ ଖଟ କଲାରୁ ଭିତରୁ ଗମ୍ଭୀର ଗଳାରେ ଶୁଭିଲା 'କମ୍ ଇନ୍' । ପଶିଗଲି ଭିତରକୁ । ପରିଜାସାହେବଙ୍କ ଟେବୁଲ ପାଖକୁ ଯାଇ ଦେଖେତ ବାକିସବୁ ସାଙ୍ଗ ବାରନ୍ଦାରେ ରହିଯାଇଛନ୍ତି– ମୁଁ ଏକା ସେଠି । ପାଟି ଖନି ମାରି ଯାଉଥାଏ – କହିଲି "ସାର୍, ଆମକୁ କଲେଜରେ ଏଡ୍‌ମିଶନ୍ କରୁ ନାହାନ୍ତି, କହିଲେ ଯେ ଆମେ ଥାର୍ଡ ଡିଭିଜନବାଲା ସାଏନ୍ସରେ ଭର୍ତ୍ତି ହେଇପାରିବୁ ନାହିଁ ।" ଏକା ନିଃଶ୍ୱାସରେ ଏତକ କହିଦେଲି । ପରିଜାସାହେବ କହିଲେ, "ହଁ, ଠିକ୍ କଥା । ତୁମେମାନେ ବିଜ୍ଞାନ କଥା ବୁଝିପାରିବ ନାହିଁ । ଆର୍ଟସ୍‌ରେ ନାମ ଲେଖାଅ ।" ସେତେବେଳକୁ ତ ମୁଁ ଡେସ୍‌ପାରେଟ୍ । ଆଗପଛ କିଛି ଆଉ ଭାବି ପାରୁ ନ ଥାଏ । କହିପକେଇଲି "ସାର୍, ଏଇ ଯେ ଦୁଇଟା ଲାବୋରେଟୋରି ହେଇଚି ଏ କଲେଜରେ, ସେଗୁଡ଼ାକ ମୟୂରଭଞ୍ଜ ମହାରାଜାଙ୍କ ଟଙ୍କାରେ । ମହାରାଜାଙ୍କର ସମ୍ପତ୍ତି ତ ମୋର ବାପା ଗୋସବାପାଙ୍କର ଖଜଣା ଟଙ୍କା– ଆଉ ମୁଁ ସେଥିରେ ପାଠ ପଢ଼ିପାରିବିନି କିଆଁ ?" ଏତକ ଶୁଣି ପରିଜାସାହେବ ମୋ ମୁହଁକୁ ଅନେଇଲେ – ଚୁପଚାପ୍ ରହିଲେ ଦଣ୍ଡେ ଖଣ୍ଡେ– ମୋତେ ଲାଗିଲା ଘଣ୍ଟାଖଣ୍ଡେ । ଟିକେନାକୁ ହସିକି କହିଲେ ଯେ ଆମେ ସବୁ ବିଜ୍ଞାନରେ ଫିଜିକ୍ସ ଓ କେମିଷ୍ଟ୍ରି କ୍ଲାସ୍‌ରେ ଯାଇ ବସିବୁ, ଲେକ୍‌ଚର ଶୁଣିବୁ କ୍ଲାସ ଆରମ୍ଭ ହେଲେ । ତିନି ସପ୍ତାହ ପରେ ସେ ନିଜେ ଆମକୁ ପରୀକ୍ଷା କରିବେ । ପରୀକ୍ଷାରେ ଯଦି ଆମେ ପାସ୍ କରୁଁ ବା ତାଙ୍କର ଯଦି ମନବୋଧ ହେବ ଯେ ଆମେ ପାଠ ବୁଝିପାରୁଚୁ ତା'ହେଲେ ଆମର ନାମ ଲେଖା ହେବ ବିଜ୍ଞାନ ଶ୍ରେଣୀରେ । ଏଇ କଥାରେ ରାଜି ହେଇ ମୁଁ ପ୍ରିନ୍ସିପାଲଙ୍କ ଅଫିସ୍ ଘରୁ ଖୁସି ହେଇ ବାହାରିଆସିଲି । ସାଙ୍ଗମାନେ ତ ସବୁ ଥିଲେ ସେଇ ବାରାନ୍ଦାରେ– ମୋତେ ପରିଜାସାହେବ ଯାହା କହିଲେ ସେଇକଥା ତାଙ୍କୁ ସବୁ କହିଦେଲି ।....ତା'ପର ଦିନରୁ ଆମେ ସବୁ ଫିଜିକ୍ସ ଓ କେମିଷ୍ଟ୍ରି କ୍ଲାସ୍‌ରେ ଯାଇ ବସିଲୁ । ତିନି ସପ୍ତାହ ପରେ ପରିଜାସାହେବ ଆମକୁ ସବୁ ପରୀକ୍ଷା କରିଥିଲେ । ସେଇ ପରୀକ୍ଷାରେ ଆମ ଭିତରୁ ଅଧେ ପାସ୍ କଲେ ଓ ବିଜ୍ଞାନ ଶ୍ରେଣୀରେ ନାମ ଲେଖେଇଲେ– ବାକିତକ ଯାଇ ଆର୍ଟସ୍ ପଢ଼ିଲେ ।

ମୋର ପରିଜାସାହେବଙ୍କ ସାଙ୍ଗରେ ଭେଟ ଏଇ ହେଲା ପ୍ରଥମ ଦଫା । ଦ୍ୱିତୀୟଥର ଦେଖାହେଲା ଦୁଇ ବର୍ଷ ପରେ । ଆମ ହଷ୍ଟେଲର ଜଣେ ନେତା ଛାତ୍ର ଶ୍ରୀ ନୀଳମଣି ରାଉତରାୟ କଲେଜର ଟେନିସ୍ ଲନ୍‌ରେ ଜାତୀୟପତାକା ଉଡ଼େଇଥିଲେ ଆଉ ବକ୍ତୃତାମାନ ଦେଇଥିଲେ । ସେଇ ଅପରାଧରେ ପ୍ରିନ୍ସିପାଲସାହେବ ତାଙ୍କୁ ଚାଳିଶ ଟଙ୍କା ଜୋରିମାନା କରିଥିଲେ । ଆମର ଛାତ୍ରଗୋଷ୍ଠୀର ରକ୍ତ ତ ଗରମ ହେଇଗଲା ଏକଥା ଶୁଣି । ମିଟିଂମାନ ବସିଲା, ମସୁଧା କରାଗଲା ଯେ ଷ୍ଟ୍ରାଇକ୍ କରାଯିବ । ସେ ବର୍ଷ ମୁଁ ଇଣ୍ଟରମିଡିଏଟ୍‌ର ଇଉନିଭାର୍ସିଟି ପରୀକ୍ଷା ଦେଉଥାଏ । ସବୁ ପିଲାଏ କହିଲେ ପରୀକ୍ଷାକୁ ବର୍ଜନ କରିବୁ । ତା'ପରଦିନ ପରୀକ୍ଷା ଆରମ୍ଭ ହେବାର ଥାଏ– ଇଂରାଜୀ ପେପର ଏକ ଓ ଦୁଇ– ଆମେ ପରୀକ୍ଷା ଦବାକୁ ନ ଯାଇ ଛତରାବଜାର ଛକଠେଇ ପିକେଟିଂ କରୁଥିଲୁ । ମଝିରେ ମଝିରେ ସ୍ଲୋଗାନ ଦେଇ ଦେଇ ସଡ଼କ ଉପରେ ମାର୍ଚ୍ଚ କରୁଥାଉ । ସେଇପାଖରେ କେନାଲ ପାଖକୁ ଗୋଟାଏ ବଡ଼ କୋଠାରେ ପରିଜାସାହେବ ରହୁଥାନ୍ତି ତ । ଆମେ ସେଇ ପାଖେ ପାଖେ ମାର୍ଚ୍ଚ କରୁଥାଉ– ସ୍ଲୋଗାନ ଦେଉଥାଉ । ମୋଟାମୋଟି ସେ ଷ୍ଟ୍ରାଇକ୍‌ଟା ଫସର ଫାଟିଗଲା । ସମସ୍ତେ ପରୀକ୍ଷା ଦେଲେ । ମୋର ସାନଭାଇ ଅମ୍ବିକା ପ୍ରସାଦ ସେତେବେଳେ ଫାର୍ଷ୍ଟଇଅରରେ ଥାଏ । ସେ ମେଟ୍ରିକ୍ ପରୀକ୍ଷାରେ ଭଲ କରିଥିବା ଯୋଗୁଁ ମୟୂରଭଞ୍ଜ ସରକାର ଗୋଟେ ବୃତ୍ତି ଦେଇଥାନ୍ତି– ପଚିଶ ଟଙ୍କା ମାସିକ– । ପରିଜାସାହେବଙ୍କ ହୁକୁମ ହେଲା ସେଇ ବୃତ୍ତିଟା ବନ୍ଦ ହବ, ଯେହେତୁ ଅମ୍ବିକାର ଚାଲିଚଳଣ ସନ୍ତୋଷଜନକ ନୁହେଁ– ଷ୍ଟ୍ରାଇକ୍‌ରେ ମିଶି ପାଠ ପଢ଼ାରେ ଗଫଲତି କରୁଚି । କଲେଜ ଅଫିସ୍ ଆଗରେ ନୋଟିସ୍ ବୋର୍ଡ଼ରୁ ଏ ଖବର ଆମକୁ ମିଳିଲା । ଦୁଇଭାଇ ବସି ଚିନ୍ତା କଲୁ– କ'ଣ କରିବା ? ସେତେବେଳେ କଲେଜରେ ପଢ଼ିବା, ହଷ୍ଟେଲରେ ରହିବା, ସିନେମା ଦେଖା ସବୁ ଏଇ ପଚିଶ ଟଙ୍କାରେ ହେଇଯାଉଥିଲା । ବାପାଙ୍କୁ ଏ ଖବର କିମିତି ଦବା– ତାଙ୍କୁ ଆଉ ପଚିଶ ଟଙ୍କା ପଠେଇବାକୁ କିମିତି କହିବା ? ଏଇ ଚିନ୍ତା ତ ଆମକୁ ଘାରିଥାଏ । ଗୋଟିଏ ରାତି ଆଉ ନିଦ ହେଲା ନାହିଁ । ତା'ପର ଦିନ ସକାଳେ ଅମ୍ବିକାକୁ ସାଙ୍ଗରେ ନେଇ ଗଲି ପରିଜାସାହେବଙ୍କ କୋଠିକୁ । ସକାଳବେଳା, ପରିଜାସାହେବ ତାଙ୍କର ଅଫିସ୍ ଘରେ ବସି କ'ଣ ସବୁ ପଢୁଥାନ୍ତି । ଆମେ ଗୋଟେ ଗୋଟେ ଯାଇକି ବାରନ୍ଦାରେ ଠିଆ ହେଲୁ । ସେଠୁ ପରିଜାସାହେବଙ୍କୁ ଦେଖା ଯାଉଥାଏ । ଦଣ୍ଡେ ଠିଆ ହେଇ ଦେଖେ ଯେ ପରିଜାସାହେବ ନିବିଷ୍ଟ ମନରେ କ'ଣ ପଢୁଛନ୍ତି– ଆମକୁ ଦେଖି ନାହାନ୍ତି । ଖଣ୍ଡେକାଶଟିଏ ମାରିଲି– ସାର୍ ଅନେଇଲେ– ବହିଖଣ୍ଡକ ଟେବୁଲ୍ ଉପରେ ରଖି ଘରୁ ବାହାରିଆସିଲେ

ବାରନ୍ଦାକୁ, ଆମରି ପାଖକୁ । ପଚାରିଲେ "କୁଆଡ଼େ ଆସିଚ ଅନନ୍ତ ?" ମୁଁ ତ କାବା ହେଲି ଯେ ସାର୍ ମୋ ନାଁ ବି ମନେରଖିଛନ୍ତି ! କହିଲି, "ସାର୍, ମୋର ସାନଭାଇ ଅମ୍ବିକାର ବୃତ୍ତିଟା ବନ୍ଦ ହେଇଯାଇଚି । ପାଠପଢ଼ା କ'ଣ ସାର୍ ଏଇଠି ଡୋରି ବନ୍ଧା ହବ ?" କଳାହାଣ୍ଡିଆ ମେଘରେ ବିଜୁଳିଛଟା ପରି ଗମ୍ଭୀର ମୁଖମଣ୍ଡଳରେ ସାର୍ଙ୍କର ହସର ଛଟା ହେଲା ପରି ଲାଗିଲା ମୋତେ । ସେ ଗମ୍ଭୀର ଗଳାରେ କହିଲେ, "ଷ୍ଟ୍ରାଇକ୍ କରିଥିଲ ପରା ! ପାଠପଢ଼ାରେ ତ ଜମାରୁ ମନ ନାହିଁ ତୁମମାନଙ୍କର । ସ୍ଲୋଗାନ ଦଉଥିଲ କ'ଣ ? 'ପରିଚ୍ଛା ମରିଚ୍ଛା' ନୁହଁ ।" ସେତେବେଳକୁ ଆମ ମନରେ ତ ଟିକେ ହିମତ୍ ହେଲାଣି । କହିଲି "ସାର୍, ପିଲାଙ୍କ ଦଳରେ– ହୁଜୁରାରେ ମାତିଥିଲୁ– ମେଳି ହେଲେ କ'ଣ ଆଉ ଜ୍ଞାନଧ୍ୟାନ ଥାଏ ?" ଆଉ କିଛି କହିବାକୁ ଦେଲେ ନାହିଁ, କହିଲେ, "ହଉ, ହଉ, ଆସ"– ବସିବା ଘରକୁ ଡାକିନେଲେ । ସେଇଠି ବସିବାକୁ କହି ଭିତରକୁ ଗଲେ । ଜଣେ ଲୋକ ଆମ୍ପାଇଁ ମିଠେଇ ଦୁଇଚାରିଟା ଆଉ ପାଣି ଦୁଇଗିଲାସ ଦେଇଗଲା । ଟିକେ ପରେ ପରିଚ୍ଛାସାହେବ ଆସିଲେ ଏବଂ ମିଠେଇ ଖାଇବାକୁ କହିଲେ । ବସିକି ଆମକୁ ଘର କଥା, ଭାଇଭଉଣୀ କେତୋଟି, ବାପା ମା କିମିତି ଅଛନ୍ତି ପଚାରିଲେ । ପରେ କହିଲେ ପାଠ ପଢ଼ାରେ ମନ ଦିଅ । ଦେଶପାଇଁ ସ୍ୱାଧୀନତା ସଂଗ୍ରାମ ପରେ କରିବ । ମଣିଷ ହେଲେ, ଦୁନିଆ କଥା ଜାଣିଲେ ସିନା ତୁମେ ଦେଶ ସେବା କରିପାରିବ ?" ଫେର୍ କହିଲେ, "ହଉ ଯାଅ, ଅମ୍ବିକାର ବୃତ୍ତିଟା ରେଷ୍ଟୋରଡ୍ ହବ" ଖୁସି ହେଇକି ଚାଲି ଆସିଲୁ ସେଠୁ । ତାଙ୍କର ଏଇ ଦୁଇପଦ କଥାର ଦାମ୍ କେତେ– ଅର୍ଥଟା କେତେ ଗୂଢ଼– ପରେ କେତେ ବର୍ଷ ପରେ ଯାଇକି ବୁଝିପାରିଲି ସିନା ! ସେତେବେଳେ ତ ତତଲା ରକ୍ତ ଧୀରସ୍ଥିର ହେଇ ଚିନ୍ତା କରିବାର ତର ନ ଥିଲା ଆମର । ଗୂଢ଼ ତତ୍ତ୍ୱର ମର୍ମ ଜାଣିଲୁ କେମନ୍ତେ ?

ତା'ପରେ ପରିଚ୍ଛାସାହେବଙ୍କ ସାଙ୍ଗରେ ମୋର ଭେଟ ସନ୍ ୧୯୪୨ ସାଲରେ ହେଲା । ବି.ଏସ୍‌ସି. ପରୀକ୍ଷା ପରେ, କଲେଜ ଛାଡ଼ିଲାବେଳକୁ ତାଙ୍କୁ ଦେଖାକରିଥିଲି । ମାଗିଥିଲି ଗୋଟେ ସାର୍ଟିଫିକେଟ୍, ମୋତେ ପାଖରେ ବସେଇ ଢେର୍ କଥା ପଚାରିଥିଲେ । ଏମ୍. ଏସ୍‌ସି. ପଢ଼ିବାକୁ ପାଟନା ଯିବିକି ? ଭବିଷ୍ୟତରେ କ'ଣ କରିବାର ଇଚ୍ଛା ଇତ୍ୟାଦି କଥା ଛଳରେ ଉପଦେଶ ବି ଦେଇଥିଲେ ଢେର୍ । ଆଉ ନିଜ ହାତରେ ଲେଖିଦେଇଥିଲେ ମୋ ପାଇଁ ଏକ ସାର୍ଟିଫିକେଟ୍ ଯେ ମୁଁ ଗୋଟାଏ ଦୁର୍ଦ୍ଧାନ୍ତ ଖେଳାଳି, ଭଲ ସ୍ପୋର୍ଟସ୍‌ମ୍ୟାନ୍, ଭଲ ପଢ଼େ, ମୋର ଚରିତ୍ର ଖୁବ୍ ଭଲ ଇତ୍ୟାଦି ।

ସେତେବେଳେ ମୋର ମନବୋଧ ହେଉଥିଲା ଯେ ପରିଜାସାହେବ ଉପରକୁ ଦିଶୁଥିଲେ ଖୁବ୍ ରୁକ୍ଷ, ହେଲେ ଭିତରଟା କୋମଳ ଆଉ ଫୁଲପରି ଶୀତଳ । କଲେଜରେ ଯେଉଁ ଚାରିବର୍ଷ ରହିଲି ସେଇ କେତେଟା ବର୍ଷରେ ଦୁଇଜଣ ପ୍ରଫେସରଙ୍କର ଚାଲିଚଳଣ, ବସାଉଠା, ଆମ ସାଙ୍ଗରେ ବ୍ୟବହାର ମନକୁ ମୋର ଖୁବ୍ ଛୁଇଁ ଥିଲା । ସେ ଦୁଇଜଣ ପ୍ରଫେସର ହେଲେ ପରିଜାସାହେବ ଆଉ ତ୍ରିପାଠୀସାହେବ । ମୋ ମନରେ ତାଙ୍କର କଥା ମନେପଡ଼ିଲେ ସବୁବେଳେ କାଳିଦାସ ଆଉ ଭବଭୂତିଙ୍କର କଥା ଉପାଖ୍ୟାନ ମନେପଡ଼େ । ‘‘ଶୁଷ୍କଃ କାଷ୍ଠଃ ତିଷ୍ଠତ୍ୟଗ୍ରେ’’ ଆଉ ‘‘ନୀରସ ତରୁବର ପୁରୋତେ ଭାତି ।’’

ଅନେକ ଦିନ ପରେ– ପୂରା ଛଅବର୍ଷ ପରେ ମୋର ଫେର ଦେଖାହୁଏ ପରିଜାସାହେବଙ୍କ ସାଙ୍ଗରେ ଦିଲ୍ଲୀରେ । ଏଇ ଛଅବର୍ଷରେ ଢେର୍ ପାଣି ମହାନଦୀରେ ବହିଯାଇଥିଲା– ଦେଶରୁ ଇଂରେଜ ଶାସନ ଯାଇ ଆମର ସ୍ୱାଧୀନ ସରକାର ହୋଇଥିଲା । ମୋ ଜୀବନରେ ବି ଢେର୍ ଝଡ଼ଝଞ୍ଜା ବହିଯାଇଥିଲା । ସେଇ ଛଅବର୍ଷ ପର କଥା । ମୁଁ ସେତେବେଳେ ଆର୍ମି ହେଡକ୍ୱାର୍ଟର୍ସ ସିଗ୍‌ନେଲ୍ ରେଜିମେଣ୍ଟର ଟ୍ରାନ୍ସମିଟର ସେକ୍ସନର ଅଫିସର କମାଣ୍ଡିଂ ଥାଏ । ମୋର କାମ କରିବା ଜାଗା ଥିଲା ଲୋଦିରୋଡ଼ର ବଣ ଭିତରେ– ସେଇଠି ଥିଲା ଆମର ସବୁ ଟ୍ରାନ୍ସମିଟର । ଆଉ ରହୁଥିଲି ଗୋଟେ ସେମିତି ଝରକା ନ ଥିବା ସେଲ୍ଟରରେ । ଶୁଣିଲି ପରିଜାସାହେବ ଆସିଛନ୍ତି ଦିଲ୍ଲୀ ସରକାରୀ କାମରେ । ସେତେବେଳେ ସେ ଓଡ଼ିଶାର କୃଷି ବିଭାଗର ଡିରେକ୍ଟର ଥିଲେ ମହତାବ ସରକାରରେ । ଦିଲ୍ଲୀରେ ସେ ଉଠିଥାନ୍ତି କନ୍‌ଷ୍ଟିଚ୍ୟୁସନ୍ ହାଉସ୍‌ରେ । ମୁଁ ସେଦିନ ସଞ୍ଜବେଳେ ଗଲି ଦେଖା କରିବାକୁ ପରିଜାସାହେବଙ୍କୁ । କନ୍‌ଷ୍ଟିଚ୍ୟୁସନ୍ ହାଉସ୍‌ଟା ହେଉଚି ସେତେବେଳର ସରକାରୀ ବଙ୍ଗଳା, ହୋଟେଲ କୁହ । ଯୁଦ୍ଧ ସମୟର ହଟମେଣ୍ଟ ସରକାରୀ କାମରେ ପଦସ୍ଥ ଅଫିସରମାନଙ୍କ ପାଇଁ କିଛିଦିନ ରହିବା ନିମିତ୍ତ ତିଆରି ହୋଇଥିଲା । ଜଣକ ପାଇଁ ଗୋଟେ ବଡ଼ କୋଠରି– ଶୋଇବା ଘର । ତାକୁ ଲଗେଇ ଆଉ ଗୋଟେ ବଡ଼ କୋଠରି– ବସିବା ଘର । କାର୍ପେଟ୍ ପଡ଼ିଚି ସୋଫା ହେରିକା ଥାଏ ! ବେଶ୍ ସୁବିଧାରେ ଚଳିବା ପାଇଁ ସଜା ହୋଇଥାଏ । ସେଇମିତି ଗୋଟିଏ ସୁଟ୍‌ରେ ପରିଜାସାହେବ ଥିଲେ । ମୁଁ ଯାଇ ବସିବା ଘର ଦୁଆରରେ ଖଟ ଖଟ କଲାରୁ ଭିତରୁ ଶୁଭିଲା ‘‘କମ୍ ଇନ୍’’ । ପଶି ଦେଖେ ଯେ ସେଠି ବାନାର୍ଜିସାହେବ ଏକା ବସିଥାନ୍ତି । ଶ୍ରୀଯୁକ୍ତ ଆର୍. ଏନ୍. ବାନାର୍ଜି ଆଇ. ସି. ଏସ୍. ସେତେବେଳେ ଥିଲେ ଫେଡେରାଲ୍ ପବ୍ଲିକ୍ ସାର୍ଭିସ୍‌ର କମିସନର ଚେୟାରମ୍ୟାନ୍ । ଆଗରୁ ତାଙ୍କ ସାଙ୍ଗରେ ମୋର ଖୁବ୍ ଆଳାପ ହୋଇଥିଲା, ତ୍ରିପାଠୀସାହେବଙ୍କର ଯୋଗୁଁ । ବାନାର୍ଜି

ସାହେବ ମୋତେ ଦେଖିଲାକ୍ଷଣି ଖୁବ୍ ଖୁସିଟାଏ ହେଲେ– ପାଟିକରି କହିଲେ "ପରିଜା, ମୋର ଜଣେ ସାଙ୍ଗ ଜୁଟିଗଲେଣି । ଆଉ ଗୋଟେ ଡ୍ରିଙ୍କ ଅର୍ଡର ଦିଅ ।" ଏକଥା ଅବଶ୍ୟ ଶୁଦ୍ଧ ରଜାଙ୍କର ଇଂଲିଶ୍‌ରେ ସେ କହିଲେ । ପରିଜାସାହେବ ଶୋଇବା ଘରକୁ ଯାଇଥିଲେ ତ– ସେଇଠୁ ସେ ବଟନ୍ ଟିପିକି ବେହେରାକୁ ଡକାଇ ଦେଲେ । ବାହାରକୁ ଆସି ମୋତେ ଦେଖିଲେ କହିଲେ, "ଓ, ଅନନ୍ତ । ତୁମେ ଆସିଚ ? କ'ଣ ନବ ?" ମୁଁ ତ ପରିଜାସାହେବଙ୍କର ଗୋଡ଼ଧୂଳି ନେଇ ପ୍ରଣାମ କରି କହିଲି, "ସାର୍ ଅରେଞ୍ଜ ସ୍କ୍ୱାସ୍‌ଟିଏ ମଗାନ୍ତୁ ।" ବାନାର୍ଜି ସାହେବ କହିଲେ, "ନା, ନା, ଆର୍ମି ଅଫିସାର୍‌କୁ ସାମାନ୍ୟ ଅରେଞ୍ଜ ସ୍କ୍ୱାସ୍ ଦେଇ ଅପମାନ କରନା ପରିଜା"– ମୋତେ କହିଲେ, "ତୁମେ ମୋତେ ସାଙ୍ଗ ଦବ ଏଠି । ପରିଜା ତ ଟିଟି । ତୁମେ ମୋ ସାଙ୍ଗ ନ ଦେଲେ ମୁଁ ଏକୁଟିଆ ଏ ହୁଇସ୍କି ପିଇବିନି ।" ପରିଜାସାହେବ କହିଲେ, "ହଁ, ଅନନ୍ତ, ତୁମେ ତ ବର୍ତ୍ତମାନ ମୋର ଛାତ୍ର ନୁହଁ । ତୁମେ ତ ଜଣେ କମିସନ୍‌ଡ୍ ଅଫିସର । ମୋ' ପାଖରେ ଲାଜ କ'ଣ କରୁଛ ? କ'ଣ ନବ କୁହ ।" ଛୋଟ ସରୁ ଗଳାରେ କହିଲି, "ସାର୍, ହୁଇସ୍କିଟିଏ ହେଲେ ଚଳିବ ।"

ସେଠି ଅନେକ ସମୟ ବସିଲି । ଆମ ତିନିଙ୍କ ଭିତରେ ଗପସପ ହେଲା ଢେର୍ । ରାଜାଙ୍କଠୁ ଆରମ୍ଭ କରି କବି ପର୍ଯ୍ୟନ୍ତ । ଆଠଟା ବେଳକୁ ମେଲାଣି ନେଇଆସିଲି । ପରିଜାସାହେବ ଦୁଆରଯାଏ ଆସି ମୋ ପିଠିରେ ହାତ ପକାଇ କହିଲେ, "ମୁଁ ଖୁବ୍ ଖୁସି, ଖୁବ୍ ଗର୍ବ ଅନୁଭବ କରୁଚି ଯେ ମୋର ଜଣେ ଛାତ୍ର– କିଙ୍ଗ୍‌ସ କମିସନ୍ ପାଇ ଆର୍ମିର ଜଣେ ଅଫିସର ହେଇଚି ।"

କିଛି ଦିନ ପରେ ମୁଁ ଆସି କଟକରେ ପୁଲିସ ଡିପାର୍ଟମେଣ୍ଟରେ ସ୍ପେସିଏଲ୍ ଅଫିସର ଟ୍ରାନ୍ସ୍‌ପୋର୍ଟ ଏଣ୍ଡ୍ ସିଗ୍‌ନାଲ୍‌ସ ପଦରେ ଯୋଗ ଦେଲି । ଏଠି ଆସି ରହିବାର କିଛି ସପ୍ତାହ ଭିତରେ ଏଠାରେ ରୋଟାରୀ କ୍ଲବ୍‌ରେ ମିଶିଲି । ପରିଜାସାହେବ ବି ସେଥିରେ ଜଣେ ମେମ୍ବର ଥିଲେ । ସପ୍ତାହରେ ଗୋଟିଏ ସନ୍ଧ୍ୟାରେ ଆମର କ୍ଲବ୍‌ର ବୈଠକ ବସେ । ସେଇଠି ପରିଜାସାହେବଙ୍କ ସାଙ୍ଗରେ ଦେଖା ହୁଏ । ଖୁସୀ ଗପ ଢେର୍ ହେଇଚି ତାଙ୍କ ସାଙ୍ଗରେ । ପରିଜାସାହେବ ଚାକିରିରୁ ଅବସର ନେଲେ– ଉତ୍କଳ ଇଉନିଭର୍ସିଟିର ଭାଇସ୍ ଚାନ୍‌ସେଲର ହେଲେ ଏବଂ ପରେ ସେ ଏଠାରେ ଲେଜିସ୍‌ଲେଟିଭ୍ ଆସେମ୍ବ୍ଲିର ବି ମେମ୍ବର ହେଲେ । ଆମେ ଥୋକେ ତ ଖୁବ୍ ଖୁସି ହେଲୁ ଯେ ପରିଜାସାହେବଙ୍କ ଭଳି ସତ୍ ଆଉ ସଚ୍ଚୋଟ ଲୋକ ଆସେମ୍ବ୍ଲିକୁ ନିର୍ବାଚିତ ହେଲେ । ଦେଶର ଶାସନ ଏବେ ଠିକ୍ ରାସ୍ତାରେ ଚାଲିବ ନିଶ୍ଚୟ । ଆମର ଦେଶର ଭୋଟଦାତାମାନେ ବି ଯେ ତାଙ୍କ ପରି ସାଧୁ ପୁରୁଷଙ୍କୁ

ଭୋଟ ଦେଇଛନ୍ତି । ସେମାନଙ୍କର ବିଚାରବୁଦ୍ଧି ଯେ ଆମକୁ ଭଲ ସରକାର ଦେବ ଏଇ ଆଶାରେ ଆମେ ଆନନ୍ଦ ପାଇଲୁ ଖୁବ୍ । ହେଲେ ପରିଜାସାହେବଙ୍କଠୁ ଯେତେବେଳେ ଶୁଣିଲୁ ଯେ ଆମର ନେତା ସାଜି ଯେଉଁମାନେ ସରକାର ଚଳାଉଥାନ୍ତି ସେମାନେ କିମିତି ନିଜ ପାଇଁ, ନିଜର ଦଳ ପାଇଁ ଦେଶଟାକୁ, ଦେଶର ଧନକୁ ଲୁଟ୍‌ପାଟ କରୁଛନ୍ତି, ସେତେବେଳେ ମନମାରିକି ବସିଲୁ ସିନା । ସରକାରୀ ଚାକିରିଟେ କରିଥିଲି ତ ପାଟି ଫିଟେଇବାର ଜୁ ନ ଥିଲା ସେତେବେଳେ । ଦିନେ ସଞ୍ଜବେଳେ ମୁଁ ରୋଟାରୀ କ୍ଲବର ମିଟିଂ ପାଇଁ ୧୦/୧୫ ମିନିଟ୍ ଆଗରୁ ପହଞ୍ଚିଗଲି । ସେତେବେଳେ ରୋଟାରୀ ମିଟିଂ ନାରୀସେବା ସଦନ ଠାରେ ହଉଥିଲା । ମୁଁ ମୋ ସରକାରୀ ଘରୁ ସେଠିକି ଚାଲିକି ଗଲି । ପହଞ୍ଚିଲା ବେଳକୁ ସେଠି ପରିଜାସାହେବ ଏକୁଟିଆ ବସିଥିଲେ । ମୋତେ ଦେଖି ଖୁସୀ ହେଲାପରିକା ଜଣାଗଲା— କହିଲେ "ଅନନ୍ତ, ତୁମେ ତ ପୁଲିସରେ ଅଛ— ତୁମ ପାଖରେ ରିଭଲ୍‌ଭର କି ପିସ୍ତଲ ଥିବ ?" କହିଲି "ହଁ, ସାର୍ । ଦିଇଟାଯାକ ଅଛି ମୋ ପାଖରେ ।" ସେ କହିଲେ "କେଉଁଟାରେ ବେଶି ଗୁଳି ଧରେ, ଆଉ ମାରିବାକୁ ସୁବିଧା ହେବ ।" ମୁଁ କହିଲି ଯେ ପିସ୍ତଲଟା, ମୋ ପାଖରେ ଯେଉଁଟା ଥିଲା ସେଇଟା ସାତଟା ଗୁଳି ଧରେ ମେଗାଜିନ୍‌ରେ, ଆଉ ଲାଖ କରି ମାରିବାକୁ ସୁବିଧା ହୁଏ ।" ସାର୍ କହିଲେ "ତା ହେଲେ ସେଇ ପିସ୍ତଲଟା ମୋତେ ଦିନାକେତେ ପାଇଁ ଧାର୍ ଦିଅ । ମୁଁ ତ' ବୁଢ଼ା ହେଲିଣି, ଆଉ ବେଶିଦିନ ବଞ୍ଚିବି ନାହିଁ— ତେବେ ମରିବା ଆଗରୁ ମୁଁ ଆମର ଏଇ ନେତା ବୋଲାଉଥିବା କେତେଜଣ ମିଛୁଆ ଲାଞ୍ଚଖୋର ନେତାଙ୍କୁ ଗୁଳି କରିଦେବି ଯେ ଦେଶଟା, ଆମର ଏ ଓଡ଼ିଶା ରାଜ୍ୟଟା ରକ୍ଷା ପାଇଯିବ ।" ପରିଜାସାହେବଙ୍କ ମୁହଁକୁ ମୁଁ ତାଟକା ହେଇ ଅନେଇ ରହିଲି ତ ଦଣ୍ଡେଯାଏ । କହିଲି, "ସାର୍, ଆପଣ ମୋର ପିସ୍ତଲରେ ସେମାନଙ୍କୁ ମାରିଦେଲେ ମୁଁ ବି ତ ଜେଲ୍ କି ଫାଶୀ ପାଇଯିବି ।" ତହୁଁ ସାର ଚୁପ୍‌ଚାପ୍ ଦଣ୍ଡେ ରହି ନିଶ୍ୱାସଟିଏ ପକାଇ କହିଲେ, "ଥାଉ ତା ହେଲେ ।" ଆଉ କହିଲେ କେମିତି ଦେଶର ଲୋକମାନଙ୍କୁ କଥାରେ ଭେଳିକି ଦେଖେଇ କେତେଜଣ ନେତା ଶାସନକୁ ଜାବୁଡ଼ି ଧରିଚନ୍ତି, କେବଳ ନିଜର ଓ ନିଜର ଦଳର ସ୍ୱାର୍ଥ ପାଇଁ । ଆମରି ପୁଲିସ ଡିପାର୍ଟମେଣ୍ଟରେ ତ ଜଣେ ଜୁନିୟରକୁ ଆଇ. ଜି. କରିବାକୁ ଅନ୍ୟଜଣକୁ ବଦନାମ କଲେ, କେତେ ପ୍ରକାର କୁତୁର୍ପି କରି ଜଣେ ସେମିତି ଅଳ୍ପ ଜାଣିବା ଜୁନିୟର ଆଇ.ସି.ଏସ୍.କୁ ଚିଫ୍ ସେକ୍ରେଟାରୀ କଲେ— ଏଠାରେ ହାଇକୋର୍ଟ ଅର୍ଡର କରିଥିଲେ ଯେ ଜଣେ ଏସ୍. ପି. ମିଛ ସାକ୍ଷୀ ଗୁହା ଯୋଗାଡ଼ କରିଥିଲେ ବୋଲି ତାଙ୍କୁ ୨୧୧ ଦଫାରେ ଚାଲାଣ

କରିବାକୁ, କିନ୍ତୁ ମନ୍ତ୍ରୀ ମହାଶୟ ନାନା ପ୍ରକାର ଥାଳ ଦେଖେଇ ସେଇ ଲୋକଙ୍କୁ ପ୍ରମୋଶନ ଦେଲେ । ଏ ସବୁ ଯେ ହେଉଚି କ'ଣ । ଦେଶର ଭଲ ହେଉଚି ? ବଖାଣି ବସିଲେ ତ ପୋଥି ହେବ, କେତେ କହିବ କ୍ୟ ? ବିଧାନସଭାରେ ସେ ବିଷୟରେ ପ୍ରଶ୍ନ କଲେ ସରକାର ତରଫରୁ ଜବାବ ଆସେ "ନରେ ବା ଗୁଞ୍ଜରେ" ଭଳି । ଏମିତି ଏମିତି କେତେ କ'ଣ ସାର୍ କହିଲେ ସେଦିନ । ରୋଟାରୀ ମିଟିଂ ସରିଲା ପରେ ବି ବସି ମୋ ସାଙ୍ଗରେ ଏଇପରି ଗପ କଲେ ।

ଯା ଭିତରେ କେତେ ବର୍ଷ ବିତିଗଲାଣି । ସରକାରଙ୍କର ଅନ୍ଧାଧୁନିଆ କାରବାର ଯୋଗୁଁ ମୋ ଉପରେ ବି ତ ଢେର୍ ଜୁଲୁମ ହେଇଯାଇଚି । ଅଙ୍ଗେ ନିଭେଇବାର ଢେର୍ କଥା ତ ମୋର ଅନ୍ୟଠି ଲେଖା ରହିଚି । ମୁଁ ଏଗାର ବର୍ଷ ହେଲା ଅବସର ନେଇଚି । ଏବେ ବସି ଭାବେ ଯଦି ପରିଜାସାହେବଙ୍କ ପରି ଧୀରସ୍ଥିର ମେଧାବୀ ଲୋକ ମୋତେ ପିସ୍ତଲ ମାଗିପାରିଲେ ତାଙ୍କର ମନରେ କଷ୍ଟ କେତେ ଦାରୁଣ ହେଇ ନ ଥିବ ? ଦେଶ ପାଇଁ ତାଙ୍କର ଯେଉଁ ମନସ୍ତାପ ଓ ଦାରୁଣ ଯନ୍ତ୍ରଣା ହୋଇଥିଲା ସେତେବେଳେ ଯଦି ତା'ର କାଣିଚାଏ ବି ଆମର ନେତାମାନଙ୍କ ମନରେ ହୋଇଥାନ୍ତା, ଦେଶଟା କ'ଣ ଏଇପରି ହୋଇଥାନ୍ତା ? ଭାବେଁ "ପରିଜାସାହେବ ଯେ କେବଳ ପାଠପଢ଼ାରେ— ବଟନିରେ ନାମ କରିପାରିଥିଲେ ତା' ନୁହେଁ— ସେ ଜଣେ ଦେଶପ୍ରେମୀ ମହାନ ଉଦାରଚେତା ଲୋକ ଥିଲେ ।"

ଈଶ୍ୱର ତାଙ୍କର ଆତ୍ମାକୁ ଶାନ୍ତି ଦିଅନ୍ତୁ ।

# କୁଳବୃଦ୍ଧ ବୈଜ୍ଞାନିକ – ଡକ୍ଟର ପରିଜା

**କମଳକୁମାରୀ ପଟ୍ଟନାୟକ**

ତାଙ୍କୁ ଆମେ କହୁ କୁଳବୃଦ୍ଧ ବୈଜ୍ଞାନିକ । ମଣିଷ ଭିତରେ ମଣିଷଟିଏ । ତାଙ୍କର ଅପୂର୍ବ ସାଧନା ଓ ଅଧ୍ୟବସାୟ ଆଣିଥିଲା ତାଙ୍କ ଜୀବନରେ ସାଫଲ୍ୟ । ଏକ କର୍ତ୍ତବ୍ୟପରାୟଣ ଓ ନିଷ୍ଠାପର ବ୍ୟକ୍ତିତ୍ୱକୁ ଆମେ ଝୁରିହେଉ । ସେ ହେଉଛନ୍ତି ଡକ୍ଟର ପ୍ରାଣକୃଷ୍ଣ ପରିଜା । ତାଙ୍କୁ ସମସ୍ତେ ପରିଜାସାହେବ ବୋଲି କହନ୍ତି । ତାଙ୍କୁ ସୁମରିଲା ବେଳେ ତାଙ୍କ ଜୀବନର ବହୁ ଘଟଣା ମନେପଡ଼େ ।

ପରିଜା ଜନ୍ମ ହୁଅନ୍ତି ଏକ ସାଧାରଣ ପରିବାରରେ, ଯେଉଁ ପରିବାରର ସାମାନ୍ୟ ଆର୍ଥିକ ସମ୍ବଳ ବି ନ ଥିଲା ଶିଶୁ ପରିଜାକୁ ଗଢ଼ି ତୋଳିବାରେ କିମ୍ବା ଉପଯୁକ୍ତ ଶିକ୍ଷା ଦେବାରେ । ବାପା ବିଶ୍ୱନାଥ ଓ ମା ଜୟନ୍ତୀ ଦେବୀଙ୍କ ଇଚ୍ଛା ତାଙ୍କ ପୁଅ ପାଠ ପଢ଼ିବ, ବଡ଼ ମଣିଷ ହେବ । ବାଳକ ପରିଜା ଚାଲି ଚାଲି ଗାଁରୁ ବାଲିକୁଦା ମାଇନର ସ୍କୁଲକୁ ଯାଆନ୍ତି ପଢ଼ିବା ପାଇଁ । ଫେରୁ ଫେରୁ ରାତି ହୋଇଯାଏ । ଅନ୍ଧାର ଘରଟିରେ ମାଆ ବସିଥିବେ ପୁଅର ଫେରିବା ବାଟକୁ ଚାହିଁ । ଡିବିରିଟି ଆଗରୁ ଜାଳିଦେବେ କିମିତି ? କିରାସିନି ସରିଗଲେ ରାତିରେ ପୁଅ ପଢ଼ିବ କିମିତି ? ପୁଅ ଘରକୁ ଫେରିଲେ କିରାସିନି ଡିବିରି ଜଳେ । ପୁଅର ପାଠପଢ଼ା ଆରମ୍ଭ ହୁଏ, ମାଆଙ୍କର ସଞ୍ଚିତ କିରାସିନି ଜଳିବା ପର୍ଯ୍ୟନ୍ତ । ବାଳକ ପରିଜା ପାଠପଢ଼ାରେ ଲାଗିଯାଆନ୍ତି । ମାଆଙ୍କ ପ୍ରେରଣା ଓ ସ୍ନେହର ମନ୍ତ୍ରରେ ସେ ମୁଗ୍ଧ ହୁଅନ୍ତି । ସମ୍ବଳ ନ ଥିଲା ସତ, କିନ୍ତୁ ମନରେ ଥିଲା ଅସୀମ ଧୈର୍ଯ୍ୟ ଓ ବଳ । ମନର ବଳ ହିଁ ବାଳକ ପରିଜାଙ୍କୁ ଏକ ବିରାଟ ମଣିଷ ରୂପେ ତିଆରି କରେ । ସାରା ଜଗତରେ ସେ ପରିଚିତ ହୁଅନ୍ତି – ଏକ ମହାନ୍ ବୈଜ୍ଞାନିକ, ଏକ ବିଶିଷ୍ଟ ଉଦ୍ଭିଦବିତ୍ ରୂପେ ।

ବହୁ ଝଡ଼ ପରିଜାଙ୍କ ଉପର ଦେଇ ବହିଯାଇଛି, କିନ୍ତୁ ସବୁ ଝଡ଼କୁ ସାମନା କରି ଠିଆହୋଇଥିଲେ ସେ । ଠିଆ ହୋଇଥିଲେ ମହାମେରୁ ଭଳି । ଜୀବନର ଅଗ୍ନି ପରୀକ୍ଷାରେ ଲୁହା ଇସ୍ପାତରେ ପରିଣତ ହୋଇଥିଲା । ସେ ଥିଲେ ଡକ୍ଟର ପରିଜା । ଦାରିଦ୍ର୍ୟ ଭିତରେ ସେ ଜନ୍ମ ହୋଇଥିଲେ । ଦାରିଦ୍ର୍ୟର କଷାଘାତରେ ବହୁ ପ୍ରତିଭା ମଉଳିଯାଇଛନ୍ତି, କିନ୍ତୁ ପ୍ରାଣକୃଷ୍ଣଙ୍କର ପ୍ରତିଭା ବିକଶିତ ହୋଇଛି ସେଇ ଦାରିଦ୍ର୍ୟରେ ।

ଉତ୍ତର ଜୀବନରେ ଧନର ପ୍ରାଚୁର୍ଯ୍ୟ ବହୁ ଦରିଦ୍ର ଲୋକଙ୍କୁ ଉଦ୍‌ଭ୍ରାନ୍ତ କରିଥାଏ, ପଥହରା କରିଥାଏ, କିନ୍ତୁ ପରିଜା ଥିଲେ ସେଇ ସରଳତାର ଅବତାର । ସେଥିପାଇଁ ତାଙ୍କର ପୁତ୍ର କନ୍ୟାଙ୍କ ପାଇଁ ଶେଷ ବାଣୀ ଥିଲା, "ସରଳ ଜୀବନ ଯାପନରେ ମୁଁ ଆଜୀବନ ବିଶ୍ୱାସୀ । ଏଣୁ ମୋର ଅନୁରୋଧ ଯେ ମୋ ମୃତ୍ୟୁ ପରେ ସମସ୍ତ ପାରମ୍ପରିକ ପ୍ରଥା, ଯଥା– ଜ୍ଞାତିକୁଟୁମ୍ବମାନଙ୍କୁ ଭୋଜନ ଓ ଲୁଗାପଟା ଦେବା ପ୍ରଥା ପାଳନ କରାଯିବ ନାହିଁ । ମୋ ପାଇଁ କେବଳ ଯତ୍‌ସାମାନ୍ୟ କ୍ରିୟା ଓ ପ୍ରାର୍ଥନା କରାଯାଇପାରେ । ଶୁଦ୍ଧି ପ୍ରଥା ଅନୁଯାୟୀ ଯାହା ଖର୍ଚ୍ଚ ହୋଇଥାନ୍ତା ତାହା ଦରିଦ୍ର ତଥା ମେଧାବୀ ଛାତ୍ରମାନଙ୍କର ଉଚ୍ଚଶିକ୍ଷା ଓ ବୃତ୍ତି ବାବଦରେ କିମ୍ବା ବିଶ୍ୱବିଦ୍ୟାଳୟକୁ ଦାନ କରାଯିବା ଉଚିତ ।" ଆଗ୍ନୋଷ୍ଟିକ୍ ପରିଜା, ତାଙ୍କରି ପରି ବାଣୀ ଦେଇଯାଇଛନ୍ତି ।

ପ୍ରଫେସର ପରିଜା ବିଲାତ ଯାଇଥିଲେ ପାଠ ପଢ଼ିବା ପାଇଁ । କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ଟ୍ରାଇପସ୍ କଲା ପରେ ଉଦ୍ଭିଦ ବିଦ୍ୟାରେ ଗବେଷଣା କରିଥିଲେ । ବ୍ଲାକ୍‌ମ୍ୟାନ୍– ପରିଜା ଥିଓରି । ଆନ୍ତର୍ଜାତିକ କ୍ଷେତ୍ରରେ ଚମକ ଆଣିଥାଏ । କିଏ ବୁଝେ କାହାର କୃତିତ୍ୱ କେତେ, ଛାତ୍ର ପରିଜାଙ୍କର କେତେ, ଗୁରୁ ଡକ୍ଟର ବ୍ଲାକ୍‌ମ୍ୟାନ୍‌ଙ୍କର କେତେ । ସମସ୍ତଙ୍କ ମନରେ ଏକ ପ୍ରଶ୍ନ । ଉତ୍ତର ମିଳେନି । ତଥାପି ସେହି ବିଦେଶୀ 'ବ୍ଲାକ୍‌ମ୍ୟାନ୍' ଓ ଦେଶୀ 'ପରିଜା' ସାରା ପୃଥିବୀରେ ଖ୍ୟାତ ହୁଅନ୍ତି ଏକତ୍ରିତ ଭାବେ । ଏହି ଗବେଷଣାଗତ ତଥ୍ୟ ଉଦ୍ଭିଦବିଦ୍ୟା ଜଗତରେ ଆଣେ ଏକ ନୂତନ ଦିଗ୍‌ଦର୍ଶନ । ବହୁ ଉଚ୍ଚାଭିଳାଷୀ ଗବେଷକଙ୍କ ନିମନ୍ତେ ଏହି ତଥ୍ୟକ୍ଷେତ୍ର ପ୍ରସ୍ତୁତ କରେ ଉଚ୍ଚକୋଟୀର ଗବେଷଣା ପାଇଁ ।

ଫଳଟିଏ ଗଛରୁ ଛିଣ୍ଡାଇଦେଲେ କିଛି ଦିନ ପରେ ନଷ୍ଟ ହୋଇଯାଏ, କାରଣ ତାର ପ୍ରତ୍ୟେକ କୋଷରେ ଶ୍ୱାସକ୍ରିୟା ନିୟନ୍ତ୍ରିତ ହୋଇଥାଏ । ଯୁଦ୍ଧ ସମୟରେ ସେଓ ଫଳକୁ କିପରି ବହୁଦିନ ଧରି ଭଲ ଅବସ୍ଥାରେ ରଖାଯାଇପାରିବ ଏହା ଥିଲା ପରିଜାସାହେବଙ୍କ ଗବେଷଣା, ସେଥିରେ ସେ କୃତକାର୍ଯ୍ୟ ହୁଅନ୍ତି । ପାଚିଲା ଫଳ ସୁରକ୍ଷିତ ହେବା ପନ୍ଥା ଜଣାନ୍ତି ମାନବସମାଜକୁ । ଏହିପରି ବହୁବିଧ ଉପାଦେୟ ଓ ଉପଯୋଗୀ ଗବେଷଣାଗତ ତଥ୍ୟ ବାହାର କରନ୍ତି ପରିଜାସାହେବ । ଧାନଗଛରୁ ଆରମ୍ଭ କରି ବିଲାତିଦଳ ପର୍ଯ୍ୟନ୍ତ । ଚିଲିକା ହ୍ରଦରେ ବଢୁଥିବା ଶୈବାଳଠୁ ଆରମ୍ଭ କରି ଧାନ କ୍ଷେତରେ ବଢୁଥିବା ନୀଳ-ହରିତ୍ ଶୈବାଳ ପର୍ଯ୍ୟନ୍ତ ସବୁକୁ ସେ ସ୍ପର୍ଶ କରନ୍ତି । ନୂଆ ନୂଆ ତଥ୍ୟ ବାଢ଼ିବସନ୍ତି । ତାଙ୍କର ଗବେଷଣାଲବ୍ଧ ଜ୍ଞାନ ଜାତୀୟ ଓ ଆନ୍ତର୍ଜାତୀୟ ପତ୍ରପତ୍ରିକାରେ ପ୍ରକାଶିତ ହୁଏ । ସେ ସବୁକୁ ବିଚାର କଲେ ଏକ ବିରାଟ ଗ୍ରନ୍ଥ ହେବ ।

ଡକ୍ଟର ପରିଜା ଓ ରେଭେନ୍ସା କଲେଜ ୧୯୨୧ରୁ ୧୯୪୫ ଏକ ଅଭିନ୍ନ ଅନୁଷ୍ଠାନ । ପ୍ରତ୍ୟେକ ପ୍ରତ୍ୟେକଙ୍କ ପାଇଁ ଜଡ଼ିତ । ଏଇ ଅନୁଷ୍ଠାନରେ ସେ ବହୁଦିନ ବିତାଇଛନ୍ତି । ବହୁ ଛାତ୍ରଙ୍କୁ ପଢ଼ାଇଛନ୍ତି । ଶିକ୍ଷାବିତ୍ କୁଳପତି ହିସାବରେ ନାମ ଅର୍ଜନ କରିଛନ୍ତି । ବହୁ ଛାତ୍ର ତାଙ୍କ ତତ୍ତ୍ୱାବଧାନରେ ଗବେଷଣା କରିଛନ୍ତି । ସେ ରେଭେନ୍ସା କଲେଜର ଉଦ୍ଭିଦବିଦ୍ୟା ଗବେଷଣାଗାରକୁ ସୁଦୃଢ଼ ଓ କାର୍ଯ୍ୟକାରୀ କରିଛନ୍ତି । ବିଭିନ୍ନ ବିଶ୍ୱବିଦ୍ୟାଳୟ ତରଫରୁ ସମ୍ମାନଜନକ ଡି.ଏସ୍‌ସି. ଡିଗ୍ରୀ ଓ ଅନୁଷ୍ଠାନ ତରଫରୁ ମାନପତ୍ର, ମେଡାଲ ସବୁକିଛି ପାଇଛନ୍ତି । ଏପରିକି ସେ ଚାରିଥର ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ରୂପେ ଦୀକ୍ଷିତ ହୋଇଛନ୍ତି ।

ତା'ପରେ ଅବସର ନିଅନ୍ତି ପରିଜାସାହେବ । ତାଙ୍କ କ୍ୟାଣ୍ଟନ୍‌ମେଣ୍ଟ ରୋଡ଼ସ୍ଥିତ ବାସଭବନରେ ରହି ବିଭିନ୍ନ ପ୍ରକାର ଶିକ୍ଷାଗତ ଓ ଅନ୍ୟାନ୍ୟ ସମାଜସେବା କାମରେ ସମୟ ଅତିବାହିତ କରନ୍ତି । ହଠାତ୍ ଦେଖାଯାଏ ପୁଣିଥରେ ଡ଼କ୍ଟର ପରିଜା ରେଭେନ୍ସା କଲେଜକୁ ଫେରନ୍ତି, ବଟାନୀ ଡିପାର୍ଟମେଣ୍ଟରେ ଗବେଷଣା କରିବାକୁ । ଗବେଷଣା ତତ୍ତ୍ୱାବଧାନ କରିବେ ସେ । ତାଙ୍କ ତତ୍ତ୍ୱାବଧାନରେ ଅମରିଗଛର ଶରୀରତତ୍ତ୍ୱ ଉପରେ ଗବେଷଣା କରି ଯୁବ ଅଧ୍ୟାପକ ବାଞ୍ଛାନିଧି ମିଶ୍ର ପିଏଚ୍. ଡି. ଡିଗ୍ରୀ ଲାଭ କରନ୍ତି । ବର୍ତ୍ତମାନ ସେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଉଦ୍ଭିଦବିଜ୍ଞାନର ପ୍ରଫେସର । ପରିଜାଙ୍କ ନାମ ରହିଗଲା ଇତିହାସର ପୃଷ୍ଠାରେ । ଗବେଷଣା ଇତିହାସରେ ବିଜ୍ଞାନର ଅନ୍ୟ ନାମ ପ୍ରଗତି । ତାରି ଭିତରେ ବହୁ ତଥାକଥିତ ନିର୍ଭୁଲ ତଥ୍ୟ ଭୁଲ ବୋଲି ପ୍ରମାଣିତ ହୋଇଛି; ବହୁ ଚମକପ୍ରଦ ଆବିଷ୍କାର ନିତିଦିନିଆ କଥାରେ ପରିଣତ ହୋଇଛି । କିନ୍ତୁ ଯେ ହୋଇଛି ପାଇଓନିଅର, ସମସ୍ତେ ତାକୁ ମନେରଖିବେ, କାରଣ ତାରି ପାଦଚିହ୍ନକୁ ଅନୁସରଣ କରି ପ୍ରଗତିର ରଥ ଧାବିତ ହେବ । ଆଉ ସେଇ ପାଇଓନିଅର ହେଉଛନ୍ତି ଡକ୍ଟର ପରିଜା ।

ପରିଜାସାହେବ ଥିଲେ ଶୃଙ୍ଖଳାର ପ୍ରତୀକ । ଶୃଙ୍ଖଳା ମାନେ ଶୃଙ୍ଖଳା । ସଭାରେ ମିନିଟିକ ଡେରିରେ ପହଞ୍ଚିବେ ନାହିଁ କି କୌଣସି ବିଶୃଙ୍ଖଳା ସହ୍ୟ କରିବେ ନାହିଁ । କିନ୍ତୁ ଏଟିକେଟ୍ ବା ସମ୍ଭ୍ରମତାରେ ମଧ୍ୟ ତ୍ରୁଟି ହେବ ନାହିଁ । ଆପଣ ଦେଖାକରିବାକୁ ଯାଇଛନ୍ତି, ନିଶ୍ଚୟ ବଳେଇ ଦେବାକୁ ଆସିବେ । ତାଙ୍କ ସାଙ୍ଗରେ ଗାଡ଼ିରେ ଯାଇଛନ୍ତି, ନିଶ୍ଚୟ ଘର ମୁହଁରେ ଛାଡ଼ିଦେଇ ଯିବେ ।

ଡକ୍ଟର ଶ୍ରୀରଞ୍ଜନ ଥାଆନ୍ତି ଆହ୍ଲାବାଦ ବିଶ୍ୱବିଦ୍ୟାୟଳର କୁଳପତି । ମୁଁ ପରିଜାସାହେବଙ୍କ ସୁପାରିସ ପତ୍ର ନେଇ ଯାଏ ଆହ୍ଲାବାଦକୁ ତାଙ୍କ ତତ୍ତ୍ୱାବଧାନରେ ଗବେଷଣା କରିବାକୁ । ଡକ୍ଟର ଶ୍ରୀରଞ୍ଜନ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରୁ ଏମ୍. ଏସ୍‌ସି. ପାସ କରିଥାନ୍ତି ଓ ପ୍ୟାରିସ୍ ନଗରୀର ଷ୍ଟେଟ୍-ଫ୍ରାନ୍ସ ବିଶ୍ୱବିଦ୍ୟାଳୟରେ ଗବେଷଣା କରି ଡି. ଏସ୍‌ସି. ଡିଗ୍ରୀ ଲାଭ କରିଥାନ୍ତି । ସେ ଜାତୀୟ ଓ ଆନ୍ତର୍ଜାତୀୟ କ୍ଷେତ୍ରରେ ଉଦ୍ଭିଦବିଦ୍ୟାରେ ଗବେଷଣା ପାଇଁ ବହୁ ନାମ କମାଇଥାନ୍ତି । ତାଙ୍କଠୁ

ଶୁଣିବାକୁ ପାଇଛି, ଡକ୍ଟର ପରିଜା କେବଳ ଉଦ୍ଭିଦବିତ୍ ରୂପେ ପରିଚିତ ନୁହନ୍ତି, ତାଙ୍କ ବୈଜ୍ଞାନିକ ଚିନ୍ତାଧାରା ରସାୟନବିଜ୍ଞାନ, ପଦାର୍ଥବିଜ୍ଞାନ ଓ ଗଣିତକୁ ମଧ୍ୟ ସ୍ପର୍ଶ କରିଛି । ସେଥିପାଇଁ ସେ କୌଣସି ବିଶ୍ୱବିଦ୍ୟାଳୟକୁ ଗଲେ ବୈଜ୍ଞାନିକମାନେ ବହୁ ସମୟରେ ତାଙ୍କ ପାଖରେ ଜୁଟନ୍ତି । ବହୁ ଜଟିଳ ସମସ୍ୟାକୁ ସେ ବିଜ୍ଞାନର ଅନ୍ତଃଶୃଙ୍ଖଳିତ ଚିନ୍ତାଧାରାରେ ସମାଧାନ କରନ୍ତି । ଠିକ୍ ଏତିକିବେଳେ ମୋର ଗବେଷଣାର ଏକ ସମସ୍ୟା ଉପୁଜେ । ଲଣ୍ଡନ ବିଶ୍ୱବିଦ୍ୟାଳୟ କିଙ୍ଗସ୍ କଲେଜର ଉଦ୍ଭିଦବିଜ୍ଞାନ ପ୍ରଫେସର ଡକ୍ଟର ବେନେଟ୍-କ୍ଲାର୍କ ଓ ଅନ୍ୟଜଣେ ବରିଷ୍ଠ ଉଦ୍ଭିଦବିତ୍ ଡକ୍ଟର ଡବ୍ଲୁ. ଓ. ଜେମ୍ସ ସମସ୍ୟାଟି ଉପରେ ମତାମତ ଦିଅନ୍ତି ଭିନ୍ନ ଚିନ୍ତାଧାରାରେ । ଗବେଷଣାଗତ ତ୍ରୁଟି ବୋଲି ସେମାନେ ମତ ପ୍ରଦାନ କରନ୍ତି । ଡକ୍ଟର ପରିଜାଙ୍କ ପାଖରେ ସମସ୍ୟାଟି ଉପସ୍ଥାପନ କରାଯାଏ । ସେ ସମସ୍ୟାଟିକୁ ସୁନ୍ଦର ଓ ସରଳ ଭାଷାରେ ବୁଝାନ୍ତି ଗ୍ରାଫ୍‌ଟିଏ ଟାଣି — ଗାଣିତିକ ଚିନ୍ତାଧାରାରେ । ଉଦ୍ଭିଦବିତ୍‌ଙ୍କ ସୀମିତ ଜ୍ଞାନର ତ୍ରୁଟିକୁ ଦର୍ଶାନ୍ତି । ଗବେଷଣାପ୍ରସୂତ ଫଳାଫଳକୁ ପ୍ରତିପାଦନ କରନ୍ତି । ବାସ୍ତବିକ୍ ତାଙ୍କର ପରିପକ୍ୱ ଜ୍ଞାନ ପାଖରେ ମୁଣ୍ଡ ଆପେ ଆପେ ନଇଁଯାଏ ।

ଆହ୍ଲାବାଦ ବିଶ୍ୱବିଦ୍ୟାଳୟକୁ ଆସିଥିଲେ ବିଶ୍ୱପ୍ରସିଦ୍ଧ ଉଦ୍ଭିଦବିତ୍ ଡକ୍ଟର ବେନେଟ୍-କ୍ଲାର୍କ । ଖୋଜିଥିଲେ ଡକ୍ଟର ପରିଜାଙ୍କ ଛାତ୍ରୀକୁ । ଡକ୍ଟର ପରିଜାଙ୍କ ବିଚକ୍ଷଣ ବୁଦ୍ଧି ଓ ଉଚ୍ଚକୋଟୀର ଗବେଷଣାକୁ ଉଲ୍ଲେଖ କରି ସେଦିନ ପ୍ରଫେସର ବେନେଟ୍-କ୍ଲାର୍କ ଏକ ବୈଜ୍ଞାନିକ ସଭାରେ ଭାଷଣ ଦେଇ କହିଲେ, ''ପ୍ରଫେସର ପରିଜା ଉଡ଼ାଜାହାଜ ବା ରକେଟ୍‌ରେ ଗଲାବେଳେ ଆମେସବୁ ଅଛୁ ବଳଦଗାଡ଼ିରେ ।'' ବିଶ୍ୱବିଦ୍ୟାଳୟର ସମସ୍ତ ଲୋକେ ଏକଥା ଶୁଣି ଆଶ୍ଚର୍ଯ୍ୟ ହୋଇଥିଲେ ।

ଶ୍ୱାସରୋଗ ପାଇଁ ଅନ୍ତମୂଳ Tylophora indica (Burm.) Merr. ଲଟା ଉପଯୋଗୀ । ସେଥିରେ ଥିବା ଆଲକାଲଏଡ୍ ଶ୍ୱାସରୋଗୀକୁ ଉପଶମ ଦିଏ । ଏହି ଉଦ୍ଭିଦ ଉପରେ ମୋର ପ୍ରାଥମିକ ଗବେଷଣା ଚାଲୁ ହୋଇଥାଏ । ଖବର ପରିଜା ସାହେବଙ୍କ କାନରେ ପହଞ୍ଚେ । ସେତେବେଳେ ସେ ରୋଗଶଯ୍ୟାରୁ ଉଠିଥାନ୍ତି, ଟିକ୍ ଭାଇରସ୍‌ରେ ଆକ୍ରାନ୍ତ ହୋଇଥାଆନ୍ତି । ବହୁ ଦିନ ପରେ ସେ ଟିକିଏ ସୁସ୍ଥ ହୋଇଥାଆନ୍ତି । ସେହି ଅବସ୍ଥାରେ ଡକ୍ଟର ପରିଜା ମୋତେ ଡକାଇ ପଠାନ୍ତି ତାଙ୍କ ବାସଭବନକୁ । ସେତିକିବେଳେ ସେ ଶ୍ୱାସରୋଗ ଭୋଗୁଥାନ୍ତି । ମୁଁ ଡକ୍ଟର ପରିଜାଙ୍କ ଆଗରେ ଚୌକିଟିଏ ପକାଇ ବସିଥାଏ । ମୋ'ଠୁ ବହୁତ କଥା ଶୁଣନ୍ତି ଏହି ଅନ୍ତମୂଳ ଲଟା ବିଷୟରେ । ପ୍ରତି ମୁହୂର୍ତ୍ତରେ ଭାବୁଥାଏ, କାଳେ ସେ କହିବେ ତାଙ୍କୁ ମୁଁ ସେହି ପତ୍ର ବ୍ୟବହାର କରିବାକୁ ଦେବି । ବୋଧହୁଏ ମୋ ମୁହଁର ଭାବଭଙ୍ଗୀରୁ ସେ ଠଉରାନ୍ତି ମୋ ମନର ଇଚ୍ଛା ।

ପ୍ରକାଶ୍ୟରେ ଡକ୍ଟର ପରିଜା କହନ୍ତି, "କମଳକୁମାରୀ, ମଣିଷର ବୟସର ବୃଦ୍ଧି ସଙ୍ଗେ ସଙ୍ଗେ କୋଷର ସକ୍ରିୟତା ହ୍ରାସ ପାଏ । ମୋର ବୟସ ଯଥେଷ୍ଟ ହୋଇଯାଇଛି । ଏହି ନିତ୍ୟ ନିୟମିତ ଧର୍ମକୁ ଏଡ଼ାଇ ଦେବାର ପ୍ରଚେଷ୍ଟା ହୁଏତ ବିଜ୍ଞାନଜନିତ ସାଧନା ହୋଇପାରେ, ତେବେ ଯେଉଁ କୋଷର କ୍ଷୟର ସୀମାରେଖା ଟପିଯାଇଛି ତାକୁ ସୁଧାରିବାକୁ ମୁଁ ଚାହେଁନି । ମୁଁ କେବଳ ତମଠୁ ଜାଣିବାକୁ ଚାହେଁ, ତମର ଗବେଷଣା କି ପ୍ରକାର । କେଉଁ ସଜୀବ ସକ୍ରିୟ କୋମଳ କୋଷରେ ଏହାର ଉପକାରିତା କେତେ । ତାକୁ ତମେ ବୈଜ୍ଞାନିକ ପ୍ରଣାଳୀରେ ରୂପ ଦେଲେ ମୁଁ ଖୁସି ହୁଅନ୍ତି ।" ଏତିକି କହି ସେ ଧୀରେ ଧୀରେ ପାଦ ପକାଇ ଉଠନ୍ତି ବଗିଚା ଆଡ଼େ । ଗୋଟିଏ ପୋକଶୁଙ୍ଘା ଜାତୀୟ ଗଛର ଫୁଲକୁ ଆଣନ୍ତି ଏବଂ କହନ୍ତି ଏହି ଫୁଲର ଶୁଖିଲା ପାଉଡରକୁ ଘା'ରେ ପକାଇଲେ ଘା ଶୀଘ୍ର ଶୁଖିଯାଏ । ଏହା ଉପରେ ଗବେଷଣା କଲେ ଭଲ ହୁଅନ୍ତା । ଏତିକି କହି ଫୁଲଟିକୁ ବଢ଼ାଇଦିଅନ୍ତି ମୋ ହାତକୁ । ଏ ବୟସରେ ମଧ୍ୟ ତାଙ୍କର ଇଚ୍ଛା ଔଷଧି ଉଦ୍ଭିଦକୁ ସାଉଣ୍ଟିବା ପାଇଁ । ବାସ୍ତବିକ୍ କି ମଣିଷ ଇଏ !

ଡକ୍ଟର ପରିଜା ଥିଲେ ମୂଳରୁ ଶେଷଯାଏ ବୈଜ୍ଞାନିକ । ବିଜ୍ଞାନ ହେଉଛି ତାଙ୍କର ବିଶ୍ୱାସ । ସବା ସାନପୁଅ ଅସୁସ୍ଥ ଥାଏ । ସାର୍‌ଙ୍କୁ ପଚାରିଲି, "ସାର୍, ଅମୁକ ବାବା ରୋଗ ଭଲ କରିଦେଉଛନ୍ତି ବୋଲି ଅନେକ ଲୋକ କହୁଛନ୍ତି ।" ତାଙ୍କ ଆଖି ଉଜ୍ଜଳି ଉଠିଥିଲା, କହିଲେ, "ମୁଁ ବୈଜ୍ଞାନିକ, ବିଜ୍ଞାନ ହେଉଛି ମୋର ବିଶ୍ୱାସ । ମୁଁ ବିଶ୍ୱାସ କରିବି ଏଇସବୁ ପ୍ରତାରଣାକୁ !" ସ୍ତମ୍ଭୀଭୂତ ସମସ୍ତେ । କି ଅଟଳ ବିଶ୍ୱାସ, କି ଅନମନୀୟ ଶକ୍ତି ! ସେ ଥିଲେ ଡକ୍ଟର ପରିଜା ।

ଓଡ଼ିଶା ଉପର ଦେଇ ବୋହିଯାଇଛି ଦୁରନ୍ତ ବାତ୍ୟା । ବାତ୍ୟା ପ୍ରପୀଡ଼ିତ ଜନସାଧାରଣଙ୍କ ପାଇଁ ଅର୍ଥ ଆଦାୟ ହେବ । ଜୀବନର ସନ୍ଧ୍ୟାରେ ଡକ୍ଟର ପରିଜା ବାହାରିଲେ ରାସ୍ତାରେ ଚାଲି ଚାଲି ଅର୍ଥ ମାଗି ମାଗି । କଟକ ସହରରେ ସାମ୍ପ୍ରଦାୟିକ ଦଙ୍ଗା । ସହରରେ ସାନ୍ଧ୍ୟ ଆଇନ୍, ଜୀବନ ବିପଦାପନ୍ନ । ଡକ୍ଟର ପରିଜାଙ୍କ ଘରେ ବୈଠକ । ସେ ବାହାରିଲେ ଶାନ୍ତି ଶୋଭାଯାତ୍ରାରେ । ବୈଚିତ୍ର୍ୟମୟ ତାଙ୍କର ଜୀବନ । ଅଧ୍ୟାପକ, ଅଧ୍ୟକ୍ଷ, କୁଳପତି, ଉପ-କୁଳପତି, ଉପ-କୁଳାଧିପତି, କୃଷି ବିଭାଗର ନିର୍ଦ୍ଦେଶକ, ବିଧାନସଭାର ସଦସ୍ୟ ଡକ୍ଟର ପରିଜା ସବୁ ବିଭାଗକୁ ଛୁଇଁ ଯାଇଛନ୍ତି ଏବଂ ଯାହାକୁ ଛୁଇଁଛନ୍ତି ତାହାକୁ ମଣ୍ଡିତ କରିଛନ୍ତି । ଡକ୍ଟର ଜନ୍‌ସନ୍‌ଙ୍କ ଭାଷାରେ "Whatever you have touched, you have adorned."କାରଣ ପରିଜାସାହେବ ହେଉଛନ୍ତି ଅତୁଳନୀୟ ଡକ୍ଟର ପରିଜା ।

ଓଡ଼ିଶାରେ ସୀମା ଆନ୍ଦୋଳନ । ଆନ୍ଦୋଳନ ସରିଯାଇଥାଏ । ପରିଜାସାହେବ ଆନ୍ଦୋଳନ ବେଳେ ଥାଆନ୍ତି ଦିଲ୍ଲୀରେ । ସେଇମାତ୍ର କଟକକୁ ଫେରିଥାଆନ୍ତି । ଛାତ୍ରମାନେ ଚାହିଁଥାନ୍ତି ସେ ପରୀକ୍ଷାକୁ କିଛିଦିନ ଘୁଞ୍ଚାଇ ଦିଆଯାଉ । ସମସ୍ତେ

ଭାବିଥିଲେ ଡକ୍ଟର ପରିଜା ଯେଉଁଭଳି ଲୋକ ସେ କେବେହେଲେ ପରୀକ୍ଷା ଘୁଞ୍ଚାଇବାକୁ ରାଜି ହେବେ ନାହିଁ । ପରିଜାସାହେବ ଆନ୍ଦୋଳନକାରୀ ନେତାମାନଙ୍କୁ କୁଣ୍ଢାଇ ପକେଇ କହିଲେ ଯେ ସେମାନଙ୍କ ପାଇଁ ସେ ଗର୍ବିତ । ଓଡ଼ିଶାର ଟେକ ସେମାନେ ରଖିଛନ୍ତି । ପରୀକ୍ଷା ଘୁଞ୍ଚାଗଲା ।

୧୯୭୬ ମସିହାରେ ଡକ୍ଟର ପରିଜାଙ୍କ ନାମ ଅନୁଯାୟୀ ରେଭେନ୍ସା କଲେଜରେ ସ୍ନାତକୋତ୍ତର ଉଦ୍ଭିଦ ବିଜ୍ଞାନ ବିଭାଗ ନାମିତ ହୁଏ । ଏଇ ବିଭାଗର ସେମିନାରର ନାମ ମଧ୍ୟ ପରିଜା ସେମିନାର ରଖାଯାଏ । ପରିଜାସାହେବଙ୍କ ବିଷୟରେ ଅଧିକା ଜାଣିବା ପାଇଁ ବଟାନୀ ବିଭାଗର ବୟୋଜ୍ୟେଷ୍ଠ ଲୋକଙ୍କୁ ନିମନ୍ତ୍ରଣ କରାଯାଇଥାଏ, ତାଙ୍କ ବିଷୟରେ କହିବା ପାଇଁ । ଆଜିର ଛାତ୍ରଛାତ୍ରୀମାନଙ୍କୁ ତାଙ୍କର ଜୀବନ କାହାଣୀ ଏକ ବିରାଟ ଇତିହାସ ପରି ମନେହୁଏ । ପରିଜାସାହେବଙ୍କର ସମସ୍ତେ ଛାତ୍ର । ସବୁ ବିଭାଗର ଲୋକେ ତାଙ୍କୁ 'ସାର୍' କହନ୍ତି । ସମସ୍ତେ କିଛି ନା କିଛି ଉପକାର ପାଇଛନ୍ତି ତାଙ୍କଠୁ ।

ପରିଜାସାହେବଙ୍କ ଜୀବନୀ ହେଉଛି ଏକ ଇତିହାସ । କିନ୍ତୁ ଏଇ ଦୀର୍ଘକାଳ ଭିତରେ ବହୁ ମଣିଷ ବଦଳିଛନ୍ତି । ସଭ୍ୟତା ବଦଳିଛି । ସମାଜ ବଦଳିଛି । କିନ୍ତୁ ଡକ୍ଟର ପରିଜା ସତେ ଯେମିତି ନିଜେ ହେଉଛନ୍ତି ମହାକାଳର ଧ୍ୱନି । ସେ ଅନେଇଛନ୍ତି ପୃଥିବୀକୁ ତାଙ୍କର ତୀକ୍ଷ୍ଣ ଆଖିରେ । ମୃତ୍ୟୁ ସାଙ୍ଗରେ ତାଙ୍କର ସାକ୍ଷାତ ହୋଇଛି ବହୁବାର, ବହୁଥର ସେ ଫେରିଛନ୍ତି ସମସ୍ତ ପ୍ରକାର ଆଶଙ୍କାକୁ ମିଥ୍ୟା ପ୍ରମାଣିତ କରି । ଡାକ୍ତରି ବିଦ୍ୟା ତାଙ୍କ ପାଖରେ ହାର ମାନିଛି । ସେ ମୃତ୍ୟୁଞ୍ଜୟ ପରି ଫେରିଛନ୍ତି ମରଣର ଦ୍ୱାରଦେଶରୁ । ସେଇ ଯୋଗୁଁ କଥା କହୁ କହୁ ସେ ଚାଲିଯାଇଛନ୍ତି, ମରଣ ତାଙ୍କୁ ବାଟ ଛାଡ଼ିଦେଇଛି । ଏଭଳି ଏକ ସାର୍ଥକ ଜୀବନ ନେଇ କେତେ ଲୋକଙ୍କର ଯିବାର ସୌଭାଗ୍ୟ ମିଳିବ ?

ତାଙ୍କର ପରଲୋକରେ ପତାକା ଅର୍ଦ୍ଧନମିତ ହେବ କି ନାହିଁ, ପୁଲିସ୍‌ର ବିଗୁଲ ଅନ୍ତିମ ଧ୍ୱନି ବାଦନ କରିବ କି ନାହିଁ, ତାହା ଖୁବ୍ ଗୌଣ କଥା । ସାରା ଓଡ଼ିଶା, ସମଗ୍ର ବିଜ୍ଞାନସମାଜ, ସାରା ଶିକ୍ଷକ ଓ ଛାତ୍ରକୁଳ ତାର ପତାକା ଅର୍ଦ୍ଧନମିତ କରିବେ ଏଇ ମନୀଷୀଙ୍କର ପରଲୋକରେ । ତାଙ୍କର ଅନ୍ତିମ ଇଚ୍ଛାନୁଯାୟୀ କ୍ରିୟା ଇତ୍ୟାଦି ହେବ ନାହିଁ, ତାଙ୍କର ସ୍ମୃତିକୁ ସମ୍ମାନ ଦେଖାଇ ତାଙ୍କର ସ୍ୱର୍ଗୀୟ ଆଲୋକରେ ପଢ଼ିବେ ଆହୁରି ବହୁ ଛାତ୍ର, ଆଗାମୀ ଯୁଗର ପ୍ରାଣକୃଷ୍ଣ ପରିଜା ହେବେ ସେମାନେ । ସେଇ ହେବ ତାଙ୍କ ପ୍ରତି ଏ ଜାତିର ସାର୍ଥକ ଶ୍ରଦ୍ଧାଞ୍ଜଳି ।

# ଓଡ଼ିଶାର ଯୋଗ୍ୟତମ ସୁତ

**କୁଞ୍ଜବିହାରୀ ତ୍ରିପାଠୀ**

କ୍ୱ 'କୃଷ୍ଣଃ ପ୍ରାଣପୂର୍ବକଃ'
କ୍ୱ ଚାଳ୍ପବିଷୟା ମତିଃ ॥

ମାଧ୍ୟାକର୍ଷଣ ଶକ୍ତି ପ୍ରଭୃତି ବହୁ ବୈଜ୍ଞାନିକ ତତ୍ତ୍ୱର ଆବିଷ୍କାରକ ସାର୍ ଆଇଜାକ୍ ନିଉଟନ୍ (୧୬୪୨-୧୭୨୭) ଅତି ସରଳ ଓ ନିରହଙ୍କାର ଥିଲେ । ସାଗର ବେଳାରୁ ଶକ୍ତି ଆହରଣ କରୁଥିବା ବାଳକ ପରି ସେ ନିଜକୁ ମନେ କରୁଥିଲେ । ଡକ୍ଟର ପ୍ରାଣକୃଷ୍ଣ ପରିଜା 'ପଦ୍ମଭୂଷଣ' ଉପାଧିରେ ଭୂଷିତ ହୋଇ ମଧ୍ୟ ଭାରତୀୟ ବିଜ୍ଞାନ କଂଗ୍ରେସର ସଭାପତି ପଦ ମଣ୍ଡନ କରିଥିଲେ ମଧ୍ୟ ନିଜକୁ ଅଭୂଷଣ ଓ ଅକିଞ୍ଚନ ବୋଲି ମନେ କରୁଥିଲେ ।

ସେ ରେଭେନ୍ସା କଲେଜରେ ଅଧ୍ୟକ୍ଷ ଥିବାବେଳେ ମୁଁ ଉକ୍ତ କଲେଜର ଜଣେ ଅଧ୍ୟାପକ ଥାଇ, ସେ ଉତ୍କଳ ବିଶ୍ୱବିଦ୍ୟାଳୟର ବହୁବର୍ଷ କୁଳପତି ଥିବାବେଳେ ମୁଁ ଉକ୍ତ ବିଶ୍ୱବିଦ୍ୟାଳୟ ସହିତ ସମ୍ପୃକ୍ତ ଥାଇ ତାହାଙ୍କୁ ଅନୁରୋଧ କରିଥିଲି ତାଙ୍କ ଜୀବନୀ ଲିପିବଦ୍ଧ କରିବାକୁ । ସେ କହିଲେ ଅକିଞ୍ଚନ ଜୀବନର କ'ଣ ଅଛି ଲିପିବଦ୍ଧ ହେବାର ଯୋଗ୍ୟ !

ବୋଧହୁଏ ପରିଜାସାହେବ ନିଜ ପୂର୍ବପୁରୁଷ ବା ବଂଶ ପରମ୍ପରା ସମ୍ବନ୍ଧରେ ଏବଂ ବାଲ୍ୟ ଓ କୈଶୋରର ପାଠପଢ଼ା ସମ୍ବନ୍ଧରେ ଯାହା କିଛି ତାଙ୍କ ଲେଖା 'ପୌରୁଷ'ରେ ପ୍ରକାଶିତ ହୋଇଛି, ତାହା ସେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଏକାନ୍ତ ଅନୁରୋଧରେ ଲେଖିଛନ୍ତି ।

ସୁଧୀ ଲୋକ ଆତ୍ମ ଅଜ୍ଞତାରେ ବହୁ ଉପକାର ସାଧନ କରି ତାହା ପ୍ରକାଶ କରିବାରେ ସଦା କୁଣ୍ଠିତ । ଏପରି ସୁଧୀବୃନ୍ଦଙ୍କ ମଧ୍ୟରେ ଜଣେ ଅଗ୍ରଗଣ୍ୟ ବରିଷ୍ଠ ଗୁରୁ ହେଉଛନ୍ତି ପୂଜନୀୟ ପ୍ରାଣକୃଷ୍ଣ ପରିଜା । ପରିଜାସାହେବ ଅଗଣିତ ବ୍ୟକ୍ତିଙ୍କର ବିଶେଷତଃ ଛାତ୍ରଙ୍କର ବହୁ ଉପକାର କରିଛନ୍ତି । ବହୁ ଛାତ୍ର ତାଙ୍କ ଉପଦେଶ ଲୋଡ଼ିଛନ୍ତି, ତନ୍ମଧ୍ୟରେ ମୁଁ ଅନ୍ତର୍ଭୁକ୍ତ । ଆଇ.ଏ. ପାସ୍ କରିବା ପରେ ବି.ଏ.ରେ ଇତିହାସ ବା ସଂସ୍କୃତ କେଉଁ ବିଷୟ ଅନର୍ସ (ପ୍ରତିଷ୍ଠା) ବିଷୟ ରୂପେ ପଢ଼ିବି ତାଙ୍କର ଅଭିମତ ଚାହିଁଥିଲି । ସେ ଏହିପରି କିଛି ମୋତେ କହିଥିଲେ । ତୁମ୍ଭେ ଯେଉଁ ବିଷୟ

ଅନର୍ସ ନେଇ ପଢ଼, ତହିଁରେ ଉଚ୍ଚସ୍ଥାନ ପାଇଲେ ତୁମପାଇଁ ସ୍ଥାନ ମିଳିବ, "There is always a place at the top for you."

୧୦୫୧ ଖ୍ରୀଷ୍ଟାବ୍ଦରୁ ୧୫୬୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଓଡ଼ିଆ ଖୋଦିତ ଲେଖ ଉପରେ ଆଧାରିତ ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ସ୍ୱୀକୃତିପ୍ରାପ୍ତ ମୋର ପିଏଚ୍.ଡି. ନିବନ୍ଧ ପ୍ରକାଶନ ପାଇଁ ମୁଁ କୁଳପତି ଡକ୍ଟର ପରିଜାଙ୍କ ଦୃଷ୍ଟି ଆକର୍ଷଣ କଲି । ପ୍ରାୟ ଦୁଇମାସ ପରେ ମୋତେ ଦିନେ ବିଶ୍ୱବିଦ୍ୟାଳୟର ତାଙ୍କ ଅଫିସ୍‌କୁ ଡାକି ଉକ୍ତ ନିବନ୍ଧ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରକାଶ କରିବାର ବ୍ୟବସ୍ଥା କରିଛି ବୋଲି ସେ କହିଲେ । ଏଥିପାଇଁ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗରୁ ୯୦୦୦ ଟଙ୍କାର ଅନୁଦାନ ମିଳିଛି । କଟକରେ ମୁଦ୍ରଣର ସୁବିଧା ନ ଥିବାରୁ କଲିକତାର Elm Press ଏହାର ମୁଦ୍ରଣଭାର ଗ୍ରହଣ କରି ୧୯୬୨ ଖ୍ରୀଷ୍ଟାବ୍ଦରେ "The Evolution of Oriya Language and Script" ନାମରେ ଉତ୍କଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ଏହି ଗ୍ରନ୍ଥ ପ୍ରକାଶ କଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ଏହି ଗ୍ରନ୍ଥଟିକୁ Sir Ralph Lily Turnerଙ୍କୁ ଉପହାର ଦେବାରୁ ତାହା ତାଙ୍କ ବିଶ୍ୱପ୍ରସିଦ୍ଧ Comparative Grammar of Indo-Aryan Languages ନାମକ ଗ୍ରନ୍ଥରେ ସେ ଉଲ୍ଲେଖ କରିଛନ୍ତି ।

ପ୍ରଫେସର ପରିଜା ରେଭେନ୍ସା କଲେଜର ଅଧ୍ୟକ୍ଷ ଥିବା ସମୟରେ ଦୁଇ ତିନୋଟି ଘଟଣା ଉଲ୍ଲେଖଯୋଗ୍ୟ ।

ରେଭେନ୍ସା କଲେଜରେ ପ୍ରାୟ ସାଢ଼େ ୪ଟାରେ କ୍ଲାସ୍ ବନ୍ଦ ହୁଏ । କିନ୍ତୁ ଅଧିକାଂଶ କ୍ଲାସ୍ ଗୃହରେ ବିଦ୍ୟୁତ୍ ପଙ୍ଖା ଘୂରୁଥାଏ, କେବେ କେବେ ବିଜୁଳିବତି ଜଳୁଥାଏ । ଏହି ଶକ୍ତି କ୍ଷୟ ରୋକିବାଲାଗି ଅଧ୍ୟକ୍ଷ ପରିଜା ସବୁ ଅଧ୍ୟାପକମାନଙ୍କୁ ସବୁ କ୍ଲାସ୍ ରୁମ୍‌ର ଚାବି ଦେଇଥିଲେ । ଅଧ୍ୟାପକ ଦରକାରବେଳେ ରୁମ୍‌ର ଚାବି ଖୋଲିପାରିବେ, ଆବଶ୍ୟକ ନ ଥିବା ସ୍ଥଳେ ଚାବି ବନ୍ଦ କରିପାରିବେ । ଏହି ଲେଖକ କଲେଜ କ୍ଲାସ୍ ପରେ କିଛି ସମୟ ରହେ ଏବଂ ଫେରିଲାବେଳେ କେତେକ ପଙ୍ଖା ଓ ଲାଇଟ୍ ସୁଇଚ୍ ବନ୍ଦ କରେ ।

କଲେଜର କନିକା ଲାଇବ୍ରେରୀକୁ ଏବଂ ବିଭାଗୀୟ ଲାଇବ୍ରେରୀକୁ ବହୁ ମୂଲ୍ୟବାନ ପତ୍ରିକା ଆସେ । ଏହି ପତ୍ରିକାଗୁଡ଼ିକର ଉପାଦେୟ ପ୍ରବନ୍ଧ ନାମ, ଲେଖକ ନାମ ଓ ସାରମର୍ମ ଅତି ସଂକ୍ଷିପ୍ତ ଭାବରେ କାର୍ଡ଼ରେ ଲେଖିରଖିଲେ ସମସାମୟିକ ଅଧ୍ୟାପକ ବା ପରବର୍ତ୍ତୀ ଅଧ୍ୟାପକମାନେ ତାହା ପଢ଼ି ରିସର୍ଚ୍ଚରେ ଅଗ୍ରଗତି କରିପାରିବେ । ଏଥିପାଇଁ ଅଧ୍ୟକ୍ଷ ଥିବା ସମୟରେ ପରିଜାସାହେବ ସରକାରୀ ବ୍ୟୟରେ ବହୁ କାର୍ଡ଼ କିଣି ପ୍ରତ୍ୟେକ ବିଭାଗର ମୁଖ୍ୟ ପ୍ରଫେସରଙ୍କୁ ପ୍ରଦାନ କରିଥିଲେ । କିନ୍ତୁ ପ୍ରତ୍ୟେକ ବିଭାଗରେ ଆଜିକାଲି ଏହି ବ୍ୟବସ୍ଥାର ପ୍ରଚଳନ ନାହିଁ ଯଦିଓ ଗବେଷଣା ପାଇଁ ଏହା ଅପରିହାର୍ଯ୍ୟ କହିଲେ ଚଳେ ।

ଅଧ୍ୟକ୍ଷ ପରିଜା ରେଭେନ୍ସା କଲେଜର ଦିବାଧ୍ୟାୟୀ ଛାତ୍ରଙ୍କୁ ବିଭିନ୍ନ ପ୍ରୋକ୍ଟରିଆଲ୍ ଗ୍ରୁପ୍‌ରେ ବିଭକ୍ତ କରି ପ୍ରତ୍ୟେକ ଗ୍ରୁପ୍‌ର ଚାର୍ଜରେ ଜଣେ ଅଧ୍ୟାପକଙ୍କୁ ପ୍ରୋକ୍ଟର ରୂପେ ରଖି ତାଙ୍କ ବାସସ୍ଥାନ ଦେଖି ତାଙ୍କ ସହିତ ସମ୍ପର୍କ ରଖିବାର ବ୍ୟବସ୍ଥା କରିଥିଲେ । ପ୍ରତ୍ୟେକ ଛାତ୍ରଙ୍କ ବିବରଣୀ ଲେଖିବାପାଇଁ ଅଧ୍ୟାପକଙ୍କୁ ଗୋଟିଏ ଲେଖାଏଁ ଖାତା ଦେଇଥିଲେ ।

କଲେଜର ଦରିଦ୍ର ଛାତ୍ରମାନଙ୍କୁ ପରିଜାସାହେବ ତାଙ୍କ ବେତନର କିୟଦଂଶ ଦେଇ ତାଙ୍କ ପଢ଼ାରେ ସାହାଯ୍ୟ କରୁଥିଲେ ।

ପ୍ରଫେସର ପରିଜା ବହୁବର୍ଷ ରେଭେନ୍ସା କଲେଜର ପ୍ରିନ୍ସିପାଲ୍ ଥାଇ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଥିଲେ । ସେ ସମୟରେ ରେଭେନ୍ସା କଲେଜରୁ ଆମର ଛାତ୍ରୀ କୁମାରୀ କାଜଲ ପାଲିତ ସଂସ୍କୃତରେ ପ୍ରଥମ ଶ୍ରେଣୀ ଅନର୍ସ ରଖି ବି.ଏ. ପାସ୍ କଲେ । କାଜଲର ପିତାଙ୍କ ଅନୁରୋଧରେ ସାର୍ କାଜଲ କଟକରେ ନିଜ ଘରେ ରହି ଏମ୍.ଏ. ପ୍ରଥମ ବର୍ଷ ପଢ଼ିବାର ବ୍ୟବସ୍ଥା କରିଦେଲେ । ମୋର ଗୁରୁ ସଂସ୍କୃତ ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତି ଓ ମୁଁ ଆମର ଅନର୍ସପଢ଼ା ଛାତ୍ରୀ କାଜଲକୁ ବିଶ୍ୱବିଦ୍ୟାଳୟ କିଣିଥିବା ବର୍ଦ୍ଧମାନ କୋଠିରେ କ୍ଲାସ ନେଇ ଏମ୍.ଏ. ପ୍ରଥମ ବର୍ଷର ପାଠ୍ୟ ପଢ଼ାଇଲୁ । ତତ୍‌ପରବର୍ଷ ବାଣୀବିହାରରେ ସାର୍‌ଙ୍କ ତତ୍‌ପରତାରେ ସଂସ୍କୃତରେ ଏମ୍.ଏ. କ୍ଲାସ୍ ଖୋଲିଲା । କାଜଲ ତହିଁରେ ଏମ୍.ଏ. ଦ୍ୱିତୀୟ ବର୍ଷର ପାଠ ପଢ଼ି ପରୀକ୍ଷା ଦେଇ କୃତିତ୍ୱର ସହିତ ୧ମ ଶ୍ରେଣୀରେ ଏମ୍.ଏ. ପାସ୍ କଲା । ସାର୍ ବିଶ୍ୱବିଦ୍ୟାଳୟ ତରଫରୁ ଆମପାଇଁ କିଛି ବେତନର ବ୍ୟବସ୍ଥା କରିଥିଲେ । କୁମାରୀ କାଜଲ ପାଲିତ ଏମ୍.ଏ. (ସଂସ୍କୃତ) ୫ମ ବର୍ଷର ପାଠପଢ଼ା କଟକରେ ସୁବିଧା କରି ୬ଷ୍ଠ ବର୍ଷ ପାଠ୍ୟ ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟରେ ସଂସ୍କୃତ ଏମ୍.ଏ. ଖୋଲିବାପାଇଁ ପରିଜାସାହେବ ସମର୍ଥ ହୋଇଥିଲେ, କାରଣ ସେ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ ଓ ଗବେଷଣା କରୁଥିବା ବେଳର ତାଙ୍କ ପରିଚିତ ବନ୍ଧୁ ଶ୍ରୀ ଚିନ୍ତାମଣି ଦେଶମୁଖ ଆଇ.ସି.ଏସ୍. ସେତେବେଳେ ୟୁନିଭରସିଟି ଅର୍ଥସାହାଯ୍ୟ କମିସନ୍‌ର ଚେୟାରମ୍ୟାନ୍ ଥିଲେ ।

କୁଳପତି ପ୍ରଫେସର ପରିଜା ଅଧ୍ୟାପକ ନବୀନକୁମାର ସାହୁଙ୍କର ଓଡ଼ିଶାର ବୌଦ୍ଧଧର୍ମ ସମ୍ପର୍କୀୟ ପିଏଚ୍.ଡି. ଗବେଷଣା ଗ୍ରନ୍ଥ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗରୁ ଆର୍ଥିକ ସାହାଯ୍ୟ ଆଣି ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ ଛପାଇଛନ୍ତି ।

ପରିଜାସାହେବ କୁଳପତି ଥିବାବେଳେ ରେଭେନ୍ସା କଲେଜର ପ୍ରିନ୍ସିପାଲ ଡକ୍ଟର ସଦାଶିବ ମିଶ୍ର ମୋତେ ଡାକି ପଚାରିଲେ, "ଆପଣ ନେପାଳର କାଠମାଣ୍ଡୁସ୍ଥିତ ତ୍ରିଭୁବନ ବିଶ୍ୱବିଦ୍ୟାଳୟରେ ସଂସ୍କୃତ ପ୍ରଫେସର ହେବାରେ ଆଗ୍ରହୀ କି ?"

ମୁଁ ସେତେବେଳେ ସ୍ନାତକୋତ୍ତର ପ୍ରଫେସରଭାବରେ ଓଡ଼ିଶା ସରକାରଙ୍କ ପ୍ରଫେସରପାଇଁ ନିର୍ଦ୍ଦିଷ୍ଟ ସର୍ବୋଚ୍ଚ ବେତନ ୯୬୦ ଟଙ୍କା ପାଉଥିଲି, କିନ୍ତୁ ୟୁ.ଜି.ସି. ପ୍ରଫେସରଙ୍କ ଦରମା ସର୍ବନିମ୍ନ ୪୦୦୦ ଟଙ୍କା ଥିଲା । ମୁଁ ପ୍ରିନ୍ସିପାଲ୍‌ଙ୍କ ନିକଟରେ ସମ୍ମତି ପ୍ରକାଶ କରନ୍ତେ ସେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତିଙ୍କୁ ମୋର ସମ୍ମତି ଥିବା ଜଣାଇଥିଲେ ।

ଏହାର କେତେକ ସପ୍ତାହ ପରେ ୟୁନିଭରସିଟି ଗ୍ରାଣ୍ଟ୍ସ କମିସନ୍‌ରୁ ଗୋଟିଏ ଚିଠି ପାଇଲି, କମିସନ୍ ଆପଣଙ୍କୁ ସାକ୍ଷାତ କରିବାକୁ ଚାହୁଁଛନ୍ତି, ଆପଣ ତାଙ୍କଦ୍ୱାରା ନିର୍ଦ୍ଦିଷ୍ଟ ତାରିଖରେ ତାଙ୍କୁ ସାକ୍ଷାତ କରନ୍ତୁ । ମୁଁ ଓଡ଼ିଶା ସରକାର ଶିକ୍ଷାବିଭାଗର ଅନୁମତି ପ୍ରାର୍ଥନା କଲି ଉକ୍ତ ସାକ୍ଷାତ୍କାର ଲାଗି । ତଦାନୀନ୍ତନ ଡି.ପି.ଆଇ. ମହୋଦୟ ମୋତେ ଶିକ୍ଷା ବିଭାଗ ତରଫରୁ ଅନୁମତି ଦେଲେ ନାହିଁ । ମୋତେ କହିଲେ, "ଆପଣଙ୍କର ନାମ ଯେତେବେଳେ ୟୁ.ଜି.ସି.କୁ ପଠାଗଲା ଆପଣ ସରକାରଙ୍କୁ ଜଣାଇ ନ ଥିବାରୁ ସମ୍ମତି ଦିଆଯାଇପାରିବ ନାହିଁ ।" ମୁଁ ଜଣେଇଲି କୁଳପତି ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କୁ । ତାଙ୍କ ସୌଜନ୍ୟରୁ ଉକ୍ତ ପୋଷ୍ଟ ପାଇଁ ମୋର ସମ୍ମତି ଥିବାର ମୋ'ଠାରୁ ଜାଣି ସେ ମୋ ନାମ ପଠାଇଥିଲେ । ମୁଁ ୟୁ.ଜି.ସି.କୁ ଦରଖାସ୍ତ କରି ନାହିଁ । ୟୁ.ଜି.ସି. ସେକ୍ରେଟାରୀ ସରକାରଙ୍କୁ ଚିଠି ଦେଇଛନ୍ତି ମୋତେ ସାକ୍ଷାତ୍କାର ପାଇଁ ସୁଯୋଗ ଦେବାକୁ । ତଥାପି ଡି.ପି.ଆଇ. ମୋତେ ୟୁ.ଜି.ସି.ଙ୍କୁ ସାକ୍ଷାତ କରିବାପାଇଁ ଅନୁମତି ଦେଲେ ନାହିଁ ।

ପରିଜାସାହେବ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଥିବାବେଳେ ଚାରୋଟି ଖଣ୍ଡରେ ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ସଂକ୍ଷିପ୍ତ ଓଡ଼ିଆ ଜ୍ଞାନକୋଷର ପ୍ରକାଶ ତାଙ୍କର ଏକ ଅକ୍ଷୟ କୀର୍ତ୍ତି । ଡକ୍ଟର ମାୟାଧର ମାନସିଂହ ଏହାର ମୁଖ୍ୟ ସଂକଳକ ଥିଲେ । ଏହି ଜ୍ଞାନକୋଷର ମୋଟ ପୃଷ୍ଠା ସଂଖ୍ୟା ପ୍ରାୟ ୧୯୫୦ । ବୃହତ୍ ଓଡ଼ିଆ ଜ୍ଞାନକୋଷର ୧ମ ଖଣ୍ଡର ପାଣ୍ଡୁଲିପିର ପ୍ରସ୍ତୁତି ମଧ୍ୟ ସରିଥିଲା । କେତେକ ବିଷୟରେ ଶବ୍ଦକୋଷ (Glossary of technical terms) ପ୍ରସ୍ତୁତ ହୋଇ ମୁଦ୍ରିତ ହୋଇଥିଲା । ଆଉ କେତେକ ବିଷୟରେ ପାଣ୍ଡୁଲିପି ପ୍ରସ୍ତୁତ ହୋଇ ବିଶ୍ୱବିଦ୍ୟାଳୟ ଅଫିସ୍‌ରେ ଜମା ହୋଇ ରହିଛି । ମୁଦ୍ରିତ ହୋଇ ନାହିଁ । ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ଡକ୍ଟର ପରିଜାଙ୍କର ବିଶେଷ ଆଦର ଓ ସ୍ନେହ ଥାଏ । ଭାରତୀୟ ଭାଷା କମିସନ୍ ଏବଂ ଓଡ଼ିଆ ଲିପି ସଂସ୍କାର କମିଟିର ସେ ସଭ୍ୟ ଥିଲେ । ଓଡ଼ିଶାରେ 'ଉତ୍କଳ ସାହିତ୍ୟସମାଜ' ହେଉଛି ପୁରାତନ ବେସରକାରୀ ସାହିତ୍ୟିକ ଅନୁଷ୍ଠାନ । ପ୍ରଫେସର ପରିଜା ଉତ୍କଳ ସାହିତ୍ୟ ସମାଜର ସଭାପତି ରୂପେ ଦୁଇଥର ନିର୍ବାଚିତ ହୋଇଥିଲେ । ଶେଷଥର ସେ ସଭାପତି ଥିବାବେଳେ

ମୁଁ ଉପସଭାପତି ଥିଲି ଓ ଅଧ୍ୟାପକ ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ) ସମ୍ପାଦକ ଥିଲେ । ଏହି ସମୟରେ ଡକ୍ଟର ମହାନ୍ତିଙ୍କ ସମ୍ପାଦନାରେ ଗୋଟିଏ ସଙ୍କଳନ ପ୍ରକାଶିତ ହୋଇଥିଲା ।

ଭାରତ ସରକାରଙ୍କ କେନ୍ଦ୍ରୀୟ ହିନ୍ଦୀ ଡିରେକ୍ଟରେଟ୍ ଭାରତର ଚଉଦଟି ଭାଷାର ପ୍ରତ୍ୟେକ ଭାଷାରେ ଦୁଇଟି ଲେଖାଏଁ ଡିକ୍ସନାରୀ ହିନ୍ଦୀ ଲେଖାକୁ ଭିତ୍ତି କରି ପ୍ରକାଶ କରିବାକୁ ଅର୍ଥ ବ୍ୟବସ୍ଥା କରି ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରଭୃତିକୁ ଜଣାଇଲେ । ତେଣୁ କୁଳପତି ପରିଚ୍ଛା ହିନ୍ଦୀ-ଓଡ଼ିଆ ଡିକ୍ସନାରୀ ପାଇଁ ଗୋଟିଏ କମିଟି ଗଠନ କଲେ । ମୁଖ୍ୟ ଏବଂ ଆବାହକ ରହିଲେ ପ୍ରଫେସର ଗୋଲୋକବିହାରୀ ଧଳ । ପ୍ରାଥମିକ ସ୍ତରରେ କିଛି ଟଙ୍କା ମିଳନ୍ତେ ଗୋଲୋକବାବୁ ଲିଖନ ସରଞ୍ଜାମ କିଣି କାର୍ଯ୍ୟାରମ୍ଭ କଲେ । କିନ୍ତୁ ପ୍ରଫେସର ଧଳଙ୍କର ଅକାଳ ବିୟୋଗ ହେଲା । ତତ୍ପରେ କୁଳପତି ମୋତେ ତାଙ୍କ ଆସନରେ ମନୋନୀତ କଲେ । ଉଲ୍ଲିଖିତ ସମିତିର ସମବେତ ଚେଷ୍ଟାରେ ଅଗ୍ରଗତି ହୋଇ ଡିକ୍ସନାରୀ ସମ୍ପୂର୍ଣ୍ଣ ହେଲା ମାସ କତିପୟ ମଧ୍ୟରେ । ଏହି ଡିକ୍ସନାରୀ ସଙ୍କଳନରେ ପ୍ରାୟ ୯୦୦୦ ଟଙ୍କା ଖର୍ଚ୍ଚ ହେଲା ।

ପରିଚ୍ଛାସାହେବଙ୍କ ଓଡ଼ିଆ ଢଗଢମାଳି ପ୍ରତି ବିଶେଷ ଆକର୍ଷଣ ଥିଲା । ତାଙ୍କର ଆତ୍ମଜୀବନୀ "ଅକିଞ୍ଚନର ଜୀବନସ୍ମୃତି" ଅତି ସଂକ୍ଷିପ୍ତ ହେଲେ ମଧ୍ୟ ସେଥିରେ ବ୍ୟବହୃତ ଓଡ଼ିଆ ଭାଷା ଅତି ସରଳ ଓ ହୃଦୟସ୍ପର୍ଶୀ । ମହାକବି ଶ୍ରୀହର୍ଷ କହିଛନ୍ତି 'ମିତଂ ଚ ସାରଂ ଚ ବଚୋହି ବାଗ୍ମିତା' । ଏହି ସୂକ୍ତି ତାଙ୍କ ଭାଷା ପ୍ରତି ପ୍ରଯୁଜ୍ୟ । ଲୋକମୁଖର ଓଡ଼ିଆ ପ୍ରବଚନ (ଢଗ) ତାଙ୍କ ଲେଖା ଓ ଭାଷଣରେ ସେ ପ୍ରୟୋଗ କରନ୍ତି । ଏହା ତାଙ୍କ ଉକ୍ତ ପୁସ୍ତକରେ ଦେଖିବାକୁ ମିଳେ । ତାଙ୍କ ଛାତ୍ରଜୀବନରେ ସେ ବାଲିକୁଦା ମାଇନର ସ୍କୁଲକୁ ପ୍ରତିଦିନ ଯା'ଆସ କରୁଥିଲେ ୪ ମାଇଲ ବା ୨ କୋଶ ବାଟ । ପରିଶ୍ରମ ଦୂର କରିବା ବିଷୟରେ ଗୋଟାଏ ଢଗ ଲେଖିଛନ୍ତି,

"କୋଶେ ଯା', ପୋଷେ ଖା' । ଧୁଅ ପା' ଯେତେ ଇଚ୍ଛା ସେତେ ଯା ।"

ଦିନେ ଦିନେ ତାଙ୍କ ଗ୍ରାମ ଇଚ୍ଛାପୁରରୁ ୩୬ ମାଇଲ୍ ଦୂରବର୍ତ୍ତୀ କଲିଜିଏଟ୍ ସ୍କୁଲ୍‌କୁ ଚାଲିଆସିବାକୁ ପଡୁଥିଲା । ଏ ପ୍ରସଙ୍ଗରେ ବାଟୋଇଙ୍କ ପାଇଁ ଉପଦେଶାତ୍ମକ ଆଉ ଗୋଟିଏ ଢଗ ସେ ଉଲ୍ଲେଖ କରିଛନ୍ତି, ବାଡ଼ି ବା ଯଷ୍ଟିର ଉପକାରିତା ବିଷୟରେ

"ଘଡ଼ି ପଛକେ ଗବଡାଙ୍ଗ ହେଉ,
ତାକୁ ନ ଛାଡ଼ିବ କ୍ଷଣେ,
ଶତ୍ରୁକୁ ଆଣ୍ଟିବ, ପାଣିକୁ କଣ୍ଟିବ,
ସଙ୍ଗେ ହୋଇଥିବ ଜଣେ ।"

କଲେଜର ଛାତ୍ର ଓ ଅଧ୍ୟାପକମାନଙ୍କ ବହୁ ସଭାରେ ପ୍ରସଙ୍ଗକ୍ରମେ ସେ କେତେ ଢଗଢମାଣି କହିବା ଶୁଣାଯାଇଛି, ଯଥା –

''କୁମ୍ଭାର ବୋହୂ ଝାଟିକି ନ ଗଲେ ମାଟିକୁ ଯାଉ''

''ପଳାଇ ପଶିଲି ମାଉସୀଘରେ ମାଉସୀ ମାଇଲା ଦ୍ୱି-ପ୍ରହରେ''

''ଜାତି ମହାନ୍ତି କରଜ କରିଣ ଘିଅ ଖାଆନ୍ତି''

''ଶିକାରେ ଥୁଅ ବୋଇଲେ ପାଟିରେ ଥୋଇଲାଣି''

ଥରେ ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଡକ୍ଟର ବୀରବଲ ସାହାଣୀ ଏଫ୍.ଆର୍.ଏସ୍. (ପରିଜାସାହେବଙ୍କ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ ସାଥୀ) ନିମନ୍ତ୍ରିତ ହୋଇ ହିମାଳୟ ପର୍ବତର ସମୁଦ୍ର ଗର୍ଭରୁ ଉତ୍ପତ୍ତି ବିଷୟରେ ରେଭେନ୍ସା କଲେଜରେ ଭାଷଣ ଦେଉଥିଲେ । ହିମାଳୟର ଜୀବାଶ୍ମ (ଫସିଲ) ପ୍ରସ୍ତରସ୍ତର ପ୍ରଭୃତିର ପରୀକ୍ଷା କରି ଡକ୍ଟର ସାହାଣୀ ଭାଷଣ ଦେବା ପରେ ଡକ୍ଟର ପରିଜା ସଭାପତିଭାବେ ଭାଷଣ ଦେବା ଆରମ୍ଭ କରି ଓଡ଼ିଆ ଢଗର କିୟଦଂଶ ଆବୃତ୍ତି କରିଥିଲେ –

ସ୍ୱର୍ଗରୁ ଆସିଲା କେଉଁ ବିନ୍ଧାଣି
ଶୁଖିଲା କାଠରୁ ବୁହାଇଲା ପାଣି

ସମ୍ପୂର୍ଣ୍ଣ ମୌଳିକ ଢଗଟି ହେଉଛି –

କେଁ କେଁ କେଁ କରାଟ
ପୋଖରୀ ଭିତରେ ହେଉଛି ନାଟ
ଲଙ୍ଗଳ ଦଉଡ଼ି ଦେଇଛି ଟାଣି
ଶୁଖିଲା କାଠରୁ ବୁହାଇଲା ପାଣି ।

ଏହା ତୈଳଜୀବୀର ଘଣାପ୍ରତି ପ୍ରଯୁଜ୍ୟ ।

ବାଲିକୁଦାରେ ଜଣେ ଧୋବା ସନ୍ନ୍ୟାସୀ ହୋଇ ଗ୍ରାମବାସୀଙ୍କ ନିର୍ମିତ ଗୋଟିଏ ମଠରେ ଧର୍ମଶାସ୍ତ୍ର ବ୍ୟାଖ୍ୟା କରି ଉପଦେଶ ଦେଉଥିଲେ । କୈଶୋର ବୟସରେ ପ୍ରାଣକୃଷ୍ଣ ଲୋକମାନଙ୍କ ସହିତ ତାଙ୍କଠାରୁ ଶାସ୍ତ୍ର ଶୁଣୁଥିଲେ । ଜାତିଭେଦର ବିଚାର ନ ଥିଲା । ସେ ପ୍ରସଙ୍ଗରେ ଲେଖିଛନ୍ତି –

''ବାରଜାତି ତେର ଗୋଲା
ବୈଷ୍ଣବ ହେଲେ ସବୁ ଗଲା ।''

ଓଡ଼ିଶା ସରକାର ସରକାରୀ କର୍ମଚାରୀଙ୍କ ଅବସର ସୀମା ୫୫ ବର୍ଷରୁ ୫୮ ବର୍ଷକୁ ବଢ଼ାଇ କିଛିବର୍ଷ ପରେ ପୁଣି ୫୫ ବର୍ଷ ବୟସ ସୀମା କରିବାରୁ ମୋ ଭଳି କେତେକ କର୍ମଚାରୀ ୧୯୬୮ ଜୁଲାଇ ୩୧ ତାରିଖରେ ଅବସର ନେଲେ । ବ୍ରହ୍ମପୁର

ବିଶ୍ୱବିଦ୍ୟାଳୟ ଓଡ଼ିଶାରେ ସର୍ବପ୍ରଥମେ ଓଡ଼ିଆ ପ୍ରଫେସର ପଦ ଖୋଲିବାରୁ ମୁଁ ଉକ୍ତ ପଦପାଇଁ ଆବେଦନପତ୍ର ପଠାଇଲି । ଉକ୍ତର ପରିଚ୍ଛା ପ୍ରଫେସର ନିର୍ବାଚନ କମିଟିର ପ୍ରେସିଡେଣ୍ଟ ଥିଲେ । ସେ ମୋତେ ଅଧୋଲିଖିତର ଅର୍ଥ ପଚାରିଲେ

''ବସନ୍ତ ମୁହାଁକି ଉପମା ଖଟୁ
କାମ କାକରା ଛଣା ଛାଲିଚଟୁ ।''

ଏହାର ବ୍ୟାଖ୍ୟା ପ୍ରସଙ୍ଗରେ ମୁଁ କହିଲି ଏହା ନୟାଗଡ଼ର ହାସ୍ୟରସାତ୍ମକ କବି ଯଦୁମଣିଙ୍କର ଶାଳୀଙ୍କ ପ୍ରତି ପ୍ରଯୁକ୍ତ ଗୋଟିଏ ଉକ୍ତି । ସେହି ତରୁଣୀଟିର ମୁହଁରେ ବିଗତ ବସନ୍ତ ରୋଗର ବହୁ କ୍ଷତ ଚିହ୍ନ ଥିଲା । ତେଣୁ ତାକୁ କାକରା ପିଠା ଛାଣିବାରେ ବ୍ୟବହୃତ ବହୁ ରନ୍ଧ୍ରଯୁକ୍ତ ଜାଲି ଚଟୁ ସହିତ ତୁଳନା କରିଛନ୍ତି । ଯେଉଁ ଛାଲିଚଟୁ ପ୍ରଣୟରୂପକ କାକରା ଛାଣିବାପାଇଁ ଯୋଗ୍ୟ, ଅର୍ଥାତ୍ ସେ ମୁହଁକୁ ଦେଖିଲେ ଅନୁରାଗ ଜାତ ହେଉଥିଲା ।

ଏହା ପରେ ଅଧୋଲିଖିତ ଆଉ ଗୋଟିଏ ପ୍ରାଚୀନ ପ୍ରବଚନର ଅର୍ଥ ପଚାରିଥିଲେ –

''ମାଣ ଟାଣ, ବାଣ ଟାଣ,
କେହି ନ ମିଳିଲେ ଭଣ୍ଡାରିଆକୁ ଆଣ''

ଏଠାରେ ମାଣ ଅର୍ଥ ମାପ, ବାଣ ଅର୍ଥ ବୁଣାମୂଲ । ବସ୍ତ୍ରଟି ମାପିବାରେ କମ୍ ହେଉଛି । ଏଥିରେ ଯଦି ବିକ୍ରେତା ତନ୍ତୀ ଅସନ୍ତୁଷ୍ଟ, ତେବେ ନିର୍ଦ୍ଦିଷ୍ଟ ଭଦ୍ରଲୋକଙ୍କୁ ଆଣ ।

ବହୁ ବର୍ଷ ପୂର୍ବେ ପରିଚ୍ଛାସାହେବ ରେଭେନ୍ସା କଲେଜର ପ୍ରିନ୍ସିପାଲ୍ ଥିବା ସମୟରେ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟର ଅଧ୍ୟୟନ ରୀତି, ଛାତ୍ରମାନଙ୍କ କର୍ତ୍ତବ୍ୟବୋଧ ଓ ଶୃଙ୍ଖଳାଜ୍ଞାନ ବିଷୟରେ ଗୋଟିଏ ଉତ୍ତମ ପ୍ରବନ୍ଧ ଲେଖିଥିଲେ । ତାହା ପର ବର୍ଷ କତିପୟ ଓଡ଼ିଆ ବିଷୟରେ ପାଠ୍ୟ ଥିଲା । ଓଡ଼ିଶାର ଛାତ୍ରସମାଜ ପାଇଁ ଏହା ଅତୀବ ଶିକ୍ଷଣୀୟ ଥିଲା ।

ପରିଚ୍ଛାସାହେବ ବହୁ ସାହିତ୍ୟିକଙ୍କୁ ଗଦ୍ୟ ଓ ପଦ୍ୟ ସାହିତ୍ୟ ଲେଖିବାପାଇଁ ଉତ୍ସାହ ପ୍ରଦାନ କରୁଥିଲେ । କବି ନନ୍ଦକିଶୋର ବଳ ଲେଖିଛନ୍ତି, ''ସୁପାଠକଙ୍କର ଉତ୍ସାହ ଓ ଅନୁକୂଳ ମନ୍ତବ୍ୟ ଲେଖକଙ୍କର ରଚନା-କାନନରେ ଦକ୍ଷିଣ ମଳୟ-ସ୍ୱରୂପ କାର୍ଯ୍ୟ କରେ । ମୋ 'କନକଲତା' ଉପନ୍ୟାସର କିଛି ଅଂଶ ଲିଖିତ ଓ ମୁଦ୍ରିତ ହୋଇଥିଲା । କିଛିକାଳ ପୂର୍ବେ ରାୟସାହେବ ଅଜୟଚନ୍ଦ୍ର ଦାସ ମହାଶୟଙ୍କ ଖୋର୍ଦ୍ଧାସ୍ଥିତ ବସାଘରେ ସାକ୍ଷାତ ସମୟରେ ମିଷ୍ଟର ପ୍ରାଣକୃଷ୍ଣ ପରିଚ୍ଛା ଓ ମିଷ୍ଟର ଶ୍ୟାମଚନ୍ଦ୍ର ତ୍ରିପାଠୀ ମହାଶୟଦ୍ୱୟ କନକଲତାର ଅପୂର୍ଣ୍ଣତା ବିଷୟରେ ଆକ୍ଷେପ କଲେ । ଆଜି

୩/୧୧/୧୯୨୫ରେ 'କନକଲତା' ସମ୍ପୂର୍ଣ୍ଣ ହେଲା'' । ଉତ୍କଳ ସାହିତ୍ୟ ପତ୍ରିକାରୁ ପରିଜାସାହେବ 'କନକଲତା'ର ପ୍ରଥମାଂଶ ପଢ଼ିଥିବେ ।

ସମ୍ବଲପୁରର ଶ୍ରୀ ବିଷ୍ଣୁପ୍ରସାଦ ମିଶ୍ର, ଅବସରପ୍ରାପ୍ତ ପୋଲିସ ସୁପରିଣ୍ଟେଣ୍ଡେଣ୍ଟଙ୍କ 'ନୀତିରତ୍ନନିଧି ମହାଭାରତ' ଗୀତିଯୁଗର ବିଭିନ୍ନ ଛାନ୍ଦରେ ରଚିତ । ଭକ୍ତଚରଣଙ୍କ ମଥୁରାମଙ୍ଗଳ ପରି ଏହା ଗୋଟିଏ ସୁଖପାଠ୍ୟ କାବ୍ୟ । ଲେଖକଙ୍କ ପୁତ୍ର ଆଡ୍‌ଭୋକେଟ୍ ଚଣ୍ଡୀପ୍ରସାଦ ମିଶ୍ର ଲେଖିଛନ୍ତି 'ନୀତିରତ୍ନନିଧି ମହାଭାରତ'ର ୧ମ ଓ ୨ୟ ଖଣ୍ଡ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ପଦ୍ମଭୂଷଣ ଡକ୍ଟର ପ୍ରାଣକୃଷ୍ଣ ପରିଜା, ସମ୍ବଲପୁର ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ପଦ୍ମଶ୍ରୀ ଡକ୍ଟର ପରଶୁରାମ ମିଶ୍ର ଆଦି ବିଶିଷ୍ଟ ଗୁରୁଜନମାନଙ୍କ ଦ୍ୱାରା ଆଦୃତ ହୋଇ ଆଶୀର୍ବାଦ ଓ ଉତ୍ସାହ ଲାଭ କରିଥିବାରୁ ଗ୍ରନ୍ଥ ରଚୟିତା ମୋର ପୂଜ୍ୟପିତା ଶ୍ରୀ ବିଷ୍ଣୁପ୍ରସାଦ ମିଶ୍ର ଗ୍ରନ୍ଥର ୩ୟ ଖଣ୍ଡକୁ ମଧ୍ୟ ପ୍ରକାଶ କରିବାପାଇଁ ମୋର ଅନୁରୋଧ ରକ୍ଷା କରି ମୋ ହସ୍ତରେ ପାଣ୍ଡୁଲିପିକୁ ଅର୍ପଣ କଲେ । ତେଣୁ ଆଜି ୩୦/୬/୬୮ରେ ସେହି ୩ୟ ଖଣ୍ଡ ପ୍ରକାଶ ଲାଭ କରି ଆପଣମାନଙ୍କ ଆଗରେ ଉପସ୍ଥାପିତ ହୋଇପାରିଛି । ପଦ୍ମଶ୍ରୀ ଶ୍ରୀମାନ କୃତାର୍ଥ ଆଚାର୍ଯ୍ୟ ଏହି ୩ୟ ଖଣ୍ଡ ମୁଦ୍ରଣର ସମଗ୍ର ବ୍ୟୟ ଅକୁଣ୍ଠିତ ଚିତ୍ତରେ ବହନ କରି ରଚୟିତାଙ୍କର ମହତ୍ ଉଦ୍ଦେଶ୍ୟରୂପକ ସେତୁବନ୍ଧର ପରିସମାପ୍ତି ଘଟାଇଥିବାରୁ ତାଙ୍କୁ ଆମ୍ଭର ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଅଛୁ ।

ଦୁଇଖଣ୍ଡି ବନ୍ଧା ଖାତାରେ ଲିଖିତ ପଶ୍ଚିମ ଓଡ଼ିଶାର କଥିତ ଓଡ଼ିଆ ଭାଷାର ଗୋଟିଏ ଶବ୍ଦକୋଷ ଲେଖି ମୁଁ ପରିଜାସାହେବଙ୍କୁ ଦେଇଥିଲି । କିଛି ଦିନ ପରେ ସେ ମୋତେ ତାହା ଫେରାଇଦେଲେ । ଦେଖିଲି ତନ୍ମଧ୍ୟରେ କେତେକ ଶବ୍ଦ ଉପକୂଳ ଅଞ୍ଚଳରେ ବ୍ୟବହୃତ ହେଉଥିବାର ସେ ଟିପ୍ପଣୀ ଲେଖିଛନ୍ତି । 'ଶିକା' ଶବ୍ଦ ସମ୍ପର୍କରେ ଗୋଟିଏ ଉକ୍ତି ସେ ଲେଖିଛନ୍ତି, ଯଥା –

''ଶିକାରେ ଥୋଇଦେ ବୋଇଲେ ସେ ପାଟିରେ ଥୋଇଲାଣି ।''

'ପୁଷ୍ପାଞ୍ଜଳି' ନାମରେ ୧୯ଟି କବିତା ସମ୍ବଳିତ ଗୋଟିଏ ପୁସ୍ତିକା ମୁଁ ପରିଜାସାହେବଙ୍କୁ ଦେଇଥିଲି । କିଛିଦିନ ପରେ ସେ ମୋତେ ଟାଇପକରା ଅଧୋଲିଖିତ ଚିଠିଟିଏ ଲେଖିଥିଲେ –

Dr. P. Parija
Vice-Chancellor,
Utkal University,
Bhubaneswar

Dear Kunjabehari,

I have received your collection of poems entitled 'Puspanjali' which you kindly presented to me. Most of the poems are enjoyable. But in some cases, you have for the sake of metre, used words which are not quite suitable, but that is poetic licence.

Thanking you again,
Yours Sincerely,
P. Parija

ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବଙ୍କ ରାଜତ୍ୱ କାଳରେ ପୁରୀ ଅଞ୍ଚଳର ପ୍ରସିଦ୍ଧ କବି ଓ ପ୍ରାକୃତ ଭାଷାର ବୈୟାକରଣିକ ମାର୍କଣ୍ଡେୟ କବୀନ୍ଦ୍ର ଜୀବିତ ଥିଲେ । ତାଙ୍କ ପ୍ରାକୃତ ବ୍ୟାକରଣ 'ପ୍ରାକୃତ ସର୍ବସ୍ୱ' ଶ୍ଳୋକରେ ଲିଖିତ ଗୋଟିଏ ପ୍ରସିଦ୍ଧ ଗ୍ରନ୍ଥ । Linguistic Survey of Indiaର ପ୍ରସିଦ୍ଧ ଗ୍ରନ୍ଥକାର ଗ୍ରୀଅରସନ୍ ତା'ର ପୋଥି ଓଡ଼ିଶାରୁ ନେଇ ବିଲାତରେ ଛପାଇବାକୁ ମନସ୍ଥ କରିଥିଲେ, କିନ୍ତୁ ବୈଜ୍ଞାନିକ ଭାବରେ ସମ୍ପାଦନ କରି ଛପାଇପାରି ନ ଥିଲେ । ସଂସ୍କୃତ ଅଧ୍ୟାପକ ଶ୍ରୀ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ଏହି 'ପ୍ରାକୃତସର୍ବସ୍ୱ' ଗ୍ରନ୍ଥ ସମ୍ପାଦନା କରି ଡକ୍ଟରେଟ୍ ଉପାଧି ଲାଭ କରିବାକୁ ଚାହାନ୍ତେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଡକ୍ଟର ପରିଜା ଉଦ୍ୟମ କରି ଲଣ୍ଡନରୁ ତା'ର କପି ଅଣାଇଥିଲେ । ଶ୍ରୀ ଆଚାର୍ଯ୍ୟ ଭାରତବର୍ଷର ଅନ୍ୟ କପି ସାହାଯ୍ୟରେ ଉକ୍ତ ଗ୍ରନ୍ଥର ବୈଜ୍ଞାନିକ ସମ୍ପାଦନା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଡିଗ୍ରୀ ଲାଭ କରିଛନ୍ତି । ତାଙ୍କର ପରୀକ୍ଷକମାନଙ୍କର ପରାମର୍ଶରେ ତାହା ଛପାହୋଇ ପ୍ରଶଂସିତ ହୋଇଅଛି ।

ରେଭେନ୍ସା କଲେଜ କେନ୍ଦ୍ରରେ ଥରେ ଉତ୍କଳ ବିଶ୍ୱବିଦ୍ୟାଳୟର ଆଇ.ଏ. କି ବି.ଏ. ପରୀକ୍ଷା ହେଉଥାଏ । ମୁଁ ଥାଏ ପରୀକ୍ଷାର ସେଣ୍ଟର ସୁପରିଣ୍ଟେଣ୍ଡେଣ୍ଟ । ପରୀକ୍ଷା ୧୦ଟାରୁ ଗୋଟାଏ ପର୍ଯ୍ୟନ୍ତ ୩ ଘଣ୍ଟା ଏବଂ ୨ଟାରୁ ୫ଟା ପର୍ଯ୍ୟନ୍ତ ୩ ଘଣ୍ଟା ଏପରି ଦୁଇ ପର୍ଯ୍ୟାୟରେ ହେବାର ବ୍ୟବସ୍ଥା ଥାଏ । କିନ୍ତୁ ଅଳ୍ପ କେତେ ଜଣ ପରୀକ୍ଷାର୍ଥୀ ପ୍ରଥମ ପର୍ଯ୍ୟାୟରେ ନିର୍ଦ୍ଦିଷ୍ଟ ଥିବା ପରୀକ୍ଷା ଦେବାକୁ ନ ଆସି ଦ୍ୱିତୀୟ ପର୍ଯ୍ୟାୟ ପ୍ରାରମ୍ଭରେ ଆସନ୍ତି ଏବଂ ସେମାନଙ୍କ ତ୍ରୁଟି ଯୋଗୁଁ କାନ୍ଦି କାନ୍ଦି ଦ୍ୱିତୀୟ ପର୍ଯ୍ୟାୟରେ ପ୍ରଥମ ପର୍ଯ୍ୟାୟ ପରୀକ୍ଷା ଦେବାକୁ କାତର ନିବେଦନ କରନ୍ତି । ସେମାନଙ୍କର ଆକୁଳ ନିବେଦନ ପ୍ରତ୍ୟାଖ୍ୟାନ କରି ସେମାନଙ୍କୁ ବାକୀ ସମସ୍ତ ପରୀକ୍ଷା ଦେବାକୁ ବୁଝାଏ । ସମସ୍ତ ପରୀକ୍ଷା ଶେଷ ହେବା ପରେ ମୁଁ କୁଳପତି ଡକ୍ଟର ପରିଜାଙ୍କୁ ନିବେଦନ କରେ ଭବିଷ୍ୟତରେ ପ୍ରତ୍ୟେକ ପରୀକ୍ଷାର୍ଥୀଙ୍କୁ ଆଡ଼୍‌ମିସନ୍ ଫର୍ମ ଦିଆଯିବାବେଳେ ତାଙ୍କୁ

ପରୀକ୍ଷାର ଗୋଟିଏ ପ୍ରୋଗ୍ରାମ୍ ଦିଆଯାଉ । ପରବର୍ତ୍ତୀ ବର୍ଷ କୁଳପତି ମହୋଦୟ ଏହି ବ୍ୟବସ୍ଥା କରିଥିଲେ । ବର୍ତ୍ତମାନ ମଧ ଛାତ୍ରଛାତ୍ରୀମାନେ ଉକ୍ତ ପ୍ରମାଦର ବଶବର୍ତ୍ତୀ ହେଉଛନ୍ତି । ପରୀକ୍ଷାର ଛପା ପ୍ରୋଗ୍ରାମ୍ ସେମାନଙ୍କୁ ଦେବାର ବ୍ୟବସ୍ଥା ନାହିଁ ।

ପରିଜାସାହେବ ପ୍ରାୟ ପନ୍ଦରବର୍ଷ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ପଦବୀରେ ରହି ଓଡ଼ିଆ, ସଂସ୍କୃତ, ଇତିହାସ ପ୍ରଭୃତି ବିଷୟର ଏବଂ ବିଜ୍ଞାନ ବିଭାଗୀୟ ବିଷୟଗୁଡ଼ିକ ବିଷୟରେ ଉନ୍ନତି ବିଧାନ କରିଛନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରକାଶିତ ଓଡ଼ିଆ ବିଶ୍ୱକୋଷ ୪ ଖଣ୍ଡରେ ବହୁ ଚିତ୍ର ସମେତ ମୁଦ୍ରିତ ହୋଇ ୬୦ ଟଙ୍କାରେ ବିକ୍ରିତ ହେଉଅଛି । ମହିମା ଧର୍ମର ବରିଷ୍ଠ ସନ୍ନ୍ୟାସୀ ଅବଧୂତ ବିଶ୍ୱନାଥ ବାବାଙ୍କ 'ଅଲେଖ ପରଂବ୍ରହ୍ମ ଦର୍ଶନ' ନାମକ ମହାନ ଗ୍ରନ୍ଥ ପରିଜାସାହେବଙ୍କ ଲିଖିତ ମୁଖବନ୍ଧ ସହ ପ୍ରକାଶିତ ହୋଇଅଛି ।

ଓଡ଼ିଆ ଲିପି ସଂସ୍କାର ପାଇଁ ଓଡ଼ିଶା ସରକାର ଗୋଟିଏ କମିଟି ନିର୍ବାଚନ କରିଥିଲେ । ତହିଁରେ ସମାଜ ସମ୍ପାଦକ ଡକ୍ଟର ରାଧାନାଥ ରଥ, ପରିଜାସାହେବ, ଓଡ଼ିଶା ସରକାରୀ ପ୍ରେସ୍‌ର ଡିରେକ୍ଟର, କଟକ ଗ୍ରନ୍ଥମନ୍ଦିରର ସ୍ୱତ୍ୱାଧିକାରୀ ଶ୍ରୀଧର ମହାପାତ୍ର, କୁଞ୍ଜବିହାରୀ ତ୍ରିପାଠୀ, ଗୋଲୋକବିହାରୀ ଧଳ ଇତ୍ୟାଦି । ବହୁତ ଅଧିବେଶନରେ ଆଲୋଚନା ହୋଇ ବିବରଣୀ ଲିପିବଦ୍ଧ ହୋଇଥିଲା । ଏହାର ଗୋଟିଏ ମୁଖ୍ୟ ଉଦ୍ଦେଶ୍ୟ ଥିଲା ଓଡ଼ିଆ ଲିପିର ଊର୍ଦ୍ଧ୍ୱଲେଖ (Superscript), ପାର୍ଶ୍ୱଲେଖା ଏବଂ ସଂଯୁକ୍ତ ବର୍ଣ୍ଣର (Subscript)ର କେବଳ ପାର୍ଶ୍ୱଲିପିରେ ପରିବର୍ତ୍ତନ କରିବା । ତାହାହେଲେ ଟାଇପ୍ କରିବାରେ, ମୁଦ୍ରଣ କରିବାରେ ସହଜ ହେବ । ପରିଜାଙ୍କ ସୂଚନା ଥିଲା ହ୍ରସ୍ୱ ଇ ପାର୍ଶ୍ୱଲିପିରେ ପରିଣତ କରିବା ଯଥା : ପାଣି, ଦେଖିକୁ ପାଣୀ ଓ ଦେଖୀ ଭାବରେ ଲେଖିବା ଏବଂ ନଦୀ, ନାରୀ ଶବ୍ଦଗୁଡ଼ିକୁ ନଦି, ନାରି ଭାବେ ଲେଖିବା । କମିଟିର ଅନ୍ୟାନ୍ୟ ସୂଚନା ବା ସିଦ୍ଧାନ୍ତ ଏ ପର୍ଯ୍ୟନ୍ତ ପ୍ରକାଶିତ ହୋଇଥିବାର ମୁଁ ଜାଣେ ନାହିଁ ।

ପରିଜାସାହେବଙ୍କ ଆତ୍ମଜୀବନୀର କିୟଦଂଶକୁ ସେ 'ଅକିଞ୍ଚନର ଜୀବନସ୍ମୃତି' ବୋଲି ଅଭିହିତ କରିଛନ୍ତି । ତହିଁର ପ୍ରାରମ୍ଭରେ ଲେଖିଛନ୍ତି, "ମଧ୍ୟଯୁଗର ଓଡ଼ିଆ କବି ସାରଳା ଦାସଙ୍କୁ ଆମର ପୂର୍ବପୁରୁଷ ବୋଲି ଦାବି କରାଯାଏ ।" ଏହି ଲେଖାର ବହୁ ପୂର୍ବରୁ ପରିଜାସାହେବଙ୍କ ପୂର୍ବପୁରୁଷ 'ସାରଳା ଦାସ' ବୋଲି ମୋର ଗୁରୁଦେବ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଆମକୁ କହିଥିଲେ । ତାଙ୍କ ବଂଶର ଆଦି ବାସଭୂମି କଟକ ଜିଲ୍ଲାର ତେନ୍ତୁଳିପଦାରୁ ଏହି ବଂଶର କେହି ଜଗତ୍‌ସିଂହପୁରର ଅଳକା ନଦୀର ଅପରପାର୍ଶ୍ୱରେ ଥିବା 'ଇଛାପୁର' ଗ୍ରାମରେ ବସତି ସ୍ଥାପନ କରିଥିଲେ । ବାଲିକୁଦା ଥାନା ଅନ୍ତର୍ଗତ ଏହି ଗ୍ରାମରେ ଏକୁଟିଆ ରହୁଥିବା ଏକ ସମ୍ଭ୍ରାନ୍ତ ବହୁକୁଟୁମ୍ବୀ ଏକାନ୍ନବର୍ତ୍ତୀ

ମଧ୍ୟବିତ୍ତ ବୈଷ୍ଣବ ପରିବାରରେ ପରିଜାସାହେବ ୧୮୯୧ ମସିହା ଅପ୍ରେଲ୍ ୧ ତାରିଖରେ ଜନ୍ମଗ୍ରହଣ କରିଥିଲେ ।

ପୂର୍ବୋକ୍ତ ଏକାନ୍ନବର୍ତ୍ତୀ ପରିବାରରେ ପରିଜାସାହେବଙ୍କ ପିତାଙ୍କର ଅଂଶଟି ଆର୍ଥିକ ପରିସ୍ଥିତି ଦୃଷ୍ଟିରୁ ବଡ଼ ଦୁର୍ବଳ ଥିଲା । ତାଙ୍କର ପିତା ପୂର୍ବତନ ଦେଶୀୟ ରାଜ୍ୟ ମୟୂରଭଞ୍ଜରେ ଫରେଷ୍ଟର ଚାକିରି କରି ବିଶେଷ କିଛି ଟଙ୍କା ଦେଇପାରୁ ନ ଥିଲେ, କିନ୍ତୁ ତାଙ୍କ ଜେଜେମା'ଙ୍କର ପରିବାର ଭିତରେ ବେଶୀ ପ୍ରତିପତ୍ତି ଥିଲା । ତାଙ୍କ ଗୋସେଇଁବାପାଙ୍କ ଭାଇ ଜଣେ ମାଟିବଂଶ ଅବଧାନଙ୍କୁ ଆଣି ଗ୍ରାମ୍ୟଶିକ୍ଷକ ନିଯୁକ୍ତ କରି ତାଙ୍କ ଘରେ ଯେଉଁ ପାଠଶାଳା ବା ଚାହାଳି ଖୋଲିଥିଲେ ତହିଁରେ ପରିଜା ବିଦ୍ୟାରମ୍ଭ କରିଥିଲେ ।

ସେତେବେଳେ ଟଙ୍କା, ପଇସା, ଅଧଲା, ପାହୁଲା ଓ କଉଡ଼ି ମୁଦ୍ରାଭାବରେ ଚଳୁଥିଲା । ସିଲେଟ୍, କଲମ ନ ଥିଲା । ପିଲାଏ ତଳେ ବସି ମୁଣ୍ଡା ଖଡ଼ିରେ ଓଡ଼ିଆ ବର୍ଣ୍ଣମାଳା, ପଣିକିଆ, ମିଶାଣ, ଫେଡ଼ାଣ, ଗୁଣନ, ହରଣ, ଓଡ଼ାଙ୍କ ପ୍ରଭୃତି ଶିଖି ତା'ପରେ ଲେଖନୀ (ଲୁହାର କଲମ) ଦ୍ୱାରା ତାଳପତ୍ରରେ ଲେଖା ଶିକ୍ଷା କରୁଥିଲେ ଓ ସଂସ୍କୃତ ଶ୍ଳୋକ ଏବଂ ଅମରକୋଷ ଆବୃତ୍ତି କରୁଥିଲେ ।

ସେତେବେଳର ପ୍ରଥା ଅନୁସାରେ ଧାନକଟା ଋତୁରେ ପ୍ରାଣକୃଷ୍ଣ ସାଥୀପିଲାଙ୍କ ସହିତ ଯାଇ ଧାନ କଟାଳିଙ୍କ ଆଗରେ 'ବନ୍ଦଇ ହରି ଦେବ ମୁରାରି ଲକ୍ଷ୍ମୀଦେବୀଙ୍କର କାନ୍ତ' ଇତ୍ୟାଦି ଗୀତ ଗାଇ ଅବଧାନଙ୍କପାଇଁ ଧାନହଳା ମାଗି ମୁଣ୍ଡରେ ବୋହି ଆଣିଦିଅନ୍ତି । ଏକାନ୍ନବର୍ତ୍ତୀ ପରିବାରରେ ରାମାୟଣ, ମହାଭାରତ ଓ ପୁରାଣ ପ୍ରଭୃତି ପ୍ରତି ସନ୍ଧ୍ୟାରେ ପଢ଼ା ହେବାର ପ୍ରଥା ଥାଏ । ପ୍ରାଣକୃଷ୍ଣ ତାହା ଶୁଣି ସେଗୁଡ଼ିକର କଥାବସ୍ତୁ ଓ ଉପାଖ୍ୟାନ ମନେ ରଖନ୍ତି ।

ଚାଟଶାଳୀ ପାଠ ସମ୍ପୂର୍ଣ୍ଣ କରିବା ପରେ ତାଙ୍କର ଘର ପାଖରୁ ୫ ମାଇଲ ଦୂରବର୍ତ୍ତୀ ଜଣେ ସୂର୍ଯ୍ୟବନ୍ଧୁ ମଉସାଙ୍କ ଘରେ ରହି ପ୍ରାଣକୃଷ୍ଣ ଜମିଦାରୀ ରେକର୍ଡ଼ ହିସାବ କାମ ଶିଖିଲେ । ଏଥିରେ ବର୍ଷେ ସମୟ କଟିଲା । ଏହି ସମୟରେ ମୟୂରଭଞ୍ଜରେ ଫରେଷ୍ଟର କାମ କରୁଥିବା ପିତା ବିଶ୍ୱନାଥ ଘରକୁ ଅସି ପୁତ୍ରକୁ ବାଲିକୁଦା ମାଇନର ସ୍କୁଲରେ ପଢ଼ାଇବାକୁ ଇଚ୍ଛା ପ୍ରକାଶ କରି ଚାକିରି କେନ୍ଦ୍ରକୁ ଫେରିଗଲେ । ସେହିଠାରେ ତାଙ୍କର ଦେହାନ୍ତ ହେଲା । ତେଣୁ ମା ଉକ୍ତ ସ୍କୁଲରେ ପ୍ରାଣକୃଷ୍ଣଙ୍କ ନାମ ଲେଖାଇଦେଲେ । ବର୍ଷକ ପରେ ତାଙ୍କର ମଧ୍ୟ ଦେହାନ୍ତ ହେଲା । ପ୍ରାଣକୃଷ୍ଣ ବାପାଙ୍କ କନିଷ୍ଠ ଦାଦା ରଘୁନାଥ ପରିଜାଙ୍କ ପରିବାରରେ ଯାଇ ରହିଲେ ଓ ତାଙ୍କର ବଡ଼ବୋହୂ ପ୍ରାଣକୃଷ୍ଣଙ୍କ ହେପାଜତ ସ୍ନେହରେ କରୁଥିଲେ ।

ବାଲିକୁଦା ମାଇନର ସ୍କୁଲରେ ଦୁଇ ତିନିଥର ଦୋହରା ଉତ୍ତୀର୍ଣ୍ଣ ହୋଇ ପାଠ୍ୟ ଶେଷ କରି ପ୍ରାଣକୃଷ୍ଣ କଟକରେ ମଧ୍ୟ ଇଂରାଜୀ ବୃତ୍ତି ପରୀକ୍ଷା ଦେଇ ବୃତ୍ତି ପାଇଲେ । ତାଙ୍କ ଜେଜେବାପାଙ୍କ ଦାଦା ତାଙ୍କ ଗ୍ରାମରୁ ୩୮ ମାଇଲ ଦୂରବର୍ତ୍ତୀ କଟକସ୍ଥ ରେଭେନ୍ସା କଲେଜିଏଟ୍ ସ୍କୁଲ୍‌ରେ ପଢ଼ିବାକୁ ପ୍ରାଣକୃଷ୍ଣଙ୍କୁ ପଠାଇଲେ । ସେ ୧୯୦୪ ଖ୍ରୀଷ୍ଟାବ୍ଦରେ କଲେଜିଏଟ୍ ସ୍କୁଲ୍‌ରେ ଯୋଗ ଦେଲେ । ସେ ତେଙ୍ଗା ହୋଇ ତନ୍ତବୁଣା ଖଦି ଖଣ୍ଡେ ପିନ୍ଧି ବେକରେ ଚଦର ପକାଇ ଯେତେବେଳେ ସଂସ୍କୃତ ପଣ୍ଡିତ ବିଶ୍ୱନାଥ ଶତପଥୀଙ୍କ କ୍ଲାସ୍‌କୁ ଗଲେ ପଣ୍ଡିତେ ସେତେବେଳେ ଭର୍ତ୍ତୃହରି ଶତକ ବୋଲୁଥିଲେ । ତାଙ୍କୁ ଦେଖି ସେ 'ଆସ, ବସ' ବୋଲି କହି 'ତୁମର ଭବିଷ୍ୟତ ଉଜ୍ଜ୍ୱଳ' ବୋଲି ଭବିଷ୍ୟତବାଣୀ ପ୍ରକାଶ କରିଥିଲେ ।

କଲିଜିଏଟ୍ ସ୍କୁଲ୍‌ରେ ନାମ ଲେଖାଇ ଗୋଟିଏ ମେସ୍‌ରେ ଅନ୍ୟ ଛାତ୍ର ଓ ଲୋକଙ୍କ ସହିତ ପ୍ରାଣକୃଷ୍ଣ ରହୁଥିଲେ । ମେସ୍‌ବାସିନ୍ଦା ନିଜେ ରୋଷେଇ କରୁଥିଲେ । ଦିନେ ଦିନେ ପ୍ରାଣକୃଷ୍ଣଙ୍କୁ ରୋଷେଇ କରିବାକୁ ପଡୁଥିଲା । ମାସକୁ ମାଇନର ବୃତ୍ତି ୪ ଟଙ୍କା, ଦରମା ଛାଡ଼ ଓ ଗାଁରୁ ୧୬ ସେର ଚାଉଳ ଆସୁଥିବାରୁ ସେ ଭଲରେ ଚଳିଯାଉଥିଲେ ।

ଏଣ୍ଟ୍ରାନ୍ସ ପରୀକ୍ଷାରେ କୃତିତ୍ୱ ଲାଭ କରି କଲିକତା ପ୍ରେସିଡେନ୍ସି କଲେଜରୁ ପ୍ରାଣକୃଷ୍ଣ ବି.ଏସ୍‌ସି. ପାସ୍ କଲେ ଏବଂ ଗଣିତ ଅନର୍ସରେ ୨ୟ ଶ୍ରେଣୀ ଲାଭ କଲେ । ସେହି କଲେଜରେ ଗଣିତରେ ଏମ୍.ଏସ୍‌ସି. ଅଧ୍ୟୟନ କରୁଥିବାବେଳେ ତାଙ୍କୁ ବିହାର ଓ ଓଡ଼ିଶା ସରକାର ବୃତ୍ତିଦେଇ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟକୁ ପଢ଼ିବାକୁ ପଠାଇଲେ । ସେଠାରେ ବିଭିନ୍ନ ପରୀକ୍ଷାରେ ତାଙ୍କ ପ୍ରତିଭାର ଅସାଧାରଣ ସ୍ଫୁରଣ ହେଲା । ସେଠାରେ ଗବେଷଣା କରି ବ୍ଲାକ୍‌ମ୍ୟାନ୍–ପରିଜା ସୂତ୍ର ଆବିଷ୍କାର କରି ଉଦ୍ଭିଦ ବିଜ୍ଞାନରେ ଆନ୍ତର୍ଜାତିକ ବୈଜ୍ଞାନିକ ଭାବରେ ସ୍ୱୀକୃତି ଲାଭ କଲେ । କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ସାତବର୍ଷ ଅଧ୍ୟୟନ ଓ ଗବେଷଣା କରି ଭାରତୀୟ ଶିକ୍ଷା ସେବାରେ (Indian Education Service)ରେ ଓଡ଼ିଶାକୁ ଫେରିଲେ । ରେଭେନ୍ସା କଲେଜରେ ଉଦ୍ଭିଦବିଜ୍ଞାନ ପ୍ରଫେସର ଓ କିଛିବର୍ଷ ପରେ ପ୍ରିନ୍ସିପାଲ ରହଣି କାଳରେ ଛାତ୍ରମହଲରେ ଓଡ଼ିଶା ଓ ଭାରତସାରା ତାଙ୍କ ପ୍ରଶସ୍ତି ବ୍ୟାପ୍ତ ହେଲା ।

ପରିଜାସାହେବ ତାଙ୍କର ମୌଳିକ ଗବେଷଣା ପାଇଁ ଆନ୍ତର୍ଜାତିକ ସ୍ୱୀକୃତି ଲାଭ କରି ଭାରତରେ ଜଣେ ବରିଷ୍ଠ ଉଦ୍ଭିଦବିଜ୍ଞାନୀ ହୋଇଥିଲେହେଁ ଭାରତୀୟ ଆର୍ଯ୍ୟ ଭାଷାଗୁଡ଼ିକର ମାତାମହୀ ସଂସ୍କୃତ ଭାଷା ପ୍ରତି ଓ ମାତୃଭାଷା ଓଡ଼ିଆ ପ୍ରତି ଗଭୀର ଶ୍ରଦ୍ଧା ଥିଲା । ସେ ରେଭେନ୍ସା କଲିଜିଏଟ୍ ସ୍କୁଲରେ ହେଉ କିମ୍ବା କଲିକତାରେ ପ୍ରେସିଡେନ୍ସି କଲେଜରେ ପଢୁଥିବା ସମୟରେ କାଳିଦାସଙ୍କ ରଘୁବଂଶ ପ୍ରଭୃତି

ପଢ଼ିଥିବାର ବୋଧହୁଏ । ତାଙ୍କର ସ୍ମରଣ ଶକ୍ତି ଏତେ ପ୍ରଖର ଥିଲା ଯେ ସେ ବହୁବର୍ଷ ପରେ ସଂସ୍କୃତ କାବ୍ୟରୁ କୌଣସି ନା କୌଣସି ଅଂଶ ଆବୃତ୍ତି କରିପାରୁଥିଲେ ।

ପ୍ରଫେସର ପରିଜା କୃଷି କ୍ଷେତ୍ରରେ ସମସ୍ୟାରାଜି ସମ୍ବନ୍ଧରେ ବକ୍ତୃତା ଦେଉଥିବାବେଳେ କୃଷିର ଶତ୍ରୁ କିଏ, ଏ ବିଷୟରେ ସଂସ୍କୃତ ଶ୍ଳୋକଟିଏ ବୁଝାଇଥିଲେ ଯଥା –

ଅତିବୃଷ୍ଟି ଅନାବୃଷ୍ଟିର୍ମୂଷିକାଃ ଶଳବାହଃ ଶୁକାଃ ।
ଅତ୍ୟାସନ୍ନଶ୍ଚ ରାଜନଃ ସ୍ୟାଦେତେ ଈତୟଃ ସ୍ମୃତାଃ ॥

ଧାନ ଫସଲ କିପରି ଭାବରେ କଲେ ଧାନ ଗଛରେ ବହୁତ ଧାନ ଉତ୍ପନ୍ନ ହୁଏ, ସେ ସମ୍ପର୍କରେ କାଳିଦାସଙ୍କ ରଘୁବଂଶର ୪ର୍ଥ ସର୍ଗରୁ ରଘୁଙ୍କ ବଙ୍ଗର ରାଜାଙ୍କୁ ପରାଜୟ କରି ପୁଣି ରାଜ୍ୟରେ ପ୍ରତିଷ୍ଠାପିତ କରିଥିବା କହିଛନ୍ତି ।

ଆପାଦ ପଦ୍ମ ପ୍ରବାତାଃ କଲମାଃ ଇବାବନତରଘୁମ୍
ଯଂଶ୍ରେ ଫଳୈ ରୁତ୍‌ଖାତ ପ୍ରତିରୋପିତାଃ ॥ ୩୭ (୪ର୍ଥ ସର୍ଗ)

ଆଉ ଥରେ ପୁରାତନ ଛାତ୍ରସଂଘର ବାର୍ଷିକ ସମ୍ମିଳନୀରେ ସେ ଭବଭୂତିଙ୍କ ଉତ୍ତର ରାମଚରିତରୁ ଉଦ୍ଧାର କରିଥିଲେ ।

ଉତ୍ପସ୍ୟତେଽସ୍ତିମମ କୋଽପି ସମାନଧର୍ମା
କାଳୋ ହ୍ୟୟଂ ନିରବଧି, ର୍ବିପୁଳା ଚ ପୃଥ୍ୱୀ ॥

ପରିଜାସାହେବ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଥିବାବେଳେ ସଂସ୍କୃତ ଅଧ୍ୟାପକମାନେ ତାଙ୍କର ସାହାଯ୍ୟ ଲାଭ କରିଛନ୍ତି । ବାଲ୍ୟକାଳର ଓଡ଼ିଆ ସାହିତ୍ୟ ଓ ଭାଷା ପ୍ରତି ତାଙ୍କର ଆଦର ପରବର୍ତ୍ତୀ କାଳରେ ମଧ୍ୟ ଅକ୍ଷୁଣ୍ଣ ଥିଲା । ପରିଜାସାହେବ ରେଭେନ୍ସା କଲେଜର ପ୍ରିନ୍ସିପାଲ୍ ଥିବାବେଳେ କଲେଜ କମ୍‌ମେମୋରେସନ୍ ଦିବସ ବା ଦିବାଧ୍ୟାୟୀ ଛାତ୍ରସଂଘର ବାର୍ଷିକ ଉତ୍ସବ ଉପଲକ୍ଷେ ଭାରତର ଶିକ୍ଷା କ୍ଷେତ୍ରରେ ଓ ରାଜନୀତି କ୍ଷେତ୍ରରେ ପ୍ରତିଷ୍ଠିତ ବହୁ ନେତୃସ୍ଥାନୀୟ ବ୍ୟକ୍ତିଙ୍କୁ ଅଭିଭାଷଣ ଦେବାପାଇଁ ନିମନ୍ତ୍ରଣ କରି ସେମାନଙ୍କୁ ଚା ଭୋଜିରେ ଆପ୍ୟାୟିତ କରି କଲେଜର ଅଧ୍ୟାପକମାନଙ୍କୁ ସେଠାକୁ ନିମନ୍ତ୍ରଣ କରି ସେମାନଙ୍କ ସହିତ ପରିଚିତ ହେବାର ବ୍ୟବସ୍ଥା କରୁଥିଲେ । ଭାରତର ପ୍ରସିଦ୍ଧ ପ୍ରଫେସରମାନଙ୍କ ମଧ୍ୟରେ ସାର୍ ଚନ୍ଦ୍ରଶେଖର ଭେଙ୍କଟରମନ୍, ଡକ୍ଟର ସର୍ବପଲ୍ଲୀ ରାଧାକୃଷ୍ଣନ୍, ଡକ୍ଟର ବୀରବଲ୍ ସାହାଣୀ, ସାର୍ ପ୍ରଫୁଲ୍ଲ ଚନ୍ଦ୍ର ରାୟ, ରାଜନୈତିକ ନେତା ସି. ରାଜଗୋପାଳାଚାରୀ, ଥିଓସଫିକାଲ ସୋସାଇଟିର ଆନିବେଶାନ୍ତଙ୍କ ନାମ ଉଲ୍ଲେଖଯୋଗ୍ୟ ।

# ଉତ୍କଳ ସାହିତ୍ୟସମାଜର ସଭାପତି ଡକ୍ଟର ପରିଜା

**କୁଞ୍ଜବିହାରୀ ଦାଶ**

ଡକ୍ଟର ପ୍ରାଣକୃଷ୍ଣ ପରିଜା ବିଶ୍ୱବିଖ୍ୟାତ ବୈଜ୍ଞାନିକ; ଭାରତ ବାହାରର ବୈଜ୍ଞାନିକ ଦିନେ ତାଙ୍କ ଜରିଆରେ ଓଡ଼ିଶାକୁ ଚିହ୍ନୁଥିଲେ । ଓଡ଼ିଶାରେ ବୈଜ୍ଞାନିକ ସାହିତ୍ୟର ଆଦିସ୍ରଷ୍ଟା ସେ । ବିଜ୍ଞାନର ଜଟିଳ ବିଷୟକୁ ସରଳ ଓଡ଼ିଆରେ ପ୍ରକାଶ କରିବାର ଦକ୍ଷତା ତାଙ୍କର ଥିଲା । ପ୍ରାଣକୃଷ୍ଣ ପର୍ଜ୍ୟା ନାମରେ ତାଙ୍କର ବହୁ ପ୍ରବନ୍ଧ ଉତ୍କଳ ସାହିତ୍ୟ ପତ୍ରିକାରେ ପ୍ରକାଶ ପାଇଥିଲା । ବୈଜ୍ଞାନିକ ହେଲେ ବି ବିଦ୍ୟାର ଅନ୍ୟାନ୍ୟ ବିଭାଗରେ ତାଙ୍କର ପ୍ରବେଶ ଓ କାହିଁରେ କାହିଁରେ ଅଧିକାର ବି ଜନ୍ମିଥିଲା ।

ପରିଜାସାହେବ, ନାମରେ ଲୋକପ୍ରିୟ ହେଲେ ବି ସେ ଗାଉଁଲି ଭାବ ଭୁଲି ନ ଥିଲେ । ବକ୍ତୃତା ଦେବାବେଳେ ତାଙ୍କ ମୁହଁରୁ ଗୋଟିଏ ଗୋଟିଏ ଢଗଢମାଳି ବାହାରି ପଡୁଥିଲା; ଲୋକବାଣୀର ଯଥାଯଥ ପ୍ରୟୋଗ ଦେଖି ଲୋକ ବିସ୍ମିତ ହେଉଥିଲେ; ସେହିପରି ତାଙ୍କ ସଂଯତ ଓ ସଂକ୍ଷିପ୍ତ ଇଂରାଜୀ ଭାଷଣରେ ବି ଗୋଟିଏ ଗୋଟିଏ ସଂସ୍କୃତ ଶ୍ଳୋକ ଉଦ୍ଧୃତ ହେଉଥିଲା । ପାଶ୍ଚାତ୍ୟ ସଂସ୍କୃତିରେ ବୁଡିଗଲେ ବି ସେ ଗ୍ରାମୀଣ ଭାବ ଓ ପାରମ୍ପରିକ ଭାରତୀୟ ସଂସ୍କୃତି ପ୍ରତି ସଚେତନ ଥିଲେ । ପାଣ୍ଡିତ୍ୟ ଓ ଓଡ଼ିଆ ସାହିତ୍ୟରେ କୃତିତ୍ୱ ଯୋଗୁଁ ସେ ଓଡ଼ିଶାର ବିଦଗ୍ଧ ସାହିତ୍ୟିକ ମହଲରେ ଏକ ଉଚ୍ଚ ଆସନର ଅଧିକାରୀ ହୋଇଥିଲେ । ତେଣୁ ଉତ୍କଳ ସାହିତ୍ୟସମାଜ ଭଳି ପ୍ରାଚୀନ ସାହିତ୍ୟିକ ଅନୁଷ୍ଠାନର ସଭାପତି ରୂପେ ତାଙ୍କ ନିର୍ବାଚନ ଅତି ସ୍ୱାଭାବିକ ଭାବରେ ହୋଇଥିଲା । କାହାରି ମନରେ ଏଥିଲାଗି ତିଳାର୍ଦ୍ଧେ ସଙ୍କୋଚ ବା କୁଣ୍ଠା ନ ଥିଲା ।

ପରିଜାଙ୍କର ଉନ୍ନତ ଚରିତ୍ର ଓ କର୍ମନିଷ୍ଠା ଉପରେ ଲୋକମାନଙ୍କର ଦୃଢ଼ ବିଶ୍ୱାସ ଥିଲା । ତାଙ୍କରି ବିଶ୍ୱପ୍ରତିଷ୍ଠା ଅନୁଷ୍ଠାନକୁ ଅଧିକ ଗୌରବାନ୍ୱିତ କରିବ ଓ ଉନ୍ନତତର ସ୍ତରକୁ ଘେନିଯିବ, ଏ ଆସ୍ଥା ଜନ୍ମିଥିଲା ।

୧୯୩୪ ମସିହା ଜାନୁଆରୀ ୪ ତାରିଖରେ ଉତ୍କଳ ସାହିତ୍ୟସମାଜର ଏକ ସାଧାରଣ ଅଧିବେଶନରେ ତାଙ୍କୁ ସଭାପତି ଭାବେ ନିର୍ବାଚିତ କରାଗଲା । ୧୯୩୬ ଏପ୍ରିଲ ୧୬ ତାରିଖ ପର୍ଯ୍ୟନ୍ତ ସେ ପ୍ରଥମଥର ପାଇଁ ସଭାପତି ଆସନ ଅଳଙ୍କୃତ କରିଥିଲେ । ସହକାରୀ ସଭାପତି ଭାବରେ ଅଧ୍ୟାପକ ବିପିନବିହାରୀ ରାୟ ଓ ସାଧାରଣ ସମ୍ପାଦକ ଭାବେ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ନିର୍ବାଚିତ ହୋଇଥିଲେ ।

୧୯୩୪ ଡିସେମ୍ବର ୨୩ ତାରିଖର ଏକ ସାଧାରଣ ଅଧିବେଶନରେ ସାହିତ୍ୟ ସମାଜର ବିଭିନ୍ନ ବିଭାଗ ଗଠନ କରାଯାଇ ବିଭିନ୍ନ ବ୍ୟକ୍ତିଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ କରାଯାଇଥିଲା – (କ) ଆୟବ୍ୟୟ – ନିରଞ୍ଜନ କାନୁନଗୋ, (ଖ) ପ୍ରତ୍ନତତ୍ତ୍ୱ – ଶଚୀନ୍ଦ୍ର ନାରାୟଣ ରାୟ, (ଗ) ସାଧାରଣ ସାହିତ୍ୟ – ବାଳକୃଷ୍ଣ କର, ଅଧ୍ୟାପକ ଜନାର୍ଦ୍ଦନ ମହାନ୍ତି, (ଘ) ପୁସ୍ତକାଗାର ବିଭାଗ – ଅଶ୍ୱିନୀ ଘୋଷ, ରୁଦ୍ରଚରଣ ମହାନ୍ତି, (ଙ) ଶାଖାସମିତି ବିଭାଗ – ହରିହର ମହାପାତ୍ର, ସରୋଜିନୀ ଦେବୀ, (ଚ) ପ୍ରଚାର ବିଭାଗ – ସୂର୍ଯ୍ୟନାରାୟଣ ଦାସ, କୃଷ୍ଣଚନ୍ଦ୍ର କର ଓ (ଛ) ପରୀକ୍ଷା ବିଭାଗ – ପଣ୍ଡିତ ନୀଳକଣ୍ଠ ଦାସ, କୃଷ୍ଣଚନ୍ଦ୍ର ସେନଗୁପ୍ତ ।

ଶ୍ରୀରାମଚନ୍ଦ୍ର ଭବନର ମ୍ୟୁନିସିପାଲିଟି ଟିକସ ଉଣା କରିବା ଲାଗି ଶ୍ରୀ ପ୍ରାଣକୃଷ୍ଣ ପରିଚ୍ଛା, ଶ୍ରୀ ହରିହର ମହାପାତ୍ର ଓ ଶ୍ରୀ ବାଞ୍ଛାନିଧି ମହାପାତ୍ର କଟକ କଲେକ୍ଟରଙ୍କ ସହିତ ସାକ୍ଷାତ କରିବା ପ୍ରସ୍ତାବ ହୋଇଥିଲା ।

୧୯୩୪ ଏପ୍ରିଲ ୮ ତାରିଖରେ ଶ୍ରୀରାମଚନ୍ଦ୍ର ଭବନରେ ସଂରକ୍ଷିତ ପ୍ରାଚୀନ ପ୍ରସ୍ତର ମୂର୍ତ୍ତିସବୁ ମ୍ୟୁଜିୟମକୁ ଅର୍ପଣ କରିବା ପ୍ରସ୍ତାବ ହୋଇଥିଲା । ସାହିତ୍ୟସମାଜର ସମ୍ପତ୍ତି ଏକ ସର୍ବସାଧାରଣ ସମ୍ପତ୍ତି । ଏହା ହସ୍ତାନ୍ତର କରିବାର ଅଧିକାର କାହାରି ନାହିଁ ବୋଲି ଓକିଲ ସଂଘ ମତବ୍ୟକ୍ତ କରିଥିଲେ । କି କି ମୂର୍ତ୍ତି ସାହିତ୍ୟ ସମାଜରେ ସଂରକ୍ଷିତ ଥିଲା, କେବେ ହସ୍ତାନ୍ତରିତ ହେଲା ତାର ସମ୍ବାଦ ବିବରଣୀରୁ ମିଳେ ନାହିଁ । କିନ୍ତୁ ଏବେ ଉତ୍କଳ ସାହିତ୍ୟସମାଜରେ କୌଣସି ପ୍ରସ୍ତର ମୂର୍ତ୍ତି ନାହିଁ । କେବଳ କବିବର ରାଧାନାଥଙ୍କ ମାର୍ବଲ ମୂର୍ତ୍ତି ପ୍ରାଙ୍ଗଣରେ ସଂସ୍ଥାପିତ ହୋଇଅଛି ।

୧୯୩୪ ଜୁନ୍ ୧୦ ତାରିଖରେ ଶ୍ରୀ ବିଶ୍ୱନାଥ କର, ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ ଓ ଶ୍ରୀ ଶଶିଭୂଷଣ ରାୟଙ୍କୁ ସେମାନଙ୍କ ସାହିତ୍ୟିକ କୃତିତ୍ୱ ଯୋଗୁଁ ଉତ୍କଳ ସାହିତ୍ୟସମାଜ ପକ୍ଷରୁ ସମ୍ବର୍ଦ୍ଧନା କରିବାର ପ୍ରସ୍ତାବ ହୋଇଥିଲା ।

୧୯୩୪ ଜୁନ୍ ୧୦ ତାରିଖରେ ଶ୍ରୀରାମଚନ୍ଦ୍ର ଭବନରେ ପ୍ରାଚୀର ଧାରେ ଧାରେ ନାରିକେଳ, ଗୁବାକ ଆଦି ବୃକ୍ଷ ରୋପଣ କରିବା ପ୍ରସ୍ତାବ ହୋଇଥିଲା । ଏହି ପ୍ରସ୍ତାବ ବୋଧହୁଏ ପ୍ରସ୍ତାବରେ ରହିଗଲା; ପ୍ରାଚୀର ଧାରେ ଧାରେ ଗୋଟିଏ ହେଲେ ନାରିକେଳ ବା ପୂଗ ରୋପିତ ହୋଇ ନାହିଁ ।

ଟଙ୍କା ବଦଳରେ କେତେକ ତାଳପତ୍ର ପୋଥି ଦେବେ, ଆଜୀବନ ସଭ୍ୟ ହେବେ – ସୂର୍ଯ୍ୟନାରାୟଣ ଦାସ ଆବେଦନ କରିଥିଲେ । ପୋଥିର ତାଲିକା ଶୁଣିଲା ପରେ ଏସବୁ ଦୁର୍ଲ୍ଲଭ ନୁହେଁ ବୋଲି ସଭ୍ୟମାନେ ମତବ୍ୟକ୍ତ କରିଥିଲେ । ଦୁର୍ଲ୍ଲଭ ପୋଥି ଦାନ କଲେ ତାଙ୍କୁ ଆଜୀବନ ସଭ୍ୟ କରାଯିବ ବୋଲି ପ୍ରସ୍ତାବ ହେଲା ।

'ସୁବର୍ଣ୍ଣରେଖା ସମିତି' ଉତ୍କଳ ସାହିତ୍ୟସମାଜର ଶାଖା ସମିତି ଭାବେ ଗୃହୀତ ହୋଇଥିଲା । ଉତ୍କଳ ସାହିତ୍ୟସମାଜର ତିରିଶ ବର୍ଷ ପୂର୍ତ୍ତି ଉତ୍ସବରେ ସଭାପତିତ୍ୱ

କରିବା ଲାଗି ଜୟପୁରାଧୀଶ ସାହିତ୍ୟ ସମ୍ରାଟ ବିକ୍ରମଦେବ ବର୍ମାଙ୍କୁ ଅନୁରୋଧ କରିବା ପ୍ରସ୍ତାବ ହୋଇଥିଲା ।

୧୯୩୪ ଜାନୁଆରୀ ୧୪ ତାରିଖରେ ଉତ୍କଳ ସାହିତ୍ୟସମାଜର ସଙ୍ଗୀତ ଶାଖାର ଅଧିବେଶନ ହୋଇଥିଲା । ଛାନ୍ଦ ପ୍ରତିଯୋଗିତା ଏହାର ମୁଖ୍ୟ କାର୍ଯ୍ୟକ୍ରମ ଥିଲା । ଶ୍ରୀ ଶ୍ୟାମସୁନ୍ଦର ଧୀର 'ଆହାରୀ', ଶ୍ରୀ ଦଶରଥ ଶତପଥୀ କଳହଂସ କେଦାର ଓ ରସକୁଲ୍ୟା, ଶ୍ରୀ ରାଧାରମଣ ରାୟ ତୋଖୀ, ଶ୍ରୀ ନିମାଇଁଚରଣ ହରିଚନ୍ଦନ ଓ ତା ପରେ ଶ୍ରୀମତୀ ସରସ୍ୱତୀ ଦେଈ କୁମ୍ଭକାମୋଦୀ ଓ କୌଶିକ ରାଗର ଗୀତମାନ ଗାଇଥିଲେ । ଶ୍ରୀ କାଳିଚରଣ ପଟ୍ଟନାୟକ, ମଧୁପୁର ପଟ୍ଟାୟତ ଶ୍ରୀ ବଳଭଦ୍ର ଧୀର ନରେନ୍ଦ୍ର, ଶ୍ରୀ କୃପାସିନ୍ଧୁ ପଟ୍ଟଦେବଙ୍କ ଅନୁପସ୍ଥିତିରେ ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚୌଧୁରୀ ବିଚାରକ ମଣ୍ଡଳୀରେ ଥିଲେ । ଶ୍ରୀ ନିମାଇଁଚରଣ ହରିଚନ୍ଦନ ପ୍ରଥମ ସ୍ଥାନ ଅଧିକାର କରି 'ଗଜପତି ସ୍ୱର୍ଣ୍ଣପଦକ' ଲାଭ କଲେ । ଶ୍ରୀମତୀ ହେମମାଳୀ ଓ ଶ୍ରୀମତୀ ସରସ୍ୱତୀ ଦେଈ ରୌପ୍ୟପଦକ ପ୍ରାପ୍ତ ହେଲେ ।

ଉତ୍କଳ ସାହିତ୍ୟସମାଜର ସନ୍ତକ ତଳେ ଖୋଦିତ ହୋଇଥିଲା – 'ସରସ୍ୱତୀ ଶ୍ରୁତି ମହତୀ ନ ହୀୟତାମ୍', ଏବେ 'ସତ୍ୟଂ ଶିବଂ ସୁନ୍ଦରମ୍' ଖୋଦିତ ହୋଇଅଛି ।

୧୯୩୫ ମସିହା ଜୁନ୍ ୨୦ ତାରିଖରେ ପ୍ରସ୍ତାବ ହୋଇଥିଲା ଯେ ସମ୍ପାଦକ ଗଡ଼ଜାତ ଗସ୍ତରେ ଯାଇ ଉତ୍କଳସାହିତ୍ୟ ସମାଜ ଲାଗି ପ୍ରତ୍ୟେକ ରାଜାଙ୍କଠାରୁ ଏକ ବାର୍ଷିକ ସ୍ଥାୟୀ ଗ୍ରାଣ୍ଟ ବ୍ୟବସ୍ଥା କରନ୍ତୁ । ସମ୍ପାଦକ ଗଡ଼ଜାତ ଗସ୍ତରେ ଯାଇଥିଲେ କି ନାହିଁ ଜଣାଯାଏ ନାହିଁ; କିନ୍ତୁ କୌଣସି ଗଡ଼ଜାତ ସ୍ଥାୟୀ ଗ୍ରାଣ୍ଟ୍ ଦେଇ୍ ନାହିଁ । ସାମୟିକ ଦାନ ବା ପୁରସ୍କାର ମିଳିଛି ମାତ୍ର । ତାଳଚେର ପୁରସ୍କାର, ହିନ୍ଦୋଳ ପୁରସ୍କାର, ଜଗନ୍ନାଥପୁର ପୁରସ୍କାର, କଲେଜ ପୁରସ୍କାର, ସ୍କୁଲ ପୁରସ୍କାର, ରାଣ୍ପୁରଗଡ଼ ପୁରସ୍କାର ପ୍ରଭୃତି ସେତେବେଳେ ପ୍ରଚଳିତ ଥିଲା ।

ସାହିତ୍ୟିକମାନଙ୍କ ସମାଧି କ୍ଷେତ୍ର (ସତୀଚଉରା)ର ରକ୍ଷଣ ଦାୟିତ୍ୱ କଟକ ମ୍ୟୁନିସିପାଲଟି ଗ୍ରହଣ କରନ୍ତୁ ବୋଲି ପ୍ରସ୍ତାବ ହୋଇଥିଲା, କିନ୍ତୁ 'ସତୀଚଉରା' ଏବେବି ଏକ ଅରକ୍ଷିତ ଅଞ୍ଚଳ ପରି ଜଣାଯାଏ ।

୧୯୩୬ ଏପ୍ରିଲ ୧୮ ତାରିଖରେ ଉତ୍କଳ ସାହିତ୍ୟସମାଜର ସାଧାରଣ ଅଧିବେଶନରେ ନିର୍ବାଚନ ହୋଇଥିଲା । ପ୍ରଫେସର ପ୍ରାଣକୃଷ୍ଣ ପରିଜା ପୁଣି ସଭାପତି ହୋଇଥିଲେ । ସହକାରୀ ସଭାପତି ଭାବେ ଅଧ୍ୟାପକ ବିପିନବିହାରୀ ରାୟ, ସମ୍ପାଦକ ଭାବେ ଶ୍ରୀ ଶଶିଭୂଷଣ ରାୟ ଓ ସହକାରୀ ସମ୍ପାଦକ ଭାବେ ଶ୍ରୀ ସୋମନାଥ ମହାପାତ୍ର, ଶ୍ରୀ କୃଷ୍ଣଚନ୍ଦ୍ର ସେନଗୁପ୍ତ ଓ ଶ୍ରୀ ରାମେଶ୍ୱର ଝା ନିର୍ବାଚିତ ହେଲେ ।

୧୯୩୭ ଜୁନ୍ ୪ ତାରିଖରେ ପଞ୍ଜିକା ବିଭ୍ରାଟ ସମ୍ପର୍କରେ ଏକ ଆଲୋଚନା ହୋଇଥିଲା । ପଣ୍ଡିତ ବଳରାମ ଦାସଙ୍କ ସୂକ୍ଷ୍ମ ବିଚାର ଫଳରେ ଜୁଲାଇ ୯ ତାରିଖରେ ଶ୍ରୀଗୁଣ୍ଡିଚା ହେବା ସ୍ଥିର ହେଲା ।

୧୯୩୭ ମେ ୧୩ ତାରିଖରେ ସୋନପୁର ମହାରାଜା ସାର୍ ବୀରମିତ୍ରୋଦୟ ସିଂହଦେଓ ଧର୍ମନିଧି, ଜ୍ଞାନଗୁଣାକର, K.C.I.E., M.R.A.S.ଙ୍କ ମହାପ୍ରୟାଣରେ ଏକ ଶୋକସଭା ହୋଇଥିଲା ଓ ତାଙ୍କ ଉତ୍ତରାଧିକାରୀ ନୂତନ ମହାରାଜା ଶ୍ରୀ ସୁଧାଂଶୁ ଶେଖର ସିଂହଦେଓଙ୍କୁ ସମବେଦନା ଜ୍ଞାପନ କରାଯାଇଥିଲା । ଉକ୍ତ ମହାରାଜା କଲିକତା ବିଶ୍ୱବିଦ୍ୟାଳୟରେ ଓଡ଼ିଆରେ ଏମ୍. ଏ. ଖୋଲିବା ଲାଗି ୫୨,୦୦୦ ଟଙ୍କା କଲିକତା ବିଶ୍ୱବିଦ୍ୟାଳୟ ହାତରେ ୧୯୧୯ ଖ୍ରୀଷ୍ଟାବ୍ଦରେ ଦାନ କରିଥିଲେ ଓ ତାଙ୍କ ରାଣୀ ରେଭେନ୍ସା କଲେଜରେ ଇଂରାଜୀରେ ଏମ୍. ଏ. ଖୋଲିବା ଲାଗି ସରକାରଙ୍କ ହାତରେ ୫୦,୦୦୦ ଟଙ୍କା ଦାନ କରିଥିଲେ । ମହାରାଜା ମହୋଦୟ ନିଜେ ଜଣେ ସୁଲେଖକ ଥିଲେ ଓ କବି ଲେଖକମାନଙ୍କୁ ନାନା ଭାବେ ଉତ୍ସାହିତ କରୁଥିଲେ ।

୧୯୩୬ରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ପରେ ଓଡ଼ିଶା ସରକାର ରାଜ୍ୟ ବ୍ୟବସ୍ଥା ସଭା ଗୃହ ଅନୁସନ୍ଧାନରେ ଥିଲେ । ଶ୍ରୀରାମଚନ୍ଦ୍ର ଭବନକୁ ଏହି ଉଦ୍ଦେଶ୍ୟରେ ଦୁଇ ବର୍ଷ ଲାଗି ଦାନ କରିବା ପ୍ରସ୍ତାବ ହୋଇଥିଲା । କିନ୍ତୁ ଏହି ଗୃହ ରାଜନୀତିକ ଉଦ୍ଦେଶ୍ୟରେ ବ୍ୟବହୃତ ହେବ ନାହିଁ, ମୂଳରୁ ଏକ ସର୍ତ୍ତ ଥିଲା । ସେଥିଲାଗି କେତେକ ସଭ୍ୟ ଉକ୍ତ ପ୍ରସ୍ତାବର ବିରୋଧ କରୁଥିଲେ । ସେ ଯାହାହେଉ, ବ୍ୟବସ୍ଥା ସଭାର ପ୍ରାଥମିକ ଅଧିବେଶନ ରେଭେନ୍ସା କଲେଜ ଆସେମ୍ବ୍ଲି ହଲ୍‌ରେ ଅନୁଷ୍ଠିତ ହୋଇଥିଲା ।

ପରିଚ୍ଛାସାହେବ ସଭାପତି ଥିବାବେଳେ ଉତ୍କଳ ସାହିତ୍ୟସମାଜର ବାର୍ଷିକ ବିବରଣୀ ଛାପା ହେଉଥିଲା କି ନାହିଁ ଜାଣେ ନାହିଁ । ଛାପା ହେଉଥିଲେ ସେ ସବୁ ଦେଖିବାର ସୁଯୋଗ ମୋତେ ମିଳି ନାହିଁ । ଉତ୍କଳ ସାହିତ୍ୟସମାଜର ଯତ୍‌ସାମାନ୍ୟ କାଗଜପତ୍ର ଦେଖି ତନାଘନାରେ କିଞ୍ଚିତ୍ ଲିପିବଦ୍ଧ କଲି ମାତ୍ର । 'ଆଜି କହିଲେ କାଲି ଲେଖା ହୋଇଯିବ', ଏହା ଏପରି ଏକ ବିଷୟ ନୁହେଁ । ଏହା ଗବେଷଣା ସାପେକ୍ଷ, ପ୍ରଫେସର ପରିଚ୍ଛାଙ୍କ ଅମଳ ଯେ ଉତ୍କଳ ସାହିତ୍ୟସମାଜର ଏକ ବିକାଶ କାଳ ଓ ସଭାପତି ମହୋଦୟ ଯେ ଏହି ନମସ୍ୟ ଅନୁଷ୍ଠାନର ଉନ୍ନତି ଲାଗି ଯତ୍‌ପରୋନାସ୍ତି ଚେଷ୍ଟା କରିଛନ୍ତି, ତାର ସୂଚନା କାର୍ଯ୍ୟକାରୀ ସମିତିର ବିବରଣୀମାନଙ୍କରୁ ମିଳେ ।

(ଶ୍ରୀ ବିବେକାନନ୍ଦ ପଟ୍ଟନାୟକଙ୍କ ମୁଖ୍ୟ ସଂପାଦନାରେ ପ୍ରକାଶିତ 'ଉତ୍କଳ ପ୍ରସଙ୍ଗ' ସ୍ୱତନ୍ତ୍ର ସଂଖ୍ୟା, ୧୯୭୮ରୁ ଗୃହୀତ ।)

# ଆମ ପରିଜାସାହେବ

**କୁଳମଣି ସାମଲ**

ପ୍ରଫେସର ପରିଜା ଶିକ୍ଷାବିଭାଗର 'କୀର୍ତ୍ତିସ୍ତମ୍ଭ'; ସାଧନା, କର୍ତ୍ତବ୍ୟନିଷ୍ଠା, ସମୟାନୁବର୍ତ୍ତିତା ଓ ଅଧ୍ୟବସାୟର ଏକ ମୂର୍ତ୍ତିମନ୍ତ ପ୍ରତୀକ । ମୋର ତାଙ୍କ ବିଷୟରେ କିଛି ଲେଖିବା ଏକ ପ୍ରକାର ଧୃଷ୍ଟତା ଓ ଦୁଃସାହସ । କାରଣ ମୋ ଜନ୍ମ ବେଳକୁ ତାଙ୍କୁ ୩୮ ବର୍ଷ, ସେ କେମ୍ବ୍ରିଜରୁ ୭ ବର୍ଷ ଉଚ୍ଚଶିକ୍ଷା ଓ ଗବେଷଣା କରି ବିଖ୍ୟାତ ରେଭେନ୍ସା କଲେଜରେ ୮ ବର୍ଷ ପ୍ରଧାନ ଅଧ୍ୟାପକ ହୋଇ ସାରିଥିଲେ । ଶିକ୍ଷାଜଗତର ଏହି ଜାଜ୍ୱଲ୍ୟମାନ ସୂର୍ଯ୍ୟଙ୍କୁ ବହୁ ଦୂରରୁ କେବଳ ଆରାଧନା କରି ଆମେ ଯାହା ଆନନ୍ଦ ପାଉଥିଲୁ ।

ତାଙ୍କ ଜୀବନର ପ୍ରଥମ ୫୬ ବର୍ଷ ପରାଧୀନ ଭାରତରେ କଟିଥିଲା । ମଣିଷର ପ୍ରଥମ ଅର୍ଦ୍ଧାଧିକ ଜୀବନ ପ୍ରାୟ ସମଗ୍ର ଜୀବନ । ତେଣୁ କର୍ତ୍ତବ୍ୟବୋଧ ଓ ଶୃଙ୍ଖଳାର ମର୍ଯ୍ୟାଦା ସେ ବୁଝିଥିଲେ । ଦୈନନ୍ଦିନ ଆଚରଣରେ ତାହାହିଁ ଥିଲା ତାଙ୍କର ପ୍ରଧାନ ଅବଲମ୍ବନ । ଅନ୍ଧାରର ଦୁଃଖ ଯନ୍ତ୍ରଣା ଯେ ସହିଥାଏ ଆଲୋକର ଆନନ୍ଦ ଓ ଶାନ୍ତି ସେ ପୂର୍ଣ୍ଣ ପ୍ରାଣରେ ଅନୁଭବ କରେ । ଯେ ଆଲୋକରେ ଜନ୍ମ ହୋଇ ଅନ୍ଧାର କ'ଣ ଜାଣିଲେ ନାହିଁ ସେ ଆଲୋକର ମର୍ଯ୍ୟାଦା ବା ବୁଝିବେ କିପରି ?

ଏବେ ସ୍ୱାଧୀନ ଦେଶରେ ସମସ୍ତେ ସହଜିଆ ସୋପାନ ଆରୋହଣରେ ବ୍ୟସ୍ତ । ସାଧନା ବା ଅଧ୍ୟବସାୟ କେବଳ ଅଭିଧାନର ଶବ୍ଦ । ସାଧାରଣ ଚଳଣିରୁ ତାହା ବାଦ୍ ପଡ଼ି ଅଚଳ ହେବାକୁ ବସିଲାଣି ।

ଏହି ପରିପ୍ରେକ୍ଷୀରେ ପରିଜାସାହେବଙ୍କ ଜୀବନୀ ଯୁବକଙ୍କୁ ରୁଚିକର ହେବ କି ନା ମୁଁ ଭାବିପାରୁନି । କିନ୍ତୁ ଆମ ଯୁବାବସ୍ଥାରେ ଆମେ ତାଙ୍କୁ ଟଙ୍କନ୍ତି ଦେବତାତୁଲ୍ୟ ମନେ କରୁଥିଲୁ । ନିପଟ ମଫସଲରେ ମା'ମାନେ ପୁଅଙ୍କୁ ପାଠ ପଢ଼ି ମଧୁବାବୁଙ୍କ ସଙ୍ଗେ ଲଢ଼ିବାକୁ ବା ପରିଜାସାହେବଙ୍କ ପରି ଜ୍ଞାନୀ ହେବାକୁ କହୁଥିଲେ । ଏହିପରି ପରିଜାସାହେବଙ୍କ ଜୀବନ କଥା ଗାଁ ଗହଳରେ ଲୋକକଥା ପାଲଟି ଯାଇଥିଲା ।

ଉତ୍କଳର ଏହି ଅନନ୍ୟ ବରପୁତ୍ରଙ୍କ ସମ୍ବନ୍ଧରେ ମୋର କେତେକ ବ୍ୟକ୍ତିଗତ ଅନୁଭୂତି ଉଲ୍ଲେଖ କରିବା ଉଚିତ ହେବ । ଏ ବୋଧହୁଏ ୧୯୪୫/୪୬ ମସିହା କଥା । ପରିଜାସାହେବ ଥାନ୍ତି ଓଡ଼ିଶାର କୃଷି ନିର୍ଦ୍ଦେଶକ । ଦେଶରେ ଖାଦ୍ୟାଭାବ ଘଟୁଥାଏ, ଅଧିକ ଅମଳ ଉପରେ ଗୁରୁତ୍ୱ ଦିଆ ହେଉଥାଏ । ଶୁଣାଗଲା, ମାଙ୍କଡ଼

ମାରିଲେ ପୁରସ୍କାର ମିଳିବ । ଗୋଟିଏ ମାଙ୍କଡ଼ ଲାଞ୍ଜ ଦେଖାଇଲେ ଟଙ୍କାଟିଏ । ଲୋକେ କୁହାକୁହି ହେଲେ ପରିଜାସାହେବ ଏ 'ଅର୍ଡର' କରିଛନ୍ତି । କେତେକ ଗାନ୍ଧିଙ୍କ ପାଖେ ଫେରାଦ ହେଲେ, ଚିଠି ଲେଖିଲେ । ଗାନ୍ଧିଜୀ ପ୍ରାଣିବିଜ୍ଞାନ ଶିକ୍ଷା ପାଇଁ ବେଙ୍ଗ ପରି ନିରୀହ ଜୀବ କାଟିବାକୁ ପସନ୍ଦ କରୁ ନ ଥିଲେ । ମୁଖରେ ତାଙ୍କର ସବୁବେଳେ ରାମ ନାମ । ତଥାପି ସେ ଏହି ରାମଭକ୍ତ (ତଥାକଥିତ) ପ୍ରାଣୀକୁ ସୁରକ୍ଷା ଦେଲେନି । କହିଲେ, ମାଙ୍କଡ଼ ଓ ମଣିଷ ମଧ୍ୟରେ ପ୍ରତିଯୋଗିତା ହେଲେ ମାଙ୍କଡ଼ ମାରିବା ଦୋଷାବହ ନୁହେଁ ।

ଆମ ଗାଁ ପାଖରେ ୩ ପଲ ମାଙ୍କଡ଼ ଥିଲେ, ପ୍ରତି ପଲରେ ୩୦/୪୦ ମାଙ୍କଡ଼, ସେମାନେ ପ୍ରତି ଗାଁକୁ ପାଳି କରି ଦି'ଦିନ ପାଇଁ ଆସନ୍ତି । ସପ୍ତାହ ସାରା ଲୋକଙ୍କର ମାଙ୍କଡ଼ ଜଗା । ବେଳାବେଳି ଗାଧୋଇ କ'ଣ ଗଣ୍ଡେ ଖାଇ ପିଲାଏ ଓ ମାଇପି ଲୋକେ ଛାତଉପରେ ଦିନସାରା ବାଡ଼ି ଧରି ବସନ୍ତି । ତେଣେ କୋଳଥ, ଚଣା ଓ ମୁଗ ବିଲରେ ମିଣିପି ଲୋକଙ୍କର ସମଦଶା । ରାମଭକ୍ତ ହନୁମାନଙ୍କୁ ଦୟା କଲେ କଖାରୁ, କାକୁଡ଼ି, କଦଳୀ, କୋଳଥ, ମୁଗ ବା ବିରି ଉଧେଇବ କିପରି ? ଏସବୁ ଶୁଣି ଭାବିଥିଲି ପରିଜାସାହେବ କଡ଼ା ଲୋକ ଓ ନିଷ୍ଠୁର ହୋଇଥିବେ, ତାଙ୍କର ଦୟାମାୟା କିଛି ନ ଥିବ ।

ସେତେବେଳକୁ ମୁଁ କଲେଜରେ ଅଧ୍ୟାପକ ହେଲିଣି । ରାଣୀହାଟର ଗିରୀଶ ବୋଷଙ୍କ ସହ ସାକ୍ଷାତ ହୁଏ । ସେ ଜଣେ ସମାଜସେବୀ, ରାମକୃଷ୍ଣ ମିଶନ ଲୋକ, ମେଧାବୀ ଛାତ୍ରଙ୍କ ପଢ଼ାରେ ସାହାଯ୍ୟ କରନ୍ତି, ତାଙ୍କୁ ଟିଉସନ ଯୋଗାନ୍ତି, ବୃତ୍ତି ମିଳିବାରେ ସାହାଯ୍ୟ କରନ୍ତି । ସେ କହୁଥିଲେ, ପିଲାଙ୍କ ପାଠପଢ଼ା ସଂକ୍ରାନ୍ତରେ ସେ ସିଧାସଳଖ ପରିଜାସାହେବଙ୍କୁ ସାକ୍ଷାତ କରୁଥିଲେ । ଡକ୍ଟର ପରିଜା ଯେତେ ବ୍ୟସ୍ତ ଥିଲେ ବି ପିଲାଙ୍କ ବୃତ୍ତି ଓ ସାହାଯ୍ୟ ବା ଲୋନ୍ କାଗଜପତ୍ରକୁ ଅଗ୍ରାଧିକାର ଦେଇ ବିଚାର କରୁଥିଲେ । ପ୍ରତିଦାନକୁ ଅପେକ୍ଷା କରୁ ନ ଥିବା ନିର୍ଲିପ୍ତ ଗିରୀଶବାବୁ ଶହ ଶହ ଛାତ୍ରଙ୍କୁ ସାହାଯ୍ୟ କରିଛନ୍ତି । ତାଙ୍କଠାରୁ ପରିଜାସାହେବଙ୍କ କଥା ଶୁଣି ଭାବିଲି, ସେହି ବିଦ୍ୱାନ୍ ଓ କଡ଼ା ଲୋକଟି ଭିତରେ କେତେ ଦୟା ଓ ସହାନୁଭୂତି !

କାନାଡ଼ାରୁ ଫେରି ରେଭେନ୍ସା କଲେଜରେ ଅଧ୍ୟାପକ ଥାଏ । ଉତ୍କଳର କୁଳପତି ପ୍ରଫେସର ପରିଜାଙ୍କଠାରୁ ଚିଠି ପାଇଲି । ତାହା ଏକ ନିଯୁକ୍ତି ପତ୍ର । ବିଶ୍ୱବିଦ୍ୟାଳୟର ଛାତ୍ର ସୂଚନା ଓ ନିଯୁକ୍ତି ବ୍ୟୁରୋର ସଂପାଦକ ପଦରେ ସାମୟିକ ଭାବେ କାର୍ଯ୍ୟ କରିବାକୁ ଲେଖା ହୋଇଛି । ଯୋଗ ଦେଲି । ଥରେ ଉପଦେଷ୍ଟାମଣ୍ଡଳୀର ବାର୍ଷିକ ସଭା ଡକାଇଥାଏ । ପ୍ରାୟ ୧୫/୨୦ଟି ବିଷୟ ବିଚାର କରିବାକୁ ଥାଏ । ପରିଜାସାହେବ ସଭା ସମୟର ୧୫ ମିନିଟ୍ ପୂର୍ବରୁ ଆସି ପହଞ୍ଚିଲେ । ପ୍ରତି ବିଷୟରେ ମୋର ମତାମତ ଓ ଯାହା ଯେପରି ଅଛି ବୁଝିନେଲେ । ଅଧଘଣ୍ଟାରେ ଆଲୋଚନା କରି ସଭାକାର୍ଯ୍ୟ ସାରିଦେଲେ । ସଭାରେ ଉପସ୍ଥିତ ଥା'ନ୍ତି ପ୍ରଫେସର ସଦାଶିବ ମିଶ୍ର ଓ ପ୍ରଫେସର ରାଧାନାଥ ରଥ ।

ଶୁଣିଛି ସିଣ୍ଡିକେଟ୍‌ରେ ସେ ୨୦/୩୦ଟି ବିଷୟ ଧାର୍ଯ୍ୟ ସମୟ ଭିତରେ ଆଲୋଚନା କରି ସାରୁଥିଲେ । ସଭା ପରିଚାଳନା କଳା ତାଙ୍କୁ ମାଲୁମ ଥିଲା । ଥରେ ପ୍ରଫେସର ବଂଶୀଧର ସାମନ୍ତରାୟ କହୁଥିଲେ, ‘‘ଲେଉଟିଆ କିଆରି କୁଦିବ ବୋଲି ଗୋଟିଏ ବୁଢ଼ୀ ତା’ କଅଁଳା ବାଛୁରିକୁ ଟେକି କିଆରି ଟପେଇ ଦେଉଥିଲା, ବାଛୁରିଟା ବଡ଼ ଷଣ୍ଢ ହେଲା ପରେ ବି ବୁଢ଼ୀ ତାକୁ ଉଠାଇ ଟେକି ପାରୁଥିଲା । ସେହିପରି ଡକ୍ଟର ପରିଜା ସଭାସମିତିରେ ଦୁର୍ଦ୍ଦାନ୍ତ ଷଣ୍ଢଙ୍କୁ ବି ଆୟତ୍ତ କରି ପାରୁଛନ୍ତି ।’’ ପ୍ରକୃତରେ ସଭା ପରିଚାଳନା କଲାବେଳେ ସେ ଭାଷଣ-ଷଣ୍ଢମାନଙ୍କୁ କଅଁଳେଇ କହି ବାଛୁରି କରି ଦେଉଥିଲେ ।

ତିନି କ୍ଷେପରେ ୧୫ ବର୍ଷ ଉତ୍କଳର କୁଳପତି ଦାୟିତ୍ୱ ତୁଲାଇବା କ’ଣ କମ୍ କଥା ! ସେ କରିପାରିଥିଲେ । ଏବେ ତ ଗୋଟିଏ କାର୍ଯ୍ୟକାଳ ପୂରଣ କରିବା ସମ୍ଭବ ନୁହେଁ । ଗାଦି ଟଳମଳ, ଦାୟିତ୍ୱ ଅସମ୍ଭାଳ । ରଥୀ ମହାରଥୀମାନେ ଶିବଧନୁ ଧରୁ ଧରୁ ଟଳିପଡୁଛନ୍ତି । ଶେଷଥରକୁ ଡକ୍ଟର ପରିଜା ମଧ୍ୟ ଇସ୍ତଫା ଦେଇଥିଲେ । ଲୋକେ କହିଲେ ଛାତ୍ର ବିଶୃଙ୍ଖଳା ହେଲା, ପ୍ରକୃତରେ ଅନ୍ତରାଳରେ କର୍ତ୍ତୃପକ୍ଷ ଶାସନ ଡୋରି ଟାଣି କଣ୍ଢେଇ ନାଚ ଆରମ୍ଭ କଲେ ।

ସେତେବେଳକୁ ବୋଧହୁଏ ୧୯୬୭ ମସିହା, ଡକ୍ଟର ପରିଜା ରେଭେନ୍ସା କଲେଜର ଉଦ୍ଭିଦବିଜ୍ଞାନ ବିଭାଗରେ ଗବେଷଣା କରିବାକୁ ଆସିଲେ । ତାଙ୍କ ବୟସ ୭୫/୭୬ । ମୁଁ ପଦାର୍ଥବିଜ୍ଞାନରେ ଅଧ୍ୟାପକ ଥାଏ । ଦିନେ ମୋତେ ଡକାଇ ତାଙ୍କ ଗବେଷଣା କଥା କହିଲେ । କେତେ ମିଟର ମାଟିତଳେ ଉଦ୍ଭିଦ ସବୁଜ ବଢ଼ୁଛନ୍ତି କିପରି ? ସେମାନେ ଯେଉଁ ଆଲୋକ ପାଉଛନ୍ତି ତା’ର ତରଙ୍ଗ ଦୈର୍ଘ୍ୟ କେତେ ? କିପରି ମାପିବା ? ମୁଁ କେତୋଟି ପ୍ରସ୍ତାବ ଦେଇଥିଲି, ସେ କ’ଣ କଲେ ମୁଁ ଜାଣେନା । ଏ ପର୍ଯ୍ୟନ୍ତ ମୁଁ ଭାବିପାରୁନି ଏତେ ମାଟି ଗହୀରରେ ଉଦ୍ଭିଦ ଆଲୋକ ପାଏ କିପରି ?

ପ୍ରଫେସର ଡକ୍ଟର ପ୍ରାଣକୃଷ୍ଣ ପରିଜା ଆଇ. ଇ. ଏସ୍., ପ୍ରକୃତରେ କେଡ଼େ ବଡ଼ଲୋକ ! ପାଣ୍ଡିତ୍ୟ, ଗୁଣ, ଗରିମାରେ ଗଗନଚୁମ୍ବୀ । ଯଶ କୀର୍ତ୍ତିରେ ଦୀପ୍ତିମନ୍ତ ସୂର୍ଯ୍ୟ । ଅଧ୍ୟାପନା, ଗବେଷଣା ଓ ପ୍ରଶାସନରେ ଅତୁଳନୀୟ । କର୍ତ୍ତବ୍ୟପାଳନରେ କି କଠୋର ଓ ସୁଦୃଢ଼ ! ସାହାଯ୍ୟ ଓ ସହାନୁଭୂତି ପାଇଁ ସଦା ତତ୍ପର । ଏତେ ଦିବ୍ୟଗୁଣର ଅଧିକାରୀ ହୋଇ ବି ସେ କାହାଠାରୁ ଦୂରେଇ ଯାଇ ନ ଥିଲେ । ସେ ଥିଲେ ସମସ୍ତଙ୍କର ପ୍ରିୟ ପରିଜାସାହେବ ।

# ପ୍ରଫେସର ପରିଜାଙ୍କ ସ୍ମୃତି

**ଗଜେନ୍ଦ୍ର ନାଥ ମିତ୍ର**

୧୯୨୯ ମସିହାରେ ମୋର ଆଇ.ଏସ୍‌ସି. ପ୍ରଥମ ବାର୍ଷିକ କ୍ଲାସ୍‌ରେ ଉଦ୍ଭିଦବିଜ୍ଞାନ ଶ୍ରେଣୀରେ ପ୍ରଫେସର ପ୍ରାଣକୃଷ୍ଣ ପରିଜାଙ୍କ ସହିତ ମୋର ପ୍ରଥମ ପରିଚୟ । ଆମେ ଛାତ୍ରମାନେ ତାଙ୍କ ସମ୍ବନ୍ଧରେ ଆଗରୁ ଏତେ କଥା ଶୁଣିଥିଲୁ ଯେ, ଆମେ ଅତ୍ୟନ୍ତ କୌତୂହଳୀ ଥିଲୁ । ସେ ଥରେ ଏକ ଭାରତୀୟ ରାତ୍ରିଭୋଜନକୁ ପୂରା ସାହେବି ପୋଷକ ପିନ୍ଧି ଯାଇଥିଲେ ।

ପ୍ରଫେସର ପରିଜା ସର୍ବଦା ଯେପରି ପରିଷ୍କାର ପରିଚ୍ଛନ୍ନ ପୋଷାକ ପରିଧାନ କରୁଥିଲେ, ସେପରି କ୍ଲାସ୍‌କୁ ଆସିବାରେ ଅତ୍ୟନ୍ତ କର୍ତ୍ତବ୍ୟପରାୟଣ ଥିଲେ । ମୋର ଜଣେ ସହପାଠୀ ଐଚ୍ଛିକ ବିଷୟ, ଉଦ୍ଭିଦବିଜ୍ଞାନ ପଢ଼ିବାରେ ହେଳା କରିଥିଲେ ଓ ପରୀକ୍ଷା ସମୟ ଆସିଗଲାରୁ ଆମେ ଦୁହେଁ ସ୍ଥିର କଲୁ ଆମକୁ ଏହି ବିଷୟରେ ପରୀକ୍ଷା ଦବାକୁ ଛାଡ଼ କରିଦେବାକୁ ପ୍ରଫେସର ପରିଜାଙ୍କୁ ଯାଇ ଅନୁରୋଧ କରିବା । କିଏ ଆଗ ଯାଇ ତାଙ୍କୁ ଏକଥା କହିବ ଏ ବିଷୟରେ କିଛି ସମୟ ଘଣ୍ଟାଚକଟା ପରେ ମୋର ବନ୍ଧୁ ପ୍ରଥମେ ତାଙ୍କ ରୁମ୍‌କୁ ଯିବାକୁ ରାଜି ହେଲା । ସେ ତାଙ୍କ ରୁମ୍ କବାଟରେ ଖଟ୍ ଖଟ୍ କଲା ଓ ଅନୁମତି ପାଇ ଭିତରକୁ ପ୍ରବେଶ କଲା ଓ ମୁଁ ତା ପଛେ ପଛେ ରୁମ୍‌ରେ ପଶିଲି । ସେ ଫଟ୍‌କରି କହିଲା, ''ସାର୍, ମତେ ଜର ହୋଇଛି'' ଓ ମୁଁ କହିଲି, ''ସାର୍, ମୋର ଭୟଙ୍କର ମୁଣ୍ଡ ବିନ୍ଧୁଛି'' । ପରିଜାସାହେବ ତାଙ୍କ ଚୌକିରୁ ଉଠି ପଡ଼ିଲେ ଓ ଆମ ମୁଣ୍ଡରେ ହାତ ମାରି କହିଲେ, ''ଡାହା ମିଛ, ଯାଅ, ପରୀକ୍ଷା ଦିଅ ।'' ଆମେ କାନମୁଣ୍ଡା ଆଉଁଶି ଆସି ପରୀକ୍ଷା ଦେଲୁ ଓ ଭଲ ନମ୍ବର ରଖି ପରୀକ୍ଷାରେ ପାସ୍ କଲୁ । ମୋ ଜୀବନକାଳ ମଧ୍ୟରେ ଏହି ''ଡାହା ମିଛ'' ଶବ୍ଦଟି ଯେତେଥର ମୋର ମନେପଡ଼ିଛି ମତେ ଡର ମାଡ଼ିଛି ଓ ଏବେ ସୁଦ୍ଧା ଏହି ଘଟଣାଟି ମୋ ସ୍ମୃତି ପଟରେ ଉଙ୍କି ମାରୁଛି ।

ମୁଁ ଓଡ଼ିଶା ସରକାରଙ୍କ ଅଧୀନରେ ଜଣେ ମତ୍ସ୍ୟବିଭାଗ ଅଫିସର (ଫିସରୀ ଅଫିସର) ରୂପେ ଚାକିରିରେ ଯୋଗ ଦେଇଥାଏ । ପ୍ରଫେସର ପରିଜା କିପରି ଜାଣିଲେ ଯେ ମୁଁ ନିଖିଳ ଭାରତ ବିଜ୍ଞାନ କଂଗ୍ରେସର ଏକ ଅଧିବେଶନକୁ ଗୋଟିଏ ବୈଜ୍ଞାନିକ ପ୍ରବନ୍ଧ ପଠାଇଛି । ସେ ସମୟରେ ନିଖିଳ ଭାରତ ବିଜ୍ଞାନ କଂଗ୍ରେସ ଅଧିବେଶନରେ ଏକ ବୈଜ୍ଞାନିକ ପ୍ରବନ୍ଧ ପାଠ କରିବା ଓ ସେ ସମ୍ପର୍କରେ

ଆଲୋଚନାରେ ଅଂଶ ଗ୍ରହଣ କରିବାରେ ଗୁରୁତ୍ୱ ପ୍ରଦାନ କରାଯାଉଥିଲା । ଆଜିକାଲି କିନ୍ତୁ ନୀତି ନିର୍ଦ୍ଧାରଣ ଉପରେ ବେଶୀ ଗୁରୁତ୍ୱ ଦିଆଯାଉଛି । ସେ ମତେ ଡକେଇ ପଠାଇଲେ ଓ ପଚାରିଲେ ମୁଁ ବିଜ୍ଞାନ କଂଗ୍ରେସକୁ ଯାଉଛି କି ନାହିଁ । ମୁଁ କହିଲି ମୋର ଯିବାକୁ ଭାରି ଇଚ୍ଛା ଅଛି । ସେ ମତେ ଗୋଟିଏ 'ସର୍ଭାଣ୍ଟ୍‌ସ ଟିକେଟ୍' କିଣିବାକୁ ଉପଦେଶ ଦେଲେ ଯାହା ଫଳରେ କି ମୁଁ ସ୍ୱଚ୍ଛନ୍ଦରେ ରେଳଗାଡ଼ିରେ ଯାଇପାରିବି । ମୁଁ ଆନନ୍ଦରେ ସେ କଥା କରିବାକୁ ରାଜି ହେଲି; କାରଣ ସେତେବେଳେ ଉଚ୍ଚ ପଦବୀ ଅଫିସରମାନଙ୍କ ସାଥୀରେ ଯାଉଥିବା ପିଅନମାନେ ରେଳଗାଡ଼ିରେ ଗୋଟିଏ ସ୍ୱତନ୍ତ୍ର ଡବାରେ ଯିବାର ବନ୍ଦୋବସ୍ତ ଥିଲା ଓ ସେଥିରେ ଶୋଇବା ପାଇଁ ଯଥେଷ୍ଟ ସ୍ଥାନ ମିଳୁଥିଲା ।

ମୁଁ ସକାଳ ଆଠଟା ବେଳକୁ ଆଶ୍ଚର୍ଯ୍ୟ ହୋଇ ଦେଖେ ଯେ ପ୍ରଫେସର ପରିଜା ସର୍ଭାଣ୍ଟ୍‌ସ କମ୍ପାର୍ଟମେଣ୍ଟର ବାହାରେ ପ୍ଲାଟଫର୍ମ ଉପରେ ଆସି ଛିଡ଼ା ହୋଇଛନ୍ତି ଓ ମତେ ଡାକି ତାଙ୍କ ସହିତ ଡାଇନିଙ୍ଗ୍ କାର୍‌ରେ ପ୍ରାତଃଭୋଜନ କରିବାକୁ କହିଲେ । ମୋର ସୌଭାଗ୍ୟକୁ ମୁଁ କଲିକତାରେ ପ୍ରେସିଡେନ୍ସି କଲେଜରେ ଅଧ୍ୟୟନ କରୁଥିଲାବେଳେ କଣ୍ଟାଚାମୁଚ ଧରି ଖାଇବା ଶିଖିଥିଲି ଓ ମୋ ପ୍ରଫେସରଙ୍କ ଅନୁରୋଧକୁ ଏଡ଼ାଇ ପାରି ନଥିଲି । ତା'ପରଠୁ ମୁଁ ମଧ୍ୟାହ୍ନ ଭୋଜନ ଓ ରାତ୍ରିଭୋଜନ ମଧ୍ୟ ତାଙ୍କ ସାଙ୍ଗେ ଏକତ୍ର କଲି । ଏଭଳି ଦୟା ଓ ମହାନୁଭବତା କେହି କ'ଣ କେବେ ଭୁଲିପାରେ !

ପରବର୍ତ୍ତୀ ଘଟଣା ହେଉଛି, ଯେତେବେଳେ ଭାରତ ସରକାରଙ୍କ ମତ୍ସ୍ୟବିକାଶ ପରାମର୍ଶଦାତା ଡକ୍ଟର ବେଣୀପ୍ରସାଦ ଓଡ଼ିଶା ମତ୍ସ୍ୟବିଭାଗର କାର୍ଯ୍ୟାବଳୀର ସମୀକ୍ଷା କରିବାକୁ ଆସିଥିଲେ । ଡକ୍ଟର ପ୍ରସାଦ ଉଦ୍ଧତ ଓ ଗର୍ବୀ ପ୍ରକୃତିର ଥିଲେ । ମୁଁ ତାଙ୍କୁ ଯେତେବେଳେ କଟକ ରେଳଷ୍ଟେସନରୁ ସର୍କିଟ ହାଉସ୍‌କୁ ଗୋଟିଏ ଘୋଡ଼ାଗାଡ଼ିରେ ଆଣିଥିଲି ସେ ବିରକ୍ତି ଭାବ ପ୍ରକାଶ କଲାଭଳି ସ୍ପଷ୍ଟ ଜଣାପଡୁଥିଲା । ଡକ୍ଟର ପ୍ରସାଦ ମୋର ପ୍ରକଳ୍ପଟିକୁ ଅନୁଧ୍ୟାନ କରି ଅଯଥା ସେଥିରେ ନାନା ପ୍ରକାର ଦୋଷ ତ୍ରୁଟି ଦର୍ଶାଇଥିଲେ । ମୁଁ ମୋର ସାଧ୍ୟମତେ ବହୁ ଅଧ୍ୟୟନ କରି ବହୁ ପରିଶ୍ରମ ସହକାରେ ସେ ପ୍ରକଳ୍ପଟିକୁ ପ୍ରସ୍ତୁତ କରିଥିଲି । ମୋର ମନରେ ସେଥିପାଇଁ ଗଭୀର ଦୁଃଖ ଜାତ ହେଲା ।

ଡକ୍ଟର ପ୍ରସାଦ ପ୍ରଫେସର ପ୍ରାଣକୃଷ୍ଣ ପରିଜାଙ୍କ ସହିତ ସାକ୍ଷାତ କରିବାକୁ ଇଚ୍ଛା ପ୍ରକାଶ କଲେ ଓ ସେଥିପାଇଁ ଦିନେ ଅପରାହ୍ନରେ ପ୍ରଫେସର ପରିଜା ସମୟ ନିର୍ଦ୍ଧାରଣ କଲେ । ମୁଁ ଡକ୍ଟର ବେଣୀପ୍ରସାଦଙ୍କୁ ସଙ୍ଗରେ ନେଇ ପ୍ରଫେସର ପରିଜାଙ୍କ ଘରେ ଯାଇ ପହଞ୍ଚି ଆଶ୍ଚର୍ଯ୍ୟ ହୋଇ ଦେଖିଲି ଯେ ସେ ଅନେକ ସମ୍ମାନାସ୍ପଦ ଭଦ୍ରବ୍ୟକ୍ତିଙ୍କୁ ଚା' ପାନ ପାଇଁ ନିମନ୍ତ୍ରଣ କରିଛନ୍ତି । ସେମାନଙ୍କ ମଧ୍ୟରେ ଥିଲେ ମିଃ ଏଚ୍. ଲାଲ, ଆଇ.ସି.ଏସ୍. ଯେ କି ସେତେବେଳେ ଓଡ଼ିଶାରେ

ଡେଭଲପ୍‌ମେଣ୍ଟ୍ କମିସନର ଥିଲେ ଓ ମୋର ସର୍ବ ଉପରିସ୍ଥ ହାକିମ ଥିଲେ । ପରବର୍ତ୍ତୀ ସମୟରେ ତାଙ୍କର ପଦୋନ୍ନତି ହୋଇ ସେ ଭାରତ ସରକାରଙ୍କ ଘରୋଇ ବିଭାଗର ଶାସନ ସଚିବ ହୋଇଥିଲେ । ପ୍ରଫେସର ପରିଜା ମତେ ବେଶ୍ ପ୍ରାଧାନ୍ୟ ଦେଇଥିଲେ ଓ ମୋ କାମକୁ ପ୍ରଶଂସା କରିଥିଲେ । ଏହା ଶୁଣି ମିଃ ଲାଲ ମତବ୍ୟକ୍ତ କରିଥିଲେ ଯେ ସେ ମୋର ନୂତନ ପ୍ରକଳ୍ପକୁ ପସନ୍ଦ କରୁଛନ୍ତି । ତା'ପରଠୁ ଡକ୍ଟର ପ୍ରସାଦ ମୋ ପ୍ରତି ସୌହାର୍ଦ୍ଦ୍ୟପୂର୍ଣ୍ଣ ହୋଇଉଠିଲେ । ପରବର୍ତ୍ତୀ ସମୟରେ ମୁଁ ଯେତେବେଳେ ଭାରତ ସରକାରଙ୍କ ମତ୍ସ୍ୟବିଭାଗ ଉପଦେଷ୍ଟା ପଦ ପାଇଁ ୟୁନିଅନ ପବ୍ଲିକ୍ ସର୍ଭିସ୍ କମିସନ୍‌କୁ ଦରଖାସ୍ତ କରିଥିଲି ଡକ୍ଟର ପ୍ରସାଦ ସେଥିରେ ଜଣେ ବିଶେଷଜ୍ଞ ରୂପେ ଥିଲେ ଓ ମୁଁ ମନୋନୀତ ହୋଇଥିଲି । ଏହା ମୋର ଜୀବନଯାତ୍ରାର ପଥକୁ ପ୍ରକୃତପକ୍ଷେ ବଦଳାଇ ଦେଇଥିଲା । ଆଜି ସୁଦ୍ଧା ମୁଁ ଅନୁଭବ କରୁଛି ଯେ ମୋର ସମଗ୍ର ଜୀବନର ଗତି (ଜୀବନର କାର୍ଯ୍ୟଧାରା, ଜୀବନଚରିତ, ଜୀବନଯାତ୍ରା ନିର୍ବାହର ପନ୍ଥା, ବୃତ୍ତି) ପ୍ରଫେସର ପରିଜାଙ୍କ ତାଙ୍କ ଛାତ୍ରମାନଙ୍କ ପ୍ରତି ମାନବିକତା, ଦୟାଳୁତା ଓ ମମତା ଯୋଗୁଁ ନିର୍ଦ୍ଧାରିତ ହୋଇଛି ଏବଂ ସମ୍ଭବ ହୋଇଛି ।

(ମୂଳ ଇଂରାଜୀ ଲେଖାରୁ ଡକ୍ଟର ଗଦାଧର ମିଶ୍ରଙ୍କ ଦ୍ୱାରା ଓଡ଼ିଆରେ ଅନୂଦିତ ।)

# ମହାନ୍ ଶିକ୍ଷାବିତ୍ ପ୍ରଫେସର ପ୍ରାଣକୃଷ୍ଣ ପରିଜା

**ଗଣନାଥ ଦାସ**

କଟକ ରେଭେନ୍ସା କଲେଜରେ ପ୍ରଫେସର ପ୍ରାଣକୃଷ୍ଣ ପରିଜାଙ୍କ ଅଧ୍ୟାପକତ୍ୱ କାଳରେ ମୋର କଲେଜ ଶିକ୍ଷାର କେତୋଟି ବର୍ଷ କଟିଥିବା ଓ ପ୍ରଫେସର ପରିଜାଙ୍କ ସମ୍ପର୍କରେ ସେହି ସମୟରେ ଆସିପାରିଥିବା ହେତୁ ମୁଁ ନିଜକୁ ଗୌରବାନ୍ୱିତ ମନେକରେ ।

ସ୍ୱ ୧୯୩୧ ମସିହାରେ ପ୍ରଥମ ବାର୍ଷିକ କଳା ଛାତ୍ରଭାବେ କଲେଜରେ ଯୋଗ ଦେଇ ଓ୍ୱେଷ୍ଟ ହଷ୍ଟେଲ୍‌ରେ ମୋର ବଡ଼ଭାଇଙ୍କ ସହିତ ଏକତ୍ର ରହିବା ସମୟରେ ଭାଇ ଥିଲେ ୪ର୍ଥ ବାର୍ଷିକ ଶ୍ରେଣୀର ଛାତ୍ର । ପ୍ରଫେସର ପରିଜା ଉଦ୍ଭିଦବିଜ୍ଞାନ ବିଭାଗର ଅଧ୍ୟାପକ ତଥା ହଷ୍ଟେଲ୍‌ର ଓ୍ୱାର୍ଡ଼େନ୍ ଭାବରେ ଅବସ୍ଥାପିତ ଥାଆନ୍ତି । ଅର୍ଥନୀତି ଅଧ୍ୟାପକ ପ୍ରଫେସର ଏଚ୍.ଆର୍.ବାଥେଜା କଲେଜର Acting ପ୍ରିନ୍ସିପାଲ୍ ଥାଆନ୍ତି । ସନ୍ନିକଟ B.Ed. କଲେଜର ଅଧ୍ୟକ୍ଷ ପ୍ରଫେସର ଡବ୍ଲୁ.ଭି. ଡ୍ୟୁକ୍ ମୁଁ ପଢୁଥିବା କାଳର ରେଭେନ୍ସା କଲେଜର ତତ୍ତ୍ୱାବଧାରକ ଥିଲେ ।

ତିନିବର୍ଷ ପରେ ମୁଁ ଚତୁର୍ଥ ବାର୍ଷିକ କଳା ଶ୍ରେଣୀରେ ପଢ଼ିଲା ବେଳକୁ ମୋ ବଡ଼ଭାଇ ଓ ତାଙ୍କ ସହପାଠୀଗଣ କଲେଜ ଛାଡ଼ି ସାରିଲେଣି । ସେହି ସମୟରେ ସରକାର ପରିଚାଳିତ College Hostel Messରେ କେତେକ ପରିଚାଳନାଗତ ତ୍ରୁଟି ଓ ବିଶୃଙ୍ଖଳା ହେତୁ ଛାତ୍ରମାନଙ୍କ ଖାଦ୍ୟ ଯୋଗାଣରେ ଅସୁବିଧାବଶତଃ ଅନ୍ତେବାସୀ ଛାତ୍ରମାନେ ଧର୍ମଘଟର ଆଶ୍ରୟ ନେଇଥାଆନ୍ତି ।

ମିଷ୍ଟର ଡ୍ୟୁକ୍ ଛାତ୍ରାବାସର ଓ୍ୱାର୍ଡ଼େନ୍, ସୁପରିଣ୍ଟେଣ୍ଡେଣ୍ଟ, କଲେଜ ଅଧ୍ୟକ୍ଷ ତଥା କେତେଜଣ ଛାତ୍ର ନେତାଙ୍କୁ ଭେଟି ଧର୍ମଘଟ ବିଷୟରେ ଆଲୋଚନା କରିବାକୁ ଚାହିଁଲେ । ଛାତ୍ରନେତାଭାବେ ଅନ୍ୟ ତିନି ଚାରିଜଣଙ୍କ ସହ ମୁଁ ମଧ୍ୟ ଉକ୍ତ ଆଲୋଚନାରେ ଯୋଗ ଦେଇଥିଲି ।

ପ୍ରସଙ୍ଗକ୍ରମେ ମିଷ୍ଟର ଡ୍ୟୁକ୍ ପ୍ରକାଶ କରିଥିଲେ ଯେ ଓଡ଼ିଆମାନେ ସାଧାରଣତଃ ଧର୍ମଭୀରୁ ହେତୁର କଠୋର ପଦକ୍ଷେପ ନେବାକୁ ଚାହାନ୍ତି ନାହିଁ । ପରିଷ୍କାର ମନେଅଛି ପ୍ରଫେସର ପରିଜା ଏକତ୍ରିତ ସମସ୍ତଙ୍କ ପ୍ରତି ଦୃଷ୍ଟି ନିକ୍ଷେପ କରି କହିଥିଲେ, ଏପରି କ୍ଷେତ୍ରରେ ଯେଉଁ କାର୍ଯ୍ୟକ୍ରମ କଲେଜ କର୍ମଚାରୀଗଣ ଗ୍ରହଣ କରିଛନ୍ତି ଯେ କେହି ହୋଇଥିଲେ ତାହାହିଁ କରିଥାଆନ୍ତେ । ଯେ କେହି ବୋଲି କହିଲାବେଳେ ସମସ୍ତଙ୍କ ପ୍ରତି ହସ୍ତ ନିର୍ଦ୍ଦେଶ କରି ଏହା ପ୍ରକାଶ କରିଥିଲେ ।

ପ୍ରଫେସର ପରିଜାଙ୍କ ସତ୍‌ସାହସ ଓ ସ୍ପଷ୍ଟବାଦିତା ଆମ୍ଭମାନଙ୍କୁ ଅଭିଭୂତ କରିଥିଲା । ଏହି ଅନୁଭୂତି ଆଜକୁ ଷାଠିଏ ବର୍ଷରୁ ଅଧିକ ହୋଇଥିଲେ ହେଁ ତାହା ସ୍ପଷ୍ଟ ମନେଅଛି ଓ ପ୍ରଫେସର ପରିଜାଙ୍କ ପ୍ରତି ସମ୍ମାନ ବଦ୍ଧମୂଳ ହୋଇ ରହିଅଛି ।

ଆଉ ଗୋଟିଏ ଦିନର ଅନୁଭୂତି ମଧ୍ୟ ମନେପଡ଼େ । ମୁଁ ପଢ଼ା ଶେଷ କରି ପ୍ରଶାସନିକ ଭାବରେ ଖୋର୍ଦ୍ଧା ତହସିଲଦାର ରୂପେ ଅବସ୍ଥାପିତ ହୋଇଥାଏ । ସେ କଳାରେ କଟକ ରେଭେନ୍ସା କଲେଜର ପୁରାତନ ଛାତ୍ର 'Old Boys Association' ତରଫରୁ ପୁରୁଣା ଛାତ୍ରମାନଙ୍କୁ ନିମନ୍ତ୍ରଣ କରି ବର୍ଷରେ ଥରେ ସମ୍ବର୍ଦ୍ଧିତ କରିବାର ପ୍ରଥା ଥାଏ । ସେ ବର୍ଷ ଦେଶର ବରିଷ୍ଠ ନେତ୍ରୀଭାବରେ ସମ୍ମାନିତା ଶ୍ରୀମତୀ ସରୋଜିନୀ ନାଇଡୁ ବିଶିଷ୍ଟ ଅତିଥିଭାବେ ଯୋଗ ଦେଇଥାଆନ୍ତି । ପୁରାତନ ଛାତ୍ର ଭାବରେ ନିମନ୍ତ୍ରିତ ହୋଇ ଉକ୍ତ ସଭାରେ ଯୋଗ ଦେବାର ସୁଯୋଗ ଲାଭ କରିଥିଲି ।

ପ୍ରଫେସର ପରିଜା କଲେଜର ଅଧ୍ୟକ୍ଷ ଭାବରେ ସଭାରେ ଅଧ୍ୟକ୍ଷତା କରୁଥାନ୍ତି । ସଂଯୋଗ କ୍ରମେ ସେଦିନ ପ୍ରଫେସର ପରିଜାଙ୍କର ଅଣ୍ଟା ଧରିଥାଏ । ବସିଥିବା ଚଉକିରେ ଦୁଇଟି ତକିଆ ଦିଆହୋଇ ତାଙ୍କର ବସିବା ପାଇଁ ସାମାନ୍ୟ ସୁବିଧା କରାଯାଇଥାଏ । ପ୍ରଫେସର ପରିଜା ତାଙ୍କ ପ୍ରାରମ୍ଭିକ ଭାଷଣରେ ନିଜର ସାମାନ୍ୟ ଅସୁସ୍ଥତା ବିଷୟ ସୂଚାଇଥିଲେ ।

ଶ୍ରୀମତୀ ନାଇଡୁ ତାଙ୍କ ଭାଷଣ ପ୍ରସଙ୍ଗରେ ସାମାନ୍ୟ ପରିହାସ ଛଳରେ ପ୍ରଫେସର ପରିଜା କିଅତ "Rich Man's Disease"ରେ ଆକ୍ରାନ୍ତ ହୋଇ ପଡ଼ିଛନ୍ତି ବୋଲି ଉଲ୍ଲେଖ କରିଥିଲେ । ପ୍ରଫେସର ପରିଜା ତାଙ୍କ ଭାଷଣ ପ୍ରସଙ୍ଗରେ ଉକ୍ତ ବିଷୟ ପ୍ରତି ଲକ୍ଷ୍ୟ କରି ସେ ମଧ୍ୟ ସାମାନ୍ୟ ପରିହାସ ଛଳରେ କହିଥିଲେ ଯେ ଶ୍ରୀମତୀ ନାଇଡୁ ମୁଁ 'Rich Man's Disease' ଭୋଗୁଛି ବୋଲି ପ୍ରକାଶ କରିଛନ୍ତି । ଯଦି ସେପରି ବ୍ୟବସ୍ଥା ସଂସାରରେ ହୋଇପାରନ୍ତା, ଜୀବନଚର୍ଯ୍ୟା ଭିନ୍ନ ପ୍ରକାରର ହୋଇଥାଆନ୍ତା । ମୁଁ ଗରିବ, ତେଣୁ କେତେକ ନିର୍ଦ୍ଦିଷ୍ଟ ରୋଗ ଭୋଗିବାର ବ୍ୟବସ୍ଥା ଥା'ନ୍ତା । ଆପଣ ବଡ଼ଲୋକ, ତେଣୁ ଭିନ୍ନ ରୋଗ ଭୋଗିବାର ବ୍ୟବସ୍ଥା ଥାଆନ୍ତା । ଆର୍ଥିକ ଅବସ୍ଥା ଅନୁସରଣ କରି ସ୍ୱାସ୍ଥ୍ୟ ଅବସ୍ଥା ନିର୍ଦ୍ଧାରିତ ହେଉଥିଲେ ଜୀବନଚର୍ଯ୍ୟା ଭିନ୍ନ ପ୍ରକାର ହୁଅନ୍ତା ବୋଲି କହନ୍ତେ ଦର୍ଶକମଣ୍ଡଳି ହାସ୍ୟ ଓ କରତାଳି ମାଧ୍ୟମରେ ତାହା ଉପଭୋଗ କରିଥିଲେ । ଡକ୍ଟର ପରିଜାଙ୍କର ବିଚକ୍ଷଣ ପ୍ରତ୍ୟୁତ୍ପନ୍ନମତି ମଧ୍ୟ ସମସ୍ତ ଦର୍ଶକମଣ୍ଡଳିଙ୍କର ଉପଭୋଗ୍ୟ ହୋଇଥିଲା ।

# ପ୍ରଫେସର ପ୍ରାଣକୃଷ୍ଣ ପରିଜା, ଜଣେ ଅନ୍ତର୍ଜାତୀୟ ଖ୍ୟାତିସମ୍ପନ୍ନ ବିଶିଷ୍ଟ ଉଦ୍ଭିଦବିଜ୍ଞାନୀ

**ଗଦାଧର ମିଶ୍ର**

ପ୍ରଫେସର ପ୍ରାଣକୃଷ୍ଣ ପରିଜା ଭାରତବର୍ଷରେ ତଥା ସମଗ୍ର ପୃଥିବୀରେ ନିଜକୁ ଜଣେ ଅତି ଉଚ୍ଚକୋଟୀର ଉଦ୍ଭିଦବିଜ୍ଞାନୀ ରୂପେ ପ୍ରତିଷ୍ଠା କରିପାରିଥିଲେ । ୧୯୧୩ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରୁ ଗଣିତ ଶାସ୍ତ୍ରରେ ଅନର୍ସ ସହିତ ବି.ଏସ୍‌ସି. ପରୀକ୍ଷାରେ କୃତିତ୍ୱ ସହକାରେ ଉତ୍ତୀର୍ଣ୍ଣ ହେଲା ପରେ ସେ ଗଣିତ ଶାସ୍ତ୍ରରେ ଏମ୍.ଏସ୍‌ସି. ଅଧ୍ୟୟନ କରୁଥିଲାବେଳେ ବିହାର ଓ ଓଡ଼ିଶା ସରକାରଙ୍କ ବୃତ୍ତିଲାଭ କରି ୧୯୧୪ ମସିହା ସେପ୍ଟେମ୍ବର ମାସରେ ପ୍ରସିଦ୍ଧ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରିବାକୁ ବିଲାତ ଯାତ୍ରା କରିଥିଲେ ।

କେମ୍ବ୍ରିଜ୍‌ରେ ସେ କ୍ରାଏଷ୍ଟ କଲେଜର ଅନ୍ତେବାସୀ ଥିଲେ । ଏହି ଆବାସିକ କଲେଜରେ ଶିକ୍ଷକ ଓ ଛାତ୍ରମାନେ ଏକାଠି ବାସ କରନ୍ତି । ଛାତ୍ରମାନଙ୍କର ଅନ୍ତର୍ନିହିତ ଗୁଣରାଜିର ବିକାଶ ନିମନ୍ତେ ଶିକ୍ଷକବୃନ୍ଦ ସେମାନଙ୍କର ବ୍ୟକ୍ତିଗତ ଆଦର୍ଶ ଦ୍ୱାରା ଛାତ୍ରମାନଙ୍କୁ ବିଦ୍ୟାଧ୍ୟୟନ, କ୍ରୀଡ଼ା କସରତ୍, ଉଦ୍ୟାନକର୍ମ, ନୌକାଚାଳନା, ସନ୍ତରଣ, ପର୍ବତାରୋହଣ, ପର୍ଯ୍ୟଟନ ପ୍ରଭୃତି ବିବିଧ ମାନସିକ ଓ କାୟିକ କାର୍ଯ୍ୟରେ ଅଭିଭାବକ ଭଳି ପଥ ପ୍ରଦର୍ଶନ କରାନ୍ତି ।

୧୯୧୬ ମସିହାରେ ପରିଜା ନାଚରାଲ ସାଇନ୍ସେସ୍ ଟ୍ରାଇପସ୍ ପ୍ରଥମ ଭାଗ ପରୀକ୍ଷାରେ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ ଓ ପରବର୍ତ୍ତୀ ଦୁଇ ବର୍ଷ ଅନ୍ତର୍ଜାତୀୟ ଖ୍ୟାତିସମ୍ପନ୍ନ ଉଦ୍ଭିଦବିଦ୍ୟା ପ୍ରଫେସର ଏ.ସି.ସିୱାର୍ଡ଼ ଓ ଅଧ୍ୟାପକ ଏଫ୍.ଏଫ୍.ବ୍ଲାକ୍‌ମ୍ୟାନଙ୍କ ତତ୍ତ୍ୱାବଧାନରେ ଉଦ୍ଭିଦବିଜ୍ଞାନରେ ସ୍ନାତକ ସ୍ତରର ଜ୍ଞାନ ଆହରଣ କରିଥିଲେ । ୧୯୧୮ ମସିହାରେ ସେ ଟ୍ରାଇପସ୍‌ର ଦ୍ୱିତୀୟ ଭାଗ (ଉଦ୍ଭିଦ ବିଜ୍ଞାନ) ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ଅଧିକାର କରି ଗୌରବର ସହିତ ଉତ୍ତୀର୍ଣ୍ଣ ହୋଇଥିଲେ ଓ ବି.ଏ. ଡିଗ୍ରୀ ଲାଭ କରିଥିଲେ ।

ଏହି ପରୀକ୍ଷାରେ ଶୀର୍ଷ ସ୍ଥାନ ଅଧିକାର କରିଥିବା ଯୋଗୁଁ ସେ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ ତରଫରୁ ଫ୍ରାଙ୍କ୍ ସ୍ମାର୍ଟ୍ ପୁରସ୍କାର ପାଇଥିଲେ ଓ ସେଠାରେ ଦୁଇବର୍ଷ

ପାଇଁ ଗବେଷଣା କରିବାକୁ ଏକ ଛାତ୍ରବୃତ୍ତି ପାଇଥିଲେ । ସେ ପେରିଲଗେଲ (Pelargonium zonale) ନାମକ ଏକ ଗଛର ପତ୍ରର ଶ୍ୱାସକ୍ରିୟା ଓ ସେଉ ଫଳର ଶ୍ୱାସକ୍ରିୟା ସମ୍ବନ୍ଧରେ ଅଧ୍ୟାପକ ଏଫ୍.ଏଫ୍. ବ୍ଲାକ୍‌ମ୍ୟାନ୍‌ଙ୍କ ତତ୍ତ୍ୱାବଧାନରେ ଗବେଷଣା କରିଥିଲେ ।

ଉଦ୍ଭିଦ ଏକ ସଜୀବ ପଦାର୍ଥ । ସଜୀବ ଗଛର ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗ ଯଥା— ମୂଳ, କାଣ୍ଡ, ପତ୍ର, ଫୁଲ, ଫଳ, ବୀଜ ପ୍ରଭୃତି ମଧ୍ୟ ବହୁ ସମୟ ଧରି ସଜୀବ ରହେ ।

ବସ୍ତୁ ଯେତେ ସମୟ ସଜୀବ ଥାଏ, ତା'ର ଏକ ପ୍ରଧାନ ଧର୍ମ, ସେ ଶ୍ୱାସକ୍ରିୟା ସମ୍ପାଦନ କରୁଥାଏ, ଅର୍ଥାତ୍ ବାୟୁମଣ୍ଡଳରୁ ଅହର୍ନିଶ ଚବିଶ ଘଣ୍ଟା ଅମ୍ଳଜାନ ଗ୍ୟାସ୍ ତା'ର ଶରୀର ଅନ୍ତରସ୍ଥ ସମସ୍ତ ସଜୀବ କୋଷ ଭିତରକୁ ଗ୍ରହଣ କରେ ଓ ସେହି କୋଷଗୁଡ଼ିକରେ ଖାଦ୍ୟପଦାର୍ଥ ଗ୍ଲୁକୋଜ୍ ଜାତୀୟ ଶ୍ୱେତସାରର ଜାରଣ ଘଟାଇ ସେଥିରୁ ଉଦ୍ଭୂତ ଅଙ୍ଗାରକାମ୍ଳ ଗ୍ୟାସ୍‌କୁ ବାୟୁମଣ୍ଡଳକୁ ନିର୍ଗତ କରେ । ଏହି ଶ୍ୱାସକ୍ରିୟାରେ ଉଦ୍ଭିଦ ଶରୀରରେ ଶକ୍ତି ଜାତ ହୁଏ ଓ ଏହି ଶକ୍ତି ଉଦ୍ଭିଦର ସମସ୍ତ ସଜୀବ କୋଷର ବିବିଧ କ୍ରିୟାକଳାପକୁ ପରିଚାଳିତ କରେ ।

ମୂଳ, କାଣ୍ଡ, ପତ୍ର, ଫୁଲ, ବୀଜ ପ୍ରତ୍ୟେକ ଅଙ୍ଗ ଗଛରେ ଜନ୍ମଲାଭ କଲାବେଳେ ଏକ ଆଣୁବୀକ୍ଷଣିକ ଜୀବକୋଷ ରୂପେ ଜନ୍ମ ହୁଏ । ଏହି କୋଷଟି ଧୀରେ ଧୀରେ ବୃଦ୍ଧିଲାଭ କରି ଅନେକଥର ବିଭାଜିତ ହୋଇ ବହୁକୋଷ ବିଶିଷ୍ଟ ବଡ଼ ଆକାର ପ୍ରାପ୍ତ ହୁଏ । ପରେ ଧୀରେ ଧୀରେ ବାର୍ଦ୍ଧକ୍ୟ ଓ ଜରା ଅବସ୍ଥାରେ ପହଞ୍ଚି ଗଛରୁ ଝଡ଼ିପଡ଼େ । ପ୍ରତ୍ୟେକ ଅଙ୍ଗ କିଛିକାଳ ସଜୀବ ରହି ଶେଷରେ ମୃତ୍ୟୁମୁଖରେ ପତିତ ହୁଏ । ତେଣୁ ପ୍ରତ୍ୟେକ ଅଙ୍ଗର ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଜୀବନଚକ୍ର ମଧ୍ୟରେ ତା'ର ଶ୍ୱାସକ୍ରିୟାର ପରିମାଣରେ ଓ କୋଷ ଅନ୍ତରସ୍ଥ ରାସାୟନିକ ପଦାର୍ଥ ସମୂହର ବିଶ୍ଳେଷଣରେ ନାନା ପ୍ରକାର ପରିବର୍ତ୍ତନ ସଂଘଟିତ ହୁଏ ।

ଜଣେ ଉଦ୍ଭିଦବିଜ୍ଞାନୀ ହିସାବରେ ପ୍ରାଣକୃଷ୍ଣ ପରିଜା ନିଜର ଅସାଧାରଣ ଗବେଷଣା ମାଧ୍ୟମରେ ଏହି ଶ୍ୱାସକ୍ରିୟାର ବିଭିନ୍ନ ପ୍ରକ୍ରିୟାର ବୈଜ୍ଞାନିକ ତତ୍ତ୍ୱ ଉନ୍ମୋଚନ କରିଥିଲେ । ଏହି ଗବେଷଣା ଯୋଗୁଁ ସେ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ଉପାଧିରେ ଭୂଷିତ ହୋଇଥିଲେ । ବିଲାତ ସରକାର ତାଙ୍କର ଉଚ୍ଚକୋଟୀର ଗବେଷଣା କାର୍ଯ୍ୟରେ ପ୍ରୀତ ହୋଇ ତାଙ୍କୁ ଏକବର୍ଷ ପାଇଁ ସେଉ ଫଳଗୁଡ଼ିକ ଗଛରୁ ତୋଳାହେଲା ପରେ ଶୀଘ୍ର ନଷ୍ଟ ନ ହୋଇ କିଭଳି ଭାବରେ ଉପଯୁକ୍ତ ରୂପେ ଅଧିକ ଦିନ ସଂରକ୍ଷିତ ହୋଇ ରହିପାରିବ ସେ ଦିଗରେ ଗବେଷଣା କାର୍ଯ୍ୟରେ ନିଯୁକ୍ତି ପ୍ରଦାନ କରିଥିଲେ ।

ଇତ୍ୟବସରରେ ବିଲାତ ସରକାର ତାଙ୍କୁ ଭାରତୀୟ ଶିକ୍ଷା ସେବା (ଇଣ୍ଡିଆନ୍ ଏଜୁକେସନ୍ ସର୍ଭିସ୍) ଭଳି ମର୍ଯ୍ୟାଦାପୂର୍ଣ୍ଣ ଚାକିରିରେ ନିଯୁକ୍ତି ପ୍ରଦାନ କରିଥିଲେ ଓ

ଯୁବକ ପରିଜା ବିଲାତରୁ ୧୯୨୧ ମସିହାରେ ଭାରତକୁ ପ୍ରତ୍ୟାବର୍ତ୍ତନ କରି ଅଗଷ୍ଟ ମାସ ୪ ତାରିଖ ଦିନ ପ୍ରଖ୍ୟାତ ରେଭେନ୍ସା କଲେଜରେ ଉଦ୍ଭିଦବିଜ୍ଞାନର ପ୍ରଫେସର ଓ ବିଭାଗୀୟ ମୁଖ୍ୟ ପଦରେ ଯୋଗଦାନ କରିଥିଲେ ।

ଏକ ଆଦର୍ଶ ଓ ନିଷ୍ଠାପର ଅଧ୍ୟାପକ, ଉଦୀୟମାନ ଗବେଷକ ଓ ବିଶିଷ୍ଟ ଶିକ୍ଷାବିତ୍ ରୂପେ ପ୍ରଫେସର ପରିଜାଙ୍କ ବ୍ୟକ୍ତିତ୍ୱର ବିକାଶ ରେଭେନ୍ସା କଲେଜରେ ୧୯୨୧ରୁ ୧୯୪୫ ମସିହା ଦୀର୍ଘ ଚବିଶ ବର୍ଷର ଅବସ୍ଥାନ ସମୟରେ ସଂଘଟିତ ହୋଇଥିଲା । ୧୯୨୧ ମସିହା ଅଗଷ୍ଟ ମାସରୁ ୧୯୩୮ ମସିହା ଫେବୃୟାରୀ ମାସ ପର୍ଯ୍ୟନ୍ତ ପ୍ରଫେସର ପରିଜା ଉଦ୍ଭିଦବିଜ୍ଞାନର ମୁଖ୍ୟ ଅଧ୍ୟାପକ ପଦ ଅଳଙ୍କୃତ କରିବା ସଙ୍ଗେ ସଙ୍ଗେ ସେ ଉକ୍ତ କଲେଜର ୱେଷ୍ଟ ହଷ୍ଟେଲ୍‌ର ୱାର୍ଡ଼େନ୍ ପଦରେ ଅଧିଷ୍ଠିତ ହୋଇ ସୁଚାରୁରୂପେ ସମସ୍ତ କାର୍ଯ୍ୟ ସମ୍ପାଦନ କରିଥିଲେ । ଠିକ୍ ଯେପରି ବିଲାତରେ ଅଧ୍ୟାପକମାନଙ୍କ ବ୍ୟକ୍ତିଗତ ତତ୍ତ୍ୱାବଧାନ ଯୋଗୁଁ ଛାତ୍ରମାନଙ୍କର ଅନ୍ତର୍ନିହିତ ଶକ୍ତିର ବିକାଶ ଘଟିଥାଏ, ଠିକ୍ ସେହିଭଳି ପରୀକ୍ଷା ପ୍ରଫେସର ପରିଜା ରେଭେନ୍ସା କଲେଜରେ କରିଥିଲେ, ଯାହାଫଳରେ କି ଓଡ଼ିଶାରେ ବହୁ ବୁଦ୍ଧିମାନ ମେଧାବୀ ଛାତ୍ରଛାତ୍ରୀଙ୍କର ବିକାଶ ଘଟି ପରବର୍ତ୍ତୀ ସମୟରେ ସେମାନେ ଓଡ଼ିଶା ଓ ଭାରତର ବିଭିନ୍ନ ବିଭାଗରେ ଉଚ୍ଚ ପଦବୀରେ ନିଯୁକ୍ତ ହୋଇ ଓଡ଼ିଶାର ତଥା ଭାରତର ବହୁମୁଖୀ ବିକାଶର ପଥ ଉନ୍ମୁକ୍ତ କରିଯାଇଛନ୍ତି ।

ପ୍ରଫେସର ପରିଜା ରେଭେନ୍ସା କଲେଜରେ ମୁଖ୍ୟ ଅଧ୍ୟାପକ ହୋଇ ଯୋଗଦାନ କଲାବେଳେ ଉଦ୍ଭିଦବିଜ୍ଞାନରେ ଆଇ.ଏ. ଓ ଆଇ.ଏସ୍‌ସି. ଶ୍ରେଣୀରେ ଛାତ୍ରମାନେ ଉଦ୍ଭିଦବିଜ୍ଞାନକୁ କେବଳ ଏକ ଐଚ୍ଛିକ ୪ର୍ଥ ବିଷୟ ରୂପେ ଅଧ୍ୟୟନ କରିପାରୁଥିଲେ । ପ୍ରଫେସର ପରିଜାଙ୍କ ବଳିଷ୍ଠ ବ୍ୟକ୍ତିତ୍ୱ ଓ ପ୍ରଚେଷ୍ଟା ଫଳରେ ୧୯୨୪ ମସିହାରେ ଉଦ୍ଭିଦବିଜ୍ଞାନରେ ବି.ଏସ୍‌ସି. ପାସ୍ ଶ୍ରେଣୀ ଓ ୧୯୩୦ ମସିହାରେ ବି.ଏସ୍‌ସି. ଅନର୍ସ ଶ୍ରେଣୀ ଖୋଲିଥିଲା ।

ରେଭେନ୍ସା କଲେଜରେ କେବଳ ବି.ଏସ୍‌ସି. ଅନର୍ସ ଶ୍ରେଣୀରେ ଉଦ୍ଭିଦବିଜ୍ଞାନ ଶିକ୍ଷାଦାନ କରାଯାଉଥିଲେ ମଧ୍ୟ ପ୍ରଫେସର ପରିଜା ରେଭେନ୍ସା କଲେଜରେ ଉଦ୍ଭିଦବିଜ୍ଞାନର ଗବେଷଣା କାର୍ଯ୍ୟର ମୂଳଦୁଆ ପକାଇଥିଲେ । ତାଙ୍କ ତତ୍ତ୍ୱାବଧାନରେ ଓଡ଼ିଶା ଓ ଭାରତର ବିଭିନ୍ନ ପ୍ରଦେଶରୁ ବହୁ ମେଧାବୀ ଛାତ୍ର ରେଭେନ୍ସା କଲେଜର ଉଦ୍ଭିଦବିଜ୍ଞାନ ବିଭାଗରେ ଗବେଷଣା କାର୍ଯ୍ୟରେ ଯୋଗଦାନ କରିଥିଲେ । ୧୯୩୮ ମସିହା ଫେବୃଆରୀ ମାସରେ ପ୍ରଫେସର ପରିଜା ରେଭେନ୍ସା କଲେଜର ଅଧ୍ୟକ୍ଷ ପଦକୁ ଉନ୍ନୀତ ହୋଇଥିଲେ ଓ ୧୯୪୫ ମସିହା ଏପ୍ରିଲ୍ ମାସ ପର୍ଯ୍ୟନ୍ତ ଉକ୍ତ ପଦରେ ଅଧିଷ୍ଠିତ ଥିଲେ ।

ଉଦ୍ଭିଦବିଜ୍ଞାନ ବିଭାଗର ମୁଖ୍ୟ ଅଧ୍ୟାପକ ଥିଲାବେଳେ ପ୍ରଫେସର ପରିଜା ୧୯୨୮ ମସିହାରେ ଦ୍ୱିତୀୟଥର ପାଇଁ ବିଲାତ ଯାତ୍ରା କରିଥିଲେ । ଏହି ସମୟରେ ସେ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ଆଗରୁ ଚେରିଲରେଲ ଗଛର ପତ୍ର ଓ ସେଉ ଫଳର ଶ୍ୱାସକ୍ରିୟା ସମ୍ବନ୍ଧରେ ଗବେଷଣା କରିଥିବା ବିଷୟବସ୍ତୁକୁ ବିଲାତର ଏକ ପ୍ରସିଦ୍ଧ ବିଜ୍ଞାନ ପତ୍ରିକା 'ପ୍ରସିଡିଙ୍ଗ୍ସ ଅଫ୍ ରୟାଲ୍ ସୋସାଇଟି, ଲଣ୍ଡନ'ରେ ଦୁଇଟି ବୈଜ୍ଞାନିକ ପ୍ରବନ୍ଧ ଆକାରରେ ପ୍ରକାଶ କରାଇଥିଲେ ଓ ତାଙ୍କର ଗବେଷଣାଲବ୍ଧ ଫଳାଫଳରୁ ସମ୍ଭୂତ ତଥ୍ୟରାଜିକୁ ଆଧାର କରି ଅଧ୍ୟାପକ ଏଫ୍.ଏଫ୍. ବ୍ଲାକ୍‌ମ୍ୟାନ୍ ଏକ ଅତି ସାରଗର୍ଭକ ତାତ୍ତ୍ୱିକ ପ୍ରବନ୍ଧ ମଧ୍ୟ ପ୍ରକାଶ କରିଥିଲେ ।

ଏହି ମୌଳିକ ଗବେଷଣାତ୍ମକ ପ୍ରବନ୍ଧଗୁଡ଼ିକ ପ୍ରକାଶିତ ହେବା ପରେ ପ୍ରଫେସର ପରିଜାଙ୍କ ସୁଖ୍ୟାତି ଉଦ୍ଭିଦବିଜ୍ଞାନର ଗବେଷଣା କ୍ଷେତ୍ରରେ କେବଳ ଭାରତବର୍ଷରେ ନୁହେଁ ସାରା ପୃଥିବୀରେ ବ୍ୟାପିଯାଇଥିଲା । ୧୯୩୦ ମସିହାରେ ଆହ୍ଲାବାଦରେ ଅନୁଷ୍ଠିତ ହୋଇଥିବା ନିଖିଳ ଭାରତ ବିଜ୍ଞାନ କଂଗ୍ରେସର ବାର୍ଷିକ ଅଧିବେଶନରେ ସେ ଉଦ୍ଭିଦବିଜ୍ଞାନ' ବିଭାଗର ସଭାପତି ଆସନ ଅଳଙ୍କୃତ କରିବାର ସମ୍ମାନ ଲାଭ କରିଥିଲେ ଓ ଉଦ୍ଭିଦର ଶ୍ୱାସକ୍ରିୟା ସମ୍ବନ୍ଧରେ ଏକ ମୌଳିକ ବହୁ ତଥ୍ୟ ସମ୍ବଳିତ ଗବେଷଣାତ୍ମକ ଅଭିଭାଷଣ ପ୍ରଦାନ କରିଥିଲେ । ୧୯୩୧ ମସିହାରେ ପ୍ରଫେସର ପରିଜା ନାଗପୁରଠାରେ ଅନୁଷ୍ଠିତ ଭାରତୀୟ ଉଦ୍ଭିଦ ବିଜ୍ଞାନ ସୋସାଇଟିର ସଭାପତି ଆସନ ଅଳଙ୍କୃତ କରି ତା'ର ବାର୍ଷିକ ସମ୍ମିଳନୀରେ 'Law of Modifications' ଶୀର୍ଷକ ଏକ ପାଣ୍ଡିତ୍ୟପୂର୍ଣ୍ଣ ଭାଷଣ ପ୍ରଦାନ କରିଥିଲେ ।

ପ୍ରଫେସର ପରିଜାଙ୍କ ଗୁରୁ ଅଧ୍ୟାପକ ଡକ୍ଟର ଏଫ୍. ଏଫ୍. ବ୍ଲାକ୍‌ମ୍ୟାନ୍ ଓ ଏଫ୍.ଆର୍.ଏସ୍.ଙ୍କ ମୃତ୍ୟୁ ପରେ ୧୯୫୪ ମସିହାରେ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ଉଦ୍ଭିଦର ଶ୍ୱାସକ୍ରିୟା ସମ୍ବନ୍ଧରେ 'Analytic Studies in Plant Respiration' ଶୀର୍ଷକ ଏକ ପୁସ୍ତକ ପ୍ରକାଶିତ ହେଲା । ଏହି ପୁସ୍ତକରେ ପରିଜା କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ଗବେଷକ ଛାତ୍ର ରୂପେ ଉଦ୍ଭିଦର ଶ୍ୱାସକ୍ରିୟା ସମ୍ବନ୍ଧରେ କରିଥିବା ଗବେଷଣାରାଜି ଅନ୍ୟ ନଅଟି ପ୍ରବନ୍ଧ ଆକାରରେ ପ୍ରକାଶିତ ହୋଇଛି । ଏହି ପୁସ୍ତକଟିର ଲେଖକ ରୂପେ ଅଧ୍ୟାପକ ଏଫ୍.ଏଫ୍. ବ୍ଲାକ୍‌ମ୍ୟାନ୍‌ଙ୍କ ନାମ ରହିଛି ଓ ଏହାର ମୁଖବନ୍ଧ ଲେଖିଛନ୍ତି ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଅଧ୍ୟାପକ ଜି.ଇ.ବ୍ରିଗସ୍ । ସେଥିରେ ସେ ଏହି ପୁସ୍ତକରେ ସନ୍ନିହିତ ସମସ୍ତ ଗବେଷଣା ପ୍ରାଣକୃଷ୍ଣ ପରିଜା କରିଛନ୍ତି ବୋଲି ଉଲ୍ଲେଖ କରିଛନ୍ତି ।

ଛାତ୍ରାବସ୍ଥାରେ ପରିଜା କରିଥିବା ଉଦ୍ଭିଦର ଶ୍ୱାସକ୍ରିୟା ସମ୍ବନ୍ଧୀୟ ଗବେଷଣା କାର୍ଯ୍ୟର ଉଲ୍ଲେଖ ଭାରତ ତଥା ପୃଥିବୀର ବିଭିନ୍ନ ଦେଶରୁ ପ୍ରକାଶିତ ବହୁ ପାଠ୍ୟପୁସ୍ତକ

ଓ ରେଫରେନ୍ସ ପୁସ୍ତକରେ ରହିଅଛି । ବିଲାତର ଇ.ସି.ବାର୍ଟନରାଇଟ୍, ୱାଲଟର ଷ୍ଟାଇଲ୍ସ ଓ ଲିଚ୍, ମେରିଥନ୍ ଥମାସ୍, ଡବ୍ଲୁ.ଓ.ଜେମସ୍ ଏବଂ ଯୁକ୍ତରାଷ୍ଟ୍ର ଆମେରିକାର ଇ.ସି. ମିଲର୍ ପ୍ରଭୃତି ପ୍ରଖ୍ୟାତ ମନୀଷୀଗଣ ସେମାନଙ୍କ ପୁସ୍ତକରେ ପରିଜାଙ୍କ ଉଦ୍ଭିଦ ଶ୍ୱାସକ୍ରିୟା ସମ୍ବନ୍ଧୀୟ ତଥ୍ୟାବଳୀର ବିଶଦ ଆଲୋଚନା କରିଛନ୍ତି । ଉଦ୍ଭିଦର ଶ୍ୱାସକ୍ରିୟା ସମ୍ବନ୍ଧୀୟ ତାଙ୍କ ମୌଳିକ ଗବେଷଣାରୁ ସମ୍ଭୂତ ତଥ୍ୟରାଜି ବ୍ଲାକ୍‌ମ୍ୟାନ୍ ଓ ପରିଜା ଥିଓରୀ ନାମରେ ବିଦିତ ।

ରେଭେନ୍ସା କଲେଜରେ ପ୍ରଫେସର ପରିଜାଙ୍କ ତତ୍ତ୍ୱାବଧାନରେ ଉଦ୍ଭିଦର ଶ୍ୱାସକ୍ରିୟା ସମ୍ବନ୍ଧରେ ବିହାରର ଛାତ୍ର ଅବଧ ବିହାରୀ ଶରଣ, ଓଡ଼ିଶାର ବଂଶୀଧର ସାମନ୍ତରାୟ ଓ ଏହି ଲେଖକ ବିଭିନ୍ନ ଦୃଷ୍ଟିକୋଣରୁ ଗବେଷଣା କରିଛନ୍ତି । ଅବଧ ବିହାରୀ ଶରଣ ସାରୁ ଗଛର ଶ୍ୱାସକ୍ରିୟା, ବଂଶୀଧର ସାମନ୍ତରାୟ Scirpus articulatus Linn. ନାମକ ଏକ ଉଭୟଚର ଉଦ୍ଭିଦର ଶ୍ୱାସକ୍ରିୟା ଓ ଏହି ଲେଖକ ଧାନର ଅଙ୍କୁରୋଦ୍ଗମ ସମୟରେ ଶ୍ୱାସକ୍ରିୟା ସମ୍ବନ୍ଧରେ ଗବେଷଣା କରିଛନ୍ତି ।

ପ୍ରଫେସର ପରିଜା ବିଲାତିଦଳ (Eichhornia crassipes (mart) solms) ଉପରେ ବହୁ ଗବେଷଣା କରିଛନ୍ତି । ଏହି ଦଳ ଗଡ଼ିଆ, ପୋଖରୀ, ନଈ, ନାଳ ସବୁଆଡ଼େ ବ୍ୟାପିଯାଇ ମେଲେରିଆ ଜ୍ୱର କରାଉଥିବା ମଶାମାନଙ୍କର ପ୍ରଜନନର ଏକ କ୍ଷେତ୍ର ରୂପେ ବିସ୍ତାର ଲାଭ କରୁଛି । ଆଉ ମଧ୍ୟ ଏହି ଦଳ ପାନୀୟ ଜଳକୁ ଦୂଷିତ କରିଦେଉଛି, ମାଛଚାଷ ଓ ନୌକା ଚଳାଚଳରେ ବ୍ୟାଘାତ ସୃଷ୍ଟି କରୁଛି । ଏହି ବିଲାତିଦଳର ଜୀବନଚକ୍ର ଅନୁଧ୍ୟାନ କରି ଏହାର ନିରାକରଣର ପନ୍ଥା ଉଦ୍ଭାବନ କରିବାପାଇଁ ଇମ୍ପିରିୟାଲ୍ କାଉନ୍‌ସିଲ୍ ଅଫ୍ ଏଗ୍ରିକଲ୍‌ଚରାଲ୍ ରିସର୍ଚ୍ଚ ପ୍ରଫେସର ପରିଜାଙ୍କୁ ଆର୍ଥିକ ଅନୁଦାନ ପ୍ରଦାନ କରିଥିଲା । ଏହି କାର୍ଯ୍ୟରେ ତାଙ୍କ ତତ୍ତ୍ୱାବଧାନରେ ବଙ୍ଗଳା ପ୍ରଦେଶରୁ ସୌରୀନ୍ଦ୍ର ମୋହନ ସରକାର ଓ ବୈକୁଣ୍ଠ କୁମାର କର; ବିହାର ପ୍ରଦେଶରୁ ଟି.ସି.ଏନ୍. ସିଂହ, ଅବଧ ବିହାରୀ ଶରଣ, ବି.ଏନ୍. ସିହ୍ନା ଏବଂ ଓଡ଼ିଶାରୁ ବି.କେ. ପଣ୍ଡା, ବିରାଜ ମୋହନ ସେନାପତି, ବିଶ୍ୱନାଥ ସାହୁ ଓ ଜଗନ୍ନାଥ ଦାସ ଗବେଷଣା କାର୍ଯ୍ୟ କରିଥିଲେ । ବିଲାତିଦଳର ବୀଜ ପଙ୍କରେ ପଡ଼ିରହି କିଭଳି ଛଅ ସାତ ବର୍ଷ ପାଇଁ ଜୀବନୀଶକ୍ତି ଧାରଣ କରି ସୁପ୍ତ ଅବସ୍ଥାରେ ରହିପାରେ ଏବଂ ପରେ ସେଥିରୁ ଅଙ୍କୁରୋଦ୍‌ଗମ ହୋଇ ତଥା ଅଙ୍ଗଜ ପ୍ରଜନନ ଏଭଳି ଉଭୟ ଉପାୟରେ ଏହି ଗଛ କିପରି ବିଚକ୍ଷଣଭାବରେ ନିଜର ବଂଶବୃଦ୍ଧି କରିପାରେ ଏବଂ କପର ସଲ୍‌ଫେଟ୍ (ତୁତିଆ) ନାମକ ଏକ ରାସାୟନିକ ପଦାର୍ଥର ଦ୍ରବଣ ସିଞ୍ଚନ କରି ଏହି ଅନାବନା ଦଳକୁ କିଭଳି ମାରି ଦିଆଯାଇପାରିବ, ସେ ସମ୍ବନ୍ଧରେ ବହୁ ନୂତନ ତଥ୍ୟ ଲୋକଲୋଚନକୁ ଆଣିଥିଲେ ।

ବିଭିନ୍ନ ଉଦ୍ଭିଦର କିଭଳି ଭାବରେ ପୃଥିବୀର ମାଧ୍ୟାକର୍ଷଣ ଶକ୍ତି, ଆଲୋକ, ଉତ୍ତାପ ଓ ଜଳୀୟବାଷ୍ପ ପ୍ରଭୃତି ବାହ୍ୟ ଶକ୍ତିମାନଙ୍କ ଦ୍ୱାରା ପ୍ରଭାବିତ ହେଉଛନ୍ତି, ସେ ସମ୍ବନ୍ଧରେ କେତେକ ଗବେଷକ ଛାତ୍ର ପ୍ରଫେସର ପରିଜାଙ୍କ ତତ୍ତ୍ୱାବଧାନରେ ଗବେଷଣା କରିଛନ୍ତି । Bridelia pubescens Kurz. ନାମକ ବୃକ୍ଷର ଗଣ୍ଡିରେ ଜାତ ହେଉଥିବା କଣ୍ଟାଗୁଡ଼ିକର ପ୍ରକୃତି ସମ୍ବନ୍ଧରେ ଓ କଖାରୁମଞ୍ଜିରୁ ଅଙ୍କୁରୋଦ୍‌ଗମରେ ବାହ୍ୟ ଶକ୍ତିଗୁଡ଼ିକର ପ୍ରଭାବ ଉପରେ ପରଶୁରାମ ମିଶ୍ର; ହରଗୌରା ଗଛର ଫଳର ସ୍ୱତଃ ସ୍ଫୁଟନ ସମ୍ବନ୍ଧରେ ପ୍ରଭାସ ମଲ୍ଲିକ; ଅଶ୍ୱତ୍ଥପତ୍ରର ତ୍ୱଗାବରଣର ଗଠନ ଓ କାର୍ଯ୍ୟକାରିତା ସମ୍ବନ୍ଧରେ ପ୍ରଭାସ ମଲ୍ଲିକ; Tecoma capensis Lindl ନାମକ ଆରୋହୀ ଗଛର ଫୁଲରେ କୀଟପତଙ୍ଗମାନଙ୍କ ଦ୍ୱାରା କିପରି ପରାଗ ସଙ୍ଗମ ସଂଘଟିତ ହେଉଛି ସେ ସମ୍ବନ୍ଧରେ କାଳିକିଙ୍କର ସାମଲ; ବିଭିନ୍ନ ପ୍ରକାର ବୀଜରେ ସଂରକ୍ଷିତ ହୋଇ ରହିଥିବା ଶ୍ୱେତସାର ଓ ସ୍ନେହସାର ଜାତୀୟ ଖାଦ୍ୟପଦାର୍ଥର ତାପଶକ୍ତି ସହନଶୀଳତା ଉପରେ ପ୍ରଭାସ ମଲ୍ଲିକ; ବିଭିନ୍ନ ଗଛର ପତ୍ରର ବୟସ ଅନୁସାରେ ପ୍ରସ୍ୱେଦନର ପରିମାଣର ତାରତମ୍ୟ ସମ୍ବନ୍ଧରେ ବଂଶୀଧର ସାମନ୍ତରାୟ; ଚିଲିକା ହ୍ରଦରେ କେଉଁ କେଉଁ ଋତୁରେ ଜଳର ଲବଣ ଅଂଶ ଓ ଗଭୀରତା ଉପରେ ନିର୍ଭର କରି କେଉଁ କେଉଁ ଶୈବାଳ ଜାତ ହେଉଛନ୍ତି ଏବଂ ସେଗୁଡ଼ିକର ପ୍ରକୃତି ଓ ଉପାଦେୟତା ସମ୍ବନ୍ଧରେ ବଂଶୀଧର ପରିଜା ବିଭିନ୍ନ ବୈଜ୍ଞାନିକ ଦୃଷ୍ଟିକୋଣରୁ ଗବେଷଣା କରିଛନ୍ତି ।

ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ପଦରୁ ଅବସର ଗ୍ରହଣ କଲା ପରେ ପ୍ରଫେସର ପରିଜା ୧୯୬୭ ମସିହାରେ ଧାନବିଲରେ ଜାତ ହେଉଥିବା ଶୈବାଳମାନଙ୍କ ସମ୍ବନ୍ଧରେ ଗବେଷଣା ଭାରତୀୟ କୃଷି ଅନୁସନ୍ଧାନ ସମିତିର ଆର୍ଥିକ ସହାୟତାରେ ରେଭେନ୍ସା କଲେଜରେ କାର୍ଯ୍ୟକାରୀ କରିଥିଲେ । ଏହି ଗବେଷଣାରେ ତାଙ୍କ ତତ୍ତ୍ୱାବଧାନରେ ହରିହର ପଟ୍ଟନାୟକ, ଏସ୍. ଧର୍ମାନୀ ରାଓ, ଉତ୍ତରା ରାୟ ଓ ରବୀନ୍ଦ୍ର ନାଥ ମିଶ୍ର କାର୍ଯ୍ୟ କରି କେତେଗୁଡ଼ିଏ ଉତ୍କୃଷ୍ଟ ଗବେଷଣାତ୍ମକ ପ୍ରବନ୍ଧ ପ୍ରକାଶ କରିଛନ୍ତି ।

୧୯୩୭ରୁ ୧୯୪୫ ମସିହା ମଧ୍ୟରେ ରେଭେନ୍ସା କଲେଜରେ ପ୍ରଫେସର ପରିଜା ଧାନଗଛର ଶରୀରତତ୍ତ୍ୱ ସମ୍ବନ୍ଧରେ ବିଭିନ୍ନ ଗବେଷଣା କରିବାପାଇଁ ଓଡ଼ିଶା ସରକାରଙ୍କ ତରଫରୁ ଆର୍ଥିକ ଅନୁଦାନ ଲାଭ କରିଥିଲେ । ବନ୍ୟାଜଳ ପ୍ଲାବିତ ଚାଷଜମି, ବଙ୍ଗୋପସାଗର ଓ ଚିଲିକା ହ୍ରଦର ଲୁଣି ପାଣିଦ୍ୱାରା ପ୍ଲାବିତ ଚାଷଜମି ଓ ଅନାବୃଷ୍ଟି ଯୋଗୁଁ ମରୁଡ଼ି ପ୍ରପୀଡ଼ିତ ଚାଷଜମି ଏଭଳି ବିଲରେ ଦୈବୀ ଦୁର୍ବିପାକ ଅବସ୍ଥାରେ କିପରି ଧାନଗଛ ବଞ୍ଚି ରହିପାରିବ ଓ ଫଳପ୍ରସୂ ହୋଇପାରିବ ସେ ସମ୍ବନ୍ଧରେ ପ୍ରଫେସର ପରିଜା ଓଡ଼ିଶାର ଗବେଷକ ଛାତ୍ର ଜି. ଭେଙ୍କଟାଚଳମ୍ ଓ ଜଗନ୍ନାଥ ଦାସ ଏବଂ କେରଳର କେ.ପି.ପିଲେଙ୍କ ସାହାଯ୍ୟରେ ଅତି ଉପାଦେୟ ଓ ମୌଳିକ ତଥ୍ୟ ସମ୍ବଳିତ ବହୁ ଗବେଷଣା କରିଛନ୍ତି । ଜି.ଭେଙ୍କଟାଚଳମ୍ ପ୍ରଫେସର ପରିଜାଙ୍କ

ତତ୍ତ୍ୱାବଧାନରେ ଧାନଗଛର ଶରୀର ଗଠନ ଓ ଶରୀରତତ୍ତ୍ୱ ସମ୍ବନ୍ଧରେ ଗବେଷଣା କରି ପାଟନା ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଡିଗ୍ରୀରେ ଭୂଷିତ ହୋଇଥିଲେ ।

ଅମରୀ (Ipomoea crassicaulis (Benth) Robinson ନାମକ ଏକ ଅନାବନା ଗଛକୁ ତାମିଲନାଡୁରୁ ଅଣାଯାଇ ଓଡ଼ିଶାରେ ଲଗାଗଲା । ଏହା ସୁଖ ବଦଳରେ ଦୁଃଖଦାୟକ ହେଲା । ଏହି ଅନାବନା ଗଛ ବହୁଳ ଭାବରେ ପ୍ରସାର ଲାଭ କରି ଚାଷୀର ବହୁ କ୍ଷତି ସାଧନ କରୁଅଛି । ଏହି ଗଛର ଶରୀରର ପେଶୀ ବିଜ୍ଞାନ ଓ ଜୀବନପ୍ରକ୍ରିୟା ସମ୍ବନ୍ଧରେ ପ୍ରଫେସର ପରିଜାଙ୍କ ତତ୍ତ୍ୱାବଧାନରେ ଗବେଷଣା କରି ବାଞ୍ଛାନିଧି ମିଶ୍ର ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଉପାଧିରେ ଭୂଷିତ ହୋଇଛନ୍ତି । ମୋଟ ଉପରେ ରେଭେନ୍ସା କଲେଜରେ ଉଦ୍ଭିଦବିଜ୍ଞାନ ଗବେଷଣା କ୍ଷେତ୍ରରେ ପ୍ରଫେସର ପରିଜା ଯେଉଁ ବଳିଷ୍ଠ ମୂଳଦୁଆ ପକାଇ ଯାଇଛନ୍ତି, ତାହାରି ଉପରେ ଆଧାର କରି ପରବର୍ତ୍ତୀ ବର୍ଷଗୁଡ଼ିକରେ ରେଭେନ୍ସା କଲେଜ କେବଳ ଭାରତବର୍ଷରେ ନୁହେଁ ଆନ୍ତର୍ଜାତିକ କ୍ଷେତ୍ରରେ ଉଦ୍ଭିଦବିଜ୍ଞାନର ଏକ ପ୍ରସିଦ୍ଧ ଗବେଷଣାଗାର ରୂପେ ଖ୍ୟାତିଲାଭ କରିଛି ।

ଗବେଷଣା କ୍ଷେତ୍ରରେ ଉତ୍କର୍ଷ ଯୋଗୁଁ ପ୍ରଫେସର ପରିଜାଙ୍କୁ ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରରେ ବହୁ ସମ୍ମାନ ମିଳିଛି । ସେ ପାଞ୍ଚବର୍ଷ ପାଇଁ ଭାରତୀୟ ବିଜ୍ଞାନ କଂଗ୍ରେସ ଆସୋସିଏସନ୍‌ର ସମ୍ପାଦକ ଦାୟିତ୍ୱ ବହନ କରି ସୁଚାରୁରୂପେ କାର୍ଯ୍ୟ କରିଥିଲେ । ୧୯୬୦ ମସିହାରେ ବମ୍ବେଠାରେ ଅନୁଷ୍ଠିତ ହୋଇଥିବା ଭାରତୀୟ ବିଜ୍ଞାନ କଂଗ୍ରେସର ବାର୍ଷିକ ଅଧିବେଶନରେ ସେ ମୁଖ୍ୟ ସଭାପତି ଆସନ ଅଳଙ୍କୃତ କରିଥିଲେ । କାନାଡ଼ାର ମଣ୍ଟ୍ରିଏଲ୍‌ଠାରେ ଅନୁଷ୍ଠିତ ହୋଇଥିବା ଆନ୍ତର୍ଜାତିକ ଉଦ୍ଭିଦବିଜ୍ଞାନ କଂଗ୍ରେସର ଉଦ୍ଭିଦ ଶରୀରତତ୍ତ୍ୱ ଶାଖାର ଉପସଭାପତି ଆସନ ମଣ୍ଡନ କରି ସମ୍ମାନିତ ହୋଇଥିଲେ ।

କଲିକତାସ୍ଥିତ ନାସନାଲ୍ ଇନ୍‌ଷ୍ଟିଚିଉଟ୍ ଅଫ୍ ସାଇନ୍‌ସେସ୍ (ବର୍ତ୍ତମାନ ଏହା ନାସନାଲ୍ ଏକାଡ଼େମି ଅଫ୍ ସାଇନ୍ସେସ୍ ନାମରେ ନାମିତ ହୋଇଛି), ଆହ୍ଲାବାଦସ୍ଥିତ ନାସନାଲ୍ ଏକାଡେମୀ ଅଫ୍ ସାଇନ୍ସେସ୍, ଇଣ୍ଡିଆ ଏବଂ ବାଙ୍ଗାଲୋରସ୍ଥିତ ଇଣ୍ଡିଆନ୍ ଏକାଡେମି ଅଫ୍ ସାଇନ୍ସେସ୍ ଭଳି ଖ୍ୟାତିସମ୍ପନ୍ନ ବୈଜ୍ଞାନିକ ସମିତିବୃନ୍ଦ ପ୍ରଫେସର ପରିଜାଙ୍କୁ ସେମାନଙ୍କ ଅନୁଷ୍ଠାନର ସ୍ଥାପୟିତା ଫେଲୋ ରୂପେ ଗ୍ରହଣ କରି ସମ୍ମାନ ପ୍ରଦର୍ଶନ କରିଥିଲେ । ପାଟନା ବିଶ୍ୱବିଦ୍ୟାଳୟ, ଉତ୍କଳ ବିଶ୍ୱବିଦ୍ୟାଳୟ, ଶ୍ରୀ ଭେଙ୍କଟେଶ୍ୱର ବିଶ୍ୱବିଦ୍ୟାଳୟ, ସମ୍ବଲପୁର ବିଶ୍ୱବିଦ୍ୟାଳୟ ଏବଂ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ପ୍ରଫେସର ପରିଜାଙ୍କୁ ସମ୍ମାନସୂଚକ ଡି.ଏସ୍‌ସି. ଉପାଧିରେ ଭୂଷିତ କରି ନିଜକୁ ଗୌରବାନ୍ୱିତ କରିଥିଲେ । କଲିକତାସ୍ଥିତ ରୟାଲ୍ ଏସିଆଟିକ୍

ସୋସାଇଟି ପ୍ରଫେସର ପରିଜାଙ୍କୁ ତାଙ୍କ ଶିକ୍ଷା ଓ ବୈଜ୍ଞାନିକ ଗବେଷଣାର ଉତ୍କର୍ଷ ପାଇଁ ବର୍କଲେ ମେମୋରିଆଲ୍ ସ୍ୱର୍ଣ୍ଣପଦକରେ ଭୂଷିତ କରି ସମ୍ମାନ ପ୍ରଦର୍ଶନ କରିଥିଲେ । ସେହିଭଳି ଭାରତୀୟ ଉଦ୍ଭିଦବିଜ୍ଞାନ ସୋସାଇଟି ତାଙ୍କୁ ବୀରବଲ୍ ସାହାଣୀ ସ୍ୱର୍ଣ୍ଣପଦକରେ ମଣ୍ଡିତ କରିଥିଲେ ।

ବିଭିନ୍ନ ସମୟରେ ଦୀର୍ଘ ପନ୍ଦର ବର୍ଷ ପାଇଁ ପ୍ରଫେସର ପରିଜା ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ପଦ ଓ ଏକବର୍ଷ ପାଇଁ ଏହାର ଉପ-କୁଳାଧିପତି (ପ୍ରୋ-ଚାନ୍ସେଲର୍) ପଦ ଅଳଙ୍କୃତ କରିଥିଲେ ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟର ଶୈଶବରୁ ଏହାର କ୍ରମବିକାଶ କରାଇ ବାଣୀବିହାର କ୍ୟାମ୍ପସ୍ ଗଠନ ଓ କଟକରୁ ବିଶ୍ୱବିଦ୍ୟାଳୟକୁ ବାଣୀବିହାରକୁ ସ୍ଥାନାନ୍ତରୀକରଣ, ଏଥିରେ ଉତ୍କୃଷ୍ଟ ଶିକ୍ଷାଦାନ ଓ ଗବେଷଣାର କ୍ଷେତ୍ର ପ୍ରସାର ପୂର୍ବକ ଏହାର ବହୁମୁଖୀ ଉନ୍ନତି ସାଧନ କରାଇଛନ୍ତି ।

୧୯୩୦ ମସିହାରୁ ୧୯୩୭ ମସିହା ପର୍ଯ୍ୟନ୍ତ ପ୍ରଫେସର ପରିଜା ଭାରତୀୟ ଉଦ୍ଭିଦବିଦ୍ୟା ସଂସଦର ବିଜ୍ଞାନ ମୁଖପତ୍ରର ମୁଖ୍ୟ ସମ୍ପାଦକ ପଦ ବରଣ କରି ଏହି ପତ୍ରିକାର ଗୁଣାତ୍ମକ ମାନର ବହୁ ଉନ୍ନତି ସାଧନ କରାଇଥିଲେ । ୧୯୪୫ ମସିହାରୁ ୧୯୪୮ ମସିହା ପର୍ଯ୍ୟନ୍ତ ଓଡ଼ିଶା ସରକାରଙ୍କ ଦ୍ୱାରା ନୂତନ ହୋଇ ଗଠିତ ହୋଇଥିବା କୃଷି ବିଭାଗର ପ୍ରଥମ ନିର୍ଦ୍ଦେଶକ ରୂପେ ପ୍ରଫେସର ପରିଜା ନିଯୁକ୍ତ ହୋଇ କୃଷି ଓ ଅଧିକ ଖାଦ୍ୟ ଉତ୍ପାଦନ କ୍ଷେତ୍ରରେ ବହୁମୁଖୀ ଉନ୍ନତି ସାଧନ କରିପାରିଛନ୍ତି ।

୧୯୪୯ ମସିହାରୁ ୧୯୫୧ ମସିହା ପର୍ଯ୍ୟନ୍ତ ପ୍ରଫେସର ପରିଜା ପ୍ରଖ୍ୟାତଯଶା ପଣ୍ଡିତ ମଦନମୋହନ ମାଲବ୍ୟଙ୍କ ଦ୍ୱାରା ପ୍ରତିଷ୍ଠିତ ପ୍ରସିଦ୍ଧ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ଉପ-କୁଳପତି (ପ୍ରୋ-ଭାଇସ୍‌ଚାନ୍ସେଲର୍) ଓ ଉଦ୍ଭିଦବିଜ୍ଞାନର ଅବୈତନିକ ପ୍ରଫେସର ପଦରେ ଅଧିଷ୍ଠିତ ଥାଇ ସ୍ୱୀୟ କର୍ମକୁଶଳତା ବଳରେ ଶିକ୍ଷକ ଓ ଛାତ୍ର ସମସ୍ତଙ୍କର ପ୍ରୀତିଭାଜନ ହୋଇଥିଲେ । ୧୯୫୨ ମସିହାରୁ ୧୯୫୫ ମସିହା ପର୍ଯ୍ୟନ୍ତ ପ୍ରଫେସର ପରିଜା ବାଲିକୁଦା ନିର୍ବାଚନମଣ୍ଡଳୀରୁ ଏକ ନିର୍ଦ୍ଦଳୀୟ ବ୍ୟକ୍ତି ରୂପେ ଓଡ଼ିଶା ବିଧାନସଭାର ସଦସ୍ୟ ରୂପେ ନିର୍ବାଚିତ ହୋଇ ଓଡ଼ିଶାର ସମୂହ ଉନ୍ନତି ପାଇଁ ବିଶେଷ କାର୍ଯ୍ୟ କରିଥିଲେ । ବିଧାନସଭାରେ ସେ କଟକ ସହରର ଉନ୍ନତି ପାଇଁ ଏକ ବେସରକାରୀ ବିଲ୍ ଉପସ୍ଥାପନ କରି ଏହି ସର୍ବପୁରାତନ ସହରର ଉନ୍ନତିକଳ୍ପେ ଯଥୋଚିତ ଧ୍ୟାନ ପ୍ରଦାନ କରିଥିଲେ । ସେତେବେଳେ ନିୟମ ଥିଲା ଯେ ଜଣେ ବ୍ୟକ୍ତି ନିର୍ବାଚନ କାର୍ଯ୍ୟରେ ସାତହଜାର ଟଙ୍କା ଖର୍ଚ୍ଚ କରିପାରିବ ଓ ତାହାର ଟିକିନିଖି ହିସାବ ନିର୍ବାଚନ କମିଶନଙ୍କ ପାଖରେ ଦାଖଲ କରିବ । କଥିତ ଅଛି ଯେ ଏ ଦିଗରେ ପ୍ରଫେସର ପରିଜାଙ୍କ ସଚ୍ଚୋଟତା ସାରା ଭାରତରେ ପ୍ରଶସ୍ତିଲାଭ

କରିଥିଲା, ଯେହେତୁ ସେ ସାତହଜାର ଟଙ୍କାରେ ତାଙ୍କ ନିର୍ବାଚନ ଖର୍ଚ୍ଚକୁ ସୀମିତ ରଖିପାରିଥିଲେ । ଓଡ଼ିଶା ସରକାରଙ୍କ ଦ୍ୱାରା ଗଠିତ ନିଶାନିବାରଣ କମିଟିରେ ପ୍ରଫେସର ପରିଜା ଅଧ୍ୟକ୍ଷ ରୂପେ କାର୍ଯ୍ୟ କରି ବହୁ ଉପାଦେୟ ଓ ମୂଲ୍ୟବାନ ଗଠନମୂଳକ ପରାମର୍ଶ ପ୍ରଦାନ କରିଥିଲେ ।

୧୯୪୯ ମସିହାରେ ଭାରତ ସରକାରଙ୍କ ବନଜାତ ଦ୍ରବ୍ୟ ଉପଯୋଗ ସମ୍ବନ୍ଧରେ ଗଠିତ ପରାମର୍ଶଦାତା ବୋର୍ଡ଼ର ଜଣେ ସଦସ୍ୟ ରୂପେ ପ୍ରଫେସର ପରିଜା କାର୍ଯ୍ୟ କରି ସ୍ୱୀୟ ଅନୁଭୂତିରୁ ବହୁ ସୁଚିନ୍ତିତ ମତାମତ ପ୍ରଦାନ କରିଥିଲେ । ସେ ମଧ୍ୟ କିଛିବର୍ଷ ପାଇଁ କେନ୍ଦ୍ର ସରକାରଙ୍କ ଚଳଚ୍ଚିତ୍ର ନିୟନ୍ତ୍ରଣକାରୀ ସଂସ୍ଥାର ସଦସ୍ୟ ରୂପେ କାର୍ଯ୍ୟ କରି ଭାରତରେ ଯେପରି ଅଶ୍ଳୀଳ, କାମୋଦ୍ଦୀପକ ଓ ହିଂସାତ୍ମକ ଘଟଣା ସମ୍ବଳିତ ଚଳଚ୍ଚିତ୍ର ନିର୍ମାଣ କରା ନ ଯାଏ, ସେଥିପ୍ରତି କଠୋର ପଦକ୍ଷେପ ଗ୍ରହଣ କରିଥିଲେ । ୧୯୫୩-୫୪ ମସିହାରେ ପ୍ରଫେସର ପରିଜା କେନ୍ଦ୍ର ସରକାରଙ୍କ ଖାଦ୍ୟ ଓ କୃଷି ମନ୍ତ୍ରଣାଳୟ ତରଫରୁ ଗଠିତ ଏକ ବିଶେଷଜ୍ଞ କମିଟିର ଅଧ୍ୟକ୍ଷରୂପେ ମନୋନୀତ ହୋଇ ଭାରତର ସମସ୍ତ କୃଷି ଗବେଷଣା କେନ୍ଦ୍ରର କାର୍ଯ୍ୟ ତଦାରଖ କରି ସେଗୁଡ଼ିକର ଉନ୍ନତି ପାଇଁ ବହୁ ସୁଚିନ୍ତିତ ପରାମର୍ଶ ପ୍ରଦାନ କରିଥିଲେ । ୧୯୫୫ ମସିହାରେ କେନ୍ଦ୍ର ସରକାରଙ୍କ ଦ୍ୱାରା ସ୍ଥାପିତ ଭାଷା କମିସନ୍‌ର ଜଣେକ ସଦସ୍ୟ ରୂପେ କାର୍ଯ୍ୟ କରି ପ୍ରଫେସର ପରିଜା ବହୁ ଭାଷାଭାଷୀ ଭାରତର ବିଭିନ୍ନ ଆଞ୍ଚଳିକ ଭାଷାର ଉନ୍ନତିକଳ୍ପେ ଜାତୀୟ ଐକ୍ୟ ପ୍ରତିଷ୍ଠାର ପଥ ଉନ୍ମୋଚନ କରିଥିଲେ । ତାଙ୍କର ମତ ଥିଲା ଯେ, ସର୍ବଭାରତୀୟ ସ୍ତରରେ ରୋମାନ୍ ଲିପି ପ୍ରଚଳିତ ହେଉ ଯଦ୍ୱାରାକି ଭାଷା ଦୃଷ୍ଟିରୁ ଭାରତରେ ଅଖଣ୍ଡତା ବଜାୟ ରହିପାରିବ ଓ ଭାଷାଭିତ୍ତିକ ସୃଷ୍ଟ ପ୍ରଦେଶ ପ୍ରଦେଶ ମଧ୍ୟରେ ବିଦ୍ୱେଷ ଓ ଦ୍ୱନ୍ଦ୍ୱର ଅବସାନ ଘଟିବ ।

ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ପ୍ରଫେସର ପରିଜାଙ୍କ ବିଶେଷ ମମତା ଥିଲା । ସେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଥିବାବେଳେ ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ନତି ପାଇଁ ଏକଲକ୍ଷ ଟଙ୍କାର ଏକ ପାଣ୍ଠି ଗଠନ କରିଥିଲେ । ତାଙ୍କ ପ୍ରଚେଷ୍ଟାରେ ଉତ୍କଳ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ଲବ୍ଧପ୍ରତିଷ୍ଠ ସାହିତ୍ୟିକ ଡକ୍ଟର ମାୟାଧର ମାନସିଂହଙ୍କ ମୁଖ୍ୟ ସମ୍ପାଦନାରେ ସଂକ୍ଷିପ୍ତ ଓଡ଼ିଆ ଜ୍ଞାନକୋଷ ଚାରୋଟି ଖଣ୍ଡରେ ପ୍ରକାଶିତ ହୋଇଥିଲା । ବୃହତ୍ ଓଡ଼ିଆ ଜ୍ଞାନକୋଷ ୧ମ ଖଣ୍ଡ ସମ୍ପାଦିତ ହୋଇଛି, କିନ୍ତୁ ବର୍ତ୍ତମାନ ସୁଦ୍ଧା ତାହା ମୁଦ୍ରିତ ହୋଇ ନାହିଁ । ପ୍ରଫେସର ପରିଜାଙ୍କ ମୁଖ୍ୟ ସମ୍ପାଦନାରେ ଉଦ୍ଭିଦବିଜ୍ଞାନ ପାରିଭାଷିକ ଶବ୍ଦକୋଷ ପ୍ରକାଶିତ ହୋଇଛି । ସେ ସମୟରେ ଦର୍ଶନଶାସ୍ତ୍ର, ପଦାର୍ଥବିଜ୍ଞାନ ପ୍ରଭୃତି ଆଉ

କେତୋଟି ଶବ୍ଦକୋଷ ମଧ୍ୟ ପ୍ରସ୍ତୁତ ହୋଇଥିଲା । ପ୍ରଫେସର ପରିଚ୍ଛାଙ୍କ ପ୍ରଚେଷ୍ଟାରୁ ଓଡ଼ିଆ ଭାଷା ଓ ସାହିତ୍ୟରେ ଲୋକପ୍ରିୟ ବିଜ୍ଞାନ ଓ ଅନ୍ୟାନ୍ୟ ବିଷୟରେ କେତେଗୁଡ଼ିଏ ଉପାଦେୟ ପୁସ୍ତକ ପ୍ରକାଶିତ ହୋଇଥିଲା । ସେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗରୁ ଆର୍ଥିକ ସହାୟତା ଆଣି ଏକ ହିନ୍ଦୀ-ଓଡ଼ିଆ ଶବ୍ଦକୋଷ ପ୍ରସ୍ତୁତ କରାଇଥିଲେ । ତାହା ମୁଦ୍ରିତ ହୋଇ ନାହିଁ । କେତେଜଣ ଲବ୍ଧପ୍ରତିଷ୍ଠ ଅଧ୍ୟାପକଙ୍କ ପିଏଚ୍.ଡି. ଓ ଡି.ଲିଟ୍. ଥିସିସ୍ ଉତ୍କଳ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ମୁଦ୍ରିତ ହୋଇପାରିଛି ।

୧୯୪୬ ମସିହାରେ ଭାରତ ସରକାର ପ୍ରଫେସର ପରିଚ୍ଛାଙ୍କୁ ଭୂବିଜ୍ଞାନ ଶିକ୍ଷା କମିଟିର ଅଧ୍ୟକ୍ଷ ରୂପେ ମନୋନୀତ କରିଥିଲେ ଓ ପରିଚ୍ଛା କମିଟି ଭାରତରେ ଭୂବିଜ୍ଞାନ ଶିକ୍ଷାର ଉନ୍ନତି ପାଇଁ ବହୁ ସୁଚିନ୍ତିତ ପରାମର୍ଶ ପ୍ରଦାନ କରିଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଥିବାବେଳେ ୧୯୬୧ ମସିହାରେ ପ୍ରଫେସର ପରିଚ୍ଛା ଭାରତବର୍ଷ ଓ ସିଂହଳର ସମସ୍ତ ବିଶ୍ୱବିଦ୍ୟାଳୟଗୁଡ଼ିକର କୁଳପତିମାନଙ୍କୁ ନେଇ ଗଠିତ ଆନ୍ତର୍ବିଶ୍ୱବିଦ୍ୟାଳୟ ବୋର୍ଡ଼ର ସଭାପତି ପଦ ଅଳଙ୍କୃତ କରିଥିଲେ ଏବଂ ୧୯୬୨-୬୩ ମସିହାରେ ଏହି ବୋର୍ଡ଼ର ଷ୍ଟାଣ୍ଡିଂ କମିଟିର ଚେୟାରମ୍ୟାନ୍ ପଦରେ ଅଧିଷ୍ଠିତ ହୋଇଥିଲେ । ୧୯୬୩ ମସିହାରେ ପ୍ରଫେସର ପରିଚ୍ଛା ଇଂରେଜ ରାଜ୍ୟଗୋଷ୍ଠୀ ବିଶ୍ୱବିଦ୍ୟାଳୟଗୁଡ଼ିକର ଆସୋସିଏସନ୍‌ର କାଉନ୍‌ସିଲ୍‌ରେ ଏହି ବୋର୍ଡ଼ର ପ୍ରତିନିଧିତ୍ୱ କରିଥିଲେ । ୧୯୫୮ ମସିହାରେ କାନାଡ଼ାର ଟରଣ୍ଟୋ ନଗରୀରେ ଅନୁଷ୍ଠିତ ଇଂରେଜ ରାଜ୍ୟଗୋଷ୍ଠୀ ବିଶ୍ୱବିଦ୍ୟାଳୟଗୁଡ଼ିକର କୁଳପତିମାନଙ୍କ ସମ୍ମିଳନୀରେ ପ୍ରଫେସର ପରିଚ୍ଛା ଯୋଗଦାନ କରି ଅନେକ ସୁଚିନ୍ତିତ ଉପାଦେୟ ପରାମର୍ଶ ପ୍ରଦାନ କରିଥିଲେ ।

୧୯୩୮ ମସିହାରୁ ୧୯୬୧ ମସିହା ପର୍ଯ୍ୟନ୍ତ ଦୀର୍ଘ ୨୪ ବର୍ଷ ଧରି ପ୍ରଫେସର ପରିଚ୍ଛା ନୋବେଲ ପୁରସ୍କାର ବିଜେତା ବୈଜ୍ଞାନିକ ସାର୍ ଚନ୍ଦ୍ରଶେଖର ଭେଙ୍କଟ ରମନ୍‌ଙ୍କ ଦ୍ୱାରା ବାଙ୍ଗାଲୋରଠାରେ ପ୍ରତିଷ୍ଠିତ ପ୍ରସିଦ୍ଧ ଇଣ୍ଡିଆନ୍ ଇନ୍‌ଷ୍ଟିଚିଉଟ୍ ଅଫ୍ ସାଇନ୍ସର ପରିଚାଳନା ସମିତିର ଜଣେ ସଦସ୍ୟ ରୂପେ କାର୍ଯ୍ୟ କରି ଭାରତରେ ଗୁଣାତ୍ମକ ଉତ୍କର୍ଷ ବୈଜ୍ଞାନିକ ଗବେଷଣାର ପଥ ପ୍ରଶସ୍ତ କରିପାରିଥିଲେ । ୧୯୬୩ ମସିହାରେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ପ୍ରଫେସର ପରିଚ୍ଛାଙ୍କୁ ଏହାର ସାଧାରଣ ଶିକ୍ଷା କମିଟିର ଅଧ୍ୟକ୍ଷ ଆସନରେ ଅଧିଷ୍ଠିତ କରି ଭାରତରେ କଲେଜ ଓ ବିଶ୍ୱବିଦ୍ୟାଳୟ ଶିକ୍ଷାରେ ବହୁ ଉନ୍ନତି ସଂଘଟିତ କରାଇପାରିଥିଲେ ।

୧୯୩୮ ମସିହାରେ ଓଡ଼ିଶାର ପ୍ରଧାନମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାଶ ଓଡ଼ିଶାରେ ଏକ ବିଶ୍ୱବିଦ୍ୟାଳୟ ସ୍ଥାପନାର ସମ୍ଭାବନା ସମ୍ବନ୍ଧରେ ଅନୁସନ୍ଧାନ କରି ସରକାରଙ୍କୁ

ଏକ ରିପୋର୍ଟ ଦେବାପାଇଁ ପଣ୍ଡିତ ନୀଳକଣ୍ଠ ଦାସଙ୍କ ଅଧ୍ୟକ୍ଷତାରେ ଏକ କମିଟି ଗଠନ କରିଥିଲେ । ସେଥିରେ ପ୍ରଫେସର ପରିଜା ଜଣେ ସଦସ୍ୟ ରୂପେ ମନୋନୀତ ହୋଇ ବହୁ କଷ୍ଟ ସ୍ୱୀକାର କରି ବହୁ ତଥ୍ୟ ସଂଗ୍ରହ କରିଥିଲେ । ଏହି କମିଟିର ସୁପାରିସକୁ ଓଡ଼ିଶାର ପରବର୍ତ୍ତୀ ପ୍ରଧାନମନ୍ତ୍ରୀ ପାରଳାଖେମୁଣ୍ଡି ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ଓ ତାଙ୍କ ମନ୍ତ୍ରିମଣ୍ଡଳର ଶିକ୍ଷାମନ୍ତ୍ରୀ ପଣ୍ଡିତ ଗୋଦାବରୀଶ ମିଶ୍ର କାର୍ଯ୍ୟକାରୀ କରାଇ ୧୯୪୩ ମସିହା ନଭେମ୍ବର ୨୭ ତାରିଖରେ ରେଭେନ୍ସା କଲେଜ ପରିସରରେ ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ଥାପନ କରାଇଥିଲେ ।

ପାଟନା ବିଶ୍ୱବିଦ୍ୟାଳୟର ଶିକ୍ଷା ସମ୍ବନ୍ଧୀୟ କେତେକ ଆଇନ୍ କାନୁନ୍‌ରେ ପରିବର୍ତ୍ତନର ଆବଶ୍ୟକତା ଅନୁଭୂତ ହେବାରୁ ବିହାର ଓ ଓଡ଼ିଶା ସରକାର ପ୍ରଫେସର ପରିଜାଙ୍କୁ ଥରେ ଗୋଟିଏ ସେସନ୍‌ରେ ବିହାର ଓ ଓଡ଼ିଶା ବିଧାନସଭାକୁ ସଭ୍ୟରୂପେ ମନୋନୀତ କରିଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ବ୍ୟତୀତ ଓଡ଼ିଶାର ଅନ୍ୟ କେଉଁ କେଉଁ ସ୍ଥାନରେ ବିଶ୍ୱବିଦ୍ୟାଳୟ ସ୍ଥାପନ କରାଯିବା ଉଚିତ, ସେଥିପାଇଁ ଅନୁସନ୍ଧାନ କରି ଏକ ରିପୋର୍ଟ ଦବାକୁ ଓଡ଼ିଶା ସରକାର ୧୯୬୩ ମସିହାରେ ଡକ୍ଟର ପରିଜାଙ୍କ ଅଧିନାୟକତ୍ୱରେ ଏକ କମିଟି ଗଠନ କରିଥିଲେ । ପରିଜା କମିଟିର ତଥ୍ୟମୂଳକ ରିପୋର୍ଟକୁ ଆଧାର କରି ଶ୍ରୀ ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀତ୍ୱରେ ଓଡ଼ିଶା ସରକାର ସମ୍ବଲପୁର ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ସ୍ଥାପନ କରିଥିଲେ । ୧୯୬୬ ମସିହାରୁ ୧୯୭୦ ମସିହା ପର୍ଯ୍ୟନ୍ତ ଡକ୍ଟର ପରିଜା ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର ପରିଚାଳନା ସମିତିର ଏକ ସଦସ୍ୟ ରୂପେ କାର୍ଯ୍ୟ କରି ଓଡ଼ିଶାରେ କୃଷିବିଜ୍ଞାନ ଓ ପଶୁବିଜ୍ଞାନରେ ଉତ୍କୃଷ୍ଟ ଶିକ୍ଷାଦାନ ଓ ଗୁଣାତ୍ମକ ଗବେଷଣା କାର୍ଯ୍ୟର ମୂଳଦୁଆ ସୁଦୃଢ଼ ରୂପେ ସ୍ଥାପନ କରିପାରିଥିଲେ । ମୋଟ ଉପରେ ଓଡ଼ିଶାରେ ଉଚ୍ଚଶିକ୍ଷାର ପ୍ରସାର, ଓଡ଼ିଆ ଭାଷା ଓ ସାହିତ୍ୟର ଶ୍ରୀବୃଦ୍ଧି ସାଧନ, ଓଡ଼ିଶାର ସଂସ୍କୃତି ଓ କଳାର ବିକାଶ ଓ ଓଡ଼ିଆ ସ୍ୱାଭିମାନର ସୁରକ୍ଷା ଦିଗରେ ଡକ୍ଟର ପରିଜାଙ୍କ ଅବଦାନ ଅତୁଳନୀୟ ।

ଭାରତବର୍ଷର ବିଭିନ୍ନ କ୍ଷେତ୍ରରେ ତଥା ଆନ୍ତର୍ଜାତିକ ସ୍ତରରେ ପ୍ରଫେସର ପରିଜା ନିଜର ଅଗାଧ ଜ୍ଞାନ, କଠୋର ଅଧ୍ୟବସାୟ, ଅପୂର୍ବ କର୍ମନିଷ୍ଠା ଓ ଆଦର୍ଶ ଚରିତ୍ରବତ୍ତା ପାଇଁ ଯେଉଁ ମହାନ୍ ସମ୍ମାନ ଲାଭ କରି ଯାଇଛନ୍ତି, ତାହାର ଉଦାହରଣ ବିରଳ । ପ୍ରକୃତରେ ଡକ୍ଟର ପରିଜା ହେଉଛନ୍ତି ଏକ ଅଦ୍ୱିତୀୟ ଅନନ୍ୟ ସାଧାରଣ ପ୍ରତିଭା । ତାଙ୍କର ଉଚ୍ଚ ଆଦର୍ଶ ଓ ମହତ୍ ଜୀବନ ମାର୍ଗ ଅନୁସରଣ କଲେ ଓଡ଼ିଶାର ଯୁବକ ଓ ଯୁବତୀମାନେ ବିଶେଷ ଭାବରେ ଉପକୃତ ହୋଇପାରିବେ ଓ ଏ ଜାତି ତାଙ୍କର ପବିତ୍ର ସ୍ମୃତିରକ୍ଷା ଓ ଉପଯୁକ୍ତ ପୂଜା କରିପାରିବ ।

ମୁଁ ପ୍ରଫେସର ପରିଜାଙ୍କ ନିକଟରେ ଚିରଋଣୀ । ପୁରୀ ଜିଲ୍ଲା ସ୍କୁଲରୁ ମାଟ୍ରିକୁଲେସନ୍ ପରୀକ୍ଷାରେ ପାସ୍ କରି ୧୯୪୦ ମସିହା ଜୁନ୍ ମାସରେ ମୁଁ ଯେତେବେଳେ ରେଭେନ୍ସା କଲେଜରେ ନାମ ଲେଖାଇବାପାଇଁ କଟକରେ ପହଞ୍ଚେ, ଗ୍ରୀଷ୍ମାବକାଶ ପରେ କଲେଜ ଖୋଲିବାକୁ ଚାରି ପାଞ୍ଚଦିନ ବାକି ଥାଏ । ସ୍ୱର୍ଗତ ପୂର୍ବତନ ଶିକ୍ଷାମନ୍ତ୍ରୀ ବନମାଳୀ ପଟ୍ଟନାୟକ, ପୂର୍ବତନ ଏମ୍.ଏଲ୍.ଏ. ଜୟକୃଷ୍ଣ ମହାନ୍ତି ପ୍ରଭୃତି ରହୁଥିବା ବନମାଳୀ ସାହୁ ମେସ୍‌ରେ ନନାଙ୍କ ସହିତ ଆସି ପହଞ୍ଚିଲି । କଲେଜ ଛୁଟି ହୋଇଥିଲେ ମଧ୍ୟ କଲିକା ଲାଇବ୍ରେରୀ ଖୋଲା ଥିଲା । ପୂଜ୍ୟ ଲାଇବ୍ରେରିଆନ୍ ଶ୍ରୀଯୁକ୍ତ ଦାମୋଦର ମିଶ୍ରଙ୍କ ସହିତ ଦେଖା କଲି । ସେ ମୋତେ ଗୋଟିଏ ଦରଖାସ୍ତ ଡାକିଦେଲେ । ଦରଖାସ୍ତ ଧରି ମତେ ସଙ୍ଗରେ ନେଇ ପ୍ରିନ୍ସିପାଲ୍ ପରିଜାଙ୍କ ଅଫିସ୍‌କୁ ଗଲେ । ମତେ ପରିଜାସାହେବଙ୍କ ପାଖକୁ ନେଇଗଲେ । କଲେଜରେ ମୋର ନାମ ଲେଖା ପରେ ହେବ ବୋଲି ଲେଖିଦେଇ ଓ୍ୱେଷ୍ଟ ହଷ୍ଟେଲ୍ ଓ୍ୱାର୍ଡେନ୍‌ଙ୍କ ନିକଟକୁ ଲେଖିଦେଲେ, ମତେ ହଷ୍ଟେଲ୍‌ରେ ସେହି ଦିନଠୁ ରଖିଦବାକୁ । ପ୍ରଥମ ସାକ୍ଷାତରେ ମୁଁ ତାଙ୍କର ଏ ଯେଉଁ ମହନୀୟ ଗୁଣର ଆଭାସ ପାଇଲି ସେ ସହୃଦୟତା ଓ ଅନୁକମ୍ପା ମୋ ଜୀବନସାରା ମୁଁ ତାଙ୍କଠାରୁ ପାଇପାରିଲି । ବି.ଏସ୍‌ସି. ଶ୍ରେଣୀରେ ମୋର ବଟାନୀ (ପାସ୍) ବିଷୟବସ୍ତୁ ଥିଲା ଓ ସେ ଉଭିଦର ଶରୀରତତ୍ତ୍ୱ ସମ୍ବନ୍ଧରେ ଆମର କେତୋଟି କ୍ଲାସ୍ ନେଇଥିଲେ । ରାସାୟନିକ ଫର୍ମୂଲାଗୁଡ଼ିକ ସୁନ୍ଦର ଭାବରେ ଚାର୍ଟରେ ଆଗରୁ ଲେଖାହୋଇ ରହିଥିଲା । ସେଗୁଡ଼ିକୁ ସେ କ୍ଲାସ୍‌ରେ ପ୍ରଦର୍ଶନ କରୁଥିଲେ ଓ ପ୍ରାଞ୍ଜଳ ଭାବରେ ଉଭିଦର ଶରୀର ଅନ୍ତରସ୍ଥ କ୍ରିୟାସମୂହର ବୈଜ୍ଞାନିକ ବ୍ୟାଖ୍ୟା କରିଦେଉଥିଲେ ।

ବି.ଏସ୍‌ସି. ପାସ୍ କଲା ପରେ ମୋର ପୂଜ୍ୟ ଗୁରୁ ଡକ୍ଟର ବଂଶୀଧର ସାମନ୍ତରାୟ ମତେ ବଟାନୀରେ ଏମ୍.ଏସ୍‌ସି. ପଢ଼ିବାକୁ ପରାମର୍ଶ ଦେଲେ ଓ ପ୍ରଫେସର ପରିଜାଙ୍କ ସହିତ ସାକ୍ଷାତ କରିବାକୁ ପଠାଇଲେ । ପ୍ରଫେସର ପରିଜା ମତେ ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟରୁ ଫର୍ମ ଆଣି ଦରଖାସ୍ତ ପଠାଇଦବାକୁ କହିଲେ ଓ ସେ ତାଙ୍କର ଘନିଷ୍ଠ ବନ୍ଧୁ ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟର ଉଭିଦବିଜ୍ଞାନ ପ୍ରଫେସର ଡକ୍ଟର ବୀରବଲ ସାହାଣୀଙ୍କୁ ବ୍ୟକ୍ତିଗତ ଚିଠିଟିଏ ପଠାଇଦେଲେ । ମୁଁ ଗ୍ରୀଷ୍ମ ଛୁଟିରେ କଟକରେ କସ୍‌ମୋପଲିଟାନ୍ ମେସ୍‌ରେ ଅପେକ୍ଷା କରି ରହିଥାଏ । ଦିନେ ଡକ୍ଟର ବଂଶୀଧର ସାମନ୍ତରାୟ ମତେ ଡକାଇ ପଠାଇଲେ ଓ ପରିଜାସାହେବଙ୍କ ସହିତ ତୁରନ୍ତ ଯାଇ ଦେଖା କରିବାକୁ କହିଲେ । ଡକ୍ଟର ପରିଜାଙ୍କ ସହିତ ଦେଖାକଲି । ସେ ମୋ ହାତରେ ଗୋଟିଏ ରିପ୍ଲାଇ-ପେଡ୍ ଟେଲିଗ୍ରାମ୍ ଆହ୍ଲାବାଦ ବିଶ୍ୱବିଦ୍ୟାଳୟର ଉଭିଦବିଜ୍ଞାନ ପ୍ରଫେସର ଡକ୍ଟର ଶ୍ରୀରଞ୍ଜନଙ୍କ ନିକଟକୁ ପଠାଇଦେବାକୁ ଦେଲେ ଓ ଚାରିଦିନ ପରେ ପୁଣି ତାଙ୍କ ସହିତ ଯାଇ ଦେଖା କରିବାକୁ କହିଲେ ।

ଚାରିଦିନ ପରେ ମୁଁ ଦେଖାକଲି । ସେ କହିଲେ ତୁମେ ଆହ୍ଲାବାଦ ଯାଅ । ସେଠି ଏମ୍.ଏସ୍‌ସି.ରେ ତୁମର ସିଟ୍ ହୋଇଯାଇଛି । ତଦନୁସାରେ ମୁଁ ପୁରୀ ଘରକୁ ଯାଇ ନାମ ଲେଖା ପାଇଁ ଟଙ୍କା ସଂଗ୍ରହ କରି ସଙ୍ଗେ ସଙ୍ଗେ ଆହ୍ଲାବାଦ ଗଲି । ମୋର ଗୁରୁ ପ୍ରାଣିବିଜ୍ଞାନ ଅଧ୍ୟାପକ ଡକ୍ଟର ହରିଶଙ୍କର ଚୌଧୁରୀ ଖଣ୍ଡିଏ ଚିଠି ଲେଖିଦେଲେ । ତାଙ୍କ ଘରେ ପହଞ୍ଚି ଗାଧୁଆପାଧୁଆ ସାରି ଖେଚେଡ଼ି ଖାଇ ଟିକିଏ ବିଶ୍ରାମ ନେଇ ଉପରଓଳା ପାଞ୍ଚଟାବେଳକୁ ପ୍ରଫେସର ଡକ୍ଟର ଶ୍ରୀରଞ୍ଜନଙ୍କ ବାସଭବନରେ ତାଙ୍କ ସହିତ ସାକ୍ଷାତ କଲି । ତା'ପର ଦିନ ସେ ମତେ ତାଙ୍କ ଡିପାର୍ଟମେଣ୍ଟ ଅଫିସରେ ଦେଖା କରିବାକୁ କହିଲେ ଓ ଏମ୍.ଏସ୍‌ସି. ବଟାନୀ କ୍ଲାସ୍‌ରେ ନାମ ଲେଖାଇବାପାଇଁ ଗୋଟିଏ ଫର୍ମ ପୂରଣ କରିଦବାକୁ କହିଲେ । ମୋର ଏମ୍.ଏସ୍‌ସି. ବଟାନୀରେ ନାମ ଲେଖା ହୋଇଗଲା । ଆଉ ମଧ୍ୟ ପ୍ରଫେସର ଶ୍ରୀରଞ୍ଜନ ମତେ କହିଲେ ଯେ ମୋର ରହିବା ପାଇଁ ସେ ପଣ୍ଡିତ ଗଙ୍ଗାନାଥ ଝା ହଷ୍ଟେଲର ସୁପରିଣ୍ଟେଣ୍ଡେଣ୍ଟ କର୍ଣ୍ଣେଲ୍ ତିୱାରୀଙ୍କୁ କହିଦେଇଛନ୍ତି । ମୁଁ ଯାଇ ଗଙ୍ଗାନାଥ ଝା ହଷ୍ଟେଲରେ ମୋର ବନ୍ଧୁ ସର୍ବେଶ୍ୱର ଦାଶ ଓ ଜୟକୃଷ୍ଣ ମିଶ୍ରଙ୍କ ପାଖେ ରହିଲି । ପାଞ୍ଚ ସାତ ଦିନ ମଧ୍ୟରେ ମତେ ହଷ୍ଟେଲ୍‌ରେ ସିଟ୍ ମିଳିଗଲା । ଧନ୍ୟ ପ୍ରଫେସର ପରିଜାଙ୍କ ମହାନୁଭବତା । ପରେ ଶୁଣିଲି ଯେ ୧୯୪୪ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ ବ୍ୟାଚ୍ ଛାତ୍ରଛାତ୍ରୀମାନେ ବି.ଏ., ବି.ଏସ୍‌ସି. ପାସ୍ କଲାବେଳକୁ ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟର ଇକୁଇଭାଲେନ୍ସ କମିଟି ବସି ଉତ୍କଳ ବିଶ୍ୱବିଦ୍ୟାଳୟର ଡିଗ୍ରୀକୁ ତାଙ୍କ ବିଶ୍ୱବିଦ୍ୟାଳୟର ସମକକ୍ଷରୂପେ ଗୃହୀତ କରି ନାହାନ୍ତି, ତେଣୁ ଆମ ବ୍ୟାଚର କେହି ଛାତ୍ର ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟରେ ପଢ଼ିବାକୁ ସ୍ଥାନ ପାଇପାରି ନ ଥିଲେ ।

ଏମ୍.ଏସ୍‌ସି. ପାସ୍ କଲା ପରେ ଓଡ଼ିଶାର ତତ୍କାଳୀନ ଡି.ପି.ଆଇ. ପ୍ରଫେସର ଶ୍ୟାମଚନ୍ଦ୍ର ତ୍ରିପାଠୀଙ୍କ ସୌଜନ୍ୟରୁ ମୁଁ ୧୯୪୬ ମସିହା ଜୁଲାଇ ୨ ତାରିଖରେ ରେଭେନ୍ସା କଲେଜରେ ବଟାନୀ ଡିମନ୍‌ଷ୍ଟ୍ରେଟର୍ (ସେତେବେଳେ ବିଜ୍ଞାନ ବିଭାଗର ଲେକ୍‌ଚରର୍‌ମାନଙ୍କୁ ଡିମନ୍‌ଷ୍ଟ୍ରେଟର୍ କୁହାଯାଉଥିଲା) ରୂପେ ଯୋଗ ଦେଲି । ମୋର ଗୁରୁ ଡକ୍ଟର ପରଶୁରାମ ମିଶ୍ର ବଟାନୀର ମୁଖ୍ୟ ଅଧ୍ୟାପକ ଥାଆନ୍ତି । କିଛି ମାସ ପରେ ମୁଁ ଡକ୍ଟର ପରିଜାଙ୍କ ତତ୍ତ୍ୱାବଧାନରେ ରେଭେନ୍ସା କଲେଜରେ ଧାନ ବୀଜର ଅଙ୍କୁରୋଦ୍‌ଗମ ସମୟରେ କିପରି ଶ୍ୱାସକ୍ରିୟା ଦିନ ରାତି ୨୪ ଘଣ୍ଟା ଧରି ଚାଲୁଛି ସେ ସମ୍ବନ୍ଧରେ ଗବେଷଣା କଲି ।

ପରେ ୧୯୪୮ ମସିହା ଜୁଲାଇ ମାସରେ ମୁଁ ସରକାରୀ ଚାକିରିରୁ ଛୁଟି ନେଇ ଆହ୍ଲାବାଦ ବିଶ୍ୱବିଦ୍ୟାଳୟରେ ମୋର ଗୁରୁ ପ୍ରଫେସର ଶ୍ରୀରଞ୍ଜନଙ୍କ ତତ୍ତ୍ୱାବଧାନରେ ଗବେଷଣା କଲି । ସେତେବେଳେ ଡକ୍ଟର ପରିଜା ଆହ୍ଲାବାଦ

ଯାଇ ଡକ୍ଟର ଶ୍ରୀରଞ୍ଜନଙ୍କ ଘରେ ରହୁଥାନ୍ତି । ମୁଁ ପ୍ରଫେସର ଶ୍ରୀରଞ୍ଜନଙ୍କ ଘରେ ତାଙ୍କୁ ଦେଖା କଲି । ଉଭୟେ ଡକ୍ଟର ପରିଜା ଓ ଡକ୍ଟର ଶ୍ରୀରଞ୍ଜନ କଥାବାର୍ତ୍ତା କରି ମୋର ଗବେଷଣା ପାଇଁ ଗୋଟିଏ ବିଷୟବସ୍ତୁ ସ୍ଥିର କରିଦେଲେ । ତାହା ଉପରେ ମୁଁ ୩-୪ ମାସ କାମ କଲା ପରେ ପୁଣି ସେ ବିଷୟକୁ ବଦଳାଇ ଗହମ ଓ ଧାନଗଛ ଉପରେ ଦିନବେଳାର ଆଲୋକର ଦୈର୍ଘ୍ୟ ଓ ରାତ୍ରୀବେଳାର ଅନ୍ଧକାରର ଦୈର୍ଘ୍ୟର ପ୍ରଭାବ ସମ୍ବନ୍ଧରେ ଗବେଷଣା କଲି ।

ଡକ୍ଟର ପରିଜା ଏ ଭିତରେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ପ୍ରୋ-ଭାଇସ୍‌ଚାନ୍‌ସେଲର୍ ରୂପେ ଯୋଗ ଦେଇଥାନ୍ତି । ତାଙ୍କର ସାନପୁଅ ଭାଲଚନ୍ଦ୍ର ଇଉଇଙ୍ଗ୍ କ୍ରିଷ୍ଟିଆନ୍ କଲେଜରେ ଆଇ.ଏସ୍‌ସି.ରେ ନାମ ଲେଖାଇବ ବୋଲି ସେ ଆଶା ପ୍ରକାଶ କଲେ । ସେତେବେଳକୁ କଲେଜରେ ନାମ ଲେଖା ସମୟ ଅତିବାହିତ ହୋଇଯାଇଥାଏ । ମତେ ପ୍ରଫେସର ଶ୍ରୀରଞ୍ଜନ ଇଉଇଙ୍ଗ୍ କ୍ରିଷ୍ଟିଆନ୍ କଲେଜକୁ ପଠାଇଲେ । ମୋର ସୌଭାଗ୍ୟକୁ ଆମ ପ୍ରୟାଗ ଓଡ଼ିଆ ସମିତିର ସଭାପତି ଶ୍ରୀଯୁକ୍ତ ଶିଶିର କୁମାର ପାତ୍ର ସେ କଲେଜରେ ସେତେବେଳେ ଅଧ୍ୟାପକ ଥିଲେ । ମୁଁ ତାଙ୍କୁ ପ୍ରଫେସର ଶ୍ରୀରଞ୍ଜନ ତାଙ୍କ କଲେଜର ପ୍ରିନ୍ସିପାଲ୍‌ଙ୍କ ନିକଟକୁ ଲେଖିଥିବା ଚିଠି ଦେଲି ଓ ସବୁକଥା କହିଲି । ତାଙ୍କ ପ୍ରଚେଷ୍ଟାରେ ଶ୍ରୀମାନ୍ ଭାଲଚନ୍ଦ୍ର ନାମ ଲେଖା ଇଉଇଙ୍ଗ୍ କ୍ରିଷ୍ଟିଆନ୍ କଲେଜରେ ସୁରୁଖୁରୁରେ ହୋଇଗଲା ।

ପ୍ରଫେସର ପରିଜା ମଝିରେ ମଝିରେ ବନାରସରୁ ଆହ୍ଲାବାଦ ଆସୁଥାନ୍ତି । ସବୁଥର ପ୍ରଫେସର ଶ୍ରୀରଞ୍ଜନଙ୍କ ବାସଭବନରେ ମୁଁ ତାଙ୍କ ସହିତ ଦେଖା କରୁଥାଏ । ସେ ମୋ ଗବେଷଣା ସମ୍ବନ୍ଧରେ ମୋଠାରୁ ପୁଙ୍ଖାନୁପୁଙ୍ଖ ତଥ୍ୟ ବୁଝି ମତେ ଯଥୋଚିତ ପରାମର୍ଶ ଦେଉଥାନ୍ତି । ୧୯୫୨ ମସିହାରେ ଆହ୍ଲାବାଦ ବିଶ୍ୱବିଦ୍ୟାଳୟରେ ମୁଁ ମୋର ଡି.ଫିଲ୍. ଥିସିସ୍ ଦାଖଲ କଲି । ୧୯୫୩ ମସିହା ନଭେମ୍ବର ମାସରେ ମୋର ଭାଇଭା-ଭୋସି ପରୀକ୍ଷା ହେଲା । ଡକ୍ଟର ପରିଜା ମୋର ଥିସିସ୍‌ର ପରୀକ୍ଷକ ରୂପେ ମୋର ଭାଇଭା-ଭୋସି ପରୀକ୍ଷା ଗ୍ରହଣ କଲେ । ଆହ୍ଲାବାଦ ବିଶ୍ୱବିଦ୍ୟାଳୟରେ ଭାଇଭା-ଭୋସି ପରୀକ୍ଷାବେଳେ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଓ ଗବେଷକ ଛାତ୍ରବୃନ୍ଦ ଉପସ୍ଥିତ ରହନ୍ତି । ଡକ୍ଟର ପରିଜାଙ୍କ ଆଶୀର୍ବାଦରୁ ମୁଁ ଡକ୍ଟରେଟ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲି ।

ପରବର୍ତ୍ତୀ ସମୟରେ ଉତ୍କଳ ବିଶ୍ୱବିଦ୍ୟାଳୟରେ କୁଳପତି ଡକ୍ଟର ପରିଜାଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ବିଶ୍ୱବିଦ୍ୟାଳୟର ଏକାଡେମିକ୍ କାଉନ୍‌ସିଲ୍, ସିନେଟ୍ ପ୍ରଭୃତି ବିଭିନ୍ନ ସମିତିର ବୈଠକରେ ମୁଁ ଯୋଗଦବାର ସୁଯୋଗ ଲାଭ କରିଛି । କେତେ କେତେବେଳେ ମୁଁ ବିଶ୍ୱବିଦ୍ୟାଳୟର କାର୍ଯ୍ୟକୁ କଡ଼ା ଭାଷାରେ ସମାଲୋଚନା

କରିଛି । ସଭାପତି ଆସନରୁ କୁଳପତି ପରିଜା ସେସବୁ ସମାଲୋଚନାର ଉତ୍ତର ପ୍ରଦାନ କରନ୍ତି । କିନ୍ତୁ ବ୍ୟକ୍ତିଗତ ଭାବରେ ସେ କସ୍ମିନ୍‌କାଳେ ମୋ ପ୍ରତି ବିରକ୍ତ ହୋଇ ରୁକ୍ଷ ବ୍ୟବହାର କରି ନାହାନ୍ତି । ତାଙ୍କର ଉଦାରତା ଓ ମହନୀୟତା ଅବିସ୍ମରଣୀୟ ।

ଭାରତୀୟ ଉଦ୍ଭିଦବିଜ୍ଞାନ ସୋସାଇଟି ତରଫରୁ ପ୍ରଫେସର ପରିଜାଙ୍କୁ ଯେତେବେଳେ ବୀରବଲ ସାହାଣୀ ସ୍ୱର୍ଣ୍ଣପଦକ ପ୍ରଦାନ କରାଯାଇ ତାଙ୍କୁ ସମ୍ମାନ ପ୍ରଦର୍ଶନ କରାଯାଇଥିଲା, ସେ ଉପଲକ୍ଷେ ସେ ଧାନଗଛର ଶରୀରତତ୍ତ୍ୱ ଉପରେ କରିଥିବା ତାଙ୍କ ନିଜ ଗବେଷଣା ବିଷୟବସ୍ତୁ ଉପରେ ଏକ ସାରଗର୍ଭକ ଭାଷଣ ପ୍ରଦାନ କରିଥିଲେ । ପରେ ଯେତେବେଳେ ସେ ଭାଷଣଟିକୁ ଉଦ୍ଭିଦବିଜ୍ଞାନ ସୋସାଇଟିର ଜର୍ଣ୍ଣାଲ୍‌ରେ ଛପା ହେବାପାଇଁ ସ୍ଥିର କରାଗଲା ପ୍ରଫେସର ପରିଜା ମତେ ଡାକି ସେ ଭାଷଣଟିକୁ ଆଧୁନିକ ଜ୍ଞାନୋପଯୋଗୀ କରି ପରିବର୍ତ୍ତନ ଓ ପରିବର୍ଦ୍ଧନ କରିଦେବାକୁ କହିଲେ । ମୁଁ ତାହା କରିଦେଇଥିଲି ଓ ସେ ମୋର କାର୍ଯ୍ୟପ୍ରତି କୃତଜ୍ଞତା ଉଲ୍ଲେଖ କରି ଉକ୍ତ ପ୍ରବନ୍ଧଟିକୁ ପ୍ରକାଶ କରିଥିଲେ ।

ବୈଜ୍ଞାନିକ ଗବେଷଣା, ଉଚ୍ଚଶିକ୍ଷା ଅନୁଷ୍ଠାନ ଓ ବିଶ୍ୱବିଦ୍ୟାଳୟର ପ୍ରଶାସନ ଓ କୃଷି ବିଭାଗର ପ୍ରଶାସନରେ ପ୍ରଫେସର ପରିଜା ନିଜର ପାରଦର୍ଶିତା ପ୍ରଦର୍ଶନ କରିଥିଲେ ମଧ୍ୟ ସେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ, ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ଉନ୍ନତି ପାଇଁ ଅବିସ୍ମରଣୀୟ କାର୍ଯ୍ୟ କରିଯାଇଛନ୍ତି । ସେ ଉତ୍କଳ ସମ୍ମିଳନୀର ସଭାପତି ଓ ଉତ୍କଳ ସାହିତ୍ୟସମାଜର ସଭାପତି ଦାୟିତ୍ୱ ବହନ କରି ନିଜ ଜନ୍ମସ୍ଥଳୀ ଓଡ଼ିଶା ଓ ନିଜ ମାତୃଭାଷା ଓଡ଼ିଆ ଭାଷା ପ୍ରତି ଜଣେ ଖାଣ୍ଟି ଓଡ଼ିଆର ପବିତ୍ର କର୍ତ୍ତବ୍ୟ ସମ୍ପାଦନା କରିପାରିଛନ୍ତି ।

ପ୍ରଫେସର ପରିଜାଙ୍କ ଅମର ଆତ୍ମା ସ୍ୱର୍ଗପୁରୀରେ ରହି ତାଙ୍କର ମର୍ତ୍ତ୍ୟପୁରୀର ପ୍ରିୟ କର୍ମକ୍ଷେତ୍ର ରେଭେନ୍ସା କଲେଜ, ବାଣୀବିହାରସ୍ଥିତ ଉତ୍କଳ ବିଶ୍ୱବିଦ୍ୟାଳୟ, ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ, ଓଡ଼ିଶା କୃଷି ବିଭାଗ, ଉତ୍କଳ ସମ୍ମିଳନୀ, ଉତ୍କଳ ସାହିତ୍ୟସମାଜ, ଓଡ଼ିଶା ବିଧାନସଭା ପ୍ରଭୃତିର ଉତ୍ତରୋତ୍ତର ଉନ୍ନତି ସାଧିତ ହେଉ ବୋଲି ଆଶୀର୍ବାଦବାଣୀ ବର୍ଷଣ କରୁଥିବ । ଓଡ଼ିଶାରେ ଆମ୍ଭେମାନେ ତାଙ୍କର ଅଗଣିତ ଛାତ୍ରଛାତ୍ରୀ ଓ ସହକର୍ମୀ ତାଙ୍କର ମହନୀୟ ଆଦର୍ଶରେ ଅନୁପ୍ରାଣିତ ହୋଇ ଦେଶ ଓ ଜାତି ପ୍ରତି ତାଙ୍କର ଅପୂରଣୀୟ ଆକାଙ୍‌କ୍ଷା ଓ ଅଭିଳାଷ ପୂରଣ କରିବା ପାଇଁ ସାମାନ୍ୟ କିଛି କାର୍ଯ୍ୟ କରିପାରିଲେ ଏହା ତାଙ୍କ ପ୍ରତି ଆମର ଉପଯୁକ୍ତ ଶ୍ରଦ୍ଧାଞ୍ଜଳି ହେବ ଓ ତାଙ୍କର ପ୍ରକୃତ ସ୍ମୃତିରକ୍ଷା ହେବ ।

# ଡକ୍ଟର ପ୍ରାଣକୃଷ୍ଣ ପରିଜା – ଏକ ଆଲୋକପାତ

**ଗିରିଜାଭୂଷଣ ପଟ୍ଟନାୟକ**

ଆମେ ସବୁ କଲେଜକୁ ଗଲାବେଳେ ପରିଜାସାହେବ ରେଭେନ୍ସା କଲେଜ ଦିଗ୍‌ବଳୟରୁ ଅସ୍ତ ହୋଇଗଲେଣି । କିନ୍ତୁ ସୂର୍ଯ୍ୟ ଅସ୍ତ ହେଲାପରେ ମଧ୍ୟ ଯେପରି ତାହାର ଲୋହିତ ଆଭା ପୃଥିବୀକୁ ବହୁ ସମୟଧରି ଆଲୋକିତ କରି ରଖେ ଠିକ୍ ସେହିପରି ପରିଜାସାହେବ ତଥାପି ଆଲୋକିତ କରି ରଖି ଥାଆନ୍ତି ରେଭେନ୍ସା କଲେଜକୁ ।

ରେଭେନ୍ସା କଲେଜ ପୋର୍ଟିକୋ ପାଖରୁ କନିକା ଲାଇବ୍ରେରି ପର୍ଯ୍ୟନ୍ତ ପଥର ସ୍ଲାବ୍ ଦିଆଯାଇ ରାସ୍ତା । ଦୁଇ ସ୍ଲାବ୍ ମଝିରେ ଦୂବଘାସ ଉଠିଛି ବେଶ୍ ବହଳ । ପ୍ରିନ୍ସପାଲ ଶଚିଦାନନ୍ଦ ରାୟଙ୍କର କଡ଼ା ନୋଟିସ୍ । ଏପରି ଭାବରେ ଚାଲିବ ଯେପରି ସ୍ଲାବ୍ ମଝିରେ ଘାସ ନଷ୍ଟ ନ ହୁଏ । ଏହା କୁଆଡ଼େ ପରିଜାସାହେବଙ୍କର ପରମ୍ପରା । ଠିକ୍ ସେଇପରି କଲେଜ କ୍ୱାଡରାଙ୍ଗଲ । ଘାସ, ଦୂବଘାସର ଲନ୍ । ସେ ଲନ୍ ଉପରେ ତମେ ବସିପାରିବ, ଅନୁମତି ନେଇ ସଭା କରିପାରିବ । କିନ୍ତୁ ସେ ଉପର ଦେଇ ଯିବାଆସିବା କରିପାରିବ ନାହିଁ । ସେ ଲନ୍ ଦେଖିଲେ ଆଖି ଖୋସି ହୋଇଯିବ । ପରିଜାସାହେବଙ୍କ ପରମ୍ପରା । ରେଭେନ୍ସା କଲେଜର ବଟାନିକାଲ ଗାର୍ଡ଼େନ । ଆଜି ଯେଉଁଠି ପରିଜା ବଟାନି ପୋଷ୍ଟ-ଗ୍ରାଜୁଏଟ୍ ଡିପାର୍ଟମେଣ୍ଟ ହୋଇଛି ଠିକ୍ ତା ପଛ ପଟକୁ ସେ ମଧ୍ୟ ବଟାନିକାଲ ଗାର୍ଡ଼େନ ପରିବ୍ୟାପ୍ତ ଥିଲା । ବଟାନିକାଲ ଗାର୍ଡ଼େନ ଗଛରୁ ପତ୍ରଟିଏ କିଏ ଛିଣ୍ଡାଇଦେଇ ପାରିବ ? ଡକ୍ଟର ବଂଶୀଧର ସାମନ୍ତରାୟଙ୍କ ପର୍ଯ୍ୟନ୍ତ ସେ ପରିଜା ପରମ୍ପରା ବାଘ ଭୟପରି ଲାଗୁଥିଲା ପିଲାମାନଙ୍କୁ ।

ସୂର୍ଯ୍ୟ ଅସ୍ତ ହୋଇଗଲା ପରେ ଆଲୋକର ତେଜ କମିଯାଇଥିବାରୁ ମୁଲାୟମ ଲାଗେ, ମନୋରମ ଦିଶେ । ପରିଜା ପରମ୍ପରା ସେଇଭଳି । ରୌଦ୍ରତେଜର ଜ୍ୱାଳା ନ ଥାଏ, ଆଭା ଥାଏ ।

ଶିକ୍ଷା ବିଭାଗର ଦୁଇଟି ସାହେବ ଥିଲେ – ଜଣେ ତ୍ରିପାଠୀସାହେବ (ସ୍ୱର୍ଗତ ଶ୍ୟାମଚନ୍ଦ୍ର ତ୍ରିପାଠୀ) ଏବଂ ଆଉ ଜଣେ ପରିଜାସାହେବ (ସ୍ୱର୍ଗତ ପ୍ରାଣକୃଷ୍ଣ ପରିଜା) । ସେମାନଙ୍କ ପରେ ଆଉ କେହି ସାହେବ ହୋଇ ନାହାନ୍ତି । ଏ ଦୁଇ ସାହେବ ନ ଥିଲେ ଓଡ଼ିଶାର ବିଶ୍ୱବିଦ୍ୟାଳୟ ହେବାକୁ ଆହୁରି ଡେରି ହୋଇଥାଆନ୍ତା । କିନ୍ତୁ ସେମାନଙ୍କର ଏଇ ଭୂମିକାକୁ କେତେ କିଏ ମନେ ରଖିଛନ୍ତି କହିବା କଠିନ ।

ଡକ୍ଟର ପରିଜା ବୈଜ୍ଞାନିକ ଥିଲେ । ବିଜ୍ଞାନ କହିଲେ ଜିଜ୍ଞାସାକୁ ବୁଝାଏ । କୌଣସି କଥାକୁ ଅନ୍ଧ ଭାବରେ ଗ୍ରହଣ କରିନେବା ବିଜ୍ଞାନର ପ୍ରତିକୂଳ । ତାଙ୍କର ସାନପୁଅ ବୁଲୁ କ୍ୟାନ୍‌ସର ରୋଗରେ ପୀଡ଼ିତ ହୋଇ ବମ୍ବେରେ ଚିକିତ୍ସିତ ହେଉଥାନ୍ତି । ଦିନେ ଠୁରାବାବୁ (ପରିଜାସାହେବଙ୍କ ବଡ଼ପୁଅ) ଆସି କହିଲେ ଯେ ଆନ୍ଧ୍ରପ୍ରଦେଶର କୌଣସି ବିଖ୍ୟାତ ବାବାଙ୍କର ଆଶୀର୍ବାଦ ମିଳିଯାଇଛି ଏବଂ ଆଶ୍ଚର୍ଯ୍ୟର କଥା ତା' ପରେ ପରେ ବୁଲୁ ସଂଜ୍ଞା ଫେରିପାଇଛି । ଅଧ୍ୟାପକ ଡକ୍ଟର ରାଧାନାଥ ରଥ ମନସ୍ତତ୍ତ୍ୱବିଦ୍ । ସେ ପରିଜାସାହେବଙ୍କୁ ଭେଟି କଥାଟାର ସତ୍ୟତା ଜାଣିବାକୁ ଚାହିଁଲେ । ପରିଜାସାହେବ କହିଲେ ଶୁଣ ଡକ୍ଟର ରଥ, ମୁଁ ବୁଲୁର ବାପା । ପୁଅ ଯେ କୌଣସି ଉପାୟରେ ଭଲ ହୋଇଗଲେ ମୋଠାରୁ କିଏ ସୁଖୀ ହେବ ? କିନ୍ତୁ ମୁଁ ସଚେତନ ଯେ ବୁଲୁ କ୍ୟାନ୍‌ସର ରୋଗରେ ପୀଡ଼ିତ ଏବଂ ସମଗ୍ର ମାନବ ଜାତିର ପ୍ରଚେଷ୍ଟା ଚାଲିଛି ଏହି କ୍ୟାନ୍‌ସର ରୋଗର ନିରାକରଣ ପାଇଁ, କ୍ରମାଗତ ପ୍ରଚେଷ୍ଟା ଯଦି କୌଣସି ବାବା ତାଙ୍କୁ ଭଲ କରି ଦେଇପାରିବେ ଆନନ୍ଦର କଥା, କିନ୍ତୁ ମଣିଷ ଜାତିର ସାମୂହିକ ଏବଂ କ୍ରମାଗତ ପ୍ରଚେଷ୍ଟା ତା' ହେଲେ କ'ଣ ନିରର୍ଥକ ନା ଅନାବଶ୍ୟକ ?

ଏଇ ହେଉଛନ୍ତି ବୈଜ୍ଞାନିକ ଡକ୍ଟର ପ୍ରାଣକୃଷ୍ଣ ପରିଜା ।

ଡକ୍ଟର ପରିଜା ଭାରି ରକ୍ଷଣଶୀଳ ବୋଲି ସମସ୍ତଙ୍କର ମତ । କିନ୍ତୁ ମୋର ଅଭିଜ୍ଞତା କଥା କହିବି । ବିଶ୍ୱବିଦ୍ୟାଳୟ ଗ୍ରାଣ୍ଟସ୍ କମିଶନର ଚେୟାରମ୍ୟାନ ଶ୍ରୀ ସି.ଡି. ଦେଶମୁଖ ଓଡ଼ିଶା ଆସୁଥାନ୍ତି । ମୁଁ ସେତେବେଳେ ରେଭେନ୍ସା କଲେଜ ୟୁନିଅନରେ ସଭାପତି । ମୋର ଇଚ୍ଛା ଯେ ତାଙ୍କୁ ରେଭେନ୍ସା କଲେଜକୁ ନିମନ୍ତ୍ରଣ କରିବି ଏବଂ ତାଙ୍କୁ ମୁଁ କଲେଜ ଏବଂ ବିଶେଷତଃ ହଷ୍ଟେଲ ଅବସ୍ଥା ଦେଖାଇବି । ପ୍ରିନ୍ସପାଲ ନାମଙ୍ଗ ହେଲେ । ତାଙ୍କର ନାମଙ୍ଗ ହେବାର ଅନ୍ୟତମ କାରଣ ଯେ ପରିଜାସାହେବ ରାଜି ନ ହୋଇପାରନ୍ତି । କାରଣ ଦେଶମୁଖ ଉତ୍କଳ ବିଶ୍ୱବିଦ୍ୟାଳୟର ଅତିଥି । ମୁଁ ପରିଜାସାହେବଙ୍କୁ ଭେଟିଲି । ଆଶ୍ଚର୍ଯ୍ୟର କଥା ସେ ସାଙ୍ଗେ ସାଙ୍ଗେ ରାଜି ହେଲେ ଏବଂ ମୁଁ ତାଙ୍କୁ ଯେତେବେଳେ ପ୍ରସ୍ତାବ ଦେଲି ଯେ ଦେଶମୁଖ ଘଣ୍ଟାକ ପୂର୍ବରୁ ରେଭେନ୍ସା କଲେଜରେ ପହଞ୍ଚିଲେ, ସେ କଲେଜରେ ବିଶେଷତଃ ହଷ୍ଟେଲ ଦେଖିପାରନ୍ତି । ସେ ସାଙ୍ଗେ ସାଙ୍ଗେ ଉକ୍ତ ପ୍ରସ୍ତାବରେ ମଧ୍ୟ ରାଜି ହୋଇଗଲେ । ଦେଶମୁଖ ଆସିବେ ସଭାକୁ, ମାନପତ୍ର ଦିଆଯିବ, ପରିଜା ସଭାପତିତ୍ୱ କରିବେ, ଏକଥା ପ୍ରିନ୍ସିପାଲ ଜାଣିଥିଲେ କିନ୍ତୁ ଆର ପ୍ରସ୍ତାବଟି ଜାଣି ଶୁଣି ପ୍ରିନ୍ସପାଲ ଜାଣି ନ ଥିଲେ । ପ୍ରିନ୍ସିପାଲ ସଭାରେ ପହଞ୍ଚିଲା ବେଳକୁ ଦେଶମୁଖ ହଷ୍ଟେଲ ଏବଂ କଲେଜ ପରିଦର୍ଶନ କରି ସାରିଥାନ୍ତି । ପ୍ରିନ୍ସିପାଲ ଟିକିଏ କ୍ଷୁବ୍ଧ ହେଲେ, କିନ୍ତୁ ଯେତେବେଳେ

ଦେଶମୁଖ ସମ୍ବର୍ଦ୍ଧନାର ଉତ୍ତର ଦେଇ ଏକ ନୂତନ ଛାତ୍ରାବାସ ପାଇଁ ଗ୍ରାଣ୍ଟ ଦେବାର ଘୋଷଣା କଲେ ସେତେବେଳେ ଅବସ୍ଥା ବଦଳିଗଲା ।

## ଡକ୍ଟର ପରିଜା ଶିକ୍ଷାବିତ୍

ଆଗରୁ କହିଛି ପରିଜାସାହେବ ଭାରି ରକ୍ଷଣଶୀଳ ବୋଲି ପ୍ରବାଦ ଅଛି । ସୀମା ଆନ୍ଦୋଳନ । ପରିଜାସାହେବ ସେତେବେଳେ ଦିଲ୍ଲୀରେ । ଓଡ଼ିଶାର ଅବସ୍ଥା ସାରାଭାରତରେ ଆଲୋଡ଼ନ ସୃଷ୍ଟି କରିଛି । ଓଡ଼ିଆମାନେ ଯେ ସବୁବେଳେ ନିରୀହ ସୁଧାର ଏକଥା ପ୍ରମାଣିତ ହୋଇଯାଇଛି । ବିଶ୍ୱବିଦ୍ୟାଳୟ ପରୀକ୍ଷା ଫେବୃୟାରୀ ମାସରେ । ଜାନୁଆରୀ ମାସରେ ଆନ୍ଦୋଳନ । ବହୁ ପରୀକ୍ଷାର୍ଥୀ ଛାତ୍ର ଆନ୍ଦୋଳନ ସହିତ ସଂପୃକ୍ତ । ମୁଁ ନିଜେ ତା' ଭିତରୁ ଜଣେ । ୱାରେଣ୍ଟ ଉଠି ନାହିଁ । ପରୀକ୍ଷା କିଛି ଦିନ ନ ଘୁଞ୍ଚିଲେ ବହୁତ ଅସୁବିଧା । ୱାରେଣ୍ଟ ମୁଣ୍ଡ ଉପରେ । ତଥାପି ପରିଜାସାହେବଙ୍କୁ ଯାଇ ଭେଟିଲି । ଡର ଲାଗୁଥିଲା । ପରୀକ୍ଷା ଘୁଞ୍ଚାଇବା ନାଁ ଶୁଣିଲେ ସେ ବିଗିଡ଼ିବେ କାଳେ । ପରିଜାସାହେବ କୁଣ୍ଢାଇ ପକାଇଲେ ମୋତେ । ପଥୁରିଆ ଆଖିରୁ ଲୁହ ବୋହି ପଡ଼ିଲା । ଓଡ଼ିଆ ପିଲା ନାଁ ରଖିଚ, ନିଶ୍ଚୟ ପରୀକ୍ଷା ଘୁଞ୍ଚିବ । ପରୀକ୍ଷା ସତକୁ ସତ ଘୁଞ୍ଚିଗଲା ।

## ଡକ୍ଟର ପରିଜା ଓଡ଼ିଆ ଜାତୀୟତାବାଦୀ

ସୀମା ଆନ୍ଦୋଳନ ବେଳକୁ ମୋର ଫାଇନାଲ ବି.ଏ. ପରୀକ୍ଷା । ଟେଷ୍ଟ ପରୀକ୍ଷା ସରିଯାଇଛି । କିନ୍ତୁ ବିଶ୍ୱବିଦ୍ୟାଳୟ ପରୀକ୍ଷା ପାଇଁ ଆଡ୍‌ମିଟ୍ କାର୍ଡ ବା ପ୍ରବେଶ ପତ୍ର ମିଳି ନାହିଁ । ସରକାରଙ୍କ ତରଫରୁ ଚାପା ପଡ଼ିଲା ପ୍ରିନ୍ସିପାଲଙ୍କ ଉପରେ ପ୍ରବେଶ ପତ୍ର ନ ଦେବାପାଇଁ । କିନ୍ତୁ ପ୍ରବେଶ ପତ୍ର ଦେବ ଉତ୍କଳ ବିଶ୍ୱବିଦ୍ୟାଳୟ, ପ୍ରିନ୍ସିପାଲଙ୍କ ମାଧ୍ୟମରେ । ଯାଇ ପହଞ୍ଚିଲି ପରିଜାସାହେବଙ୍କ ପାଖରେ । ପ୍ରବେଶପତ୍ର ତମ ପାଖରେ ପହଞ୍ଚିଲେ ଗଲା । ତମେ ବ୍ୟସ୍ତ ହୁଅନା । ସରକାର କିଏ ଉତ୍କଳ ବିଶ୍ୱବିଦ୍ୟାଳୟକୁ କହିବା ପାଇଁ ? ପରିଜାସାହେବଙ୍କର ନିର୍ଭର ପ୍ରତିଶ୍ରୁତି । ସିଣ୍ଡିକେଟକୁ ଗଲା ସମସ୍ୟାଟା । ସ୍ୱର୍ଗତ ସୁରଜମଲ ସାହା ଏବଂ ଶ୍ରୀ ବିବୁଧେନ୍ଦ୍ର ମିଶ୍ର (କୁନିଭାଇନା) ସମର୍ଥନ କଲେ ପରିଜାସାହେବଙ୍କୁ । ଆଡ୍‌ମିଟ୍ କାର୍ଡ ମିଳିଲା ।

ଡକ୍ଟର ପରିଜା ପିତା, ଶିକ୍ଷକ, ଅଭିଭାବକ ଏବଂ ସର୍ବୋପରି ଓଡ଼ିଶା ଦେଶପ୍ରେମୀ ।

ପରିଜାସାହେବ ଅବସର ନେଲେଣି କୁଳପତି ପଦରୁ । ଥରେ ଯାଉଥିଲେ ଅନୁଗୋଳ କୌଣସି କାର୍ଯ୍ୟରେ । ବାଟରେ ଦେଖିଲେ ଅମରି ବା ଆଇପୋମିଆ ଗଛ । ହଠାତ୍ ମନେହେଲା ତାଙ୍କର ଯେ ଏହା ଉପରେ ଗବେଷଣା ହେବା ଉଚିତ । ଫେରିଲା ବାଟରେ ପଶିଲେ ରେଭେନ୍ସା କଲେଜକୁ । ସିଧା ଉଦ୍ଭିଦ ବିଜ୍ଞାନ ବିଭାଗକୁ ।

କହିଲେ ଯାଇ ମୋର ଜଣେ ଗବେଷକ ଛାତ୍ର ଦରକାର । ଡକ୍ଟର ବଂଶୀଧର ସାମନ୍ତରାୟ ସାଙ୍ଗେ ସାଙ୍ଗେ ଖୋଜି ବାହାରକଲେ ବାଞ୍ଛାନିଧି ମିଶ୍ରଙ୍କୁ । ପରିଜାସାହେବ ପ୍ରତିଦିନ ସକାଳ ନଅଟାରେ ଆସି ତାଙ୍କୁ ନିର୍ଦ୍ଦେଶନା ଦେବେ ।

ପରିଜାସାହେବଙ୍କର ନଅଟା ମାନେ ନଅଟା । ଆମ ବଡ଼ଲୋକଙ୍କ ଭଳି ନଅଟାମାନେ ଦଶଟା ନୁହେଁ ।

ପରିଜାସାହେବ ଠିକ୍ ନଅଟା ବେଳେ ପହଞ୍ଚି ଗେଟ୍ ଭିତରେ ପଶିବେ । ସେତେବେଳକୁ ସମସ୍ତେ ଆଟେନ୍‌ସନ୍‌ରେ । ଗବେଷଣା ନିର୍ଦ୍ଦିଷ୍ଟ ସମୟରେ ସରିଲା ଏବଂ ବାଞ୍ଛାନିଧି ପିଏଚ୍. ଡି. ଉପାଧି ପାଇଲେ ।

ପରିଜାସାହେବଙ୍କର ଏଇ ହେଉଛି ଶୃଙ୍ଖଳାଜ୍ଞାନ ଏବଂ ନିୟମିତତା ।

ମୋ ସ୍ତ୍ରୀ କମଳକୁମାରୀ ପଟ୍ଟନାୟକ ଉଦ୍ଭିଦ ବିଜ୍ଞାନରେ ଏମ୍. ଏସ୍‌ସି. ପ୍ରଥମ ଶ୍ରେଣୀରେ ପାସ୍ କରିଥାନ୍ତି । କିନ୍ତୁ ନା ଥାଏ ଚାକିରି, ନା ଗବେଷଣାର ସ୍କୋପ । ତାଙ୍କ ମାମୁ ଡକ୍ଟର ଚର୍ଚ୍ଚ ପଟ୍ଟନାୟକ ତାଙ୍କୁ ନେଇ ପହଞ୍ଚିଲେ ଡକ୍ଟର ପରିଜାଙ୍କ ପାଖରେ । ପରିଜାସାହେବ ଏକ ଚିଠି ଲେଖିଲେ ଆଲାହାବାଦର କୁଳପତି ଉଦ୍ଭିଦବିତ୍ ଡକ୍ଟର ଶ୍ରୀ ରଞ୍ଜନଙ୍କ ପାଖକୁ । ସପ୍ତାହକ ପରେ ଉତ୍ତର ଆସିଲା । ଆପଣଙ୍କ ଅନୁରୋଧ, ମୋ ପାଇଁ ଆଦେଶ । କମଳକୁମାରୀ ଆଲାହାବାଦ ବିଶ୍ୱବିଦ୍ୟାଳୟରେ ଗବେଷଣା କରିବେ । ବିଷୟବସ୍ତୁ ଲେଖା ହୋଇଛି । ବୃତ୍ତି ପାଇବେ । ସରୋଜିନୀ ନାଇଡୁ ହଷ୍ଟେଲରେ କେଉଁ କୋଠରିରେ ରହିବେ ତାହା ମଧ୍ୟ ଲେଖା ଯାଇଛି । ପରିଜାସାହେବଙ୍କର ଜାତୀୟ ଖ୍ୟାତିର ଏହା ଏକ ନମୁନା ।

କମଳକୁମାରୀ ପଟ୍ଟନାୟକ ଗବେଷଣା କରୁଥାଆନ୍ତି ଆଲାହାବାଦରେ । ତେନ୍ତୁଳି ମଞ୍ଜିର ଏକ ନୂଆ ଏନ୍‌ଜାଇମ୍ (enzyme)ସେ ବାହାର କରିଥାଆନ୍ତି । ଆଲାହାବାଦକୁ ଆସିଥାଆନ୍ତି ପୃଥିବୀ ପ୍ରସିଦ୍ଧ ବୈଜ୍ଞାନିକ ବେନେଟ କ୍ଲାର୍କ । ପ୍ରଫେସର ଶ୍ରୀ ରଞ୍ଜନ ତାଙ୍କୁ ନେଇ ଗଲେ ଉଦ୍ଭିଦ ବିଜ୍ଞାନର ଗବେଷଣାଗାରକୁ ଏବଂ ପରିଚୟ କରାଇଦେଲେ କମଳକୁମାରୀଙ୍କୁ । ଡକ୍ଟର ପରିଜାଙ୍କର ଲାବରେଟୋରୀରୁ ଆସିଥିବା ଛାତ୍ରୀ ଭାବରେ ବେନେଟ୍ କ୍ଲାର୍କ ପରିଜାସାହେବଙ୍କର ପ୍ରଶଂସାରେ ଶତମୁଖର ଏବଂ ସାଙ୍ଗେ ସାଙ୍ଗେ ବସିଗଲେ କମଳକୁମାରୀଙ୍କର ଦ୍ୱାରା ଆବିଷ୍କୃତ ଏନ୍‌ଜାଇମ୍‌କୁ ପରୀକ୍ଷା କରିବା ପାଇଁ । ଦୁଇଦିନ ଅଧିକା ରହିଲେ ସେଇଥିପାଇଁ ।

ପରିଜାସାହେବଙ୍କର ଆନ୍ତର୍ଜାତିକ ଖ୍ୟାତିର ଏହା ଏକ ଉଦାହରଣ ମାତ୍ର ।

ପରିଜାସାହେବ ଆଉ ନାହାନ୍ତି । ସେ ଥିଲେ ଏକ କ୍ଲାସିକାଲ ମଣିଷ । କ୍ଲାସିକାଲ ଲୋକ କ୍ରମଶଃ ହଜି ଯାଇଛନ୍ତି ସମାଜରୁ । କ୍ଲାସିକାଲ ମଣିଷ ହେଉଛନ୍ତି ସମାଜର ଆଲୋକବର୍ତ୍ତିକା ।

# ଡକ୍ଟର ପରିଜା : ଦୃଢ଼ମନା ଶିକ୍ଷାବ୍ରତୀ

**ଗୁରୁଚରଣ ମହାନ୍ତି**

ଯଦିଓ ଡକ୍ଟର ପରିଜା ଓ ମୁଁ ଏକା ଶିକ୍ଷାନୁଷ୍ଠାନରେ ପଚିଶ ବର୍ଷ ଧରି ଏକାଠି କାର୍ଯ୍ୟ କରିଥିଲୁ (ଅବଶ୍ୟ ବିଭିନ୍ନ ବିଭାଗରେ) ତାଙ୍କ ଭଳି ଜଣେ ଖ୍ୟାତନାମା ବ୍ୟକ୍ତିଙ୍କ ଜୀବନ ସମ୍ବନ୍ଧରେ କିଛି ଆଲୋକପାତ କରିବାକୁ ମୁଁ ନିଜକୁ ଯଥେଷ୍ଟ ଉପଯୁକ୍ତ ବୋଲି ବିବେଚନା କରିପାରୁ ନାହିଁ । କାରଣ ସେ ଥିଲେ ପୃଥିବୀରେ ସମ୍ମୁଖ ଧାଡ଼ିରେ ଦେଦୀପ୍ୟମାନ ଉଦ୍ଭିଦବିତ୍‌ମାନଙ୍କ ମଧ୍ୟରେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଏକ ବିରାଟ ବ୍ୟକ୍ତିତ୍ୱ । ସେ ତାଙ୍କ ନିଜ ରାଜ୍ୟରେ ଓ ଭାରତର ଅନ୍ୟାନ୍ୟ ରାଜ୍ୟରେ ତଥା ବିଦେଶରେ ଅଗଣିତ ବିଦ୍ୱାନ୍‌ଙ୍କ ଠାରୁ ସମ୍ମାନ, ଶ୍ରଦ୍ଧା ଓ ପ୍ରୀତି ଲାଭ କରିଥିଲେ । ଯାହାହେଉ ତାଙ୍କ ସହିତ ବହୁ ବର୍ଷଧରି ସଂସ୍ପର୍ଶରେ ଆସିଥିବା ଯୋଗୁଁ ମୁଁ ଯେତେ ଯାହା କିଛି ଶିକ୍ଷାଲାଭ କରିଛି ଓ ମୋ ଜୀବନରେ ଯାହା କିଛି ଉନ୍ନତି କରିଛି, ସେଥିପାଇଁ ମୋର ବ୍ୟକ୍ତିଗତ କୃତଜ୍ଞତା ଜ୍ଞାପନ କରିବାର ଏ ଯେଉଁ ଦୁର୍ଲଭ ସୁଯୋଗ ମୋତେ ମିଳିଛି, ତାକୁ ହାତଛଡ଼ା କରିଦେବାକୁ ମୁଁ ଇଚ୍ଛା କରୁ ନାହିଁ ।

୧୯୦୯ ମସିହାରେ ଯେତେବେଳେ ମୁଁ କଟକରେ ମିଶନ ହାଇସ୍କୁଲରେ ସେକେଣ୍ଡ୍ କ୍ଲାସ୍ (ବର୍ତ୍ତମାନର ଦଶମ ଶ୍ରେଣୀ)ର ଛାତ୍ର ଥିଲି ସେତେବେଳେ ମୁଁ ପ୍ରଥମ ଥର ପାଇଁ ଜାଣିବାକୁ ପାଇଲି ଯେ, ରେଭେନ୍ସା କଲିଜିଏଟ୍ ସ୍କୁଲ, କଟକର ଛାତ୍ର ପ୍ରାଣକୃଷ୍ଣ ପରିଜା କଲିକତା ବିଶ୍ୱବିଦ୍ୟାଳୟର ଗତ ଏଣ୍ଟ୍ରାନ୍ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ଯୋଗ୍ୟତା ଅନୁସାରେ ପ୍ରଥମ ଦଶ ଜଣ ଛାତ୍ରଙ୍କ ମଧ୍ୟରେ ସ୍ଥାନ ଲାଭ କରି ମାସିକ କୋଡ଼ିଏ ଟଙ୍କା ବୃତ୍ତି ଲାଭ କରିଛନ୍ତି, ଯାହାକି ସେତେବେଳେ ଜଣେ ଛାତ୍ର ପକ୍ଷରେ ଏକ ବିରଳ ସମ୍ମାନ ଓ ଗୌରବ ବୋଲି ବିବେଚିତ ହେଉଥିଲା, ପୁନଶ୍ଚ ଯେତେବେଳେ ସେ ଛାତ୍ରଜଣକ ଓଡ଼ିଶା ଭଳି ଏକ ଅନଗ୍ରସର ଅଞ୍ଚଳରୁ ଆସିଥିଲା, ସେତେବେଳେ ଭାରତର ସମଗ୍ର ପୂର୍ବାଞ୍ଚଳ ଯଥା—ଆସାମ, ବଙ୍ଗଳା, ବିହାର ଓ ଓଡ଼ିଶା କଲିକତା ବିଶ୍ୱବିଦ୍ୟାଳୟ ଅଧୀନରେ ଥିଲା । ଏହି ଆନନ୍ଦଦାୟକ ସମ୍ବାଦରେ ତତ୍‌କାଳୀନ ଛାତ୍ରସମାଜରେ ଯେଉଁ ଆନନ୍ଦର ଲହରୀ ଖେଳିଯାଇଥିଲା, ଏବେ ମଧ୍ୟ ମୋର ସ୍ମୃତିପଟରେ ତାହା ପରିଷ୍କାର ରୂପେ ଉଦ୍ଭାସିତ ହେଉଛି ।

୧୯୨୧ ମସିହାରେ ପରିଜା କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରୁ କୃତିତ୍ୱ ସହ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ଓ ଗବେଷଣାରେ ପ୍ରଭୂତ ଅଭିଜ୍ଞତା ହାସଲ କରି ଭାରତକୁ

ପ୍ରତ୍ୟାବର୍ତ୍ତନ କରି ରେଭେନ୍ସା କଲେଜରେ ଆଇ. ଇ. ଏସ୍. (ଇଣ୍ଡିଆନ୍ ଏଡୁକେସନାଲ୍ ସର୍ଭିସ୍) ପଦବୀରେ ଉଦ୍ଭିଦ ବିଜ୍ଞାନର ପ୍ରଫେସର ଓ ବିଭାଗୀୟ ମୁଖ୍ୟ ରୂପେ ଯୋଗଦାନ କରିଥିଲେ । ସେ ମଧ୍ୟ ପଶ୍ଚିମ ଛାତ୍ରାବାସର ୱାର୍ଡେନ୍ ରୂପେ ନିଯୁକ୍ତ ହୋଇଥିଲେ ଯେଉଁଠି ମୁଁ ସେତେବେଳେ ତତ୍ତ୍ୱାବଧାରକ (ସୁପରିଣ୍ଟେଣ୍ଡେଣ୍ଟ) ଥିଲି । ମୁଁ ପାଞ୍ଚଜଣ ଛାତ୍ରଙ୍କୁ ସଙ୍ଗରେ ନେଇ ତାଙ୍କୁ କଟକ ରେଳ ଷ୍ଟେସନରେ ଭୋର ୪ଟା ବେଳେ ଅଭ୍ୟର୍ଥନା ଜଣାଇବା ପାଇଁ ଯାଇଥିବା କଥା ମୋର ସ୍ପଷ୍ଟ ମନେଅଛି ଯେତେବେଳେ ସେ କମ୍ପାର୍ଟମେଣ୍ଟରୁ ଅତି ସାଦାସିଧା ପୋଷାକରେ ଧୋତି ଓ ପଞ୍ଜାବି ପିନ୍ଧି ଓହ୍ଲାଇଥିଲେ । ତାଙ୍କର ଦର୍ଶନ ଲାଭ କରିବା ପାଇଁ ମୋର ଯେଉଁ ବହୁ ପ୍ରତୀକ୍ଷିତ ଅଭିଳାଷ ଥିଲା ତାହା ଚରିତାର୍ଥ କରିବା ପାଇଁ ଏହାହିଁ ଥିଲା ମୋର ପ୍ରଥମ ସୁଯୋଗ । ପଶ୍ଚିମ ଛାତ୍ରାବାସରେ ତାଙ୍କ ଅଧୀନରେ ତତ୍ତ୍ୱାବଧାରକ ରୂପେ ଏକ ବର୍ଷ କାର୍ଯ୍ୟ କଲାପରେ ମୁଁ ପୂର୍ବ ଛାତ୍ରାବାସକୁ ବଦଳି ହୋଇ ଯାଇଥିଲି । ଯାହାହେଉ ସରକାରୀ ତଥା ବ୍ୟକ୍ତିଗତ ବହୁ କାର୍ଯ୍ୟକ୍ଷେତ୍ରରେ ଆମେ ଉଭୟେ ଉଭୟଙ୍କ ଘନିଷ୍ଠ ସଂସ୍ପର୍ଶରେ ଆସିବାର ସୁଯୋଗ ଘଟିଛି । ପ୍ରଫେସର ପରିଜା ଛାତ୍ରାବାସର ୱାର୍ଡନ୍, ଉଦ୍ଭିଦ ବିଜ୍ଞାନର ପ୍ରଫେସର ଓ ରେଭେନ୍ସା କଲେଜର ଅଧକ୍ଷ ରୂପେ କାର୍ଯ୍ୟ କରୁଥିଲାବେଳେ ଶିକ୍ଷାନୁଷ୍ଠାନର ନିୟମକାନୁନ୍ ପ୍ରତି ତାଙ୍କର କିଭଳି ଗଭୀର ସମ୍ମାନ ଥିଲା, ମୋର ସ୍ମରଣ ହେଉଥିବା ସେଭଳି କେତୋଟି ଘଟଣା ଏଠାରେ ଉଲ୍ଲେଖ କରିବା ସମୀଚୀନ ହେବ ।

ସେତେବେଳେ ଛାତ୍ରାବାସରେ ନିୟମ ଥିଲା ଯେ, ବିଶ୍ୱବିଦ୍ୟାଳୟ ପରୀକ୍ଷା ସରିବାର ତିନି ଦିନ ମଧ୍ୟରେ ଅନ୍ତେବାସୀମାନେ ଛାତ୍ରାବାସ ପରିତ୍ୟାଗ କରି ନିଜ ନିଜ ଘରକୁ ଚାଲିଯିବେ । ଛାତ୍ରାବାସର ଜଣେ ଅନ୍ତେବାସୀକୁ ତାଙ୍କର ବିବିଧ କର୍ମକୁଶଳତା ପାଇଁ ମୁଁ ଭଲ ପାଉଥିଲି । ବିଶ୍ୱବିଦ୍ୟାଳୟ ପରୀକ୍ଷା ଶେଷ ହେଲା ପରେ ସେ ଛାତ୍ରାବାସ ନିୟମ ଭଙ୍ଗ କରି ମୋର ନୋଟିସ୍ ସତ୍ତ୍ୱେ ଛାତ୍ରାବାସରେ ଅଧିକ ଦିନ ରହି ଚାଲିଲା । ମୁଁ ଅଗତ୍ୟା ୱାର୍ଡେନ୍ ପ୍ରଫେସର ପରିଜାଙ୍କୁ ଲିଖିତ ଭାବରେ ଏକଥା ଜଣାଇଲି । ସେ ତତ୍‌କ୍ଷଣାତ୍ ସେହି ଛାତ୍ରକୁ ଡକାଇ ପଠାଇଲେ ଓ ତାକୁ ଚବିଶ ଘଣ୍ଟା ମଧ୍ୟରେ ଛାତ୍ରାବାସ ଛାଡ଼ି ଚାଲିଯିବାକୁ ଆଦେଶ ଦେଲେ । ଛାତ୍ରଟି ଏହି ଆଦେଶରେ ବିଶେଷ ଭାବରେ ବିଷଣ୍ଣ ହୋଇପଡ଼ିଲା ଓ କୋହ କୋହ ହୋଇ କାନ୍ଦି ପକାଇଲା । ମୁଁ ତାକୁ ଆଶ୍ୱସନା ଦେଇ ସଙ୍ଗରେ ଆଣି ମୋ କ୍ୱାର୍ଟର୍ସରେ କିଛି ଦିନ ପାଇଁ ରଖିଲି । ପ୍ରଫେସର ପରିଜା ଏ ବ୍ୟବସ୍ଥାରେ କିଛି ଆପତ୍ତି କଲେ ନାହିଁ, ଯଦିଓ ମୋ କ୍ୱାର୍ଟର୍ସ ଛାତ୍ରାବାସ ବିଲିଡିଙ୍ଗ୍‌ର ଏକ ଅଂଶବିଶେଷ ଥିଲା ।

ଅନ୍ୟ ଏକ ଘଟଣା । ଜଣେ ଛାତ୍ର ଛାତ୍ରାବାସରେ ୱାର୍ଡେନ୍ ପ୍ରଫେସର ପରିଜାଙ୍କ କ୍ୱାର୍ଟର୍ସ ନିକଟରେ ଥିବା ଗୋଟିଏ କୋଠରିରେ ରହୁଥିଲା । ସେ ପ୍ରତିଦିନ ରାତିରେ

ଖାଇସାରିଲା ପରେ ସମସ୍ତଙ୍କ ଅଜ୍ଞାତରେ ଛାତ୍ରାବାସ ଛାଡ଼ି ବାହାରକୁ ଚାଲିଯାଉଥିଲା ଓ ସକାଳୁ ଛାତ୍ରାବାସକୁ ଫେରୁଥିଲା । ଏକଥା କେହି ଜାଣି ପାରୁ ନ ଥିଲେ, କିନ୍ତୁ ପ୍ରଫେସର ପରିଜା ଏ କଥାକୁ କିପରି ଲକ୍ଷ୍ୟ କଲେ ଓ ଧୀର ସ୍ଥିର ଭାବରେ କାହାକୁ କିଛି ନ କହି ସେହି କୋଠରିଟିରେ ତାଲା ପକାଇଦେଲେ ଓ କୁଞ୍ଚିକୁ ନିଜ ପାଖରେ ରଖିଲେ । ପରବର୍ତ୍ତୀ ସମୟରେ ଛାତ୍ରଟିକୁ ଚିହ୍ନଟ କରାଗଲା ଓ ତାକୁ ଛାତ୍ରାବାସ ପରିତ୍ୟାଗ କରିବାକୁ ଆଦେଶ ଦିଆଗଲା । ଏହା ଥିଲା ଏକ ସଂଶୋଧନମୂଳକ ଶାସ୍ତି ପ୍ରଦାନ ।

ଯେତେଦୂର ସମ୍ଭବ ୧୯୨୯ ମସିହାରେ କଟକ ସହରରେ ଏକ ଦୃଢ଼ କଂଗ୍ରେସ ଆନ୍ଦୋଳନ ମୁଣ୍ଡ ଟେକିଥିଲା ଓ ଛାତ୍ରମାନଙ୍କୁ କଲେଜ ଓ ଛାତ୍ରାବାସ ଛାଡ଼ି ଚାଲିଆସି ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗଦେବାପାଇଁ ଆହ୍ୱାନ ଦିଆଯାଇଥିଲା । ଆମ୍ଭେମାନେ ପୂର୍ବରୁ ଏହି ପରିକଳ୍ପନାର ସୁରାକ ପାଇଲୁ ଓ ଶୁଣିଲୁ ଯେ ବାହାରର ଲୋକମାନେ ଛାତ୍ରାବାସ ଭିତରକୁ ପ୍ରବେଶ କରି ଅନ୍ତେବାସୀମାନଙ୍କୁ ଏହି ଆନ୍ଦୋଳନରେ ଯୋଗଦେବାକୁ ପ୍ରବର୍ତ୍ତାଇବେ । ତଦାନୀନ୍ତନ କଲେଜ ଅଧକ୍ଷ ମିଷ୍ଟର ଟି. ସି. ଅର୍ଗିଲ ଏହି ଅବସ୍ଥାର କିପରି ସମ୍ମୁଖୀନ କରିବାକୁ ହେବ, ସେ ବିଷୟରେ ଆଲୋଚନା କରିବା ପାଇଁ ଦୁଇ ଛାତ୍ରାବାସର ୱାର୍ଡେନ୍ ଓ ତତ୍ତ୍ୱାବଧାରକମାନଙ୍କର ଏକ ସମ୍ମିଳନୀ ତାଙ୍କ କ୍ୱାଟର୍ସରେ ଆହୂତ କରିଥିଲେ ।

ପ୍ରଫେସର ପରିଜା ପ୍ରସ୍ତାବ ଦେଇଥିଲେ ପୋଲିସକୁ ଏ ସମ୍ବନ୍ଧରେ ଖବର ଦେଇ ସେମାନଙ୍କୁ ଆଣି କଲେଜ ହତା ମଧ୍ୟରେ ରଖାଇବା ଉଚିତ ହେବ ତାହାହେଲେ ପ୍ରକୃତରେ ବାହାର ଲୋକମାନେ କଲେଜ ହତା ଭିତରକୁ ପଶିବାକୁ ଚେଷ୍ଟା କରିବେ ତେବେ ପୋଲିସ୍ ସେମାନଙ୍କ ଅବାଧ ପ୍ରବେଶକୁ ବାଧାଦେବ । ପୂର୍ବ ଛାତ୍ରାବାସର ତତ୍ତ୍ୱାବଧାରକ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଓ ମୁଁ ଏ ପ୍ରସ୍ତାବରେ ଏକମତ ହେଲୁ ନାହିଁ; ଯେହେତୁ ଏହାଦ୍ୱାରା ଛାତ୍ରମାନଙ୍କ ଉପରେ ଆମର ରହିଥିବା ପ୍ରଭାବ ଓ ଉତ୍ତମ ସମ୍ପର୍କ ଗୁରୁତର ଭାବରେ ବ୍ୟାହତ ହେବ । ଆମେ ଏ ଦାୟିତ୍ୱ ଆମ୍ଭମାନଙ୍କ ଉପରେ ନ୍ୟସ୍ତ କରିବାକୁ ଅଧକ୍ଷ ମହୋଦୟଙ୍କୁ ଅନୁରୋଧ କରିଥିଲୁ ଓ ଆମ୍ଭମାନଙ୍କୁ ସେହି ଦିନକ ପାଇଁ ଅଧ୍ୟାପନା କାର୍ଯ୍ୟରୁ ମୁକ୍ତ କରିଦବାକୁ କହିଥିଲୁ । ଅଧକ୍ଷ ମି: ଅର୍ଗିଲ ସଙ୍ଗେ ସଙ୍ଗେ ଏହି ପ୍ରସ୍ତାବକୁ ଗ୍ରହଣ କରିଥିଲେ ଓ ପ୍ରଫେସର ପରିଜା ଏହା ପ୍ରତି ସହମତ ପ୍ରକାଶ କରିଥିଲେ । ଯଦିଓ ଆମ୍ଭେମାନେ ସମୟ ସମୟରେ ଛାତ୍ରାବାସର ପ୍ରଶାସନ ସମ୍ବନ୍ଧରେ ଭିନ୍ନ ଭିନ୍ନ ମତ ପୋଷଣ କରୁଥିଲୁ, ପ୍ରଫେସର ପରିଜା କେବେହେଲେ ତାଙ୍କ ମତକୁ ଅନ୍ୟମାନଙ୍କ ଉପରେ ଲଦି ଦେବା ପାଇଁ ଜିଦ୍ ଧରୁ ନ ଥିଲେ । ସେ ଅନ୍ୟମାନଙ୍କ ମତ ପ୍ରତି ସହନଶୀଳ ଥିଲେ ଓ ଏପରି ସମ୍ମାନ ମଧ୍ୟ ପ୍ରଦର୍ଶନ କରୁଥିଲେ ।

ପଶ୍ଚିମ ଛାତ୍ରାବାସର ଗରିବ ଓ ଅଭାବଗ୍ରସ୍ତ ଛାତ୍ରମାନଙ୍କୁ ଆର୍ଥିକ ସାହାଯ୍ୟ ପ୍ରଦାନ କରିବା ପାଇଁ ଓ୍ୱାର୍ଡେନ୍ ପ୍ରଫେସର ପରିଜା ଗୋଟିଏ ଶ୍ରମ ସଂସ୍ଥା(Labour Bureau)ପ୍ରବର୍ତ୍ତନ କରିଥିଲେ ଯେଉଁଥିରେ କି ଛାତ୍ରମାନେ ସେମାନଙ୍କର ଅବସର ସମୟରେ ଏକ୍ସରସାଇଜ୍ ଖାତା ଓ କଲେଜର ପରୀକ୍ଷା ଖାତା ସିଲାଇ କରି ବାନ୍ଧିବେ ଓ ସେଥିପାଇଁ ସେମାନେ କଲେଜ ଅଫିସ୍‌ରୁ ପାରିଶ୍ରମିକ ପାଇବେ ।

ମୁଁ ଯେତେଦୂର ଜାଣେ ପ୍ରଫେସର ପରିଜା ତାଙ୍କ ଦରମା ଟଙ୍କାରୁ ପ୍ରତି ମାସରେ କିଛି ଟଙ୍କା ଉଭୟ ସ୍କୁଲ ଓ କଲେଜରେ ପଢୁଥିବା ଗରିବ, ଅଭାବଗ୍ରସ୍ତ ଅଥଚ ଯୋଗ୍ୟ, ମେଧାବୀ ଛାତ୍ରମାନଙ୍କ ଆର୍ଥିକ ସାହାଯ୍ୟ ପାଇଁ ଅଲଗା କରି ରଖି ଦେଉଥିଲେ । ଗରିବ ଛାତ୍ରମାନେ ବିଶ୍ୱବିଦ୍ୟାଳୟ ପରୀକ୍ଷା ପାଇଁ ଫର୍ମ ପୂରଣ କଲାବେଳେ ସେମାନଙ୍କ ପରୀକ୍ଷା ଫି ଦାଖଲ କରିବା ପାଇଁ ଆର୍ଥିକ ଅନଟନର ସମ୍ମୁଖୀନ ହୁଅନ୍ତି । ଅନେକ ସମୟରେ ପ୍ରଫେସର ପରିଜା ସେମାନଙ୍କୁ ସେତେବେଳେ ଆର୍ଥିକ ସାହାଯ୍ୟ ପ୍ରଦାନ କରନ୍ତି । ମୋ ବ୍ୟକ୍ତିଗତ ଅଭିଜ୍ଞତାରୁ ମୁଁ ଏଭଳି ଏକ ଘଟଣା ଜାଣେ ଯେଉଁଥିରେ ଜଣେ ପରୀକ୍ଷାର୍ଥୀ ତାର ଏମ୍. ଏସ୍‌ସି. ପରୀକ୍ଷା ଫର୍ମ ପୂରଣ କଲାବେଳେ ଏଭଳି ଅସୁବିଧା ଭୋଗ କରିଥିଲା । ମୁଁ ପ୍ରଫେସର ପରିଜାଙ୍କୁ ଅନୁରୋଧ କରିଥିଲି ତାକୁ ଏକଶତ ଟଙ୍କା ଅଗ୍ରିମ ଦବାକୁ ଏବଂ ସେ କିଛି ଅନୁସନ୍ଧାନ ନ କରି ସେ ଟଙ୍କା ଦେଇଦେଇଥିଲେ ।

ମୁଁ କଲେଜର ସାମାଜିକ ସେବା ସଂସ୍ଥା (ସୋସିଆଲ ସର୍ଭିସ୍ ଗିଲ୍ଡ)ର ଉପସଭାପତି ଥିଲି ଯାହାର ଏକ୍ସ ଅଫିସିଓ ସଭାପତି ଥିଲେ ଅଧ୍ୟକ୍ଷ ପ୍ରଫେସର ପରିଜା । ଏହାର ଆୟ ବ୍ୟୟର ହିସାବ ଫର୍ଦ୍ଦ ଓ ବାର୍ଷିକ ବିବରଣୀ ସଭାପତିଙ୍କ ଦ୍ୱାରା ପରୀକ୍ଷିତ ହୋଇ ସେ ଦସ୍ତଖତ କଲାପରେ ତାହା ବାର୍ଷିକ ସାଧାରଣ ସଭାରେ ଗୃହୀତ ହେବା ପାଇଁ ଉପସ୍ଥାପିତ ହେବା ବିଧି ରହିଛି । ଥରେ ଏହିସବୁ କାଗଜପତ୍ରରେ ତାଙ୍କ ଦସ୍ତଖତ ଆଣିବା ପାଇଁ ମୁଁ ତାଙ୍କୁ ଅଧ୍ୟକ୍ଷଙ୍କ ଅଫିସ୍‌ରେ ସାକ୍ଷାତ କରିଥିଲି । ସେତେବେଳେ ଆଉ ଜଣେ ଅଧ୍ୟାପକ ମଧ୍ୟ ତାଙ୍କ ଅଫିସ୍‌ରେ ବସିଥିଲେ । ପ୍ରଫେସର ପରିଜାଙ୍କ ମନର ଅବସ୍ଥା ବୋଧେ ଭଲ ନ ଥିଲା ଓ ସେ କର୍କଶ ସ୍ୱରରେ ମୋ ପ୍ରତି ଅପ୍ରୀତିକର ବ୍ୟବହାର ପ୍ରଦର୍ଶନ କଲେ । ଏ କାମ ପାଇଁ ମତେ ଅନ୍ୟ କେତେବେଳେ ସମୟ ଦବାକୁ ତାଙ୍କୁ ଅନୁରୋଧ କରି ମୁଁ ଧୀର ସ୍ଥିର ଭାବରେ ତାଙ୍କ ଅଫିସରୁ ଚାଲି ଆସିଲି । ମୁଁ ଯେତେବେଳେ ଏ କାମ ପାଇଁ ଦ୍ୱିତୀୟ ଥର ତାଙ୍କ ପାଖକୁ ଗଲି ସେ ମୋ ପ୍ରତି ଅତି ଭଦ୍ର ବ୍ୟବହାର ପ୍ରଦର୍ଶନ କଲେ ଓ କାଗଜପତ୍ର ଯାଞ୍ଚ କରି ଦସ୍ତଖତ କଲାପୂର୍ବରୁ ପୂର୍ବ ଥରର ଘଟଣା ପାଇଁ ଦୁଃଖ ପ୍ରକାଶ କଲେ । ଯଦିଓ ସେ ସମୟ ସମୟରେ ଅଯଥା ବିରକ୍ତିଭାବ ପ୍ରକାଶ କରୁଥିଲେ ପରବର୍ତ୍ତୀ ସମୟରେ ତାର ସଂଶୋଧନ କରିବାକୁ ସେ କୁଣ୍ଠାବୋଧ କରୁ ନ ଥିଲେ ।

ଅସୁବିଧା ସମୟରେ ପ୍ରଫେସର ପରିଜାଙ୍କ ସୁଚିନ୍ତିତ ପରାମର୍ଶ ଓ କର୍ମୋପଯୋଗୀ ପ୍ରସ୍ତାବ ଅତିଶୟ ମୂଲ୍ୟବାନ୍ ଓ ସାହାଯ୍ୟକାରୀ ହେଉଥିଲା । ଏକଦା ମୁଁ ତାଙ୍କ ସହିତ ନୂତନ କରି ଆରମ୍ଭ କରୁଥିବା ଗବେଷକମାନଙ୍କର ଗବେଷଣା କାର୍ଯ୍ୟ ସମ୍ବନ୍ଧରେ ଆଲୋଚନା କରୁଥିଲି । ଏ ସମ୍ପର୍କରେ ତାଙ୍କର ପରାମର୍ଶ ଥିଲା ଯେ ଆଗରୁ ପ୍ରକାଶିତ ହୋଇଥିବା ଗବେଷଣା କାର୍ଯ୍ୟକୁ ପୁନଃ ପରୀକ୍ଷା କରି ଦେଖିଲେ ଜଣେ ଗବେଷକ ଛାତ୍ର ନୂତନ ଗବେଷଣା କରିବା ପାଇଁ ମଜଭୁତ ପ୍ରଶିକ୍ଷଣ ଲାଭ କରିପାରିବ ।

ରେଭେନ୍ସା କଲେଜର ପୁରାତନ ଛାତ୍ରସଂଘର ମୁଁ ସଂପାଦକ ଥିଲାବେଳେ ମୋର ସ୍ମରଣ ଅଛି କିପରି ଅଧ୍ୟକ୍ଷ ପ୍ରଫେସର ପରିଜା ସବୁ ପୁରାତନ ଛାତ୍ରମାନଙ୍କ ପାଖକୁ ଯେପରି ନିମନ୍ତ୍ରଣ ପଠାଯାଏ ସେକଥା ନିଜେ ତଦାରଖ କରି ଦେଖୁଥିଲେ ଯେପରିକି ଅସାବଧାନତା ଯୋଗୁଁ କାହାରି ପାଖକୁ ଭୁଲରେ ନିମନ୍ତ୍ରଣ ପତ୍ର ପଠା ନ ଯିବା ଘଟଣା ଘଟିବ ନାହିଁ ।

ସମୟ ସମୟରେ ଅଳ୍ପସଂଖ୍ୟକ ବନ୍ଧୁ ମେଳରେ ଏପରିକି କମିଟି ଓ ସବ୍-କମିଟି ସଭାରେ ପ୍ରଫେସର ପରିଜା ଏପରି ଚାତୁର୍ଯ୍ୟ ଓ କୌତୂହଳୋଦ୍ଦୀପକ କଥା କହୁଥିଲେ, ଯାହାକି ବେଶ୍ ଉପଭୋଗ୍ୟ ହେଉଥିଲା । ଆମ ସମାଜ ଓ ଶିକ୍ଷାଜଗତରେ ବହୁ କାଳ ଧରି ଅତ୍ୟୁଚ୍ଚ ସ୍ଥାନ ଗ୍ରହଣ କରିଥିବା ଜଣେ ବ୍ୟକ୍ତିଙ୍କର ବୌଦ୍ଧିକ, ଉତ୍କର୍ଷ ଓ ଯୋଗ୍ୟତା ସମ୍ବନ୍ଧରେ ଉପର୍ଯ୍ୟୁକ୍ତ କେତୋଟି ଘଟଣା ସମ୍ୟକ୍ ଆଲୋକପାତ କରିବ ।

ପରିଶେଷରେ ମୋର ଆବେଗମୟ ଅନୁଭୂତିକୁ ଲିପିବଦ୍ଧ କରିବାର ପ୍ରବଳ ଇଚ୍ଛାକୁ ସମ୍ବରଣ କରି ନ ପାରି ଏତିକି କହିବି ଯେ, ପ୍ରଫେସର ପରିଜା ଜଣେ ଖାଣ୍ଟି ବ୍ୟକ୍ତି ଥିଲେ । ଶିଷ୍ଟାଚାରଯୁକ୍ତ ସମାଜରେ ଜଣେ ନିର୍ମଳ ଭଦ୍ରବ୍ୟକ୍ତି ଓ ସହାନୁଭୂତିଶୀଳ ବନ୍ଧୁ, ଜଣେ ଉଚ୍ଚ ଚରିତ୍ରବାନ୍ ଲୋକପ୍ରିୟ ଓ ଖ୍ୟାତିସମ୍ପନ୍ନ ଶିକ୍ଷକ, ଅଧସ୍ତନ କର୍ମଚାରୀମାନଙ୍କ ଠାରୁ ନିର୍ଦ୍ଧାରିତ କାର୍ଯ୍ୟ ଓ ଛାତ୍ରମାନଙ୍କ ଠାରୁ ନିର୍ଦ୍ଧାରିତ ପାଠ ଆଦାୟ କରିବାରେ ସିଦ୍ଧହସ୍ତ, ସାହାଯ୍ୟ ପାଇଁ ତାଙ୍କ ନିକଟରେ ଉପସ୍ଥିତ ହେଲେ ସଦା ଉନ୍ମୁକ୍ତ ହସ୍ତ ଏବଂ ଉତ୍ତମ ରୂପେ ନିୟନ୍ତ୍ରିତ ଓ ସୁଶୃଙ୍ଖଳିତ ଜୀବନଧାରାରେ ଅଟଳ ବିଶ୍ୱାସୀ ଥିଲେ । ଏହି ଅବସରରେ ମୁଁ ତାଙ୍କ ପ୍ରତି ଗଭୀର ବ୍ୟକ୍ତିଗତ ସମ୍ମାନ ଓ ଭକ୍ତି ଅର୍ପଣ କରୁଛି ।

(ରଚନା କାଳ ୧୯୬୭ ମସିହା । ମୂଳ ଇଂରାଜୀ ଲେଖାରୁ ଡକ୍ଟର ଗଦାଧର ମିଶ୍ରଙ୍କ ଦ୍ୱାରା ଓଡ଼ିଆରେ ଅନୂଦିତ ।)

# ଡକ୍ଟର ପରିଜା : ଆଠ ଦଶନ୍ଧିର ପାଣ୍ଡିତ୍ୟ ଓ ପାଞ୍ଚଦଶନ୍ଧି ସମାଜସେବା

**ଗୋପାଳଚନ୍ଦ୍ର ପଟ୍ଟନାୟକ**

"ପଶ୍ୟାମ ଶରଦଃ ଶତମ୍", ଏହା ବେଦୋକ୍ତ ମନ୍ତ୍ର । ବେଦ ଆଶୀର୍ବାଦ କରୁଛି, ପ୍ରତ୍ୟେକ ଲୋକ ଶହେ ବର୍ଷ ବଞ୍ଚୁ । ଆମର ପରମ ସୌଭାଗ୍ୟ ଡକ୍ଟର ପ୍ରାଣକୃଷ୍ଣ ପରିଜା ବେଦୋକ୍ତ ମନ୍ତ୍ର ଉଚ୍ଚାରିତ ଆୟୁଃ ପାଖାପାଖି ପହଞ୍ଚିଲେଣି । ଥରେ ଉତ୍କଳ ବିଶ୍ୱବିଦ୍ୟାଳୟର ଗୋଟିଏ କମିଟି ସଭା ଅବସରରେ ଆମ୍ଭେମାନେ ଲାଉଞ୍ଜରେ ବସିଥିଲୁ । ଆଲୋଚନା ପ୍ରସଙ୍ଗରେ ମଣିଷର ପରମାୟୁ କଥା ଉଠିଲା । ସେ ସଭାରେ ଅଧ୍ୟକ୍ଷତା କରୁଥିବା ଡକ୍ଟର ପରିଜା ହସି ହସି କହିଲେ ଯେ ସେ ରେଳ ପ୍ଲାଟଫର୍ମରେ ପହଞ୍ଚି ସାରିଲେଣି ଓ ଗାଡ଼ି ଆସିବାକୁ ଅପେକ୍ଷା କରିଛନ୍ତି, ଇହ ସଂସାର ଛାଡ଼ି ଆର ପାରିକୁ ଯିବା ପାଇଁ । ଏ ମଧ୍ୟରେ କୋଡ଼ିଏ ବର୍ଷ ବିତିଗଲାଣି । ତାଙ୍କର ଅନେକ ସହକର୍ମୀ, ସମସାମୟିକ ବ୍ୟକ୍ତି ଓ ଛାତ୍ର ଏ ମଧ୍ୟରେ ପ୍ଲାଟଫର୍ମରେ ପହଞ୍ଚିଗଲେଣି ଓ କେତେ ମଧ୍ୟ ରେଳଗାଡ଼ିରେ ଚଢ଼ି ପରଲୋକ ଗମନ କରିସାରିଲେଣି ।

ଡକ୍ଟର ପରିଜା ପ୍ଲାଟଫର୍ମରେ ପହଞ୍ଚି ବାନପ୍ରସ୍ଥ ଆଶ୍ରମ ଓ ସନ୍ନ୍ୟାସବ୍ରତ ଗ୍ରହଣ କରିଛନ୍ତି । ଆତ୍ମମୋହ ଓ ପରିବାର ମୋହକୁ କ୍ରମଶଃ ପରିତ୍ୟାଗ କରି ବହୁ ବର୍ଷ ହେଲା ସମାଜସେବାରେ ନିଜକୁ ଉତ୍ସର୍ଗ କରିଛନ୍ତି, ପରିଶେଷରେ ସଂସାରର ସମସ୍ତ ମାୟାମୋହ ତୁଟାଇ ଅଖଣ୍ଡ ସତ୍ୟ 'ସଚ୍ଚିଦେବଙ୍କ ବ୍ରହ୍ମ' ପ୍ରାପ୍ତିରେ ଆତ୍ମବିସ୍ମୃତ ହୋଇରହିଛନ୍ତି ।

ପ୍ରଫେସର ପରିଜାଙ୍କ ଛାତ୍ର ହେବାର ସୌଭାଗ୍ୟ ମୁଁ ଲାଭ କରି ନ ଥିଲି, ଯଦିଓ ମୋର ସମକାଳୀନ ଅନେକ ବନ୍ଧୁଙ୍କର ଭାଗ୍ୟରେ ଏହା ଜୁଟିଥିଲା । ତାଙ୍କ ସମ୍ବନ୍ଧରେ ମୋର ପ୍ରଥମ ସ୍ମୃତି ମନେପଡୁଛି । ୧୯୧୬ ମସିହାର ଗୋଟିଏ ଘଟଣା ଯେତେବେଳେ ଖୋର୍ଦ୍ଧା ହାଇସ୍କୁଲରେ ଆମେ ଦଳେ ଛାତ୍ର ବ୍ରହ୍ମପୁର (ଗଞ୍ଜାମ)ରୁ ପ୍ରକାଶିତ ସମ୍ବାଦପତ୍ର 'ଆଶା'ରେ ଶ୍ରୀ ପ୍ରାଣକୃଷ୍ଣ ପରିଜାଙ୍କ ଦ୍ୱାରା କେମ୍ବ୍ରିଜରୁ ପ୍ରେରିତ ଏକ ପତ୍ର ପାଠ କରିଥିଲୁ ଓ ସେ ସମ୍ବନ୍ଧରେ ଆଲୋଚନା କରିଥିଲୁ । ପତ୍ରଟିର ବିଷୟବସ୍ତୁ ଥିଲା ଯେ, ବିଲାତରେ ଆଇନ୍ ଶାସ୍ତ୍ର ଅଧ୍ୟୟନ କରିସାରି ବାରିଷ୍ଟର ଉପାଧି

ପ୍ରାପ୍ତ ଶ୍ରୀଯୁକ୍ତ ଶତପଥୀଙ୍କ ମର୍ମନ୍ତୁଦ ମୃତ୍ୟୁ ଘଟଣା ଓ ଗୀତାପାଠ ସହ ସେଠାରେ ତାଙ୍କର ଅନ୍ତିମ ଶବସତ୍କାର ପ୍ରଥମ ବିଶ୍ୱଯୁଦ୍ଧ ସମୟରେ ଶ୍ରୀଯୁକ୍ତ ଶତପଥୀ ଭାରତକୁ ପ୍ରତ୍ୟାବର୍ତ୍ତନ ସମୟରେ ଜାହାଜ ଯୋଗେ ଇଂଲିଶ ପ୍ରଣାଳୀ ଅତିକ୍ରମ କରୁଥିଲା ସମୟରେ ଶତ୍ରୁପକ୍ଷ ଜର୍ମାନ୍ ତାଙ୍କ ଜାହାଜକୁ ୟୁବୋଟ୍‌ରୁ ଟର୍ପେଡୋ କ୍ଷେପଣ କରି ଜାହାଜକୁ ବୁଡ଼ାଇ ଦେଇଥିଲେ ଓ ଶ୍ରୀଯୁକ୍ତ ଶତପଥୀ ମୃତ୍ୟୁବରଣ କରିଥିଲେ ।

ପ୍ରଫେସର ପରିଜାଙ୍କ ସହିତ ମୋର ପ୍ରତ୍ୟକ୍ଷ ସଂସ୍ପର୍ଶ ଘଟିଥିଲା ୧୯୨୫ ମସିହାରେ ପାଟନାରେ, ଯେତେବେଳେ ସେ ପାଟନା ବିଶ୍ୱବିଦ୍ୟାଳୟର ଛଅବର୍ଷିଆ ଆୟୁର୍ବିଜ୍ଞାନ ଡିଗ୍ରୀ ପାଠ୍ୟକ୍ରମର ପ୍ରଥମ ଏମ୍. ବି. ବି. ଏସ୍. ପରୀକ୍ଷାରେ ଜୀବବିଜ୍ଞାନ ବିଷୟରେ ବହିଃପରୀକ୍ଷକ ହୋଇ ଆସିଥିଲେ ଓ ମୁଁ ଜଣେ ପରୀକ୍ଷାର୍ଥୀ ଥିଲି ।

ପ୍ରଫେସର ପରିଜାଙ୍କ ସହିତ ମୋର ଘନିଷ୍ଠ ଓ ଦୀର୍ଘସ୍ଥାୟୀ ସଂପର୍କ ୧୯୪୮ ମସିହାଠାରୁ ସ୍ଥାପିତ ହୋଇଥିଲା । ସେତେବେଳେ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟର ବିଭିନ୍ନ ସଂସଦ ଯଥା ସିନେଟ୍, ସିଣ୍ଡିକେଟ୍, ଏକାଡେମିକ କାଉନ୍‌ସିଲ, ପରିଭାଷା କମିଟି, ଓଡ଼ିଆ ଜ୍ଞାନକୋଷ ପରାମର୍ଶଦାତା କମିଟି ଓ ବିଭିନ୍ନ ସବ୍ କମିଟିର ସଭ୍ୟ ରୂପେ ବିଭିନ୍ନ ଦାୟିତ୍ୱ ନିର୍ବାହ କରୁଥିଲି ।

ପ୍ରଫେସର ପରିଜାଙ୍କ ପରିବାରର ଲୋକମାନଙ୍କର ଜଣେ ସାମୟିକ ଚିକିତ୍ସକ ରୂପେ (ଚିକିତ୍ସା ପାଇଁ ସମୟ ସମୟରେ ତାଙ୍କ ଘରକୁ ଯିବାଆସିବା କରିବାରେ), ସାମାଜିକ ଉତ୍ସବରେ ବାରମ୍ବାର ବନ୍ଧୁମିଳନରେ, ସର୍ବସାଧାରଣ ସଂକ୍ରାନ୍ତ କାର୍ଯ୍ୟକ୍ରମରେ ତାଙ୍କ ସହିତ ଘନିଷ୍ଠ ବ୍ୟକ୍ତିଗତ ସମ୍ପର୍କରେ ଆସିବା ପରେ ଅନ୍ୟ ବହୁ ଲୋକଙ୍କ ଭଳି ମୁଁ ମଧ୍ୟ ତାଙ୍କର ବହୁମୁଖୀ ପ୍ରତିଭା ଓ ମହତ୍ ଗୁଣରାଜିରେ ଅଭିଭୂତ ହୋଇପଡ଼ିଥିଲି । ସେଗୁଡ଼ିକ ମଧ୍ୟରେ ତାଙ୍କର ଅମାୟିକ ମଧୁର ବ୍ୟବହାର, ବିଚାର-ବିବେକ, ଗଭୀର କର୍ତ୍ତବ୍ୟପରାୟଣତା ଓ ଅଭିଜାତ ବ୍ୟକ୍ତିତ୍ୱ ଉଲ୍ଲେଖଯୋଗ୍ୟ । ସେ କାହାକୁ ଦୁର୍ବ୍ୟବହାର କରୁ ନ ଥିଲେ, ସେ କାହାକୁ ଗଧ ଖଟଣି ଖଟାଉ ନ ଥିଲେ କିମ୍ବା ଅଯଥା ତିରସ୍କାର କରୁ ନ ଥିଲେ, ସେ କେବେ ଆତ୍ମବଡ଼ିମା ପ୍ରକାଶ କରୁ ନ ଥିଲେ ।

ପ୍ରଫେସର ପରିଜା ଛାତ୍ରାବସ୍ଥାରେ ଜଣେ ଦାୟିତ୍ୱସମ୍ପନ୍ନ, ସଚ୍ଚୋଟ ଓ କଠିନ ପରିଶ୍ରମୀ ଛାତ୍ର ଥିଲେ ବୋଲି ତାଙ୍କଠାରୁ ବୟୋଜ୍ୟେଷ୍ଠ ଓ ତାଙ୍କର ସମକାଳୀନ ଭଦ୍ରବ୍ୟକ୍ତିମାନେ କହନ୍ତି । 'ତୁଳସୀ ଦୁଇ ପତ୍ରରୁ ବାସେ' ତାଙ୍କ ପ୍ରତି ଅକ୍ଷରେ ଅକ୍ଷରେ ପ୍ରଯୁଜ୍ୟ । ଛାତ୍ରାବସ୍ଥାରୁ ତାଙ୍କର ଏକମାତ୍ର ଧ୍ୟାନ ଥିଲା ଜ୍ଞାନ ଆହରଣ । ସେ କୃତିତ୍ୱ ଅର୍ଜନ କରି ଛାତ୍ରବୃତ୍ତି, ପୁରସ୍କାର ଓ ଗୌରବ ଲାଭ କରିଛନ୍ତି ।

ତାଙ୍କର ଛାତ୍ରବର୍ଗ ତାଙ୍କୁ ଏକ ନିଷ୍ଠାବାନ୍ ଓ ଦରଦୀ ଗୁରୁ ରୂପେ ଭକ୍ତି ପ୍ରଦର୍ଶନ କରନ୍ତି । ତାଙ୍କର ସହକର୍ମୀମାନେ ତାଙ୍କୁ ଏକ ଦୂରଦୃଷ୍ଟିସମ୍ପନ୍ନ ଶିକ୍ଷାବିତ୍ ଓ ଦକ୍ଷ

ପ୍ରଶାସକ ରୂପେ ସମ୍ମାନ ପ୍ରଦାନ କରନ୍ତି । ସଭାସମିତିରେ ଅଧ୍ୟକ୍ଷତା କଲାବେଳେ ସେ ତାଙ୍କର ତୀକ୍ଷ୍ଣ ବୁଦ୍ଧି, ଚାତୁର୍ଯ୍ୟ ଓ କ୍ଷିପ୍ର ସିଦ୍ଧାନ୍ତ ଗ୍ରହଣ ପାଇଁ ସର୍ବଜନବିଦିତ । କୌଣସି ସଭାରେ ବିବାଦମୂଳକ ତର୍କ-ବିତର୍କ ଯୋଗୁଁ ବିଶୃଙ୍ଖଳ ପରିସ୍ଥିତି ସୃଷ୍ଟି ହେଲେ ପ୍ରଫେସର ପରିଜା ତାଙ୍କର ବିଦ୍‌ବତ୍ତା ଦ୍ୱାରା ସଫଳତାର ସହିତ ସଭାକାର୍ଯ୍ୟକୁ ନିୟନ୍ତ୍ରଣ କରି ଶାନ୍ତିଶୃଙ୍ଖଳା ରକ୍ଷା କରି ପାରୁଥିଲେ ।

(ରଚନା କାଳ ୧୯୭୭ ମସିହା । ମୂଳ ଇଂରାଜୀ ଲେଖାରୁ ଡକ୍ଟର ଗଦାଧର ମିଶ୍ରଙ୍କ ଦ୍ୱାରା ଓଡ଼ିଆରେ ଅନୂଦିତ ।)

# ଫୁଲ ଆଞ୍ଜୁଳିଏ

**ଗୋପୀନାଥ ମହାନ୍ତି**

ବଡ଼ ନଈଟିଏ, ଏକୂଳ ସେ କୂଳ ଆଖି ପାଏ ନାହିଁ, ତାର କେଉଁ ଘାଟରୁ କିଏ ମୁନ୍ଦିଏ ପାଣି ପିଇଥାଏ, ସେ କହିବ ତା' ବିଷୟରେ ସେତିକି କଥା । ତା' ବିଷୟରେ ବାକି ସବୁ ସର୍ବସାଧାରଣଙ୍କୁ ଜଣେଇବା ଗୌରବମୟ ଇତିହାସ, କାଳକାଳକୁ ଆଦର୍ଶ ଓ ପ୍ରେରଣାର ଉତ୍ସ । ପିଲାଦିନୁଁ ଦେଖି ମୋ ଆଖିରେ ସେହି ନଈ ପରି ଥିଲେ ସେ, ପୂଜ୍ୟ ପରିଜାସାହେବ । ଆଜି ସେ ନାହାନ୍ତି । ଛପନ ବର୍ଷ ବିବାହିତ ଜୀବନର ପରିସମାପ୍ତି କରି ଶ୍ରୀମତୀ ପରିଜା ଚାଲିଯିବାର ସତର ଦିନ ପରେ ଅଠାଅଶୀ ବର୍ଷ ବୟସରେ ୧୯୭୮ ଜୁନ୍ ୨ ତାରିଖରେ ସେ ଚାଲିଗଲେ । ଜୀବନଯାକ ନିଜ ବିଚାର ଓ କାର୍ଯ୍ୟରେ ସେ ଥିଲେ ଔଚିତ୍ୟର ପ୍ରତୀକ । ସେ ବୋଧହୁଏ କିଛି ଦିନ ଅପେକ୍ଷା କରି ଗଲେ ତାଙ୍କ ସ୍ତ୍ରୀ 'ଅହ୍ୟରାଣୀ'ର ଗୌରବ ପାଇ ଚାଲିଯିବାଯାକେ ।

ଆମେ ସବୁ ତାଙ୍କର ହଜାର ହଜାର ଛାତ୍ର । ଛାତ୍ରଛାତ୍ରୀଙ୍କୁ ସେ ଖୁବ୍ ଭଲ ପାଉଥିଲେ, ଅନେକ ଗରିବ ଛାତ୍ରଙ୍କୁ ଆର୍ଥିକ ସାହାଯ୍ୟ କରିଥିଲେ, ଆଉ କାହା ପାଇଁ କ'ଣ ବ୍ୟବସ୍ଥା କରି, କାହାକୁ ସୁପାରିସ ଚିଠି, କାହାକୁ ସାର୍ଟିଫିକେଟ୍ ଦେଇ, କାହାକୁ ଉତ୍ସାହ ଦେଇ କାହାକୁ ସଦ୍‌ବୁଦ୍ଧି ଦେଇ ନାନା ଉପାୟରେ ଅସଂଖ୍ୟ ଛାତ୍ରଙ୍କୁ ସାହାଯ୍ୟ କରୁଥିଲେ, ନିଜେ ଆଦର୍ଶ ବ୍ୟକ୍ତି, ମହାପଣ୍ଡିତ, ଆଦର୍ଶ ଗୁରୁ ହୋଇଥିଲେ । ସେହି ବଳରେ ସମଷ୍ଟିଙ୍କ ଅନ୍ତର ଭିତରେ ସାହସ, ପ୍ରେରଣା ଯୋଗାଉଥିଲେ ଓ ଛାତ୍ରମାନଙ୍କ ଭବିଷ୍ୟତ ଜୀବନ ଗଠନରେ ସାହାଯ୍ୟ କରୁଥିଲେ । ସେହି ନୀରବ ପ୍ରଭାବ ହିଁ ଅର୍ଦ୍ଧଶତାବ୍ଦୀର ଓଡ଼ିଶାର ଛାତ୍ରମାନଙ୍କୁ ତାଙ୍କର ଶ୍ରେଷ୍ଠ ଅବଦାନ । ସେ କ'ଣ ଜାଣିଥିଲେ କିଏ ତାଙ୍କଠିଁ କିପରି ଋଣୀ, ନା ଜାଣିଲେ ବି କାହାକୁ କହୁଥିଲେ କେବେ ? କିଏ ତାଙ୍କୁ କ'ଣ ବା ଦେଇପାରିବ ଆଉ, ଖାଲି ଅଶ୍ରୁଳ ସ୍ମରଣଟିକିଏ ଛଡ଼ା !

୧୯୩୦ ଅପ୍ରେଲ କି ମେ' ମାସ, ପାଟନା ହାଇସ୍କୁଲରୁ ଫେବୃଆରୀ ମାସରେ ମ୍ୟାଟ୍ରିକୁଲେସନ୍ ପରୀକ୍ଷା ଦେଇସାରି ମୁଁ ସାତବର୍ଷ ପରେ ଗାଁକୁ ଫେରିଥାଏ, ମତେ ସେତେବେଳେ ଷୋଳବର୍ଷ ବୟସ । କଟକରୁ ଚାରିକୋଶ ପୂର୍ବକୁ ଆମ ଗାଁ । ଆମ ଚାରିଭାଇ ଭିତରୁ ମୋ ବଡ଼ଭାଇଙ୍କ ତଳ ଭାଇ ଶ୍ରୀ ଯଦୁନାଥ ମହାନ୍ତି ସେତେବେଳେ ସରକାରଙ୍କ ପି. ଡବ୍ଲୁ. ଡି. ନାଳ ବିଭାଗରେ ସେକ୍‌ସନାଲ୍ ଅଫିସର (ଓଭରସିଅର୍)

ହୋଇ 'ଗୋପାଳପୁର ସେକ୍‌ସନ୍' ଦାୟିତ୍ୱରେ ଥାଆନ୍ତି । ସେଠି ସେ ସସ୍ତ୍ରୀକ ଥିଲେ ଓ ମୋ ବୋଉ ବି ସେଠି ଥିଲା । ମୁଁ ଯାଇ ସେମାନଙ୍କ ପାଖେ ରହିଲି ।

ଗୋପାଳପୁର ସେକ୍‌ସନାଲ୍ ଅଫିସରଙ୍କ ହତା ଇଚ୍ଛାପୁର ମୌଜାରେ ହିଁ ଯାଏ । ଇଚ୍ଛାପୁର ବସ୍ତି ସେଠୁ ଅଧ କି: ମି: ବାଟ, ବାଲିକୁଦା ୩ କି: ମି: ଓ ଜଗତସିଂହପୁର ୧୫ କି: ମି: । ସେଠି ପହଞ୍ଚି ଜାଣିଲି ଇଚ୍ଛାପୁର ବିଖ୍ୟାତ ପରିଜାସାହେବଙ୍କ ଗାଁ । ତାଙ୍କୁ ମୁଁ କେବେ ଦେଖି ନ ଥିଲି । 'ମୁକୁର'ରେ, 'ଉତ୍କଳ ସାହିତ୍ୟ'ରେ ତାଙ୍କ ଲେଖା କିଛି ପଢ଼ିଥିଲି । ମନେ ପଡୁଛି, ବିଜ୍ଞାନ ବିଷୟରେ, ବିଶେଷତଃ ଉଦ୍ଭିଦ ବିଜ୍ଞାନ ବିଷୟରେ ସେ ଲେଖୁଥିଲେ, ବୋଧହୁଏ ସମାଜର କେଉଁ କୁସଂସ୍କାର ଓ ଅନ୍ଧବିଶ୍ୱାସ ବିରୋଧରେ ବି କିଛି ଲେଖୁଥିଲେ ।

ପରିଜାସାହେବ ଅତିଶୟ କୃତୀ ଛାତ୍ର । ଏମ୍. ଇ. ପରୀକ୍ଷା ବେଳୁ କଲେଜ ଜୀବନ ଶେଷଯାକେ ସେ ନିଜ କୃତିତ୍ୱ ଲାଗି ବୃତ୍ତି ପାଇଥିଲେ ଓ ନିଜ ବିଦ୍ୱତ୍ତା ଲାଗି ସରକାରଙ୍କ ଦ୍ୱାରା ବଛା ହୋଇ ସେ ବିଲାତ ଯାଇଥିଲେ । ସେଠି ସାତ ବର୍ଷ ରହି ବିଦ୍ୟାରେ ଅପୂର୍ବ କୃତିତ୍ୱ ଅର୍ଜନ କରି ସାହେବମାନଙ୍କଠାରୁ ସମ୍ମାନ ଅର୍ଜନ କରିଥିଲେ । ଭାରତର ଶ୍ରେଷ୍ଠ ବୈଜ୍ଞାନିକମାନଙ୍କ ଭିତରୁ ସେ ଜଣେ । ତାଙ୍କ ଖ୍ୟାତି ଭାରତ ବାହାରେ ମଧ୍ୟ ବହୁତ । ଦେଶରେ ତାଙ୍କର ବହୁତ ସମ୍ମାନ ଓ ଆଦର । ସେ ରେଭେନ୍ସା କଲେଜରେ ଉଦ୍ଭିଦ ବିଦ୍ୟାରେ ଅଧ୍ୟାପକ, ଭାରତୀୟ ଶିକ୍ଷା ଚାକିରି (ଇଣ୍ଡିଆନ୍ ଏଡୁକେସନାଲ୍ ସର୍ଭିସ୍)ରେ ଓଡ଼ିଆ ମୋଟେ ଦୁଇଜଣ ଅଛନ୍ତି, ଶ୍ରୀ ଶ୍ୟାମଚନ୍ଦ୍ର ତ୍ରିପାଠୀ ଓ ଶ୍ରୀ ପ୍ରାଣକୃଷ୍ଣ ପରିଜା, ଖୁବ୍ ଉଚ୍ଚପଦସ୍ଥ ହେବା ସଙ୍ଗେ ସଙ୍ଗେ ସେ ଉଚ୍ଚ ବେତନ ବି ପାଆନ୍ତି । ଏସବୁ କଥା ମୁଁ ଶୁଣି ସାରିଥିଲି ।

କିନ୍ତୁ ତାଙ୍କ ବିଷୟରେ ଆଉ ଗୋଟିଏ ଶୁଣା କଥା ମତେ ତାଙ୍କ ପ୍ରତି ଆହୁରି ଆକୃଷ୍ଟ କରିଥିଲା, ପୁରୁଣା ଘରୁଆ ଘରର ପିଲା, କିନ୍ତୁ ପିଲାଦିନେ ସେ କୁଆଡ଼େ ଖୁବ୍ ଗରିବ ଥିଲେ, ତାଙ୍କ ବାପା ମରିଯାଇଥିଲେ, ଘରେ କିଛି ନ ଥିଲା, ତଥାପି ନିଜ ମନୋବଳ, ଦୃଢ଼ ପ୍ରତିଜ୍ଞା, ସାହସ ଓ ପ୍ରତିଭା ବଳରେ ସେ ସବୁ ବାଧା ଟପି ବୃତ୍ତି ପାଇ ପାଇ ପାଠ ପଢ଼ିଥିଲେ, ବଡ଼ ମଣିଷ ହୋଇଥିଲେ । ତେଣୁ ମୋ ପରି, ମୋଠୁଁ ବଳି, ସବୁ ଗରିବ ଛାତ୍ରଙ୍କ ପାଇଁ ସେ ସେତେବେଳେ ଜଣେ ଜୀବନ୍ତ ପ୍ରେରଣା ।

ଷାଠିଏ ଟପିଥିବ ବୟସ, ନାଳ ବିଭାଗରେ କୁଲିଟିଏ (ଖଲାସୀ) ସେ ଗାଁର ବିଶ୍ୱାଳ ବୁଢ଼ା ପରିଜାଙ୍କ ପିଲାଦିନ କଥା ବହୁତ କହୁଥିଲେ, କୌଣସି ଅଭାବ ଅସୁବିଧାକୁ ତାଙ୍କର ଖାତିରି ନ ଥାଏ, ପଢ଼ାରେ ମନ, ସବୁଦିନେ ଶାନ୍ତ ସୁଧାର, ମେଳାପୀ, କିନ୍ତୁ ସମୟ ନଷ୍ଟ କରନ୍ତି ନାହିଁ । ସବୁ ଗରିବଗୁରୁବା ତାଙ୍କ କଥା ଗପନ୍ତି । ସେମାନଙ୍କ ଧାରଣା, ମଣିଷ ପାଠ ପଢ଼ିଲେ ବଡ଼ଲୋକ ହେଲେ ଗରିବଙ୍କୁ ନାକ ଟେକେ, ତାଙ୍କଠି ତା' ନ ଥିଲା ।

ଦେଖାହେଲେ କୁଶଳ ପଚାରନ୍ତି । ପାଖରେ ବସାଇ ଦୁଃଖ ସୁଖ ହୁଅନ୍ତି । କେହି ପଚାରିଲେ ସତ୍ ପରାମର୍ଶ ଦିଅନ୍ତି । ବେଳେ ବେଳେ ଗରିବଗୁରୁବା ମାଗିଲେ କିଛି ଦାନ ବା ଅଳ୍ପ ଋଣ ଦେଇ ସାହାଯ୍ୟ ବି କରିଥାନ୍ତି । ସେ ଗାଁକୁ ଆସିଲେ ତାଙ୍କୁ ଦେଖିବାକୁ ବା ତାଙ୍କୁ ଦୁଃଖ କହିବାକୁ ଲୋକ ରୁଣ୍ଡାନ୍ତି । ଲୋକେ କହନ୍ତି, ତାଙ୍କର କେବେ ନୀତିରୁ ଟିକେ ଏପଟ ସେପଟ ହୁଏ ନାହିଁ । ତାଙ୍କ ଚାଲି, ତାଙ୍କ ସରଳ ଚଳଣି, ତାଙ୍କ କଥାଭାଷା, ବ୍ୟବହାର, ବିଚାର – ସବୁଥିରେ ଥାଏ 'ସଣ୍ଣା' । ଲୋକେ ଦେଖି ଶିଖନ୍ତି ଓ ନିଜ ନିଜ ଭିତରେ କଥାଭାଷା ବେଳେ ତାଙ୍କ ଉଦାହରଣ ଦିଅନ୍ତି ।

ତାଙ୍କ ନୀତି ବିଷୟରେ ଆଉ ଗୋଟିଏ କାହାଣୀ ସେଠି ଶୁଣିଥିଲି, ସତ କି ମିଛ ମୁଁ ଜାଣି ନାହିଁ । କୁଆଡ଼େ ତାଙ୍କ କଲେଜ ଜୀବନ ବେଳେ କେଉଁ ବଡ଼ଲୋକ ତାଙ୍କୁ କ'ଣ ସାହାଯ୍ୟ କରିଥିଲେ ଓ ପଛେ ସେ ନିଜର ଝିଅକୁ ତାଙ୍କୁ ବିଭା ଦେବାକୁ ପ୍ରସ୍ତାବ ଦେଇଥିଲେ । ଶୁଣିଲା ମାତ୍ରେ ପରିଜାସାହେବ କୁଆଡ଼େ ମନା କରିଦେଲେ । କହିଲେ, "ସେ ମୋର ପିତୃତୁଲ୍ୟ, ତେଣୁ ତାଙ୍କ ଝିଅ ହେବେ ମୋ ଭଉଣୀପରି । ସେଠି ମୋର ବିଭାହେବା ପ୍ରସଙ୍ଗ ହିଁ କଳ୍ପନାତୀତ ।"

ତାଙ୍କ ବିଭାଘର ବିଷୟରେ ବି କାହାଣୀ ଶୁଣାଯାଉଥିଲା । ସେତେବେଳକୁ ସେ ସାତବର୍ଷ ବିଲାତରେ ରହି ଉଚ୍ଚ ଶିକ୍ଷିତ ହୋଇ ଫେରିଥିଲେ । ଅଥଚ ନିଜେ କନ୍ୟା ନ ବାଛି ସେ ଭାର ଛାଡ଼ିଦେଲେ ତାଙ୍କ ଗୁରୁଜନମାନଙ୍କ ଉପରେ । ତାଙ୍କର ଖାଲି ଯୋଡ଼ିଏ ସର୍ତ୍ତ ଥିଲା : (୧) ଯୌତୁକ ଆଦୌ ମଗା ଯଚା ହେବ ନାହିଁ । (୨) ଅତି ବଡ଼ଲୋକ ଘର ହୋଇ ନ ଥିବ । ତାଙ୍କ ସ୍ତ୍ରୀ ଶ୍ରୀମତୀ ସୁନ୍ଦରମଣି ଦେବୀ ଗୋଟିଏ ସୁନ୍ଦର ଦେବୀ ମୂର୍ତ୍ତି ପରି ଦିଶୁଥିଲେ । ତାଙ୍କ ବ୍ୟବହାର ବି ସୁଶ୍ରୀ ମର୍ଯ୍ୟାଦାପୂର୍ଣ୍ଣ ଓ ସ୍ନେହପ୍ରବଣ ଥିଲା । ବାପଘର ଖୁବ୍ ଖାନ୍ଦାନ୍ ଘର । ସେ ନାଁ ଡାକ ରାଜକିଶୋର ଦାସ (ସେତେବେଳେ ବାଙ୍କାବଜାର କଟକ, ସେକାଳର ଜଣେ ଜିଲ୍ଲାପାଳ)ଙ୍କ ଭାଣିଜୀ, କିନ୍ତୁ କାଳକ୍ରମେ ତାଙ୍କ ବାପଘର ବସିଯାଇଥିଲା । ପରିଜାସାହେବ ତାଙ୍କୁ କୁଆଡ଼େ ଆହୁରି ଶିକ୍ଷିତ କରାଇବାକୁ ନିଜେ ଯତ୍ନ ନେଇଥିଲେ । ସେ ନିଜେ ପରିଜାସାହେବ ଥାଇ କିପରି ତାଙ୍କୁ ଖାଣ୍ଟି ଓଡ଼ିଆଣୀ କରି ସଙ୍ଗରେ ଘେନି ପଦାକୁ ବାହାର କରୁଥିଲେ, ଏଥିପାଇଁ ସେ ଦୁହେଁ ଜନସାଧାରଣଙ୍କର ଶ୍ରଦ୍ଧାଭାଜନ ହେଉଥିଲେ ।

ସମସ୍ତେ ଜାଣନ୍ତି ସାହେବମାନଙ୍କ ଚଳଣି ଦେଶୀ ଲୋକଙ୍କ ଚଳଣିଠୁଁ ଭିନେ । ତାଙ୍କ ଖାଦ୍ୟ ଭିନେ, ଠାଣି ବି ଭିନେ । ସମସ୍ତେ ଜାଣିଥିଲେ, ଯେ ବର୍ଷେ ଅଧେ ପାଇଁ ବିଲାତର ମାଟି ମାଡ଼ି ଦେଇଆସେ, ତା ଚଳଣିରେ କେତେ ପରିବର୍ତ୍ତନ ଘଟିଯାଏ, ସେହି ବର୍ଷକର ସାହେବୀ ପାଣି ପାଟିରେ ଲାଗି କାହା ଜିଭ, ତାଳୁ, ତଣ୍ଟି ଏପରି

ବଦଳିଯାଏ ଯେ ବୁଢ଼ାଟିଏ ହେବାଯାକେ ତା ପାଟିରେ ଆଉ ଓଡ଼ିଆ ଉଚ୍ଚାରଣ ହୁଏ ନାହିଁ । ଲୋକେ ଏହି ପରିପ୍ରେକ୍ଷୀରେ ଦେଖୁଥିଲେ ପରିଚ୍ଛାସାହେବଙ୍କୁ, ସେ ବିଲାତରେ ପଢ଼ିଛନ୍ତି, ପଢ଼ାଇଛନ୍ତି, ସାତବର୍ଷ ରହିଛନ୍ତି, ଅଥଚ ତା ପ୍ରଭାବରେ ତାଙ୍କଠିଁ ଓଡ଼ିଆ ଚେର ଟିକିଏ ବି ହୁଗୁଳି ନାହିଁ । କି ନୀତିମତ୍ତା ! କି ସ୍ୱଦେଶପ୍ରୀତି ! ସେ ଖାଇବାକୁ ଭଲ ପାଆନ୍ତି ଦହିପଖାଳ, ଶାଗ, ବଡ଼ି, କାଞ୍ଜିପାଣି, ଓଡ଼ିଆ ତରକାରି, ଚକୁଳି, ଛୁଞ୍ଚିପତ୍ର ଓ ଅନ୍ୟାନ୍ୟ ଓଡ଼ିଆ ଘରର ପିଠା, ଲୋକତୁଣ୍ଡରେ ଏକଥା ବି ଆଲୋଚନା ହୁଏ । ଏଥିପାଇଁ ବି ତାଙ୍କୁ ପ୍ରଶଂସା କରାଯାଏ ।

୧୯୩୦ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଆଶାରେ ଚାରିଆଡ଼େ ଓଡ଼ିଆ ଜାତୀୟତାର ଚେତନା ଖେଳୁଥାଏ । ଆହୁରି ମଧ୍ୟ, ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ଆବେଗ ଅଧିକାଂଶ ଲୋକଙ୍କ ମନରେ ଥାଏ । ଏ ଦୁଇ ଆନ୍ଦୋଳନରେ କିଏ ପ୍ରତ୍ୟକ୍ଷ ଭାବେ ମିଶନ୍ତୁ କି ନ ମିଶନ୍ତୁ । ତାଙ୍କଠିଁ କିଛି କୃତିତ୍ୱ ଥିଲେ ଲୋକେ ତାଙ୍କୁ ଜାତୀୟ ସମ୍ପଦ ବୋଲି ମୂଲ୍ୟାୟନ କରି ମର୍ଯ୍ୟାଦା ଦେଉଥାନ୍ତି । ଜନମାନସରେ ସେହିପରି ଥିଲେ ପରିଚ୍ଛାସାହେବ । ଖୁବ୍ କୃତୀ, ଗୁଣୀ, ଯଶସ୍ୱୀ, ସମ୍ମାନାସ୍ପଦ, ତାହାଛଡ଼ା ଲୋକଙ୍କ ଆଖିରେ ଓଡ଼ିଶାର ଓ ଭାରତର ଗୋଟିଏ ଅମୂଲ୍ୟ ସମ୍ପଦ । ତାଙ୍କ ଘେନି ଲୋକେ ଗର୍ବ ଅନୁଭବ କରୁଥିଲେ । ସେ କାହାକୁ ହସି ପଦେ କଥା କହିଲେ ସେ ବ୍ୟକ୍ତିଟି ନିଜକୁ କୃତାର୍ଥ ମଣୁଥିଲା ।

''ଚାଲ ଆଜି ସଞ୍ଜାବୁଡ଼େ ଯିବା'', ମୋ ଭାଇ କହିଲେ, ''ପରିଚ୍ଛାସାହେବଙ୍କର ଆଜି ମାତୃଶ୍ରାଦ୍ଧ ଭୋଜି, ସେ ଆମକୁ ନିମନ୍ତ୍ରଣ କରିଛନ୍ତି । ସେ ନିଜେ ତ ଆସିଛନ୍ତି, ଅନେକ ଗାଁରୁ ଲୋକ ଆସିବେ, ଏ ଅଞ୍ଚଳର ବହୁତ ମୁରବି ଲୋକ ଆସିଥିବେ, ଦେଖିବୁ । 'ସଞ୍ଜାବୁଡ଼େ ଭାଇଙ୍କ ସଙ୍ଗେ ଗଲି । ଗାଁରେ ଯେପରି ଥାଏ, ଛାଇତଳିଆ ଚାଳ ଘର । ପ୍ରକୃତରେ, ଅନେକ ଆଡୁ ଭଦ୍ରଲୋକମାନେ ଆସିଥାନ୍ତି । ବାଟରେ ଠିଆ ହୋଇ କୁଣିଆମାନଙ୍କୁ ପାଛୋଟୁ ଥା'ନ୍ତି ଜଣେ, ହାତଯୋଡ଼ି ଠିଆ କପାଳରେ ଲଗାଇ ବେକଭାଙ୍ଗି ଦଣ୍ଡବତ କରୁଥାନ୍ତି । ଡେଙ୍ଗା ଗୋରା ଲୋକ, ଗମ୍ଭୀର, ପ୍ରଶାନ୍ତ ମୁହଁ, ବଡ଼ ବଡ଼ ଆଖି, ଲୁଗା କାମିଜ ପିନ୍ଧିଥାନ୍ତି । ହାତ ଧୋଇବାକୁ ପାଣି ଢାଳି ଦେବା ବି ଆରମ୍ଭ କଲେ ସେ ହାତ ପୋଛିବାକୁ ତଉଲିଆ ବଢ଼ାଇ ଦେଉଥାନ୍ତି । ଟିକିଏ ପରେ ମୁ ଜାଣିଲି, ସେ 'ପରିଚ୍ଛାସାହେବ' । ତାଙ୍କ ଦାଦି ଶ୍ରୀ ଉଦୟନାଥ ପରିଚ୍ଛାଙ୍କୁ ଆଗରୁ ଦେଖିଥିଲି, ତାଙ୍କୁ ନୁହେଁ ।

ସେ ସଞ୍ଜଟି ମୋ ଜୀବନ ଭିତରେ ଅଭୁଲା ସଞ୍ଜଟିଏ । କେହି ମତେ ଚିହ୍ନନ୍ତି ନାହିଁ, ମୁଁ କାହାରିକି ଚିହ୍ନେ ନାହିଁ, କିନ୍ତୁ ହଠାତ୍ ସେଠି ଏଭଳି ଘଟଣା ଘଟିଲା ଯେ ମୁଁ ଚାରିଆଡ଼େ ଚିହ୍ନା ହୋଇଗଲି । ଭୋଜି ଖାଇ ବସିଥାଉଁ । ପରିଚ୍ଛାସାହେବ ବୁଲି ବୁଲି

ପରଶା ଦେଖୁଥାନ୍ତି, ଖୁଆଉଥାନ୍ତି । ହଠାତ୍ ସେ କହିଲେ, ‘‘ଆପଣମାନେ ଜାଣି ଖୁସି ହେବେ, ଏ ବର୍ଷ ମାଟ୍ରିକ୍ୟୁଲେସନ୍ ପରୀକ୍ଷାରେ ପାଟନା ଇଉନିଭରସିଟିରେ ଓଡ଼ିଆ ପିଲାଟିଏ ପ୍ରଥମ ସ୍ଥାନ ଅଧିକାର କରିଛି । ପାଟନା ଯାଇଥିଲି, ଶୁଣି ଆସିଲି, କିନ୍ତୁ ପିଲାଟି ଓଡ଼ିଶାର କୌଣସି ସ୍କୁଲର ଛାତ୍ର ନୁହେଁ, ସେ ପାଟନା କେନ୍ଦ୍ରରୁ ପରୀକ୍ଷା ଦେଇଥିଲା ।’’

ପାଟନା କେନ୍ଦ୍ରରୁ ୧୯୩୦ରେ ମୁଁ ଜଣେମାତ୍ର ଓଡ଼ିଆ ପିଲା ମାଟ୍ରିକ୍ୟୁଲେସନ୍ ପରୀକ୍ଷା ଦେଇଥିଲି, ଆଗରୁ ଭାଇ ମୋଠୁ ଶୁଣିଥିଲେ, ସେ ସେହିକଥା କହିଲେ । ତା ପରେ ମୋ ଉପରେ ସମସ୍ତଙ୍କର ଯେଉଁ ସ୍ନେହ, ଶ୍ରଦ୍ଧା, ସମ୍ମାନ ଅଜାଡ଼ି ହୋଇ ପଡ଼ିଥିଲା ମୁଁ ଲାଜରେ ମୁହଁ ଟେକି ପାରିଲି ନାହିଁ । ପ୍ରକୃତରେ, ଜୁଲାଇ ମାସରେ ସରକାରି ଗେଜେଟ୍‌ରେ ଯେତେବେଳେ ଯୋଗ୍ୟତା ଅନୁସାରେ ସ୍ଥାନ ବାହାରିଲା, ବିହାର-ଓଡ଼ିଶା ପ୍ରଦେଶରେ ଫାଷ୍ଟ୍ ନୁହେଁ ମୁଁ ସେକେଣ୍ଡ ହୋଇଥିଲି । ପରିଜାସାହେବଙ୍କ ସଙ୍ଗେ ସେଇଠି ଚିହ୍ନା ହେଲା ।

‘‘ଆସିବ’’, ସେ କହିଲେ । ମୁଁ ଯାଏଁ । ଗୋପାଳପୁର ସେକ୍‌ସନ୍‌ରେ ଭାଇ ଦୁଇ ବର୍ଷ ଥିଲେ, ଛୁଟିହେଲେ ମୁଁ ଯାଏଁ, ପରିଜାସାହେବ ଯେତେବେଳେ ଆସିଥାନ୍ତି ସେତେବେଳେ ଯାଇ କଥାଭାଷା ହୁଏଁ । ତାଙ୍କ ଗାଁରେ ତାଙ୍କ ଦାଦି ପୁଅ ଭାଇ ଦି’ଜଣ, ଜୟକୃଷ୍ଣ ଓ ରାମଚନ୍ଦ୍ର (କାଉ), ଜୟୀବାବୁ କଲେଜରେ ମୋ ସହପାଠୀକି ମୋ ତଳେ ମନେ ନାହିଁ, ସେ ଆର୍ଟସ୍ ଛାତ୍ର, ରାମ ଆଉ ତିନି ଚାରି ବର୍ଷ ସାନ, ସେ ଦିହେଁ ସେଠି ଅନେକ ସମୟରେ ମୋ ସଙ୍ଗରେ ବୁଲି ଯାଆନ୍ତି । ସେମାନଙ୍କଠୁ ପରିଜାଙ୍କ ପିଲା ଦିନର ନାନା କାହାଣୀ ମୁଁ ଶୁଣିଥିଲି ।

ପରିଜା ସ୍କୁଲରେ ଓ ତା ପରେ କଟକ କଲେଜରେ ପଢ଼ିଲା ବେଳେ କୁଆଡ଼େ ଲେଖାଲେଖି ଆଡ଼କୁ ଖୁବ୍ ମନ ବଳାଇଥିଲେ, ସେତେବେଳେ ସେ ଗୋଟିଏ ହାତ ଲେଖା ମାଗାଜିନ୍ ବି ଚଳାଉଥିଲେ । ମୋର ମନେ ପଡୁଛି, ଗୋଟିଏ ଅତି ପୁରୁଣା ହାତଲେଖା ମାଗାଜିନ୍ ଖାତା ଜୟୀବାବୁଙ୍କ ପାଖେ ଥିଲା ଓ ତହିଁରେ ପରିଜାସାହେବଙ୍କ ଲେଖା ପଢ଼ିଥିଲି । ଲାଗୁଛି, ପରିଜାସାହେବ ଯୌତୁକ ପ୍ରଥା ବିରୋଧରେ ବି ପ୍ରବନ୍ଧଟିଏ ଲେଖିଥିଲେ, ନିଜେ ବିଭା ହେବା ବହୁତ ପୂର୍ବରୁ । କେତେଥର ପରିଜାସାହେବ ଛୁଟିରେ ଆସି ଆମ ବସାକୁ ବୁଲି ଆସିଥିଲେ ।

ମନେ ପଡୁଛି, ସେ ଅଳ୍ପ କଥା ତ କହୁଥିଲେ, ଯେତିକି କହନ୍ତି ତହିଁରେ କିଛି ସାର ଥାଏ, ସେ କିଛି କଥା କହି ସାରି ଚାଲିଗଲା ପରେ ତାଙ୍କ କଥାରେ କ’ଣ କ’ଣ ଶିକ୍ଷଣୀୟ ଥିଲା ସେହି କଥା ଆଲୋଚନା ହେଉଥାଏ । ଜଣକର ପ୍ରତ୍ୟେକ ସାଧାରଣ କଥାକୁ ତାତ୍ପର୍ଯ୍ୟପୂର୍ଣ୍ଣ ଓ ଶିକ୍ଷଣୀୟ ଭାବିବା ଅନ୍ୟ ଲୋକଙ୍କ କଥା ବିଷୟରେ କ୍ୱଚିତ୍ ମୁଁ

ଦେଖିଛି । ରେଭେନ୍ସା କଲେଜରେ ମୁଁ ଇଷ୍ଟ ହଷ୍ଟେଲ (ପୂର୍ବ ଛାତ୍ରାବାସ)ରେ ରହିଲି, ପରିଜାସାହେବ ୱେଷ୍ଟ ହଷ୍ଟେଲ (ପଶ୍ଚିମ ଛାତ୍ରାବାସ)ର ୱାର୍ଡେନ୍ ଥାନ୍ତି । ଫିଜିକ୍ସ, କେମେଷ୍ଟ୍ରି, ମାଥମାଟିକ୍ସ ଛଡ଼ା ଆଇ. ଏସ୍‌ସି.ରେ ମୁଁ ନେଇଥାଏ ଅପ୍‌ସନାଲ୍ ସବ୍‌ଜେକ୍ଟ ହିସାବରେ ବଟ୍‌ନୀ ( ଉଭିଦ ବିଜ୍ଞାନ), ଯହିଁରେ ନିଜେ ପରିଜାସାହେବ ବିଭାଗୀୟ ମୁଖ୍ୟ ଓ ଅଧ୍ୟାପକ । ତାଙ୍କ ତଳେ ଆଉ ଦୁଇଜଣ ଅଧ୍ୟାପକ ଥିଲେ, ଶ୍ରୀ ଦେବବ୍ରତ ମୁଖାର୍ଜି ଓ ଶ୍ରୀ ପରଶୁରାମ ମିଶ୍ର, ପଛେ ଆଉ ବି କିଏ ଆସିଲେ ।

ଅନ୍ୟମାନଙ୍କ ପାଠ ପଢ଼ାଇବା ରୀତି ଓ ପରିଜାସାହେବଙ୍କ ପାଠ ପଢ଼ାଇବା ରୀତି ଭିତରେ କିଛି ପାର୍ଥକ୍ୟ ଦେଖିଥିଲି । କେବେହେଲେ ତାଙ୍କଠି କ୍ଳାନ୍ତି ନ ଥିଲା, ଅଧୀରତା ନ ଥିଲା, ଛାତ୍ର ନ ବୁଝିବା ପର୍ଯ୍ୟନ୍ତ ସେ ବୁଝାଇବାକୁ ପ୍ରସ୍ତୁତ, କେବେ ବିରକ୍ତ ହେବେ ନାହିଁ । ସେ ଚାହୁଁ ନ ଥିଲେ ଛାତ୍ରକୁ ପାଠ 'ଗୋଳିବାଟି ପିଆଇବାକୁ', ଲୋଡ଼ୁ ଥିଲେ, ଆଗ ଛାତ୍ରର ବିଦ୍ୟାଟି ପ୍ରତି ଶ୍ରଦ୍ଧା ଉପୁଜୁ, କୌତୂହଳ ଓ ଆଗ୍ରହ ଜନ୍ମୁ, ସେ ନିଜେ ନିଜ ବୁଦ୍ଧି ଖେଳାଉ, ଖୋଜୁ, ଦେଖୁ, ଆବିଷ୍କାର କରୁ, ସେ ତାକୁ ବାଟେଇ ବଳେଇ ଦେଉଥିବେ, ସାହାଯ୍ୟ କରୁଥିବେ । ଆଉ ଦେଖୁଥିଲି ସରଳରୁ ସରଳତମ ସୂତ୍ରଗୁଡ଼ିକ ପରିଷ୍କାର ଭାବେ ବୁଝାଇ ହୃଦୟଙ୍ଗମ କରାଇବା ପାଇଁ ସେ ବେଶୀ ଆଗ୍ରହୀ, ତାହାରି ଉପରେ ତାଙ୍କର ଅଧିକ ଗୁରୁତ୍ୱ । ସେ ଜାଣିଥିଲେ ସେତକ ଭଲ କରି ନ ଶିଖିଲେ ଆଉ ଅଧିକା ପାଠ ଭୁଶୁଡ଼ି ପଡ଼ିବ । କାମରେ ଲାଗିବ ନାହିଁ । ଛାତ୍ର ଯେତେ ଭୁଲ୍ କରୁ ଯେତେ ଭୁଲ୍ କରୁ, ସେ ତାକୁ ନିରାଶ ହେବାକୁ ଛାଡ଼ିଦେବେ ନାହିଁ । ସେଇ ଆଶା, ଉତ୍ସାହ, ବଳ, ଧୈର୍ଯ୍ୟ, ସାହସ ଓ ପରିଷ୍କାର ଚିନ୍ତାର ପ୍ରତୀକ ପରି ତାଙ୍କ ଦସ୍ତଖତଟି । ତାଙ୍କ ଇଂରାଜୀ ଦସ୍ତଖତରେ 'Parija' କଲେଜରେ ଛାତ୍ରାବସ୍ଥାରେ ଥିଲା 'Parya' ଓ ହାତଲେଖା ପ୍ରବନ୍ଧରେ ବି 'ପର୍ଯ୍ୟା' ବୋଲି ଲେଖାଥିଲା ।

ଆଇ. ଏସ୍‌ସି. ପରେ ମୁଁ ଆଉ ବଟ୍‌ନୀ ନେଇ ନାହିଁ କି ତାଙ୍କ ଛାତ୍ର ହୋଇ ନାହିଁ । ବି.ଏ. (ଅନର୍ସ) ନେଲି । ତୃତୀୟ ବର୍ଷ ସହରରେ ମୋ ଉପର ଭାଇ ଶ୍ରୀ କାହ୍ନୁଚରଣ ମହାନ୍ତିଙ୍କ ପାଖେ ରହିଲି, ଖରାଛୁଟି ଜଗତ୍‌ସିଂହପୁରରେ ତାଙ୍କ ଉପର ଭାଇଙ୍କ ପାଖେ କଟାଇ ଫେରିଲି, ଅସୁସ୍ଥ ଅବସ୍ଥାରେ ଦିନେ ପରିଜାସାହେବଙ୍କ ଘରେ ପହଞ୍ଚିଥିଲି, ଦିହେଁ ଖୁବ୍ ଯତ୍ନ ନେଇଥିଲେ, ଭଲ ଭଲ ଖାଇବାକୁ ଦେଇଥିଲେ । ଚତୁର୍ଥ ବର୍ଷ ମୁଁ ପଶ୍ଚିମ ଛାତ୍ରାବାସରେ କେତେ ମାସ ରହିଥିଲି, ପରିଜାସାହେବ ୱାର୍ଡେନ୍ ଥିଲେ । ୧୯୩୪-୩୬ ଏମ୍. ଏ. ବେଳେ କଟକ ସହରରେ କାହ୍ନୁଭାଇଙ୍କ ପାଖେ ରହୁଥିଲି, ତା ପରେ ବି ୧୯୩୯ ଆରମ୍ଭ ଯାଏ ତାଙ୍କ ପାଖେ ଥିଲି, ଅନେକ ସମୟରେ ରେଭେନ୍ସା କଲେଜକୁ ଯାଉଥିଲି, ସେତେବେଳେ କେତେଥର ପରିଜାସାହେବଙ୍କ ଘରକୁ ବୁଲିଯାଇଛି ।

ଛାତ୍ରଜୀବନ ଭିତରେ ଦେଖୁଛି, ଯେତେଥର ତାଙ୍କ ଘରକୁ ଯାଇଛି, ସେ କିଛି ନା କିଛି ଖାଇବାକୁ ଦେଇଛନ୍ତି । ପିଜୁଳି, କଦଳୀ, ଅମୃତଭଣ୍ଡା, ନଡ଼ିଆ ଆଦି ଫଳ ତ ତାଙ୍କର ପ୍ରିୟ ଖାଦ୍ୟ, କାହିଁରେ କେତେ ଓ କ'ଣ କ'ଣ ଖାଦ୍ୟସାର ଅଛି ତାହା ବୁଝାନ୍ତି ଓ ଖୁବ୍ ଖାଇବାକୁ ଦିଅନ୍ତି । ତା ଛଡ଼ା ତାଙ୍କ ସ୍ତ୍ରୀ ନାନା ପିଠାପଣା କରି ଛାତ୍ରମାନଙ୍କୁ ଖୁଆଇବାକୁ ଭଲ ପାଆନ୍ତି ।

ପଢ଼ିଲାବେଳେ କେତେବେଳେ ମୋର ପଇସା ଅଭାବ ପଡ଼େ । ପ୍ରଥମ ବର୍ଷ ହିଁ ସେ ମତେ କହିଥାନ୍ତି ଯେତେବେଳେ ଯାହା ଅସୁବିଧା ହେବ ମତେ କହିବ, ଆଦୌ ସଙ୍କୋଚ କରିବ ନାହିଁ । କେତେଥର ଯାଇଛି, ୧୫ ଟଙ୍କା କି ୨୦ ଟଙ୍କା ଆଣିଛି । ମାଗିଲାମାତ୍ରେ ଦେଇଛନ୍ତି, ତା'ପରେ ମୋ ଭାଇଙ୍କଠୁ ଟଙ୍କା ଆସିଲେ ଆଣି ଲେଉଟାଇ ଦେଇଛି !

ଦିନକର କଥା ମନେ ପଡୁଛି । ପଶ୍ଚିମ ଛାତ୍ରାବାସର ପଢ଼ା ବହି ଉଧାରଦେବା ପାଠାଗାର ଯେଉଁ ବହି ଯେ ନେବାକୁ ଚାହିଁବ ତାର ଚଉଠା ଦାମ୍ ଦେଲେ ଦୁଇବର୍ଷ ପର୍ଯ୍ୟନ୍ତ ବହିଟି ରଖି ହୁଏ । ଖଣ୍ଡିଏ ବହି ଆଣିବାକୁ ଯାଇଥିଲି । ଯେଉଁ କର୍ମଚାରୀ ତା ଦାୟିତ୍ୱରେ ଥିଲେ ସେ କହିଲେ ୪ ଟଙ୍କା ଆଠଅଣାଦେବାକୁ ପଡ଼ିବ । ସେ କାଳରେ ୪ ଟଙ୍କା ବହୁତ ଓ ମୋ ପାଖେ ତା ନ ଥିଲା । ସେ ଦାମ୍ ପଛେ ନେବାକୁ ବି ମନା କଲେ ଓ ବହିଟି ମୋ ପାଇଁ ରଖିଦେବାକୁ ବି ମନା କଲେ । ମୁଁ ଫେରି ଆସୁଥିଲି । ପଛରୁ ଡାକ ଶୁଭିଲା, ଶୁଣ, ଶୁଣ । ଫେରିଗଲି । ଘର ସେମୁଣ୍ଡେ ଠିଆ ହୋଇଛନ୍ତି ପରିଚ୍ଛାସାହେବ, ତାଙ୍କୁ ଦେଖି ପାରି ନ ଥିଲି, ସେ ହିଁ ଡାକୁଥିଲେ । ପଚାରିଲେ ସେ ପିଲା କାହିଁକି ଫେରିଯାଇଥିଲା କି, (ଅମୁକ) ବାବୁ, କ'ଣ ହେଲା ତାଙ୍କଠୁ ସବୁ ଶୁଣିଲେ । ଟଙ୍କା କାଢ଼ିଲେ, ବଢ଼ାଇଦେଲେ, କହିଲେ ବହିଟି ଦେଇଦିଅନ୍ତୁ । ତାଙ୍କୁ କିଏ କି କୃତଜ୍ଞତା ଜଣାଇବ । କୃତଜ୍ଞତା ଜଣାଇବାକୁ ବି ଲାଜମାଡ଼େ, ମାଡ଼ିପଡ଼େ । ହସିଦେଲେ, କହିଲେ, ''ଯାଅ'' । ଯେତେ ଥର ତାଙ୍କ ପାଖକୁ ଯାଇଛି ସେ ଦୁଃଖ ସୁଖ ପଚାରିଛନ୍ତି । ନାନା ଉପଦେଶ ଦେଇଛନ୍ତି, ସେ ଥିଲେ ହିଁ ଦେଖା ମିଳେ, ଯାଇ କଥା ହୋଇ ଆସିଲେ ହିଁ ଖୁସି ଲାଗେ ।

ସମସ୍ତେ ଜାଣନ୍ତି, ସେ ଆଇନ ଶୃଙ୍ଖଳା ମାନିବା ଓ ମନାଇବା ଲୋକ, ତାଙ୍କ ଆଖିରେ ଟିକିଏ ଦୋଷ ଦୁର୍ବଳତା ଯିବ ନାହିଁ । ନୀତିରେ କଠୋର, କ୍ଷୁର ଦାଢ଼ରେ ବାଟ ଚାଲିବା ମଣିଷ; ଲୋଡ଼ନ୍ତି ଛାତ୍ରମାନେ ସମସ୍ତେ ସେପରି ହୁଅନ୍ତୁ । କିନ୍ତୁ ସେ କେବେ ଚାହୁଁ ନ ଥିଲେ ଛାତ୍ର ଜଣେ ଦରମଲା, ଡରୁଆ, ପେଞ୍ଚୁଆ, ଖଚୁଆ, ଗୁପ୍ତମାରୁ ହେଉ, ସେ ଚାହୁଁଥିଲେ ଯେ ପିଲାଏ ମଣିଷ ପରି ମଣିଷ ହୁଅନ୍ତୁ ।

ସୁସ୍ଥ ସବଳ, ଆଗୁଆ, ନିଡରୁଆ, ସବୁ କାମକୁ ପାରଙ୍ଗମ, ସବୁ କ୍ଷେତ୍ରରେ ନାଁ ତାଙ୍କ । ମତେ ବି ଲାଗେ ଯେ ପୂର୍ବ ଛାତ୍ରାବାସ ଅପେକ୍ଷା ତାଙ୍କ ପଶ୍ଚିମ ଛାତ୍ରାବାସରେ ଅନ୍ତେବାସୀମାନଙ୍କର ଅଧିକ ସ୍ୱଚ୍ଛନ୍ଦ ବିହାର ଓ ସ୍ୱାଧୀନତା ଥିଲା । ପିଲାଙ୍କୁ ସେ ନିଜେ ଶାସନ କରୁଥିଲେ । କିନ୍ତୁ କଲେଜ ବାହାରୁ ଅନ୍ୟ କାହା କର୍ତ୍ତୃକ ପିଲାଙ୍କ ସମ୍ମାନ କି ନିରାପତ୍ତା ଉପରେ ସାମାନ୍ୟତମ ହସ୍ତକ୍ଷେପର ଉପକ୍ରମ ଦେଖିଲେ ସେ ଗୋଠକୁ ଆଗୁଳି ଦନ୍ତାହାତୀ ପରି ଠିଆ ହେଉଥିଲେ, ଅକଥା ଅକାମକୁ ସେ ପ୍ରଶ୍ରୟ ଦେବେ ନାହିଁ କିନ୍ତୁ ଦାୟିତ୍ୱ ନେବେ ନିଜେ । ତେଣୁ ତାଙ୍କ ଉପରେ ଛାତ୍ରମାନଙ୍କର ଆସ୍ଥା ଥିଲା ।

ରେଭେନ୍ସା କଲେଜରେ ଉଦ୍ଭିଦ ବିଜ୍ଞାନ ବିଭାଗକୁ ସେ ସୁନ୍ଦର କରି ଗଢ଼ିଥିଲେ, କିନ୍ତୁ ତାଙ୍କ କାର୍ଯ୍ୟର ପରିସର ସେତିକିରେ ସୀମିତ ନ ଥିଲା । "ଓଡ଼ିଶାର ଛାତ୍ରସମାଜକୁ ଆଦର୍ଶ କରି ଗଢ଼ିବି, ବଡ଼ହେଲେ ଏଇମାନେ ହେବେ ନାନା କ୍ଷେତ୍ରରେ ଏ ଦେଶର ଗଢ଼ାଳି ।" ଲାଗୁଛି ଏହିଭଳି ଥିଲା ତାଙ୍କ ସ୍ୱପ୍ନ ଓ ଆଶା । ଶିକ୍ଷାର ଯେଉଁ ବିଭାଗରେ ଯେ ଛାତ୍ର ଥାଉ, ଗଠନମୂଳକ କାର୍ଯ୍ୟ ଯେ ଯାହା କରୁ, ଜାଣିଲେ ସେ ଉତ୍ସାହ ଦେଉଥିଲେ, ସେ ବିଷୟରେ କୌତୂହଳ ଦେଖାଉ ଥିଲେ, କିଛି ଗଠନମୂଳକ ଓ କାର୍ଯ୍ୟକାରୀ ଉପଦେଶ ଦେଉଥିଲେ । ତେଣୁ ଗାଁର କି ସହରର ହଜାର ହଜାର ଲୋକଙ୍କ ସଙ୍ଗେ ତାଙ୍କ ଚିହ୍ନା ଥିଲା । ସେମାନେ ତାଙ୍କୁ ଜଣେ ମୁରବି ବୋଲି ମାନୁଥିଲେ, ତାଙ୍କ ଆଶୀର୍ବାଦ ବା ପରାମର୍ଶ ଲୋଡ଼ୁଥିଲେ ।

ସେ ନିଜେ ସ୍ୱାଧୀନଚେତା ଥିଲେ, ବିଦେଶରେ ରହି ସ୍ୱଦେଶକୁ ଭକ୍ତି କରୁଥିଲେ, ସେ ଭାବୁଥିଲେ, ଏ ଦେଶରେ ଶିକ୍ଷା ବିସ୍ତାର ନ ହେଲେ, ଚରିତ୍ରଗଠନ ନ ହେଲେ ଏ ଦେଶର କୌଣସି ଉନ୍ନତି ହେବ ନାହିଁ । ତାଙ୍କ ରୁଚି ଓ ମୂଲ୍ୟବୋଧ ଖୁବ୍ ଉନ୍ନତ ହିଁ ଥିଲା । ସେ ଅନ୍ୟାୟ ଅନୀତି ଶୋଷଣ ଉତ୍ପୀଡ଼ନର ବିରୋଧୀ ଥିଲେ, ମିଥ୍ୟା ଓ ମିଥ୍ୟାଚାରର ବିରୋଧୀ ଥିଲେ । ଯେଉଁମାନେ ଦୁସ୍ଥ ଓ ଦରିଦ୍ର ତାଙ୍କ ପ୍ରତି ତାଙ୍କର ଗଭୀର ସହାନୁଭୂତି ଥିଲା, କିନ୍ତୁ ନିଜର ମୂଲ୍ୟବୋଧକୁ ତଳକୁ ଖସାଇବା ତାଙ୍କର ଉଦ୍ଦେଶ୍ୟ ନ ଥିଲା । ତଳ ଲୋକଙ୍କ ମୂଲ୍ୟବୋଧକୁ ଉପରକୁ ଉଠାଇବା ହିଁ ତାଙ୍କର ଅଭିପ୍ରେତ ଥିଲା ।

ସେ ଆନ୍ତରିକତାକୁ ଗୁରୁତ୍ୱ ଦେଉଥିଲେ, ଲୋକଦେଖାଣିଆକୁ ଘୃଣା କରୁଥିଲେ । ସେ ବିଶ୍ୱାସ କରୁଥିଲେ, ମଣିଷର ଗୁଣ ତାର କାର୍ଯ୍ୟରେ ଫୁଟିବା ଉଚିତ, କଥାରେ କି ତୁଚ୍ଛ ପ୍ରସାରରେ ନୁହେଁ । ସେ ମାନବପ୍ରେମୀ ଥିଲେ, ସ୍ୱଦେଶପ୍ରେମୀ ଥିଲେ, ଏଥିରେ ସନ୍ଦେହର ଅବକାଶ ନାହିଁ, ସମ୍ଭବତଃ ଓଡ଼ିଶାର ଗୌରବମୟ ଅତୀତକୁ ଆଖି ଆଗରେ ରଖି ସେ ଗୋଟିଏ ପୁଅର ନାଁ ରଖିଥିଲେ ପ୍ରତାପରୁଦ୍ର, ଆରଟି ନାଁ ଲଲାଟେନ୍ଦୁ, କିନ୍ତୁ

ସେ ଭାବୁ ନ ଥିଲେ ଯେ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଭେକ ଗଖି ବା ନିର୍ଦ୍ଦିଷ୍ଟ ମାର୍ଗରେ ହିଁ ମଣିଷ ତାର ସ୍ୱଦେଶପ୍ରେମ ଦେଖାଇପାରିବ, ଅନ୍ୟ ମାର୍ଗରେ ନୁହେଁ ।

ନିଃସ୍ୱାର୍ଥପର ଓ ନିଷ୍ଠାପରଭାବେ ସାଧାରଣ କ୍ଷେତ୍ରରେ ଦେଶର ଯେକୌଣସି ଦିଗରେ ସାମାନ୍ୟତମ ଉନ୍ନତି ବା ଉପକାର କଲେ ଯେ ଯେଉଁ ଦାୟିତ୍ୱ ତୁଲାଏ, ତାହା ମଧ୍ୟ ତାର ସ୍ୱଦେଶ ପ୍ରୀତିର ନିଦର୍ଶନ, ତାଙ୍କର ଧାରଣା ଏଇଭଳି ଥିବାର ଜଣାପଡ଼େ । ଖୁବ୍ ଟାଣ ମଣ୍ଡା, ଖୁବ୍ ଦମ୍ଭ ଚେର, ତାଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ ମନେ ପଡ଼ିଗଲେ ଲାଗେ ସେଥିଲେ ଜଣେ ପ୍ରାଚୀନ ଓଡ଼ିଆ, ଯେମିତି ସାରଳା ଦାସଙ୍କ ଦମ୍ଭିଲା ଚରିତ୍ରମାନଙ୍କ ଭିତରୁ ଜଣେ : ଆପଣା ସ୍ୱାଧୀନ ବିଚାରରେ ଆପଣା ନୀତିରେ ସୁପ୍ରତିଷ୍ଠିତ, ଆଖି ଖୁବ୍ ବଡ଼, ଦୃଷ୍ଟି ଖୁବ୍ ଦୂରକୁ । କୌଣସି ପ୍ରକାର ଶସ୍ତା ଜନମନଲୋଭା (ପପୁଲିଷ୍ଟ) ଆଚରଣଠୁଁ ବହୁତ ଉଚ୍ଚରେ, ସେହି ଥିଲା ବୋଧହୁଏ ଏ ଦେଶର ଜନସାଧାରଣଙ୍କର ମନରେ ତାଙ୍କ ପ୍ରତି ପ୍ରବଳ ଆକର୍ଷଣର ଗୁପ୍ତ ରହସ୍ୟ ।

ପରିଜାସାହେବ ଆଉ ନାହାନ୍ତି ଏପରି ଭାବିବା ହିଁ ଅସମ୍ଭବ । ଓଡ଼ିଶାରେ ସେ ଯେଉଁ ହଜାର ହଜାର ମଣିଷ ଗଛ ପୋତି ଦେଇଗଲେ ସେମାନେ ଥିବାଯାକେ ସେ ନିଶ୍ଚୟ ଅଛନ୍ତି । ଏ ବନ୍ଧ୍ୟା ଦେଶର ସ୍ମୃତିରେ ସେ ଅମର ହୋଇ ରହିଥିବେ ।

(ଶ୍ରୀ ବିବେକାନନ୍ଦ ପଟ୍ଟନାୟକଙ୍କ ମୁଖ୍ୟ ସଂପାଦନାରେ ପ୍ରକାଶିତ 'ଉତ୍କଳ ପ୍ରସଙ୍ଗ' ସ୍ୱତନ୍ତ୍ର ସଂଖ୍ୟା, ୧୯୭୮ରୁ ଗୃହୀତ)

# ପରିଜାସାହେବ—ଏକ ବିନମ୍ର ଶ୍ରଦ୍ଧାଞ୍ଜଳି

**ଗୌରାଙ୍ଗ ଚରଣ ନାୟକ**

ତାଙ୍କୁ ଆମେ ପରିଜାସାହେବ ବୋଲି ଜାଣୁଁ । ବିଶାଳ ବ୍ୟକ୍ତିତ୍ୱ—ଏତିକିରୁ ସବୁ କିଛି ବୁଝିନେବାକୁ ହେବ । ଆଉ ଅଧିକ ଜାଣିବା ଆମପକ୍ଷେ ଅନ୍ତତଃ ସମ୍ଭବ ନ ଥିଲା, କାରଣ ତାଙ୍କ ଆଗରେ ଆମେ ସତେ ଯେପରି ଛୋଟ ଛୁଆ—ତାଙ୍କୁ ଭଲଭାବରେ ଜାଣିବାର, ବୁଝିବାର ଯୋଗ୍ୟତା କିମ୍ବା ଅବକାଶ ମଧ ନ ଥିଲା । "Why man, he doth bestride the narrow world like a colossus" - ପରିଜାସାହେବଙ୍କ ଭଳି ବ୍ୟକ୍ତିତ୍ୱର ସଂସ୍ପର୍ଶରେ ଆସିଲେ କେସିୟସ୍‌ଙ୍କ ଏହି ଉକ୍ତିର ଯଥାର୍ଥତା ହୃଦୟଙ୍ଗମ କରିବା ହୁଏତ କେତେକାଂଶେ ସମ୍ଭବ ହୋଇପାରେ ।

୧୯୫୮ ମସିହାର ଘଟଣା । ଉତ୍କଳ ବିଶ୍ୱବିଦ୍ୟାଳୟରେ ନୂଆ କରି ସ୍ନାତକୋତ୍ତର ଦର୍ଶନ ବିଭାଗ ଖୋଲିଥାଏ । ବିଭାଗୀୟ ଅଧାପକ ନିଯୁକ୍ତି ଲାଗି ସାକ୍ଷାତ୍‌କାର ଚାଲିଥାଏ। ପ୍ରାର୍ଥୀମାନଙ୍କ ମଧ୍ୟରୁ ମାତ୍ର ଦୁଇଜଣ ବଛାହେବେ । ଅନେକ ପ୍ରାର୍ଥୀଙ୍କ ମଧ୍ୟରେ ସାଧାରଣ ଜଣେ ପ୍ରାର୍ଥୀ ଭାବେ ସର୍ବପ୍ରଥମ ପରିଚୟ ହୁଏ ମୋର ତାଙ୍କ ସଙ୍ଗେ । ମନୋନୟନ କମିଟିର ଅଧ୍ୟକ୍ଷ—ପରିଜାସାହେବ—ବିରାଟ ବ୍ୟକ୍ତିତ୍ୱ; ହଲ୍ ଭିତରକୁ ପଶିଗଲା ମାତ୍ରେ ଆଖିରେ ପଡ଼ନ୍ତି । ଅନ୍ୟମାନଙ୍କ ସଙ୍ଗରେ ବସିଛନ୍ତି ଦର୍ଶନଶାସ୍ତ୍ରର ବିଶେଷଜ୍ଞ ରୂପେ ଭାରତୀୟ ଦର୍ଶନ ବିଶାରଦ ସୁବିଖ୍ୟାତ ଦାର୍ଶନିକ ଧୀରେନ୍ଦ୍ର ମୋହନ ଦତ୍ତ । ପ୍ରଶ୍ନ ପରେ ପ୍ରଶ୍ନ । ପରିଜାସାହେବଙ୍କ ତୀକ୍ଷ୍ଣ ଦୃଷ୍ଟିରେ ସବୁକିଛି ଛଣା ହୋଇ ଯାଉଥାଏ ସତେଯେପରି । ଗୋଟିଏ ପ୍ରଶ୍ନ—ଶଙ୍କରବେଦାନ୍ତରେ ଜୀବନ୍ମୁକ୍ତି ସଂପର୍କରେ । ବ୍ରହ୍ମସୂତ୍ର 'ତତ୍ତୁ ସମନ୍ୱୟାତ୍' (୧.୧୪)ର ଶଙ୍କର ଭାଷ୍ୟରୁ ଅବିକଳ ଅଂଶ ଉଦ୍ଧାର କରି ଉତ୍ତର ଦେବା ମାତ୍ରେ ଉଭୟ ଦର୍ଶନଶାସ୍ତ୍ର ବିଶେଷଜ୍ଞ ଡଃ ଦତ୍ତ ଏବଂ ମନୋନୟନ କମିଟିର ଅଧ୍ୟକ୍ଷ ପରିଜାସାହେବଙ୍କ ଅନୁମୋଦନ ଏକ ସମୟରେ ମିଳିଯିବାରୁ ମୁଁ ନିଜେ ଆନନ୍ଦବିଭୋର ହୋଇ ଯାଇଥିଲି—ଏବେ ମଧ ସ୍ପଷ୍ଟ ମନେପଡ଼େ । ପରିଜାସାହେବଙ୍କ ଭଳି କୁଳପତିଙ୍କ ସମର୍ଥନ ଲାଭ କରିଥିବାରୁ ଏବଂ ତାଙ୍କ ଦ୍ୱାରା ମୋର ବିଶ୍ୱବିଦ୍ୟାଳୟରେ ପ୍ରଥମ ନିଯୁକ୍ତି ହୋଇଥିବାରୁ ନିଜକୁ ଗୌରବାନ୍ୱିତ ମନେକରିବା ମୋ ପକ୍ଷରେ ସ୍ୱାଭାବିକ । ସୁପ୍ରସିଦ୍ଧ ସାହିତ୍ୟିକ ଶ୍ରୀଯୁକ୍ତ ଅନ୍ନଦାଶଙ୍କର ରାୟଙ୍କ ସୁପୁତ୍ର ଶ୍ରୀଯୁକ୍ତ ପୁଣ୍ୟଶ୍ଳୋକ ରାୟ ଓ ମୁଁ ଏକସଙ୍ଗେ

ପରିଜାସାହେବଙ୍କ ଦ୍ୱାରା ମନୋନୀତ ହୋଇ ନୂଆ କରି ଖୋଲିଥିବା ଦର୍ଶନ ବିଭାଗରେ ୧୯୫୮ ଜୁଲାଇ ମାସରେ ନିଯୁକ୍ତି ପାଇବା ମୋ ଜୀବନର ଏକ ସ୍ମରଣୀୟ ଘଟଣା ।

କଟକର କ୍ୟାଣ୍ଟନ୍‌ମେଣ୍ଟ୍ ରୋଡ୍‌ସ୍ଥିତ ପରିଜାସାହେବଙ୍କ କୋଠିକୁ ମଧ୍ୟ ଅନେକଥର ଯାଇଛି । ଭୟ ଓ ସଙ୍କୋଚ ମନକୁ ସର୍ବଦା ଗ୍ରାସିଥାଏ—ଏତେ ବଡ଼ ବ୍ୟକ୍ତିତ୍ୱ ତାଙ୍କର, ତା ଆଗରେ ମୋ ନିଜର କ୍ଷୁଦ୍ରତା ବୋଧ ଅତିମାତ୍ରାରେ ବଢ଼ିଯାଏ । ମାତ୍ର ଯେତେବେଳେ ତାଙ୍କୁ ଭେଟିବାକୁ ଚାହିଁଛି, ସେ ଅକୁଣ୍ଠ ଚିତ୍ତରେ ମତେ ସାକ୍ଷାତ କରିବାକୁ ସୁଯୋଗ ତ ଦେଇଛନ୍ତି– ତା'ଛଡ଼ା ଅତ୍ୟନ୍ତ ଧୀରସ୍ଥିର ଭାବରେ ମୋ କଥା ଶୁଣିବାକୁ ସମୟ ମଧ୍ୟ ଦେଇଛନ୍ତି । ମାତ୍ର ମୋ ଭଳି ଜଣେ ଅର୍ବାଚୀନ ଏବଂ ଅନଭିଜ୍ଞ ବ୍ୟକ୍ତି ତାଙ୍କ ନିକଟରେ ଅଧିକ ସମୟ ରହିଲେ ମୋ ନିଜଆଡୁ କଥାବାର୍ତ୍ତା ଓ ଆଚରଣରେ କୌଣସି ବ୍ୟତିକ୍ରମ ହେବ ମନେକରି ମୁଁ ଅତି ଶୀଘ୍ର ମୋ କଥା ଟିକକ କହି ପକାଇ ଆସୁଥିଲି । ଅଥଚ ତାଙ୍କ ସଙ୍ଗେ ସାକ୍ଷାତ୍‌କାର ମୋର କେବେହେଲେ ନିଷ୍ଫଳ ହେଇ ନ ଥିଲା । ମିତଭାଷଣ ସଙ୍ଗେ ସଙ୍ଗେ କର୍ମକୁଶଳତାର ଅପୂର୍ବ ସମନ୍ୱୟ ତାଙ୍କ ବ୍ୟକ୍ତିତ୍ୱକୁ ଏକ ଅଦ୍ଭୁତ ତେଜରେ ଉଦ୍‌ଭାସିତ କରୁଥିଲା । ତାଙ୍କରି ସୁପାରିଶ୍ ଯୋଗୁଁ ମୁଁ କମନ୍‌ୱେଲ୍‌ଥ୍ ଫେଲୋସିପ୍ ପାଇ ଉଚ୍ଚତର ଗବେଷଣା ଲାଗି ୧୯୬୧ ମସିହାରେ ବିଲାତ ଯିବାର ସୁଯୋଗ ପାଇଥିଲି । ସେଠାରେ ଗବେଷଣା କରୁଥିବା ସମୟରେ ପରମ ସ୍ନେହମୟୀ ମାତୃଦେବୀଙ୍କ ଅସୁସ୍ଥତାବଶତଃ ସେଠାରୁ ଛୁଟିନେଇ କିଛିଦିନ ଲାଗି ଭାରତକୁ ଫେରି ଆସିଥିବାରୁ ୧୯୬୫ ମସିହାରେ ବିଲାତରୁ ଡକ୍ଟରେଟ୍ କରିସାରି ପୁଣିଥରେ ଚାକିରିରେ ଜଏନ୍ କଲାପରେ ମୋ ବିରୋଧରେ ବିଶ୍ୱବିଦ୍ୟାଳୟ ମହଲରେ ନାନା ଅଭିଯୋଗ ହୋଇଥିଲା । ମାତ୍ର ପରିଜାସାହେବ ଏସବୁ ଅଭିଯୋଗ ନାକଚ କରି ଦେଇଥିଲେ । ସ୍ୱର୍ଗତ ପ୍ରଫେସର ଡଃ ଶ୍ରୀରାମଚନ୍ଦ୍ର ଦାଶ ଏସବୁର ଉଲ୍ଲେଖ କରି ଏକଦା ତାଙ୍କ ସ୍ୱଭାବସୁଲଭ ଭଙ୍ଗୀରେ ମତେ କହିଥିଲେ—ପରିଜାସାହେବଙ୍କର ତ ତୁମ ସଂପର୍କରେ ଅତି ଉଚ୍ଚ ଧାରଣା, ଆଉ କିଏ ବା ତୁମର କ'ଣ ଅନିଷ୍ଟ କରିବ ? ମୋ ବିରୋଧରେ ଲାଗିଥିବା ବ୍ୟକ୍ତିବିଶେଷଙ୍କ କଥା ଉଲ୍ଲେଖ କରି ମୋର ଶୁଭାକାଙ୍‌କ୍ଷୀ ଭାବେ ଡଃ ଦାଶ ଏହା କହି ମତେ ଆଶ୍ୱସ୍ତ କରିବା କଥା ମୋର ସ୍ପଷ୍ଟ ମନେ ଅଛି । ମୋର ବିଶ୍ୱବିଖ୍ୟାତ ରିସର୍ଚ୍ଚ ଗାଇଡ୍ ବ୍ରିଷ୍ଟଲ୍ ବିଶ୍ୱବିଦ୍ୟାଳୟ ପ୍ରଫେସର କର୍ଣ୍ଣର୍ ମୋ ସଂପର୍କରେ ଦେଇଥିବା ମତାମତ ଏବଂ ବିଲାତରୁ ତାଙ୍କ ଅନୁମତିରେ ହିଁ ମଝିରେ କିଛିଦିନ ଲାଗି ଭାରତକୁ ଆସିଥିଲି, ଏହି ସାର୍ଟିଫିକେଟ୍—ଏ ଉଭୟକୁ ଗ୍ରହଣ କରି ପରିଜାସାହେବ ମତେ ଦୋଷମୁକ୍ତ କରି ମୋର ଭବିଷ୍ୟତ ଉନ୍ନତିର ମାର୍ଗ ପରିଷ୍କାର କରି ଦେଇଥିବାରୁ ମୁଁ ବ୍ୟକ୍ତିଗତ ଭାବେ ତାଙ୍କ ନିକଟରେ ଚିରଋଣୀ । ଏହା ତାଙ୍କର ନ୍ୟାୟପରାୟଣତା, ବିଦ୍ୟାନୁରାଗ ଓ

ଗୁଣଗ୍ରାହିତା ସଙ୍ଗେ ସଙ୍ଗେ ମହାନୁଭବତା ଓ ଉଦାରତାର ମଧ୍ୟ ପରିଚୟ ଦିଏ । ଏଥିରେ ତାଙ୍କର କୌଣସି ପକ୍ଷପାତିତା ଥିଲା ବୋଲି କେହି କହିପାରିବେ ନାହିଁ; ବରଂ ଯେଉଁମାନେ ମୋର ବିରୋଧୀ ପକ୍ଷ ଧରି ମୋ ପ୍ରତି ଅନ୍ୟାୟ କରିବାକୁ ଯାଉଥିଲେ, ସେମାନଙ୍କ କଥାକୁ ସେ ଅଗ୍ରାହ୍ୟ କରି ଯଥାର୍ଥ ନ୍ୟାୟପ୍ରଦାନ କରିଥିଲେ ।

ଏତେ ଉଚ୍ଚ ପଦରେ ଆସୀନ ହୋଇ ମଧ୍ୟ ମୋ ଭଳି ଜଣେ ସାଧାରଣ କର୍ମଚାରୀ ବା ଅଧ୍ୟାପକଙ୍କ ଭଲମନ୍ଦ ବିଷୟରେ ପରିଜାସାହେବଙ୍କର ଏ ଯେଉଁ ଗଭୀର ସଚେତନତା, ଏହା ବିଶେଷ ପ୍ରଣିଧାନଯୋଗ୍ୟ । ସାଧାରଣ ଅର୍ଦ୍ଦଳି ପିଅନଙ୍କ ପ୍ରତି ମଧ୍ୟ ତାଙ୍କର ଗଭୀର ସ୍ନେହ, ଶ୍ରଦ୍ଧା ଥିବାର ମୁଁ ଲକ୍ଷ୍ୟ କରିଛି । ଅଥଚ ଏସବୁ ଦୁର୍ଲଭ ଗୁଣର ଅଧିକାରୀ ହେଲେହେଁ ସେ କେବେହେଲେ ଏସବୁର ବିଜ୍ଞାପନ କରୁ ନ ଥିଲେ । ଏଣୁ ସାଧାରଣ ଲୋକଙ୍କ ପକ୍ଷରେ ତାଙ୍କୁ ଚିହ୍ନିବା ଅତ୍ୟନ୍ତ କଷ୍ଟସାଧ୍ୟ, ଏକପ୍ରକାର ଅସମ୍ଭବ ଥିଲା । ଥରେ ତାଙ୍କର ଜଣେ ଅର୍ଦ୍ଦଳି ପିଅନଙ୍କ ଠାରୁ ମୁଁ ଜାଣିବାକୁ ପାଇଥିଲି—କୌଣସି ଭୁଲ୍ ଲାଗି ତାଙ୍କୁ ଜୋରିମାନା କରିସାରି ପରିଜାସାହେବ ତାଙ୍କ ଧର୍ମପତ୍ନୀଙ୍କ ଜରିଆରେ ସେହି ଜୋରିମାନା ଭରଣା କରି ଦେଇଥିଲେ, କାରଣ ଅର୍ଦ୍ଦଳି ପିଅନ ଜଣକର ଆର୍ଥିକ ଅବସ୍ଥା ଆଦୌ ସ୍ୱଚ୍ଛଳ ନ ଥିଲା । ଏକଥା ଶୁଣିବା ପରେ ପରିଜାସାହେବଙ୍କ ପ୍ରତି ଶ୍ରଦ୍ଧା ଓ ଭକ୍ତିରେ ମୋ ମଥା ସ୍ୱତଃ ଅବନତ ହୋଇ ଯାଇଥିଲା । ହାମ୍‌ଲେଟ୍‌ର ଦରଦ ନେଇ ସେ ବୁଝିଥିଲେ—"Use every man after his desert and who shall escape whipping ?"ଖ୍ୟାତନାମା ଦାର୍ଶନିକ ରାଧାକୃଷ୍ଣନ୍ ଥରେ କହିଥିଲେ—The infinite pathos of life calls for infinite understanding".ପରିଜାସାହେବଙ୍କ ହୃଦୟରେ ମଣିଷ ଲାଗି ଥିଲା ଅପରିସୀମ ଦରଦ । ଏହା ମୁଁ ଅନୁଭବ କରିଛି, ଲକ୍ଷ୍ୟ କରିଛି ମଧ୍ୟ । ବିଜ୍ଞାପନ ନ ଥାଇ ମଧ୍ୟ ଏହି ଦରଦ ତାଙ୍କର କଠିନ ଆବରଣକୁ ଭେଦ କରି ବାରମ୍ବାର ଫୁଟି ଉଠିଛି । ଏହାହିଁ ଥିଲା ପରିଜାସାହେବଙ୍କ ବିଶେଷତ୍ୱ । କଠୋର ନ୍ୟାୟପରାୟଣତା ଓ ଚରିତ୍ରବତ୍ତା ସଙ୍ଗେ ସୁକୋମଳ ହୃଦୟବତ୍ତାର ଏଭଳି ବର୍ଣାଢ଼୍ୟ ସମାବେଶ ବାସ୍ତବିକ୍ ବିରଳ—"ବଜ୍ରାଦପି କଠୋରାଣି ମୃଦୁନି ଶିରୀଷାଦପି, ଲୋକୋତ୍ତର ଚରିତାନି କୋନୁ ବିଜ୍ଞାତୁ ମର୍ହସି" ।

# ଅତି ଆପଣାର ଲୋକ, ପରିଜାସାହେବ
# ମୋର ସ୍ମୃତି ତର୍ପଣ

**ଗୌରୀରାଣୀ ଘୋଷ**

ପରିଜାସାହେବ, ଏହି ନାମରେ ସେ ସମସ୍ତଙ୍କ ପାଖରେ ପରିଚିତ ଥିଲେ । ପ୍ରଫେସର ପ୍ରାଣକୃଷ୍ଣ ପରିଜାଙ୍କ ସଙ୍ଗେ ମୋର ପ୍ରଥମ ପରିଚୟ ହୁଏ ୧୯୪୧ ମସିହାରେ, ଯେତେବେଳେ ମୁଁ ରେଭେନ୍ସା କଲେଜରେ ବି.ଏସ୍‌ସି. କ୍ଲାସ୍‌ରେ ନାମ ଲେଖାଇବାପାଇଁ ଇଚ୍ଛା ପ୍ରକାଶ କଲି । ମୋର ପିତା ଶରତ ଚନ୍ଦ୍ର ଦତ୍ତ ମୋତେ ତାଙ୍କ ପାଖକୁ ନେଇ ଯାଇଥିଲେ । ସେମାନେ ଦୁଇଜଣ ସମସାମୟିକ ଏବଂ ପରସ୍ପର ସହିତ ଭଲଭାବରେ ପରିଚିତ ଥିଲେ । ସେହି ସମୟରେ ପୁରୁଷମାନଙ୍କ କଲେଜରେ ବି.ଏସ୍‌ସି. ପଢ଼ିବାକୁ ଇଚ୍ଛା ପ୍ରକାଶ କଲାରୁ ଘରେ ଓ ବାହାରେ ମୁଁ ବହୁ ବାଧାବିଘ୍ନର ସମ୍ମୁଖୀନ ହୋଇଥିଲି, କାରଣ ରେଭେନ୍ସା କଲେଜରେ ମୋ ପୂର୍ବରୁ କୌଣସି ମହିଳା ବି.ଏସିସି. ପଢ଼ି ନ ଥିଲେ । ପରିଜାସାହେବ କିନ୍ତୁ ମୋତେ ବି.ଏସ୍‌ସି. ପଢ଼ିବାପାଇଁ ଯଥେଷ୍ଟ ଉତ୍ସାହ ଦେଲେ । ମୋର ପିତା ଏଥିରେ ବହୁତ ଖୁସି ହେଲେ । ମୁଁ ବି.ଏସ୍‌ସି. କ୍ଲାସ୍‌ରେ ନାମ ଲେଖାଇଲି ।

ପରିଜାସାହେବ ସେତେବେଳେ ରେଭେନ୍ସା କଲେଜରେ ଅଧ୍ୟକ୍ଷ ଥିଲେ । ତାଙ୍କର ସାନ୍ନିଧ୍ୟରେ ଆସିବାର ସୁଯୋଗ ପାଏ ତାଙ୍କର ସାନଝିଅ ସୌଦାମିନୀ (କୁନି)ର ଆନୁକୂଲ୍ୟରେ । ଆମେ ଖୁବ୍ ଅଳ୍ପସଂଖ୍ୟକ ଝିଅ ଥିଲୁ କଲେଜରେ ଛାତ୍ରୀ, ତେଣୁ ପ୍ରତ୍ୟେକଙ୍କ ସଙ୍ଗରେ ଘନିଷ୍ଠତା ଥିଲା । ଛତ୍ରବଜାର ପୋଲ ପାର ହୋଇ ମୁଁ ପ୍ରତିଦିନ ପରିଜାସାହେବଙ୍କ କ୍ୱାଟର୍ସକୁ ଯାଏ, ଏହା ପରେ ଆମେ ତିନିଜଣ, ପରିଜାସାହେବ, କୁନି ଓ ମୁଁ ରେଭେନ୍ସା କଲେଜର ବିରାଟ ଖେଳପଡ଼ିଆରେ ଚାଲି ଚାଲି ପାର ହୋଇ କଲେଜରେ ପହଞ୍ଚୁ । ପରିଜାସାହେବ ଚାଲିଯାଉଥିଲେ ତାଙ୍କ ଅଫିସ୍ କ୍ୟାମ୍ପସ୍‌କୁ ଏବଂ ଆମେ ଦୁହେଁ ଯାଉଥିଲୁ ମହିଳା କମନ୍ ରୁମ୍‌କୁ । କଲେଜ ବନ୍ଦ ହେଲା ପରେ ପୁଣି ଏକାଠି ସାଙ୍ଗ ହୋଇ ଘରକୁ ଫେରୁଥିଲୁ । ପ୍ରତିଦିନ ଏକାଠି ଯିବା ଆସିବା ସମୟରେ ଆମ ଭିତରେ ଗପସପ ହେଉଥିଲା, କଲେଜର ଉଲ୍ଲେଖଯୋଗ୍ୟ ଘଟଣାଗୁଡ଼ିକର ଆଲୋଚନା ହେଉଥିଲା, ଯାହା ଫଳରେ ପରିଜାସାହେବ ମୋର ଅତି ଆପଣାର ମଣିଷ ହୋଇଯାଇଥିଲେ । ତାଙ୍କର ବିରାଟ ବ୍ୟକ୍ତିତ୍ୱ ତାଙ୍କୁ ମୋଠାରୁ ଦୂରେଇପାରି ନ

ଥିଲା । ସେହି ନିକଟର ମଣିଷଟି ଭବିଷ୍ୟତରେ ମୋର ବହୁତ ଅଳି ଆକାଂକ୍ଷା ଅକୁଣ୍ଠିତ ଚିତ୍ତରେ ପୂରଣ କରିଥିଲେ, ଯାହା ମୋ ମାନସପଟରେ ଚିରଦିନ ଜାଗ୍ରତ ରହିଛି ।

ପ୍ରତିଦିନ ସେହି ଯିବାଆସିବା ଅବସରରେ ମୁଁ ଅନେକ ବିଶିଷ୍ଟ ବ୍ୟକ୍ତିମାନଙ୍କ ସଙ୍ଗେ ପରିଚୟ ଲାଭର ସୁଯୋଗ ମଧ୍ୟ ପାଇଛି । ଥରେ ମାନ୍ୟବର ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ ପରିଜାସାହେବଙ୍କ ଆତିଥ୍ୟ ଗ୍ରହଣ କରିଥିଲେ । କଲେଜରୁ ସେଦିନ କୁନି, ସୂର୍ଯ୍ୟମଣି ନନ୍ଦ (ବର୍ତ୍ତମାନର ଡାକ୍ତର ସୂର୍ଯ୍ୟମଣି ମିତ୍ର) ଓ ମୁଁ ଘରକୁ ଫେରିଥିଲୁ । ଅଧ୍ୟକ୍ଷଙ୍କ ଘର ବାରଣ୍ଡାରେ ପହଞ୍ଚିବା ମାତ୍ରେ ସ୍ୱୟଂ ଅଧ୍ୟକ୍ଷ ଘରୁ ବାହାରିଆସି ଆମକୁ ଡାକି ନେଇ ଯାଇଥିଲେ ସମ୍ମାନନୀୟ ରାଜଗୋପାଳାଚାରୀଙ୍କ ସଙ୍ଗେ ସାକ୍ଷାତ କରିବାପାଇଁ । ପରିଚୟ ପରେ ମାନ୍ୟବର ଅତିଥି ଆମ୍ଭମାନଙ୍କ ସଙ୍ଗେ କଥାବାର୍ତ୍ତା ହେଲେ ଏବଂ ଜୀବନପଥରେ ସାହସୀ ହେବାପାଇଁ ଆମକୁ ଉପଦେଶ ଦେଲେ । ଆମେ ଧନ୍ୟ ହେଲୁ ।

ଥରେ ସ୍ୱନାମଧନ୍ୟ ବୈଜ୍ଞାନିକ ସାର୍ ଚନ୍ଦ୍ରଶେଖର ଭେଙ୍କଟରମନ୍ କଟକ ଆସିଥିଲେ । ଏହିପରି ତାଙ୍କ ସାଙ୍ଗେ ମଧ୍ୟ ପରିଚୟ ଲାଭର ସୁଯୋଗ ପାଇଥିଲି । ନୋବେଲ ଲରିଏଟ୍ ବୈଜ୍ଞାନିକଙ୍କ ସଙ୍ଗେ ମୁହାଁମୁହିଁ କଥା ହେବା କ'ଣ କମ୍ ସୌଭାଗ୍ୟର କଥା । ଦରଦୀ ମଣିଷ ଥିଲେ ପ୍ରାଣକୃଷ୍ଣ ପରିଜା, ସମସ୍ତଙ୍କ ମଙ୍ଗଳ ପାଇଁ ଚିନ୍ତା କରିବା ଥିଲା ତାଙ୍କର ଏକ ମହନୀୟ ଗୁଣ । ଛାତ୍ରୀମାନଙ୍କର ଉନ୍ନତି ପାଇଁ ସେ ବିଶେଷ ଭାବରେ ଯତ୍ନଶୀଳ ଥିଲେ । ତାଙ୍କର ତୀକ୍ଷ୍ଣ ଦୃଷ୍ଟି ଥିଲା ଯେପରି ଆମ୍ଭେମାନେ ମହାନ୍ ବ୍ୟକ୍ତିମାନଙ୍କର ସମ୍ମୁଖୀନ ହେଉ ଏବଂ ସେମାନଙ୍କ ସଂସ୍ପର୍ଶରେ ଆସି ନିଜ ନିଜ ବ୍ୟକ୍ତିତ୍ୱର ବିକାଶ ପାଇଁ ପ୍ରେରଣା ପାଉ ।

ରେଭେନ୍ସା କଲେଜର ପଡ଼ିଆ ତରଫରୁ କ୍ୱାଡ୍ରାଙ୍ଗଲକୁ ଯିବାକୁ ହେଲେ ଯେଉଁ ବାଟରେ ରସାୟନ ବିଜ୍ଞାନ ବିଭାଗ, କନିକା ଲାଇବ୍ରେରି ହୋଇ ସନ୍ଦାୟାଲ୍ ବାଟଦେଇ ସାମନାରେ ଆର୍ଟସ୍ ବିଭାଗକୁ ଯୋଗ କରିଛି ତା' ଉପରଦେଇ ଯିବାକୁ ହୁଏ । ସେ ରାସ୍ତା ସେତେବେଳେ ବନ୍ଧେଇ ହୋଇ ନ ଥିଲା । ବର୍ଷାଦିନରେ ତାହା କାଦୁଅ ହୋଇ ଯିବା ଆସିବାବେଳେ ବହୁତ ବାଧା ସୃଷ୍ଟି ହେଉଥିଲା । ଦିନେ ପରିଜାସାହେବ କହିଲେ ଏ ରାସ୍ତା ସିମେଣ୍ଟ ସ୍ଲାବ୍ ଦେଇ ବନ୍ଧେଇବାକୁ ପଡ଼ିବ । ଯେମିତି କଥା ସେମିତି କାମ । କର୍ଦ୍ଦମାକ୍ତ ପଥ ବନ୍ଧେଇ ହେଲା ଓ କାଦୁଅ କଷ୍ଟରୁ ଆମେ ମୁକ୍ତି ପାଇଲୁ । ତା'ପରେ ସ୍ଲାବ୍‌ର ଯୋଡ଼େଇ ଫାଙ୍କରେ ଦୁବଘାସ ଲଗାହେଲା । ପରିଜାସାହେବ ଆମକୁ କହିଲେ, ଏପରି କଲେ ସ୍ଲାବ୍‌ଗୁଡ଼ିକ ଶକ୍ତ ଓ ମଜଭୁତ ହୋଇ ରହିବ ଏବଂ ଦେଖିବାପାଇଁ ମଧ୍ୟ ସୁନ୍ଦର ଲାଗିବ ।

କଲେଜର ଅଧ୍ୟକ୍ଷରୂପେ ପରିଜାସାହେବଙ୍କର କେତେଆଡ଼କୁ ଯେ ନଜର ଥିଲା ସେତେବେଳେ ମୁଁ ବୁଝି ନ ଥିଲି କିନ୍ତୁ ଏବେ ବୁଝିପାରୁଛି । ବହୁ ବର୍ଷ ପରେ ଯେତେବେଳେ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ ଦେଖିବାର ସୁଯୋଗ ମୋତେ ମିଳିଲା, ସେତେବେଳେ ଟ୍ରିନିଟି କଲେଜରେ ପହଞ୍ଚି ଦେଖିଲି, ପୂରା ଆମ ରେଭେନ୍ସା କଲେଜ କ୍ୱାଡ୍ରାଙ୍ଗଲ୍ ଏପରକି ସନ୍‌ଡାୟାଲ୍ ସହିତ । ଇଂରେଜ ପ୍ରଶାସକମାନେ ସେହି ନକ୍ସାରେ ଏଠି ରେଭେନ୍ସା କଲେଜ ଗଢ଼ିଥିଲେ । ଆଉ ପରିଜାସାହେବ ତ କେମ୍ବ୍ରିଜ୍‌ର ଛାତ୍ର ଥିଲେ । କିନ୍ତୁ ଆମର କ୍ୱାଡ୍ରାଙ୍ଗଲ୍ ଥିଲା ବିଭିନ୍ନ ରଙ୍ଗିନ୍ ଫୁଲରେ ସୁଶୋଭିତ । ଅଧ୍ୟକ୍ଷ ବି ଥିଲେ ଉଦ୍ଭିଦବିତ୍ । କେତେ ବିଚିତ୍ର ଗଛ ପତ୍ର ସେ ଭାରତର ବିଭିନ୍ନ ସ୍ଥାନରୁ ସଂଗ୍ରହ କରି ଆଣି ଉଦ୍ଭିଦ ବିଜ୍ଞାନ ବିଭାଗ ବଗିଚାରେ ଲଗାଇଥିଲେ । କେତେ ଗଛ ନଷ୍ଟ ହୋଇଗଲାଣି, ଯାହା କିଛି ଏବେ ବି ରହିଛି ତାହା ତାଙ୍କ ଉଦ୍ୟମ, ଦୂରଦର୍ଶିତା ଓ ସୁପରିଚାଳନାର ସାକ୍ଷୀ ଦେଉଛି ।

ମୋର ଛାତ୍ରୀଜୀବନରେ ଆଉ ଗୋଟିଏ ବିଶେଷ ଘଟଣା ଏଠି ଉଲ୍ଲେଖଯୋଗ୍ୟ । ୧୯୪୨ ମସିହାର ଅଗଷ୍ଟ ଆନ୍ଦୋଳନ । ଦେଶର ସବୁଆଡ଼େ ଆନ୍ଦୋଳନ ଆରମ୍ଭ ହୋଇଯାଇଥାଏ । ଖବରକାଗଜରେ ଉତ୍ତେଜନାପୂର୍ଣ୍ଣ ଖବର ସବୁ ପ୍ରକାଶ ପାଉଥାଏ । ଭାବୁଥିଲି ଏଠାରେ କାହିଁକି କିଛି ହେଲା ନାହିଁ । ଏହି ସମୟରେ ଆମେ ଦିନେ ମହିଳା କମନ୍ ରୁମ୍‌ରେ ବସିଛୁ, ହଠାତ୍ ଶୁଣିଲୁ ଚାରିଆଡ଼େ ହୋ ହୋ ପାଟିତୁଣ୍ଡ, ଅଫିସ୍ ଆଡୁ ଦୁମ୍ ଦାମ୍ ଆଲମାରି ପଡ଼ିବା ଶବ୍ଦ ଆସୁଛି । ଛାତ୍ରମାନେ ସେଆଡ଼େ ଆନ୍ଦୋଳନ ଆରମ୍ଭ କରିଦେଲେଣି । କିଛି ସମୟ ମଧ୍ୟରେ ଛାତ୍ରମାନେ ଆମ ମହିଳା କମନ୍ ରୁମ୍ ସାମନାରେ ଆସି ପହଞ୍ଚିଗଲେ ଛାତ୍ରୀମାନଙ୍କୁ ଅନୁରୋଧ କରିବାପାଇଁ ସେମାନେ ଯେମିତି ଆନ୍ଦୋଳନରେ ଯୋଗ ଦିଅନ୍ତି । ମୋର ସହପାଠୀ ବିଶ୍ୱେଶ୍ୱର ଦାଶ (ଅବସରପ୍ରାପ୍ତ ଜଙ୍ଗଲ ବିଭାଗ ଆଇ.ଏଫ୍.ଏସ୍) ଆସି ପହଞ୍ଚିଲେ । ତାଙ୍କର ଉତ୍ତେଜିତ ଚେହେରା ଓ ଆହ୍ୱାନ ଆମେ ଛାତ୍ରୀମାନେ ଉପେକ୍ଷା କରିପାରିଲୁ ନାହିଁ । ସମସ୍ତେ ମିଶି ଦଳବାନ୍ଧି ବାହାରିପଡ଼ିଲୁ ।

ଲମ୍ବା ଶୋଭାଯାତ୍ରା ବାହାରିଲା, ଛାତ୍ରୀମାନେ ସାମନା ଧାଡ଼ିରେ ଜାତୀୟ ପତାକା ଧରି ଚାଲିଛନ୍ତି, ଗନ୍ତବ୍ୟ ସ୍ଥଳ କଟକ ମେଡ଼ିକାଲ୍ ସ୍କୁଲ । ସେଠାର ଛାତ୍ରମାନଙ୍କୁ ସଙ୍ଗରେ ନେବାକୁ ପଡ଼ିବ । ମେଡ଼ିକାଲ୍ ସ୍କୁଲ ହତା ଭିତରେ ପଶିବାମାତ୍ରେ ଦେଖିଲୁ ଯେ ସେଠାରେ ବସ୍ ଭର୍ତ୍ତି ଗୋରା ମିଲିଟାରୀ ପୋଲିସ୍ ଭର୍ତ୍ତି ହୋଇଯାଇଛନ୍ତି । ଛାତ୍ରୀମାନଙ୍କୁ ହଟାଇ ଦେଇ ଛାତ୍ରମାନଙ୍କ ଉପରେ ଲାଠି ଚାର୍ଜ ଆରମ୍ଭ ହୋଇଗଲା । ମାଡ଼ ଖାଇ କେତେକ ଛାତ୍ର ତଳେ ପଡ଼ିଗଲେ । ଆମେ ଛାତ୍ରୀମାନେ ବୋକାଙ୍କ ପରି ଗୋଟିଏ ପାଖରେ ଠିଆ ହୋଇ ରହିଲୁ । ଶୋଭାଯାତ୍ରା ଛତ୍ରଭଙ୍ଗ ହୋଇଗଲା । ଅନେକ ଛାତ୍ର ଗିରଫ ହେଲେ ।

ଆମର ସେତେବେଳକୁ ଘରକୁ ଫେରିବା ପାଳି । ଯେତେବେଳେ ଜ୍ଞାନ ଫେରିପାଇଲୁ ଦେଖିଲୁ ଉତ୍କଳର ବଳଭଦ୍ର ପ୍ରସାଦ ପ୍ରମୁଖ ପ୍ରବୀଣ ଅଧ୍ୟାପକବୃନ୍ଦ ଆମ ପାଖରେ ରହିଛନ୍ତି । ଅଧ୍ୟକ୍ଷ ପରିଜାସାହେବ ସେମାନଙ୍କୁ ପଠାଇଛନ୍ତି ଆମକୁ ସାବଧାନରେ ଘରକୁ ଫେରାଇ ନେଇଯିବାକୁ । ସାଇକେଲ୍ ନେଇ ଚାଲି ଚାଲି ସେମାନେ ମଧ୍ୟ ଆମ ସାଙ୍ଗରେ ଚାଲିଛନ୍ତି । ନିରାପଦରେ ଯେ ଯାହାର ଘରେ ପହଞ୍ଚିଲୁ । କଲେଜର ବିଚକ୍ଷଣ ଅଧ୍ୟକ୍ଷ ତାଙ୍କର କର୍ତ୍ତବ୍ୟ ପାଳନରେ ତ୍ରୁଟି ରଖିଲେ ନାହିଁ । ସେଦିନ ଆମ ଝିଅମାନଙ୍କର ଆତ୍ମପ୍ରସାଦ ଯେ ଆମ୍ଭେମାନେ ମଧ୍ୟ ଦେଶର ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇପାରିଲୁ । ଖବର ରାଷ୍ଟ୍ର ହୋଇଗଲା ଯେ ଝିଅମାନେ ଶୋଭାଯାତ୍ରାରେ ଅଗ୍ରଣୀ ହୋଇଥିଲେ । ଏହି ଘଟଣାଟି ବିଶେଷଭାବରେ ଉଲ୍ଲେଖଯୋଗ୍ୟ ଏହି କାରଣରୁ ଯେ ଏହା ହେଉଛି ଅଧ୍ୟକ୍ଷ ପରିଜାସାହେବଙ୍କର ଚରିତ୍ରର ଉଦାରତା ଓ ପ୍ରଶାସନିକ ବିଚକ୍ଷଣତାର ଉଜ୍ଜ୍ୱଳ ଦୃଷ୍ଟାନ୍ତ । ଝିଅମାନେ ଶୋଭାଯାତ୍ରାର ଅଗ୍ରଭାଗରେ ଥିଲେ, ତାଙ୍କ ନିଜର ଝିଅ କୁନି ମଧ୍ୟ ଥିଲା, କିନ୍ତୁ ସେ ଝିଅମାନଙ୍କୁ ଫେରିଯିବାକୁ ବାଧ୍ୟ କରି ନାହାନ୍ତି ବରଂ ସେମାନଙ୍କ ରକ୍ଷଣାବେକ୍ଷଣ ପାଇଁ ପ୍ରବୀଣ ଅଧ୍ୟାପକମାନଙ୍କୁ ଶୋଭାଯାତ୍ରା ସଙ୍ଗରେ ପଠାଇଥିଲେ ।

ବି.ଏସ୍‌ସି. ପାସ୍ କଲା ପରେ ରେଭେନ୍ସା କଲେଜ ସଙ୍ଗେ ମୋର ଯୋଗସୂତ୍ର କିଛିଦିନ ପାଇଁ ଛିନ୍ନ ହୋଇଯାଇଥିଲା । ମନେ ମନେ ଏମ୍.ଏସ୍‌ସି. ପଢ଼ିବାର ଇଚ୍ଛା ଥିଲେ ମଧ୍ୟ ପଢ଼ା ହେଲାନି, କାରଣ ଓଡ଼ିଶାରେ ସେତେବେଳେ ଉଦ୍ଭିଦବିଜ୍ଞାନରେ ଏମ୍.ଏସ୍‌ସି. କ୍ଲାସ୍ ଖୋଲା ହୋଇ ନ ଥିଲା । ପରିଜାସାହେବ ସେତେବେଳେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ପ୍ରୋ-ଭାଇସ୍‌ଚାନ୍‌ସେଲର୍ ଥିଲେ । ଅଳି କଲି ସେଠି ଯାଇ ଏମ୍.ଏସ୍‌ସି. ପଢ଼ିବି । ପରିଜାସାହେବ କର୍ତ୍ତୃପକ୍ଷଙ୍କ ସଙ୍ଗେ ଲେଖାଲେଖି କଲେ ମୋତେ ସୁପାରିଶ୍ କରି, କିନ୍ତୁ ବିଧିର ନିର୍ଦ୍ଦେଶ ଭିନ୍ନ ଥିବାରୁ ସେଠାରେ ମୋର ପଢ଼ିବା ହେଲାନି ।

ଆଉ ଥରେ ମୁଣ୍ଡରେ ଢୁକିଲା ପାଟନାରେ ଯାଇ ଏମ୍.ଏସ୍‌ସି. ପଢ଼ିବି ରସାୟନ ବିଜ୍ଞାନରେ କିମ୍ବା ନୃତତ୍ତ୍ୱ ବିଜ୍ଞାନରେ, କାରଣ ସେଠାରେ ମଧ୍ୟ ସେତେବେଳେ ଉଦ୍ଭିଦବିଜ୍ଞାନରେ ସ୍ନାତକୋତ୍ତର ଶ୍ରେଣୀ ଖୋଲା ହୋଇ ନ ଥାଏ । ଏହି ସମୟରେ ପରିଜାସାହେବ ଥିଲେ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରୋ-ଚାନ୍‌ସେଲର୍ । ପୁଣି ଥରେ ତାଙ୍କୁ ଅନୁନୟ କଲି ପାଟନାକୁ ଚିଠିଲେଖିବା ପାଇଁ । ସେ ମୋତେ ସୁପାରିସ କରି ପାଟନା ସାଇନ୍ସ କଲେଜର ଅଧ୍ୟକ୍ଷଙ୍କ ନିକଟକୁ ଚିଠି ଦେଲେ । ସେ ଚିଠି ବର୍ତ୍ତମାନ ସୁଦ୍ଧା ମୋ ପାଖରେ ସାଇତା ହୋଇ ରହିଛି । ନାନା କାରଣ ଯୋଗୁଁ ସେଠାରେ ମୋର ପଢ଼ିବା ହେଲାନି ।

ଏମ୍.ଏସ୍‌ସି. ପଢ଼ା ଯେତେବେଳେ ହେଲାନି ସେତେବେଳେ ମୁଣ୍ଡରେ ଓଡ଼ିଆ ଭାଷାରେ ମାଧ୍ୟମିକ ଓ ଉଚ୍ଚ ମାଧ୍ୟମିକ ସ୍ତରରେ ବିଜ୍ଞାନ ବହି ଲେଖିବାର ଆକାଂକ୍ଷା ଜାଗ୍ରତ ହେଲା । ବହି ଲେଖା ଶେଷ ହେଲା । ଆଉ ଥରେ ପରିଜାସାହେବଙ୍କ ନିକଟକୁ ଯାଇ ଏହି ବହିଟିର ମୁଖବନ୍ଧ ଲେଖିଦେବାକୁ ଅନୁରୋଧ କଲି । ବହିର ପାଣ୍ଡୁଲିପି ଆଣି ତାଙ୍କୁ ଦେଲି ପଢ଼ି ଦେଖିବାପାଇଁ । ସେ ତା'ପରେ ବହିର ମୁଖବନ୍ଧ ଲେଖିଦେଇ ମତେ କୃତାର୍ଥ କଲେ । ତାଙ୍କର ଆଶୀର୍ବାଦରୁ ଓ ଭଗବତ୍ କୃପାରୁ ବହିଟି ଛାତ୍ରଛାତ୍ରୀ ମହଲରେ ବେଶ୍ ଆଦୃତ ହୋଇଥିଲା ।

ଦିନ କଟିଯାଉଛି । କାଳର ଆବର୍ତ୍ତନ ଅନେକ ପରିବର୍ତ୍ତନ ଆଣିଛି ମୋ ଜୀବନରେ । କ୍ରମେ ସୁଯୋଗ ପାଇ ପାଟନା ବିଶ୍ୱବିଦ୍ୟାଳୟରୁ ଉଦ୍ଭିଦବିଜ୍ଞାନରେ ଏମ୍.ଏସ୍‌ସି. ଓ ପରେ ଯୁକ୍ତରାଷ୍ଟ୍ର ଆମେରିକାର ଇଲିନଏସ୍ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. କରିପାରିଛି । ଇତିମଧ୍ୟରେ ରେଭେନ୍ସା କଲେଜରେ ଉଦ୍ଭିଦବିଜ୍ଞାନର ଅଧ୍ୟାପିକା ହୋଇ ଯୋଗଦାନ କରିଛି । ବିଦେଶ ଯିବା ପୂର୍ବରୁ ପରିଜାସାହେବଙ୍କ ଆଶୀର୍ବାଦ ଶିରରେ ନେଇ ଯାଇଥିଲି । ନାନା ଉପଦେଶ ସହିତ ସେ ମୋତେ ବିଦେଶରେ ଯୋଗାଯୋଗ ପାଇଁ କେତେଜଣ ଖ୍ୟାତନାମା ଉଦ୍ଭିଦବିତ୍‌ମାନଙ୍କର ନାମ ଓ ଠିକଣା ମଧ୍ୟ ଦେଇଥିଲେ । ଏଇଭଳି ଭାବରେ ମୋର ଆଦର୍ଶ ଗୁରୁଦେବ ମୋତେ ସମୟ ଉପଯୋଗୀ ପଥ ନିର୍ଦ୍ଦେଶ ଓ ଉତ୍ସାହ ଦେଇ ମୋର କର୍ମଜୀବନ ସଫଳ ହେବା ଦିଗରେ ସବୁ ସମୟରେ ସହାୟତା କରିଥିଲେ ଏବଂ ଅକୁଣ୍ଠିତଭାବେ ଅନୁପ୍ରେରଣା ଦେଇଯାଇଛନ୍ତି । କେତେବେଳେ କୌଣସି ଅଳିରେ ମୋତେ ନିରୁତ୍ସାହିତ କରିନାହାନ୍ତି । ସାହାଯ୍ୟ କରିବା ପାଇଁ ସେ ସବୁବେଳେ ତତ୍ପର । ସୁଯୋଗ ପାଇଲା ମାତ୍ରେ ମୁଁ ତାଙ୍କ ଘରକୁ ଯାଏ, ନାନା ବିଷୟରେ ପରାମର୍ଶ ନେବାକୁ କେବଳ ନୁହେଁ, ତାଙ୍କର ଦର୍ଶନ ଲାଭ ଲୋଭରେ । ତା' ବ୍ୟତୀତ ତାଙ୍କ ସହଧର୍ମିଣୀ ମୋତେ ବିଶେଷ ସ୍ନେହ କରୁଥିଲେ । ଗଲାମାତ୍ରେ ଘରୋଇ ଆଲୋଚନା କରି ସୁଖୀ ହେଉଥିଲେ ।

ଗବେଷଣା କରିବା ପାଇଁ ଯେଉଁ ତୀବ୍ର ନିଶା ବିଦେଶରୁ ନେଇ ଫେରିଥିଲି ତାକୁ କାମରେ ଲଗାଇବାର ଚେଷ୍ଟା ଚାଲିଲା ଉଡ଼ାଜାହାଜଘାଟି ପାଖରୁ । ଓଡ଼ିଶା ସରକାରଙ୍କ ଅଧୀନରେ ଥିଲା ବୋର୍ଡ଼ ଅଫ୍ ସାଇଣ୍ଟିଫିକ୍ ଆଣ୍ଡ ଇଣ୍ଡଷ୍ଟ୍ରିଆଲ୍ ରିସର୍ଚ୍ଚ । ଗବେଷଣା କରିବାପାଇଁ ଅର୍ଥ ସାହାଯ୍ୟ ଚାହିଁଲି ସେଇ ସଂସ୍ଥାରୁ ମୋର ଗବେଷଣା ପ୍ରକଳ୍ପ ଦାଖଲ କରି । ଅନ୍ୟାନ୍ୟ ଯନ୍ତ୍ରପାତି ସହିତ ମୁଁ ଗୋଟିଏ ବି.ଓ.ଡି. ଇନ୍‌କ୍ୟୁବେଟର କିଣିବାପାଇଁ ଆବେଦନ କରିଥିଲି । ନିୟମ ଅନୁସାରେ ଆବେଦନପତ୍ରଗୁଡ଼ିକ ପ୍ରଥମେ ଗୋଟିଏ ଯାଞ୍ଚ କମିଟିରେ ଆଲୋଚିତ ହୋଇଥିଲା । ତା'ପରେ ସରକାରଙ୍କ ପାଖରେ ପେସ୍ କରା ହୋଇଥିଲା ଯାଞ୍ଚ କମିଟିର ଅନୁମୋଦନ

ଓ ଟୀକାଟିପ୍ପଣୀ ସହ । ଏହି କମିଟିର ସଭାପତି ଥିଲେ ପରିଜାସାହେବ । ମୋର ପ୍ରସ୍ତାବ ଆଲୋଚନା ସମୟରେ କେତେଜଣ ସଦସ୍ୟ ବି.ଓ.ଡି. ଇନ୍‌କ୍ୟୁବେଟର କିଣା ବିରୋଧରେ ମତ ଦେଲେ । ସ୍ଥିର ହେଲା ଯେ ଓଡ଼ିଶା ବାହାରୁ କୌଣସି ବିଶେଷଜ୍ଞଙ୍କ ମତାମତ ପରିଜାସାହେବ ଗ୍ରହଣ କରିବେ ।

ବିଷୟଟି ଏହିଠାରେ ସ୍ଥଗିତ ରହିଲା । ମୁଁ ମଧ୍ୟ ଅନ୍ୟାନ୍ୟ କାର୍ଯ୍ୟରେ ବ୍ୟସ୍ତ ରହି କିଛିଦିନ ପାଇଁ ଏ ବିଷୟଟି ଭୁଲିଗଲି । ଏ ମଧ୍ୟରେ ମୋର ପ୍ରଥମ ପିଏଚ୍.ଡି. ଛାତ୍ର ବ୍ରଜଗୋପାଳ ଦତ୍ତର ଗବେଷଣା କାର୍ଯ୍ୟ ଶେଷ ହୋଇ ତା'ର ମୌଖିକ (ଭାଇବା-ଭୋସି) ପରୀକ୍ଷାର ଦିନ ସ୍ଥିର ହେଲା । ପରିଜାସାହେବ ସେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଏବଂ ରେଭେନ୍ସା କଲେଜ ଛାଡ଼ି ମୁଁ ଡେପୁଟେସନ୍‌ରେ ଭୁବନେଶ୍ୱରରେ ରିଜିଓନାଲ୍ କଲେଜ୍ ଅଫ୍ ଏଡୁକେସନ୍‌ରେ ଉଦ୍ଭିଦବିଜ୍ଞାନର ରିଡ଼ର୍ ରୂପେ ଯୋଗଦେଇଛି ୧୯୬୪ ସାଲର ମଧ୍ୟଭାଗରେ ।

ପରୀକ୍ଷକ ରୂପେ ଆସିଛନ୍ତି ମାଡ୍ରାଜ ବିଶ୍ୱବିଦ୍ୟାଳୟର ଉଦ୍ଭିଦବିଜ୍ଞାନ ଉଚ୍ଚତର ଗବେଷଣା କେନ୍ଦ୍ରର ନିର୍ଦ୍ଦେଶକ ସ୍ୱନାମଧନ୍ୟ ପ୍ରଫେସର ଟି.ଏସ୍.ସଦାଶିବନ୍ ଓ ଆହ୍ଲାବାଦ ବିଶ୍ୱବିଦ୍ୟାଳୟର ପ୍ରଖ୍ୟାତ ପ୍ରଫେସର ରାମନାରାୟଣ ଟଣ୍ଡନ୍ । ଉଭୟେ ମହାରଥୀ ବିଶେଷକରି ପ୍ରଫେସର ସଦାଶିବନ୍ ଓ ପ୍ରଫେସର ପରିଜା ଉଭୟେ ଉଭୟଙ୍କର ବିଶେଷ ଗୁଣଗ୍ରାହୀ ଥିଲେ । ଯେହେତୁ ଏ ଦୁଇଜଣ ବିଶିଷ୍ଟ ଅଧ୍ୟାପକ ଭୁବନେଶ୍ୱର ଆସୁଥାନ୍ତି ସେଥିପାଇଁ ପରିଜାସାହେବ ଏଇ ପରୀକ୍ଷାବେଳେ ଉପସ୍ଥିତ ଥିଲେ । ସେ ମୋତେ ନିର୍ଦ୍ଦେଶ ଦେଲେ ଏମାନଙ୍କ ଚର୍ଚ୍ଚାର ଯେପରି କୌଣସି ତ୍ରୁଟି ନ ହୁଏ ଏବଂ ତାଙ୍କ ତରଫରୁ ଭୁବନେଶ୍ୱରରେ ଓଡ଼ିଶା ସରକାରଙ୍କ ଅତିଥିଶାଳାରେ ମଧ୍ୟାହ୍ନ ଭୋଜନର ଆୟୋଜନ କରିବାପାଇଁ । ତାଙ୍କର ଇଚ୍ଛା ଅନୁସାରେ ସବୁ ଠିକ୍ ହେଲା । ଭାଇଭା-ଭୋସି ପରୀକ୍ଷା ମଧ୍ୟ ନିର୍ଦ୍ଧାରିତ ସମୟରେ ସୁରୁଖୁରୁରେ ହୋଇଗଲା । ମୋର ପ୍ରଥମ ପିଏଚ୍.ଡି. ଛାତ୍ରର ଭାଇବା-ଭୋସି ପରୀକ୍ଷାରେ ମୋର ପିତୃତୁଲ୍ୟ ଗୁରୁଦେବ ଯେ ନିଜେ ଉପସ୍ଥିତ ରହିଲେ ଏହା ମୋର ଧାରଣାତୀତ ସୌଭାଗ୍ୟ ।

ପରୀକ୍ଷା ଶେଷ ହେବା ପରେ ଗୋଟିଏ ଆଶ୍ଚର୍ଯ୍ୟ ଘଟଣାରେ ମୁଁ ଅଭିଭୂତ ହୋଇଗଲି । ସେଇ ବୋର୍ଡ଼ ଅଫ୍ ସାଇଣ୍ଟିଫିକ୍ ଆଣ୍ଡ୍ ଇଣ୍ଡଷ୍ଟ୍ରିଆଲ୍ ରିସର୍ଚ୍ଚ ସଭାର ଝୁଲି ରହିଥିବା ପ୍ରଶ୍ନ, ମୋର ଗବେଷଣା କାର୍ଯ୍ୟ ପାଇଁ ବି.ଓ.ଡି. ଇନ୍‌କ୍ୟୁବେଟରର ପ୍ରୟୋଜନ ଅଛି କି ନାହିଁ ସେ ବିଷୟରେ ଓଡ଼ିଶା ରାଜ୍ୟ ବାହାରର କୌଣସି ବିଶେଷଜ୍ଞଙ୍କ ମତ ଗ୍ରହଣ କରାଯିବ । ଦୁଇଜଣ ରାଜ୍ୟ ବାହାରର ଖ୍ୟାତନାମା ବିଶେଷଜ୍ଞଙ୍କୁ ପାଖରେ ପାଇ ପରିଜାସାହେବ ସେଇ ପୁରୁଣା ପ୍ରଶ୍ନଟି ଉତ୍ଥାପନ କଲେ । ଦୁଇଜଣଯାକ ବିଶେଷଜ୍ଞ ମତଦେଲେ ଯେ ଏହି ଯନ୍ତ୍ରଟି ଗବେଷଣା ପାଇଁ ନିତାନ୍ତ

ପ୍ରୟୋଜନ । ପରିଜାସାହେବଙ୍କର ଏହି ଅଦ୍ଭୁତ ବିଚକ୍ଷଣତାରେ ମୁଁ ଆଶ୍ଚର୍ଯ୍ୟ ହୋଇ ମନେ ମନେ ତାଙ୍କୁ ବାରମ୍ବାର କୃତଜ୍ଞତା ଜଣାଇଲି । ଉପଯୁକ୍ତ ସମୟରେ କିଭଳି କାର୍ଯ୍ୟ ଆଦାୟ କରିବାକୁ ହୁଏ ଏହା ହେଲା ତା'ର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ଏବଂ ତାଙ୍କର ସ୍ମରଣ ଶକ୍ତିର ପ୍ରଖରତା ମଧ୍ୟ ଅଦ୍ଭୁତ । ଏହା ପରେ ବି.ଓ.ଡି. ଇନ୍‌କ୍ୟୁବେଟର୍ କିଣିବାପାଇଁ ମୋତେ ଆର୍ଥିକ ସାହାଯ୍ୟ ପ୍ରଦାନ କରାଗଲା ।

ପୁଣି ମୁଁ ଫେରିଆସିଲି ରେଭେନ୍ସା କଲେଜକୁ ୧୯୭୨ ମସିହାରେ ଉଦ୍ଭିଦବିଜ୍ଞାନର ମୁଖ୍ୟ ଅଧ୍ୟାପକ ହୋଇ । ଯେଉଁ ରୁମ୍ ପରିଜାସାହେବଙ୍କର ଥିଲା, ଯେଉଁ ଟେବୁଲ୍ ସେ ବ୍ୟବହାର କରୁଥିଲେ, ଯେଉଁ ଚୌକିରେ ସେ ବସୁଥିଲେ ସବୁ ସେମିତି ରହିଛି । ସାମନା କାନ୍ଥରେ ତାଙ୍କର ରଙ୍ଗିନ୍ ତୈଳଚିତ୍ର । ଏସବୁ ମୁଁ ବର୍ତ୍ତମାନ ବ୍ୟବହାର କରିବି, ଭାବିଲେ ଶିହରଣ ଜାତ ହେଲା, କାରଣ ତାଙ୍କୁ ମୁଁ ପିତୃତୁଲ୍ୟ ଭକ୍ତି କରେ । ପ୍ରଫେସର ଚୌକିରେ ବସିବା ପୂର୍ବରୁ ପ୍ରଥମେ ଜଗନ୍ନାଥଙ୍କୁ ଓ ତା'ପରେ ସେହି ମନୀଷୀଙ୍କୁ ମନେ ମନେ ପ୍ରଣାମ କଲି, ସେହି ଚୌକିରେ ବସିବା ଯୋଗ୍ୟତା ମୋର ଯେମିତି ହୁଏ ।

କିଛି ଦିନ ପରେ ଉଦ୍ଭିଦ ବିଜ୍ଞାନ ବିଭାଗର ସ୍ନାତକୋତ୍ତର ଶ୍ରେଣୀର ସେମିନାର୍‌କୁ ପୁନର୍ଜୀବିତ କରିବାପାଇଁ ସ୍ଥିର ହେଲା । ଆଉ ତାକୁ ଉଦ୍ଘାଟନ କରିବାପାଇଁ ପରିଜାସାହେବଙ୍କୁ ଅନୁରୋଧ କରିବାପାଇଁ ସ୍ଥିର ହେଲା । ମୁଁ ମୋର ଜଣେ ବିଭାଗୀୟ ସହକର୍ମିଣୀଙ୍କୁ ସଙ୍ଗରେ ନେଇ ଦିନେ ତାଙ୍କ ବାସଭବନକୁ ଗଲି ତାଙ୍କୁ ନିମନ୍ତ୍ରଣ କରିବାପାଇଁ । କିନ୍ତୁ ତାଙ୍କୁ କୌଣସି ପ୍ରକାରେ ରାଜି କରାଇପାରିଲି ନାହିଁ, ନିରାଶ ହୋଇ ଫେରିଆସିଲି କିନ୍ତୁ ଆଶା ଛାଡ଼ିଲି ନାହିଁ । କିଛିଦିନ ପରେ ମୋର ସ୍ୱାମୀ ଡକ୍ଟର ସୁନୀଲକାନ୍ତି ଘୋଷଙ୍କ ସାଙ୍ଗରେ ଗଲି । ବହୁତ ଅନୁନୟ ବିନୟ କରିବା ପରେ ସେ ଏଥର ରାଜି ହେଲେ । ଆମେ ସମସ୍ତେ ଭାରି ଖୁସୀ ହେଲୁ । ନିର୍ଦ୍ଦିଷ୍ଟ ଦିନରେ ସେ ରେଭେନ୍ସା କଲେଜରେ ପଦାର୍ପଣ କଲେ । କଲେଜର ଅଧ୍ୟକ୍ଷ ଡକ୍ଟର ମହେନ୍ଦ୍ର କୁମାର ରାଉତ ଉପସ୍ଥିତ ଥିଲେ । ବହୁ ବିଶିଷ୍ଟ ଜ୍ଞାନୀ, ଗୁଣୀ, ବିଜ୍ଞାନୀ ଓ ଛାତ୍ରଛାତ୍ରୀମାନଙ୍କର ସମାବେଶରେ ସେମିନାରର ନୂତନପ୍ରସ୍ଥ ଉଦ୍‌ଘାଟନ ଉତ୍ସବ ସୁରୁଖୁରୁରେ ସମ୍ପନ୍ନ ହେଲା । ନୂତନ ନାମକରଣ ହେଲା **"ପରିଜା ସେମିନାର ଅଫ୍ ବଟାନି"** । ଯେଉଁ ଉଦ୍ଭିଦବିଜ୍ଞାନ ବିଭାଗର ସେ ପ୍ରଭୂତ ଉନ୍ନତି ସାଧନ କରିଛନ୍ତି, ଯାହାଙ୍କ ଅନ୍ତର୍ଜାତୀୟ ଖ୍ୟାତିର ଆକର୍ଷଣରେ ଓଡ଼ିଶା ବାହାରୁ ବହୁ ବିଶିଷ୍ଟ ଛାତ୍ର ଆସି ଏଠାରେ ଗବେଷଣା କରିଛନ୍ତି ସେଇ ବିଭାଗର ସ୍ନାତକୋତ୍ତର ସେମିନାର ତାଙ୍କ ନାମରେ ନାମିତ ହେବାରୁ ଆମେ ସମସ୍ତେ ଗୌରବାନ୍ୱିତ ହେଲୁ । ପରବର୍ତ୍ତୀ କାଳରେ ଏହି ସ୍ନାତକୋତ୍ତର ବିଭାଗର ନାମକରଣ ହେଲା **"ପରିଜା ପୋଷ୍ଟ ଗ୍ରାଜୁଏଟ୍ ଡିପାର୍ଟମେଣ୍ଟ ଅଫ୍ ବଟାନି"** ।

କିଛିଦିନ କଟିଗଲା ରେଭେନ୍ସା କଲେଜରେ । ମୁଁ ପୁଣି ୧୯୭୪ ମସିହାରେ ଭୁବନେଶ୍ୱର ରିଜିଓନାଲ୍ କଲେଜ୍ ଅଫ୍ ଏଡୁକେସନ୍‌କୁ ଫେରିଗଲି । କଟକକୁ ଗଲେ ମୁଁ ପ୍ରାୟ ପରିଚ୍ଛାସାହେବଙ୍କ ଘରକୁ ଯାଏ ତାଙ୍କୁ ଦେଖିବାର ସୌଭାଗ୍ୟ ଲାଭ କରିବାପାଇଁ । କ୍ରମଶଃ ତାଙ୍କର ଶାରୀରିକ ବଳ କମିବାର ଲକ୍ଷ୍ୟ କରିଛି । ମନ ଖରାପ ହୋଇଯାଏ । ଦିନେ କଥା ଛଳରେ କହିଲେ, "ରଥ ଯେତେବେଳେ ଯାଏ ଚାଲୁଛି ଚାଲୁ । ତା'ପରେ ଯେଉଁଦିନ ବନ୍ଦ ହୋଇଯିବ ହେବ ।" ସେ ଆଉ ବାହାରକୁ ବେଶୀ ଯିବା ଆସିବା କରୁ ନ ଥିଲେ ।

ଏହା ପରେ କେତେବର୍ଷ ବିତିଯାଇଛି । ମଝିରେ ମଝିରେ କଟକ ଯାଏ । ଦିନେ କଟକରେ ପହଞ୍ଚି ଶୁଣିଲି ମୋର ଗୁରୁଦେବ ଆଉ ଇହଜଗତରେ ନାହାନ୍ତି, ସେହିଦିନ ଇହଲୀଳା ସମ୍ବରଣ କରିଛନ୍ତି ଏବଂ ତାଙ୍କ ମରଶରୀର ରେଭେନ୍ସା କଲେଜକୁ ସନ୍ଧ୍ୟାବେଳେ ଅଣାଯିବ । ଶୁଣି ସ୍ତମ୍ଭୀଭୂତ ହୋଇଗଲି । ଶେଷଦେଖା ଦେଖିବାପାଇଁ ଫୁଲହାର ନେଇ ରେଭେନ୍ସା କଲେଜକୁ ଦୌଡ଼ିଲି । ବହୁସଂଖ୍ୟକ ଲୋକ ସେହି ମହାମାନବଙ୍କୁ ଶେଷ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବାପାଇଁ ଆସିଛନ୍ତି । ଫୁଲରେ ଫୁଲରେ ତାଙ୍କ ଶରୀର ଢାଙ୍କିହୋଇପଡୁଛି । ମୁଁ ମଧ୍ୟ ଟ୍ରକ୍ ଉପରକୁ ଉଠିଲି, ମୋର ଶେଷ ଶ୍ରଦ୍ଧାଞ୍ଜଳି ନିବେଦନ କରିବାପାଇଁ । ମନେହେଲା କାହାର ବନ୍ଧନରେ ସେଦିନ ମୁଁ କଟକ ଆସିଥିଲି, ତାଙ୍କର ଶେଷଦର୍ଶନ କରିବାପାଇଁ । ନ ଦେଖିଥିଲେ ମୋର ଚିରଦିନ ଦୁଃଖ ରହିଯାଇଥାଆନ୍ତା । ତାଙ୍କ ପାଖରେ ମୁଁ ଯେ ଚିରଋଣୀ । ଅକାତରେ ତାଙ୍କର ସ୍ନେହ ମୋ ଉପରେ ଅଜାଡ଼ିଛନ୍ତି, ମୁଁ ଜୀବନରେ ପ୍ରତିଷ୍ଠିତ ହେବା ପଥରେ ସବୁବେଳେ ସାହାଯ୍ୟ କରିଛନ୍ତି । ତାଙ୍କର ସ୍ନେହଭରା ସହାସ୍ୟବଦନ ଆଖି ଆଗରେ ଏବେ ମଧ୍ୟ ଭାସିଉଠେ । ସାର୍ଥକ ନାମ 'ପ୍ରାଣକୃଷ୍ଣ', ଆଧୁନିକ ଓଡ଼ିଶାର ଶିକ୍ଷାଜଗତର ପ୍ରାଣ ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ସେ ଥିଲେ ତାହାର ପ୍ରାଣକେନ୍ଦ୍ର । ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ଥାପନ ଓ ଶିଶୁ ଅବସ୍ଥାରୁ ତାହାର ପରିଚାଳନା ଥିଲା ତାଙ୍କର ଓଡ଼ିଶାକୁ ଏକ ବିରାଟ ଅବଦାନ । ନିୟମାନୁବର୍ତ୍ତିତା, ସମୟର ମୂଲ୍ୟବୋଧ, କର୍ତ୍ତବ୍ୟନିଷ୍ଠା, ମଧୁର ବ୍ୟବହାର ଓ କଥାରେ ମାଧୁର୍ଯ୍ୟ ଏଗୁଡ଼ିକ ଥିଲା ତାଙ୍କର ବିଶେଷ ଗୁଣ, ଯେଉଁଥିପାଇଁ ସମସ୍ତେ ତାଙ୍କର ବିରାଟ ବ୍ୟକ୍ତିତ୍ୱକୁ ଗଭୀର ସମ୍ମାନ ଓ ଭକ୍ତି ଜଣାଉଥିଲେ ଏବଂ ଏବେ ମଧ୍ୟ ଜଣାନ୍ତି ।

ବହୁ ବର୍ଷ ପରେ ଇଂଲଣ୍ଡ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ ଦେଖିବାର ସୌଭାଗ୍ୟ ଲାଭ କଲି । ଆମ ମାନସପଟରେ କଲେଜରେ ନାମ ଲେଖିଲାବେଳଠୁଁ ହିଁ ପରିଚ୍ଛାସାହେବଙ୍କ ନାମ ସହ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟର ନାମ ଓତପ୍ରୋତଭାବେ ଜଡ଼ିତ ଥିଲା । ଆମେ ଜାଣିଥିଲୁ ପ୍ରଫେସର ପ୍ରାଣକୃଷ୍ଣ ପରିଚ୍ଛା ଏମ୍.ଏ. (କ୍ୟାଣ୍ଟାବ୍) ଥିଲେ ଏବଂ ଏହି

ବିଶ୍ୱବିଦ୍ୟାଳୟର କ୍ରାଏଷ୍ଟ କଲେଜରେ ସେ ତାଙ୍କର ବିଶ୍ୱବିଖ୍ୟାତ ଗବେଷଣା କରିଥିଲେ । ସେଉର ଶ୍ୱାସକ୍ରିୟା ସମ୍ବନ୍ଧରେ ଯାହା ବ୍ଲାକ୍‌ମ୍ୟାନ୍ ଓ ପରିଜା ତଥ୍ୟ ନାମରେ ଉଦ୍ଭିଦଜଗତରେ ବିଶ୍ୱବିଖ୍ୟାତ ସେଇ ଗବେଷଣାର ଫଳାଫଳ ୧୯୨୮ ମସିହାରେ Proceedings of the Royal Society (London) ନାମକ ପ୍ରସିଦ୍ଧ ପତ୍ରିକାରେ ଛପାହୋଇଛି । ଏହି ପତ୍ରିକାରେ ଗବେଷଣାର ସନ୍ଦର୍ଭ ଛପାଯିବା ଅତି ଗୌରବର କଥା, ଯେଉଁ ଗୌରବ କେବଳ ତାଙ୍କର ନୁହେଁ, ଆମ୍ଭମାନଙ୍କର ମଧ୍ୟ । ତତ୍କାଳୀନ ଓ ପରବର୍ତ୍ତୀ କାଳରେ ଉଦ୍ଭିଦଜଗତର ଶ୍ୱାସକ୍ରିୟା ଉପରେ ଯେତେ ଆଲୋଚନା ଓ ଗବେଷଣା ହୋଇଛି ସେଥିରେ ଏହି ସନ୍ଦର୍ଭଗୁଡ଼ିକ ଚର୍ଚ୍ଚା ହୋଇଛି । ପାଠ୍ୟପୁସ୍ତକରେ ମଧ୍ୟ ଏହାର ବର୍ଣ୍ଣନା ଅଛି, କାରଣ ଏହି ଆବିଷ୍କାର ଥିଲା ଉଦ୍ଭିଦ ଜଗତର ଶ୍ୱାସକ୍ରିୟାର ଏକ ମୂଳତତ୍ତ୍ୱ । ଏହି ସବୁ କାରଣରୁ କେମ୍ବ୍ରିଜ୍‌କୁ ଯାଇ ମନେ ହେଉଥିଲା ଏକସମୟରେ ଛାତ୍ରାବସ୍ଥାରେ ସେ ଏଠାରେ ଗବେଷଣାରତ ଥିଲେ, କେତେ ବୁଲାବୁଲି କରିଛନ୍ତି । କେବଳ ଓଡ଼ିଶା ନୁହେଁ ସେ ଦେଶବିଦେଶରେ ଉଦ୍ଭିଦବିତ୍ ହିସାବରେ ସମ୍ମାନିତ ଓ ବିଖ୍ୟାତ ଥିଲେ । ରେଭେନ୍ସା କଲେଜର ଉଦ୍ଭିଦ ବିଜ୍ଞାନର ଛାତ୍ରୀ ବୋଲି ଶୁଣିଲେ ଓଡ଼ିଶା ବାହାରେ ଆଦର ପାଇଛି "Oh, you have come from Parija's Laboratory", ଶୁଣି ଛାତି କୁଣ୍ଢେମୋଟ ହୋଇଯାଉଥିଲା ।

ଅବସର ଗ୍ରହଣ କରିବାର ବହୁ ବର୍ଷ ପରେ ମଧ୍ୟ ଡକ୍ଟର ପରିଜା ରେଭେନ୍ସା କଲେଜରେ ଗବେଷଣା ପରିଚାଳନା କରିଛନ୍ତି । ମୋର ଯେତେଦୂର ମନେପଡ଼େ ଶ୍ରୀ ବାଞ୍ଛାନିଧି ମିଶ୍ର (ଅଧୁନା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଉଦ୍ଭିଦବିଜ୍ଞାନ ପ୍ରଫେସର) ଥିଲେ ତାଙ୍କର ଶେଷ ପିଏଚ୍.ଡି. ଛାତ୍ର । ମୁଁ ସେତେବେଳେ ରେଭେନ୍ସା କଲେଜର ଅଧ୍ୟାପକ ଥିଲି । ଦେଖୁଥିଲି ଉଦ୍ଭିଦବିଜ୍ଞାନ ବିଭାଗର ପାଖ ରାସ୍ତାରେ ସେ ଗାଡ଼ି ଛିଡ଼ା କରାଇ ଶ୍ରୀ ମିଶ୍ରଙ୍କୁ ଡାକି ନେଉଥିଲେ ଏବଂ ଗାଡ଼ିରେ ବସି ବସି ଶ୍ରୀ ମିଶ୍ରଙ୍କ ଥିସିସ୍ ସଂଶୋଧନ କରୁଥିଲେ । ଏହିସବୁ ଦେଖି ଶିଖିବା ପରି କାର୍ଯ୍ୟକୁ ହିଁ ସେ ପ୍ରାଧାନ୍ୟ ଦେଉଥିଲେ, ଯେ କୌଣସି ଅବସ୍ଥାରେ କାମ କରାଯାଏ ।

ସେଇ ମହାନ୍ ବ୍ୟକ୍ତିଙ୍କର ସ୍ମରଣରେ ମୋର ଏହି ସ୍ମୃତିତର୍ପଣ ନିବେଦନ କଲି । ପାଠକପାଠିକାମାନେ ପଢ଼ି ଯଦି ଆନନ୍ଦ ପାଆନ୍ତି ଏବଂ ତାଙ୍କ ଚରିତ୍ରର ମହାନ୍ ଗୁଣାବଳୀ ଦ୍ୱାରା ଅନୁପ୍ରାଣିତ ହୁଅନ୍ତି ତାହାହେଲେ ବୁଝିବି ମୋର ନୈବେଦ୍ୟ ସାର୍ଥକ ହୋଇଛି ।

(ମୂଳ ବଙ୍ଗଳା ରଚନାରୁ ଶ୍ରୀମତୀ ନୀହାରକଣା ମିତ୍ରଙ୍କ ଦ୍ୱାରା ଓଡ଼ିଆରେ ଅନୂଦିତ ହୋଇଅଛି)

# ଶ୍ରୀଗୁରୁଦେବ ପରିଜାସାହେବ

**ଜଗନ୍ନାଥ ଦାସ**

ପଦ୍ମଭୂଷଣ ଡକ୍ଟର ପ୍ରାଣକୃଷ୍ଣ ପରିଜା ଆଇ. ଇ. ଏସ୍. ଜଣେ ପ୍ରତିଭାଶାଳୀ ବ୍ୟକ୍ତିତ୍ୱ । କେବଳ ଓଡ଼ିଶା ବା ଭାରତରେ ନୁହେଁ, ସେ ଜଣେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ବୈଜ୍ଞାନିକ ରୂପେ ପରିଚିତ । ଓଡ଼ିଶାବାସୀ ତାଙ୍କ ପାଇଁ ଗର୍ବିତ ଓ ସମ୍ମାନିତ । ସ୍କୁଲରେ ଛାତ୍ରାବସ୍ଥାରେ ତାଙ୍କର ସୁନାମ, ଆମ ଶିକ୍ଷକମାନଙ୍କଠାରୁ ଶୁଣିବାକୁ ପାଇଥିଲି । କଲିକତା ବିଶ୍ୱବିଦ୍ୟାଳୟରେ ମୁଁ ଓ ମୋର ଯେଉଁ ପୂର୍ବ ଏବଂ ପରବର୍ତ୍ତୀ ଛାତ୍ରମାନେ ଉଦ୍ଭିଦ ବିଜ୍ଞାନରେ ଏମ୍. ଏସ୍‌ସି. ପଢୁଥିଲେ, ସେମାନଙ୍କୁ ସେଠାକାର ଅଧ୍ୟାପକ ଓ ଛାତ୍ରମାନେ ପ୍ରଫେସର ପରିଜାଙ୍କ ଛାତ୍ର ବୋଲି ପରିଚୟ ଦେଇ ସମ୍ମାନିତ କରୁଥିଲେ ଓ ସେଥିରେ ଆମେ ବି ଟିକେ ଗର୍ବ ଅନୁଭବ କରୁଥିଲୁ ।

ତାଙ୍କୁ ଗୁରୁଦେବ ବୋଲି ସମ୍ବୋଧନ କରି, ସାହେବ ଆଖ୍ୟା ଦେବାଟା, ଗୁରୁଚାଣ୍ଡାଳ ଦୋଷ ବୋଲି କେହି ମନେ କରିପାରନ୍ତି, କିନ୍ତୁ ଏହାର କାରଣ ହେଲା ଛାତ୍ରଙ୍କ ପ୍ରତି ତାଙ୍କର ଆଦର୍ଶ ଓ ଆଚାର ବ୍ୟବହାର ଯଥାର୍ଥରେ ଗୁରୁକୁଳ ଆଶ୍ରମ ଆଦର୍ଶ, ଆଚାର ବ୍ୟବହାରରେ ଯେପରି ଆଧୁନିକତାର ସମନ୍ୱୟ ଘଟିଥିଲା ।

ସେ ଜଣେ ଉଦାର ପ୍ରକୃତିର ଲୋକ ଥିଲେ ଓ କୌଣସି ବିଷୟରେ କଠୋର ନୀତି ଅବଲମ୍ବନର ପକ୍ଷପାତୀ ନ ଥିଲେ । ବରଂ ଦେଶ, କାଳ, ପାତ୍ର ନେଇ ସମୟୋପଯୋଗୀ ନିଷ୍ପତ୍ତି ନେଉଥିଲେ । ଦୋଷ କଲେ କିମ୍ବା ନିୟମବିରୁଦ୍ଧ କାର୍ଯ୍ୟ କଲେ ସେ ଛାତ୍ରମାନଙ୍କୁ କଠୋର ଶାସ୍ତି ଦେବା ସପକ୍ଷରେ ନ ଥିଲେ । ଉପରକୁ ଯଦିଓ ବଡ଼ ଗମ୍ଭୀର ଜଣା ପଡ଼ନ୍ତି, ସେ ହୃଦୟବାନ୍ ଓ ଦୟାଳୁ ଲୋକ ଥିଲେ । ତାଙ୍କର ବଦାନ୍ୟତା ସର୍ବଜନବିଦିତ । ଗରିବ ଛାତ୍ରମାନଙ୍କୁ ମାସିକ (ବୃତ୍ତି ପରି) ବା ଏକକାଳୀନ ଅର୍ଥ ଦାନ କରୁଥିଲେ । ସେ ଗୋଟିଏ ଗରିବ ପରିବାରରେ ଜନ୍ମଗ୍ରହଣ କରିଥିବାରୁ ଗରିବ ଛାତ୍ରମାନଙ୍କର ଦୁଃଖ, କଷ୍ଟ, ଆଶା ଓ ଆକାଙ୍କ୍ଷା ବେଶ୍ ଶୀଘ୍ର ବୁଝି ପାରୁଥିଲେ ଓ ତାଙ୍କ ଆପତ୍ତି ଅଭିଯୋଗ ବିନା ଦ୍ୱିଧାରେ ଗ୍ରହଣ କରୁଥିଲେ ଓ ସବୁ ପ୍ରକାର ସାହାଯ୍ୟ ଦେବାରେ କୁଣ୍ଠା ପ୍ରକାଶ କରୁ ନ ଥିଲେ । ମୁଁ ଜଣେ ଭୁକ୍ତଭୋଗୀ ହିସାବରେ ଏହା ଜୋର ଦେଇ କହିପାରେ । ଛାତ୍ରାବାସର କୌଣସି ଛାତ୍ର ରୋଗାକ୍ରାନ୍ତ ବା ଆପଦ ବିପଦରେ ପଡ଼ିଲେ, ସେ ତାହାର ବ୍ୟକ୍ତିଗତ ଯତ୍ନ ନେଉଥିଲେ । ୧୯୩୪

ମସିହା ପ୍ରାରମ୍ଭରେ ପ୍ରଳୟଙ୍କର ବିହାର ଭୂମିକମ୍ପ ଯୋଗୁଁ ପାଟନା ବିଶ୍ୱବିଦ୍ୟାଳୟର ମାର୍ଚ୍ଚମାସରେ ହେବାକୁ ଥିବା ସବୁ ପରୀକ୍ଷା ସ୍ଥଗିତ ରଖିବାର ପ୍ରସ୍ତାବ ସିଣ୍ଡିକେଟ ମିଟିଂରେ ପଡ଼ି ଅନୁମୋଦନ ଲାଭ ପାଇଁ ଜଣା ପଡ଼ିଲା । ଯଦିଓ ଭୂମିକମ୍ପ କଟକ ଓ ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳରେ ଅନୁଭୂତ ହୋଇଥିଲା, କିଛି କ୍ଷୟ କ୍ଷତି ହୋଇ ନ ଥିଲା । ତେଣୁ ରେଭେନ୍ସା କଲେଜର ପରୀକ୍ଷା ସବୁ ଘୁଞ୍ଚିବ କି ନାହିଁ ସନ୍ଦେହ ଉପୁଜିଥିଲା । ପରିଜାସାହେବ ସେତେବେଳେ ସିଣ୍ଡିକେଟ୍ ମେମ୍ବର ଥିଲେ । ତେଣୁ ପରୀକ୍ଷାର୍ଥୀମାନେ ପରିଜାସାହେବ ପାଟନା ଯିବା ସମୟରେ ଅନୁରୋଧ କଲେକି ସବୁ କଲେଜର ପରୀକ୍ଷା ଏକାବେଳକେ ଘୁଞ୍ଚାଇ ଦେଲେ ସେମାନେ ବଡ଼ ଉପକୃତ ହେବେ, କାରଣ ଆଉ କିଛି ସମୟ ପ୍ରସ୍ତୁତି ପାଇଁ ମିଳିଯିବ । ତାହାହିଁ ହେଲା । ସବୁ ପରୀକ୍ଷା ଜୁନ୍ ମାସକୁ ଘୁଞ୍ଚିଗଲା । ଏପରି ସବୁ ଘଟଣାରୁ ଜଣାଯିବ ଯେ ଛାତ୍ରମାନଙ୍କ ପ୍ରତି ପରିଜାସାହେବଙ୍କର କେତେ ଆଦର, ଅନୁରାଗ ଓ ଶ୍ରଦ୍ଧା ଥିଲା । ମୋ ଭାଗ୍ୟ ଦୋଷରୁ ପରୀକ୍ଷା ଘୁଞ୍ଚିବା ମୋ ପ୍ରତି ଗୋଟିଏ ବିପଦ ହେଲା । ପରୀକ୍ଷା ହେବାର ୮/୧୦ ଦିନ ପୂର୍ବରୁ ମୋ ବାମପଟ ପେଟରେ ଭୟଙ୍କର ଯନ୍ତ୍ରଣା ଆରମ୍ଭ ହେଲା । ମୁଁ ଉଠିବସି କି ଶୋଇପାରିଲି ନାହିଁ । ପରିଜାସାହେବଙ୍କ ଦୟାରୁ ତତ୍କାଳୀନ ଓଡ଼ିଶା ମେଡ଼ିକାଲ ସ୍କୁଲ (ବର୍ତ୍ତମାନ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ)ର ଡେପୁଟି ସୁପରିଣ୍ଟେଣ୍ଡେଣ୍ଟ ମେଜର ଗୁପ୍ତାଙ୍କୁ ଡକାଇ ମୋର ସ୍ୱାସ୍ଥ୍ୟ ପରୀକ୍ଷା କରାଇଥିଲେ । ଜଣାପଡ଼ିଲା ଯେ ପେଟରେ ଗୋଟିଏ ବଥ ହୋଇଛି, ଯାହାର ମୁହଁ ବାହାରକୁ ନ ହୋଇ ଭିତରକୁ ହୋଇଛି । ତିନୋଟି ଅନର୍ସ ପେପରରେ ଲିଖିତ ପରୀକ୍ଷା ଦେବା ପରେ ଛାତ୍ରାବାସର ରୋଗୀମାନଙ୍କ ପାଇଁ ଉଦ୍ଦିଷ୍ଟ କୋଠରିରେ ସ୍ୱତନ୍ତ୍ର ବ୍ୟବସ୍ଥା କରାଯାଇ ମେଜର ଗୁପ୍ତା ମୋର ପେଟ ଅପରେସନ କଲେ । ତା ପରଦିନ ମୋର ଗୋଟିଏ ଅନର୍ସ ପେପର ଥାଏ । ପାଟନା ବିଶ୍ୱବିଦ୍ୟାଳୟର ଅନୁମତି ଆଣି ସ୍ୱତନ୍ତ୍ର ଗାର୍ଡ ବ୍ୟବସ୍ଥା କରି ସେଇ ସିକ୍-ରୁମ୍‌ରେ ମୁଁ ୪ର୍ଥ ଲିଖିତ ପରୀକ୍ଷା (ଅନର୍ସ) ଦେଇ, ମେଡ଼ିକାଲ ସ୍କୁଲ ହସ୍ପିଟାଲର ସାଧାରଣ ୱାର୍ଡରେ ପ୍ରାୟ ମାସେଖଣ୍ଡେ ଚିକିତ୍ସା ପାଇଁ ରହିଲି । ତା'ପରେ ହଷ୍ଟେଲକୁ ଫେରି ବାକି ପ୍ରାକ୍ଟିକାଲ ପରୀକ୍ଷା ଦେଇ ଘରକୁ ଗଲି । ଛାତ୍ରାବାସ ଅଫିସ ଅଧିକାଂଶ ଖର୍ଚ୍ଚ ବହନ କରିଥିଲେ । ମୋର ଆଉ ଗୋଟିଏ ସୁବିଧା ହେଲା କାରଣ ସେତେବେଳେ ଗ୍ରୀଷ୍ମ ଛୁଟି ହୋଇଥାଏ । ପରିଜାସାହେବ ଛୁଟିରେ ବାହାରକୁ ଯାଇ ନ ଥାନ୍ତି । ସେ ମୋ ପାଇଁ ଗୋଟିଏ କୋଚିଂ କ୍ଲାସ୍ ପ୍ରାୟ ୧୫ ଦିନ ପର୍ଯ୍ୟନ୍ତ କରି, ସମ୍ଭାବ୍ୟ ପ୍ରଶ୍ନର ଉତ୍ତର ମୋତେ ଲେଖିବାକୁ ଦେଉଥିଲେ ଓ ଉତ୍ତରଗୁଡ଼ିକ ବି ସଂଶୋଧନ କରୁଥିଲେ । ସେ ତାଙ୍କ ନିଜ ଆଡ଼ୁ ଏ ବ୍ୟବସ୍ଥା କରିଥିଲେ, ମୋ ଅନୁରୋଧରୁ ନୁହେଁ । ଏପରି ଛାତ୍ରବତ୍ସଳ ଶିକ୍ଷକ କ୍ୱଚିତ୍ ଦେଖିବାକୁ

ମିଳେ । ମୁଁ ଯେଉଁ ଗୁରୁକୁଳ ଆଦର୍ଶ କଥା ଉପରେ କହିଛି, ଏହା ଗୋଟିଏ ତାର ପ୍ରମାଣ ସ୍ୱରୂପ ।

ସେ ଶିଷ୍ଟାଚାର ସମୟାନୁବର୍ତ୍ତିତା ଏବଂ ନିୟମାନୁବର୍ତ୍ତିତା ରକ୍ଷା କରିବା ପାଇଁ ବିଶେଷ ଜୋର ଦେଉଥିଲେ । ଏସବୁର କୌଣସି ମାତ୍ରାରେ ବ୍ୟତିକ୍ରମ ଘଟିଲେ, ସେ ସଙ୍ଗେ ସଙ୍ଗେ ଉପଦେଶମାନ ଦେଉଥିଲେ ।"Example is better than precept" ନୀତିରେ ସେ ଏ ସବୁ ଗୁଣର ଅଧିକାରୀ ଥିଲେ ଓ ନିଜେ ପାଳନ କରୁଥିଲେ । ଛାତ୍ରାବାସ ଅଫିସ୍‌କୁ ସେ ଗୋଟିଏ ନିର୍ଦ୍ଦିଷ୍ଟ ସମୟରେ ଆସନ୍ତି—କଦବା କ୍ୱଚିତ୍ ବ୍ୟତିକ୍ରମ ଘଟିଥାଏ । ସେ ଆସିବା ଦେଖିଲେ, ଅନ୍ତେବାସୀମାନେ ସମୟ ଜାଣିପାରି ନିଜ ନିଜର ବ୍ୟବସ୍ଥା କରୁଥିଲେ ।

ସେ ସୈନିକ ରୀତିରେ ଯିବାଆସିବା କରନ୍ତି । ଚାଲିଲାବେଳେ ତାଙ୍କର ଶରୀର ଆପାଦମସ୍ତକ ଗୋଟିଏ ସରଳରେଖାରେ ଥିବାପରି ଜଣା ପଡ଼େ । ପରିଜାସାହେବ ବିଲାତର କ୍ୟାମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ପଢ଼ା ଶେଷକରି, ସେଠାରେ ପ୍ରଫେସର ବ୍ଲାକ୍‌ମ୍ୟାନ୍‌ଙ୍କ ତତ୍ତ୍ୱାବଧାନରେ ଉଦ୍ଭିଦର ଶ୍ୱାସକ୍ରିୟା ଉପରେ ଗବେଷଣା କଲେ । ସେମାନଙ୍କ ମିଳିତ ଉଦ୍ୟମରେ ଯେଉଁ ମୌଳିକ ତଥ୍ୟ ମିଳିଥିଲା, ତାହାକୁ ବ୍ଲାକ୍‌ମ୍ୟାନ୍ ଓ ପରିଜା ତତ୍ତ୍ୱ ବୋଲି ଆଖ୍ୟା ଦିଆଯାଇଥିଲା । ଏହା ପ୍ରାୟ ସବୁ ଉଦ୍ଭିଦ ବିଜ୍ଞାନ ପାଠ୍ୟପୁସ୍ତକରେ ସ୍ଥାନ ପାଇଛି । ସେତେବେଳେ ପ୍ରଥମ ବିଶ୍ୱଯୁଦ୍ଧ ଲାଗି ଯାଇଥିବାରୁ, ସେ ଆଉ କେତେବର୍ଷ ବିଲାତରେ ଓ ଇଉରୋପରେ ରହି ଯାଇଥିଲେ । ବିଲାତର ଚାଲିଚଳଣି ତାଙ୍କର ଅଭ୍ୟାସଗତ ହୋଇ ଯାଇଥିଲା । ତେଣୁ ସେ ଓଡ଼ିଶାକୁ ଫେରିବା ପରେ ସେସବୁ ପୂରାପୂରି ଛାଡ଼ି ପାରି ନ ଥିଲେ ।

୧୯୩୬ରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠିତ ହେଲା । ସେ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି ଥିଲେ । ସେ ଓଡ଼ିଶା ରାଜ୍ୟର ବି ପ୍ରଥମ ଓଡ଼ିଆ କୃଷି ନିର୍ଦ୍ଦେଶକ ଥିଲେ । ସେ ବି ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ପ୍ରୋ-ଭାଇସ୍‌ଚାନ୍‌ସେଲର ଥିଲେ ।

ଯଦିଓ ସେ ଜଣେ ଜ୍ଞାନୀ ଓ ବିଜ୍ଞ ପୁରୁଷ ଥିଲେ ଓ ସରକାରଙ୍କ ଉଚ୍ଚ ଆସନରେ ଅଭିଷିକ୍ତ ହେଉଥିଲେ, କିନ୍ତୁ ସେ ଛାତ୍ର ଓ ସାଧାରଣ ଲୋକଙ୍କ ସହିତ ଓତପ୍ରୋତ ଭାବେ ମିଳିମିଶି ପାରୁଥିଲେ । ମେଳା ମଉଛବମାନଙ୍କରେ ଟାହିଟାପରା ଓ କିଛି ରସିକତା କରିବାକୁ ବି ଭୁଲୁ ନ ଥିଲେ ।

ଉଚ୍ଚପଦାଭିଷିକ୍ତ ହେଲେ ମଧ୍ୟ ତାଙ୍କର ସ୍ୱାଭିମାନ ନ ଥିଲା ଓ ଦରକାର ପଡ଼ିଲେ ଛୋଟ ଠାରୁ ବଡ଼ କାର୍ଯ୍ୟ ନିଜ ହାତରେ କରିବାକୁ ପଛଉ ନ ଥିଲେ । ମୁଁ କଲିକତା

ବିଶ୍ୱବିଦ୍ୟାଳୟରେ ଏମ୍. ଏସ୍‌ସି. ପଢୁଥିଲା ବେଳେ ଦିନେ ଦେଖିଲି, ସେ ଆମ ହେଡ୍ ଅଫ୍ ଦି ଡିପାର୍ଟମେଣ୍ଟ ପ୍ରଫେସର ଡକ୍ଟର ଏସ୍. ପି.ଙ୍କ ଘରୁ ବାହାରି ଆସୁଛନ୍ତି । ଗୋଟିଏ ହାତରେ ହ୍ୟାଣ୍ଡବ୍ୟାଗ ଓ ଅନ୍ୟ ହାତରେ ୪ଟି କଦଳୀପୁଆ ବନ୍ଧା ହୋଇଥିବା ରସିକୁ ଧରିଛନ୍ତି । କଦଳୀପୁଆ ବୋଧହୁଏ ରେଭେନ୍ସା କଲେଜ ବଟାନିକାଲ ଗାର୍ଡନ ପାଇଁ ନେଉଥିଲେ । ସେଦିନ ବୋଧହୁଏ ଛୁଟି ଥିଲା । ମୁଁ ସଙ୍ଗେ ସଙ୍ଗେ ଯାଇ ତାଙ୍କୁ ନମସ୍କାର କରି ବନ୍ଧା ହୋଇଥିବା କଦଳୀପୁଆଗୁଡ଼ିକ ମୋତେ ଦେବା ପାଇଁ କହିଲି ଓ ସେ ବଡ଼ କୁଣ୍ଠିତ ମନରେ ମୋ ହାତକୁ ବଢ଼ାଇ ଦେଲେ । ମୁଁ ତାଙ୍କ ସଙ୍ଗରେ ଯାଇ ତାଙ୍କୁ ହାଓଡ଼ା ଷ୍ଟେସନ ବସ୍‌ରେ ଚଢ଼ାଇ ଦେଲି ।

ଏମ୍. ଏସ୍‌ସି. ପାସ୍ କଲା ପରେ ଫିଜିଓଲଜିକାଲ ଆସିଷ୍ଟାଣ୍ଟ (ଯେକି ପରିଜାସାହେବଙ୍କ ତତ୍ତ୍ୱାବଧାନରେ ବଟାନି ଲାବୋରେଟୋରୀରେ ଗବେଷଣା କରିବା ପାଇଁ ପରିଜାସାହେବଙ୍କର ଗୋଟିଏ ସାର୍ଟିଫିକେଟ ଦରକାର ପଡ଼ିଲା । ସେତେବେଳେ ଗ୍ରୀଷ୍ମ ଛୁଟି ଯୋଗୁଁ ପରିଜାସାହେବ ଭୁବନେଶ୍ୱରରେ ରହୁଥାନ୍ତି । ମୁଁ ତାଙ୍କ ରହୁଥିବା ଘରେ ଟ୍ରେନରେ ଆସି ପ୍ରାୟ ୫ଟା ବେଳେ ପହଞ୍ଚିଲି । ପରିଜାସାହେବ ପିଲାମାନଙ୍କ ସହ ବୁଲିଯିବାକୁ ବାହାରିଥାନ୍ତି । ମୋତେ ଦେଖି ସେ ସଙ୍ଗେ ସଙ୍ଗେ ସାର୍ଟିଫିକେଟ୍‌ଟି ଲେଖି ଦେଲେ ଓ ମୋତେ ଚା'ଜଳଖିଆ ଦେଇ ବିଦା କରିଦେଲେ । ଏପରି ବଦାନ୍ୟତା କ୍ୱଚିତ୍ ଦୃଷ୍ଟିଗୋଚର ହୁଏ ।

ମୁଁ ସେ ପୋଷ୍ଟରେ ନିଯୁକ୍ତି ପାଇଲି । ପ୍ରାୟ ଏଗାର ମାସ କାଳ ତାଙ୍କ ତତ୍ତ୍ୱାବଧାନରେ ଗବେଷଣା କରିବା ସୁଯୋଗ ପାଇଥିଲି । ମୋତେ ସବ୍-ଡେପୁଟି କଲେକ୍ଟର ଚାକିରି ମିଳିଯିବାରୁ ୧୯୩୮ ସେପ୍ଟେମ୍ବରରେ ରିସର୍ଚ୍ଚ ଆସିଷ୍ଟାଣ୍ଟ ପୋଷ୍ଟ ଛାଡ଼ିଦେଲି । ମୋର ଯାହା ମନେହୁଏ, ଉକ୍ତ ରିସର୍ଚ୍ଚ ଆସିଷ୍ଟାଣ୍ଟ ପୋଷ୍ଟରେ କାମ କରିଥିବା ହେତୁ ଅବସର ଗ୍ରହଣ ପରେ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର କୁଳପତି ହୋଇପାରିଲି । ମୁଁ କୁଳପତି ହେବା ପରେ ଗୁରୁଦେବଙ୍କୁ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର ସମ୍ମାନଜନକ ଡକ୍ଟରେଟ୍ ଡିଗ୍ରୀ ଗ୍ରହଣ କରିବା ପାଇଁ ଅନୁରୋଧ କଲି ଓ ସେ ବିନା ଦ୍ୱିଧାରେ ତାହା ଗ୍ରହଣ କଲେ, ଯଦିଓ ସେ ତାଙ୍କ କାର୍ଯ୍ୟକାଳ ମଧ୍ୟରେ ବହୁତ ଛାତ୍ରଙ୍କୁ ଡକ୍ଟରେଟ୍ ଉପାଧି କରିଦେଇଛନ୍ତି । ତାଙ୍କର ଅସୁସ୍ଥତା ଓ ବାର୍ଦ୍ଧକ୍ୟ ହେତୁ ସେ କନ୍‌ଭୋକେସନ୍‌କୁ ଆସିପାରିଲେ ନାହିଁ । କିନ୍ତୁ ତତ୍‌କାଳୀନ କୁଳାଧିପତି ଓ ରାଜ୍ୟପାଳ ମିଷ୍ଟର ଆଲ୍ଲା ଆକବରଖାନ୍ ନିଷ୍ପତ୍ତି ନେଲେ, ତାଙ୍କ କଟକ ଘରକୁ ଯାଇ ଡକ୍ଟରେଟ ଉପାଧିରେ ତାଙ୍କୁ ବିଭୂଷିତ କରିବେ । ତାହାହିଁ ହେଲା । ଏହା ଦ୍ୱାରା ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ବି ସମ୍ମାନିତ ହେଲା ।

ତାଙ୍କର ଶିଷ୍ଟାଚାରର ନମୁନା ଗୋଟିଏ ନ ଦେଲେ ମୋର ଭୁଲ ହେବ । ଗଡ଼ଜାତ ମିଶ୍ରଣ ପରେ ୧୯୪୮ ମସିହାରେ ଆଠଗଡ଼ର ଆଡ୍‌ମିନିଷ୍ଟ୍ରେଟର ଥାଏ । କୌଣସି କାରଣରୁ ମୁଁ ଓ ମୋର ସ୍ତ୍ରୀ ଆଠଗଡ଼ ଷ୍ଟେସନକୁ ଆସିଥିଲୁ । ସେତେବେଳେ ତାଳଚେର ଟ୍ରେନ୍ ଷ୍ଟେସନ୍ ପ୍ଲାଟଫର୍ମରେ ଥାଏ । ଆମେ ଦୁହେଁ ଟ୍ରେନ୍ ପାଖ ଦେଇ ଯିବାବେଳେ ପରିଜାସାହେବ (ସେତେବେଳେ ସେ କୃଷିବିଭାଗ ନିର୍ଦ୍ଦେଶକ ଥିଲେ) ଫାଷ୍ଟ କ୍ଲାସ୍ କମ୍ପାର୍ଟମେଣ୍ଟ ଦୁଆର ଆଗରେ ଛିଡ଼ା ହୋଇଥାନ୍ତି । ମୁଁ ଓ ମୋର ସ୍ତ୍ରୀ ତାଙ୍କୁ ନମସ୍କାର କଲୁ । ସେତେବେଳକୁ ଟ୍ରେନ୍‌ର ଛାଡ଼ିବା ସମୟ ହୋଇଗଲାଣି, କିନ୍ତୁ ସେ ତତକ୍ଷଣାତ୍ ପ୍ଲାଟଫର୍ମକୁ ଓହ୍ଲାଇ ପଡ଼ି ଆମକୁ ଅଭିନନ୍ଦନ ଜଣାଇଲେ । ମୁଁ ତାଙ୍କ ଛାତ୍ର ସିନା କିନ୍ତୁ ମୋର ସ୍ତ୍ରୀ ନୁହନ୍ତି । ଜଣେ ମହିଳାଙ୍କୁ ସମ୍ମାନ ଦେଖାଇବା ପାଇଁ ତଳକୁ ଡେଇଁ ପଡ଼ିଲେ ।

ମୋର ବିଭାଘର ନିମନ୍ତ୍ରଣ ରକ୍ଷାକରି ମୋତେ ଓ ମୋର ପରିବାରବର୍ଗଙ୍କୁ ଆପ୍ୟାୟିତ ଓ ସମ୍ମାନିତ କରିଥିଲେ ।

ଆଉ ଗୋଟିଏ କଥା ମୁଁ ନ ଲେଖି ରହି ପାରୁ ନାହିଁ । କଟକ ଚାଉଳିଆଗଞ୍ଜରେ ବର୍ଦ୍ଧମାନ ରାଜାଙ୍କ କୋଠାରେ ଉତ୍କଳ ବିଶ୍ୱବିଦ୍ୟାଳୟ ଅଫିସ୍ ଥିଲାବେଳେ, ମୋର ଖଣ୍ଡିଏ ଜମି ତାକୁ ଲାଗିକରି ଥିଲା । ମୁଁ ସେ ଜମି ବି ବର୍ଦ୍ଧମାନ ରାଜାଙ୍କ ଠାରୁ କିଣିଥିଲି । ମୁଁ ଖବର ପାଇଲି ଯେ ବିଶ୍ୱବିଦ୍ୟାଳୟ ୩/୪ଟି ପାଇଖାନା ମୋ ଜମିକୁ ଲାଗିକରି କରିବାକୁ ଯାଉଛି । ସେତେବେଳେ ପରିଜାସାହେବ କୁଳପତି ଥାଆନ୍ତି । ମୁଁ ପରିଜାସାହେବଙ୍କୁ ମୋର ଅସୁବିଧା ହେବ ବୋଲି ଖଣ୍ଡିଏ ଚିଠିରେ ଜଣାଇଦେଲି । ୬/୭ ଦିନ ଭିତରେ ମୋତେ ଉତ୍ତର ମିଳିଲା ଯେ, ପାଇଖାନା ସବୁ ଅନ୍ୟ ଆଡ଼କୁ ଘୁଞ୍ଚାଇ ଦିଆଯାଇଛି । ପରିଜାସାହେବଙ୍କ ଦସ୍ତଖତରେ ଏ ଚିଠି ମୋତେ ମିଳିଥିଲା ।

ଏ ମହାନୁଭବ ମନୀଷୀଙ୍କୁ ମୋର ସାଷ୍ଟାଙ୍ଗ ପ୍ରଣିପାତ ।

# ଅଭୁଲା ସ୍ମୃତି

**ଜାନକୀବଲ୍ଲଭ ପଟ୍ଟନାୟକ**

୧୯୪୩ ମସିହାରେ ରେଭେନ୍ସା କଲେଜରେ ମୁଁ ଯେତେବେଳେ ନାମ ଲେଖାଇଲି ପ୍ରଫେସର ପ୍ରାଣକୃଷ୍ଣ ପରିଜା ଆମର ପ୍ରିନ୍ସିପାଲ ଥିଲେ । ରେଭେନ୍ସା କଲେଜ ସେତେବେଳେ ଓଡ଼ିଶାର ଏକମାତ୍ର ପୋଷ୍ଟଗ୍ରାଜୁଏଟ୍ କଲେଜ ଏବଂ ଭାରତର ପ୍ରସିଦ୍ଧ କଲେଜମାନଙ୍କ ମଧ୍ୟରେ ଅନ୍ୟତମ ଥିଲା । ସେଠାରେ ପଢ଼ିବାରେ ମନର ଗୋଟାଏ ଗର୍ବ ଥିଲା ଏବଂ ଆହୁରି ଗର୍ବ ଭାରତର ଜଣେ ସ୍ୱନାମଧନ୍ୟ ବୈଜ୍ଞାନିକ ଓ ଶିକ୍ଷାବିତ୍ ଡକ୍ଟର ପ୍ରାଣକୃଷ୍ଣ ପରିଜା ଏହାର ପ୍ରିନ୍ସିପାଲ ଥିଲେ । ଓଡ଼ିଶାରୁ ଦୁଇଜଣ ଆଇ.ଇ.ଏସ୍., ଭାରତୀୟ ଏଜୁକେସନାଲ ସର୍ଭିସ୍‌ର ସଭ୍ୟ ଥିଲେ । ଡକ୍ଟର ଶ୍ୟାମଚନ୍ଦ୍ର ତ୍ରିପାଠୀ ଓ ଡକ୍ଟର ପ୍ରାଣକୃଷ୍ଣ ପରିଜା । ଉଭୟଙ୍କୁ କେବଳ ସାହେବ ବୋଲି ଆଖ୍ୟା ଦିଆଯାଉଥିଲା – ତ୍ରିପାଠୀସାହେବ ଓ ପରିଜାସାହେବ । ତ୍ରିପାଠୀସାହେବ ରେଭେନ୍ସା କଲେଜର ପ୍ରିନ୍ସିପାଲ ପଦରୁ ଉନ୍ନୀତ ହୋଇ ଡି.ପି.ଆଇ. ହୋଇ ଚାଲିଗଲେ । ପରିଜାସାହେବ ପ୍ରିନ୍ସିପାଲ ହେଲେ ।

କଲେଜର ପ୍ରବେଶ ଦ୍ୱାରରୁ କନିକା ଲାଇବ୍ରେରୀ ପର୍ଯ୍ୟନ୍ତ ଯେଉଁ ରାସ୍ତାଟି ଯାଇଛି ତା'ର ଉଭୟ ପାର୍ଶ୍ୱରେ ସବୁଜଘାସର ଆୟତାକାର କ୍ଷେତ୍ର । ଏହି ରାସ୍ତାର ଦୁଇକଡ଼ ଓ ଆୟତାକାର କ୍ଷେତ୍ରରେ ଚାରିପାଖରେ ବହୁ ରଙ୍ଗବେରଙ୍ଗର ଛୋଟ ଛୋଟ ଫୁଲଗଛ ଲଗାଯାଇଥାଏ । ଶୀତଦିନ ଆସିଲେ ଏହିସବୁ ଫୁଲଗଛର ଶୋଭା ପ୍ରତ୍ୟେକଙ୍କୁ ମୋହିତ କରେ । ଏହା ଥିଲା କଲେଜ ପ୍ରତି ଡକ୍ଟର ପରିଜାଙ୍କର ଦାନ । ସେ ଉଦ୍ଭିଦ ବିଜ୍ଞାନର ଅଧ୍ୟାପକ ଭାବରେ କଲେଜରେ ଏହି ଚମତ୍କାର ପୁଷ୍ପର ବର୍ଣ୍ଣାଳି ସୃଷ୍ଟି କରିଥିଲେ ।

ପ୍ରିନ୍ସିପାଲ ଭାବରେ ସେ ଅସୀମ ଶ୍ରଦ୍ଧା ଓ ସମ୍ମାନର ପାତ୍ର ଥିଲେ । ଭାରତର ବିଭିନ୍ନ ଅଞ୍ଚଳରୁ ସୁପ୍ରସିଦ୍ଧ ବୈଜ୍ଞାନିକ ଓ ଅଧ୍ୟାପକମାନଙ୍କୁ ଆଣି ସେ କଲେଜର ଶିକ୍ଷକ, ଛାତ୍ର ଓ କଟକ ସହରର ଶିକ୍ଷିତ ଜନସାଧାରଣଙ୍କ ପାଇଁ ସ୍ୱତନ୍ତ୍ର ବକ୍ତୃତାମାଳାର ବ୍ୟବସ୍ଥା କରାଉଥିଲେ । ଏହିପରି ଗୋଟିଏ ବକ୍ତୃତାମାଳା ଆମେ ମନ୍ତ୍ରମୁଗ୍ଧଭାବରେ ଶୁଣିଛୁ । ଡକ୍ଟର ବୀରବଲ ସାହାଣିଙ୍କର ଉଦ୍ଭିଦବିଜ୍ଞାନୀ ଭାବରେ ସାରା ଭାରତରେ ପ୍ରସିଦ୍ଧି ଥିଲା । ତାଙ୍କର ବକ୍ତୃତାମାଳା ଶେଷ ହେବା ପରେ ଡକ୍ଟର ପରିଜାଙ୍କର ସ୍ମରଣୀୟ ବକ୍ତବ୍ୟ ଏବେ ମଧ୍ୟ ମୋର ମନେଅଛି । ସରଳ ଓ ସୁନ୍ଦର ଇଂରାଜୀ ଭାଷାରେ

କୌତୁକ ସୃଷ୍ଟିକରି କହିବାରେ ସେ ନିପୁଣ ଥିଲେ ଏବଂ ଇଂରାଜୀ ସହିତ ମଝିରେ ମଝିରେ ଗୋଟିଏ ଗୋଟିଏ ଓଡ଼ିଆ ଶବ୍ଦ ଲଗାଇ ଦେଉଥିଲେ । ବୀରବଲ ସାହାଣିଙ୍କର ଭାଷଣର ପ୍ରଶଂସା କରି ସେ କହିଲେ –

ଆକାଶରୁ ଆସିଲା କେଉଁ ବିଜ୍ଞାଣି
ଶୁଖିଲା କାଠରୁ ବୁହାଇଲା ପାଣି ।

ଅର୍ଥାତ୍ ବିଜ୍ଞାନପରି ଏକ ନିରସ ବିଷୟକୁ ଡକ୍ଟର ସାହାଣି ତାଙ୍କ ବକ୍ତବ୍ୟରେ ସରସ ଓ ରସାଣିତ କରିଥିଲେ । ସାହାଣିଙ୍କର ବକ୍ତୃତାର ବିଷୟବସ୍ତୁ ଥିଲା Continental drift (ମହାଦେଶ ବିଖଣ୍ଡକ) ଓ ପାଷାଣୀଭୂତା ଉଦ୍ଭିଦ । ଉଭୟ ଡକ୍ଟର ପରିଜା ଓ ଡକ୍ଟର ସାହାଣି ଭାରତର ଏକ ପାଶାଣିଭୁତା ଉଦ୍ଭିଦର ଆବିଷ୍କାର କରିଥିଲେ । ଯାହା ଉଭୟଙ୍କ ନାମରେ ନାମକରଣ କରାଯାଇଥିଲା । ଏହାର ନାମ ହେଉଛି Sahnianthus Parijaii । ଏହିପରି ଏହି ବିଶିଷ୍ଟ ବୈଜ୍ଞାନିକ ଓ ତାଙ୍କର ବନ୍ଧୁ ଡକ୍ଟର ସାହାଣି ଚିରଦିନ ଏକ ସୂତ୍ରରେ ଗ୍ରଥିତ ହୋଇଗଲେ ।

୧୯୪୪ ମସିହାରେ ନବଗଠିତ ଉତ୍କଳ ବିଶ୍ୱବିଦ୍ୟାଳୟର ସେ କୁଳପତି ନିଯୁକ୍ତ ହୋଇଥାନ୍ତି । ରେଭେନ୍ସା କଲେଜ ପରିସରରେ ବିଶ୍ୱବିଦ୍ୟାଳୟର ଅଫିସ୍ ଥାଏ । ସାର୍ ସି.ଭି. ରମଣ ଅତିଥି ଭାବରେ ଆସି ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେଉଥିଲେ । ତାଙ୍କ ବକ୍ତବ୍ୟରେ ସେ ଡକ୍ଟର ପରିଜାଙ୍କର ପ୍ରଶଂସା କରିବା ସଙ୍ଗେ ସଙ୍ଗେ ଭାରତବର୍ଷ ଦର୍ଶନ ପଛରେ ଗୋଡ଼ାଇଲାଣି ବୋଲି ଉଲ୍ଲେଖ କରିଥିଲେ । ଏବେ ବିଜ୍ଞାନର ଯୁଗ । ଓଡ଼ିଶାର ପିଲାମାନେ ତାଙ୍କର ଚତୁର୍ଦ୍ଦିଗକୁ ଦେଖିଲେ କେତେ ଖଣିଜସମ୍ପଦ ଭରି ରହିଛି, ଯାହାକି ସହଜରେ ତାଙ୍କର ଭାଗ୍ୟ ପରିବର୍ତ୍ତନ କରିପାରିବ, ତାହା ଜାଣିପାରିବେ । ବିଜ୍ଞାନ ଛାଡ଼ି ସେମାନେ କାହିଁକି ଦର୍ଶନ ପଛରେ ଗୋଡ଼ାଉଛନ୍ତି !

ଡକ୍ଟର ପରିଜା ବକ୍ତୃତାରେ ଯାହା କହନ୍ତି ତାହା ମାପିଚୁପି କହନ୍ତି । କୌଣସି ଅନାବଶ୍ୟକ କଥା କହନ୍ତି ନାହିଁ ବା କୌଣସି କଥାର ପୁନରାବୃତ୍ତି କରନ୍ତି ନାହିଁ । ଯାହା କଥା ଅଛି, 'ମିତଂ ଚ ସାରଂ ଚ ବଚୋଇ ବାଗ୍ମୀତା', ତାଙ୍କ ପକ୍ଷରେ ତାହା ଅକ୍ଷରେ ଅକ୍ଷରେ ସତ ।

ଯେଉଁ କାର୍ଯ୍ୟ ଡକ୍ଟର ପରିଜା ହାତକୁ ନିଅନ୍ତି, ତାହା ନିଖୁଣ ଭାବରେ ତୁଲାନ୍ତି । ସେ ଉଦ୍ଭିଦ ବିଜ୍ଞାନର ଅଧ୍ୟାପକ, ୱେଷ୍ଟ ହଷ୍ଟେଲର ୱାର୍ଡେନ୍, ରେଭେନ୍ସା କଲେଜର ପ୍ରିନ୍ସିପାଲ, କୃଷିବିଭାଗର ଡିରେକ୍ଟର, ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି, ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ପ୍ରୋ-ଚାନ୍ସେଲର ପ୍ରଭୃତି ବିଭିନ୍ନ ପଦପଦବୀରେ ଅଧିଷ୍ଠିତ ଥିଲେ । ହଷ୍ଟେଲରେ, କଲେଜ ଏବଂ ବିଶ୍ୱବିଦ୍ୟାଳୟରେ ବହୁ ସଂସ୍କାରମୂଳକ କାର୍ଯ୍ୟକ୍ରମ ପ୍ରବର୍ତ୍ତନ କରିଥିଲେ । ଭାରତୀୟ ବିଜ୍ଞାନକଂଗ୍ରେସର ସାଧାରଣ ସମ୍ପାଦକ ଓ

ତା'ର ସାଧାରଣ ସଭାପତି ହୋଇଥିଲେ । ତାଙ୍କର ବିଦ୍‌ବତ୍ତା ପାଇଁ ବ୍ରିଟିଶ ସରକାର ତାଙ୍କୁ O.B.E. (Order of the British Eoire) ପଦବୀରେ ଭୂଷିତ କରିଥିଲେ । ସ୍ୱାଧୀନ ଭାରତରେ ମଧ୍ୟ ନିଜେ ବିଶିଷ୍ଟ ଶିକ୍ଷାବିତ୍ ଓ ବୈଜ୍ଞାନିକ ଭାବରେ ସେ 'ପଦ୍ମଭୂଷଣ' ଉପାଧିରେ ଭୂଷିତ ହେଲେ । ତେଣୁ 'ବିଦ୍ୱାନ ସର୍ବତ୍ର ପୂଜ୍ୟତେ' ନ୍ୟାୟରେ ସେ ଉଭୟ ଶାସନରେ ସମ୍ମାନିତ ହୋଇଥିଲେ । ସେ 'ଉତ୍କଳ ସାହିତ୍ୟ ସମାଜ'ର ମଧ୍ୟ ସଭାପତି ହୋଇଥିଲେ ।

ରେଭେନ୍ସା କଲେଜର ଛାତ୍ର ଥିବାବେଳୁ ମୁଁ ଡକ୍ଟର ପରିଜାଙ୍କର ସ୍ନେହ ଓ ଶ୍ରଦ୍ଧାର ପାତ୍ର ଥିଲି । ପରେ ପ୍ରଜାତନ୍ତ୍ର ପ୍ରଚାର ସମିତି ପାଇଁ ଯେତେବେଳେ ଏକ ନୂଆ ଟ୍ରଷ୍ଟ ଗଠନ କରାଗଲା, ଏହି ଟ୍ରଷ୍ଟରେ ଡକ୍ଟର ପରିଜା ରହିଲେ ଏହା ଅଧିକ ସମ୍ମାନିତ ହେବ ବୋଲି ମୁଁ ଡକ୍ଟର ମହତାବଙ୍କୁ ପ୍ରବର୍ତ୍ତାଇ ତାଙ୍କୁ ସେଥିରେ ସଭ୍ୟ ରହିବା ପାଇଁ ଅନୁରୋଧ କରିଥିଲି । ଅନେକ ମଞ୍ଚରେ ସେ ଏବଂ ମୁଁ ଏକାଠି ବସିଛୁ ଏବଂ ତାଙ୍କର ପ୍ରଶଂସା ଓ ଉତ୍ସାହର ପାତ୍ର ହେବା ମୁଁ ଅନୁଭବ କରିଛି ।

ଶେଷରେ କେବଳ ଗୋଟିଏ ବିଷୟ ଉଲ୍ଲେଖ କରିବା ମୁଁ ଉଚିତ ଅନୁଭବ କରୁଛି । ଯେତେବେଳେ 'ପୌରୁଷ' ପ୍ରକାଶିତ ହେଲା, ଜଣେ ଆଦର୍ଶ ଶିକ୍ଷକ, ବୈଜ୍ଞାନିକ ଏବଂ ଓଡ଼ିଶା ତଥା ଦେଶର ଜଣେ ବରପୁତ୍ର ଭାବରେ ଡକ୍ଟର ପରିଜାଙ୍କୁ ପତ୍ରିକାରେ ତାଙ୍କର ଆତ୍ମଜୀବନୀ ଲେଖିବାକୁ ଅନୁରୋଧ କରିଥିଲି । ମୋର ଏହି ପ୍ରସ୍ତାବରେ ସେ ସଙ୍ଗେ ସଙ୍ଗେ ସମ୍ମତ ହୋଇଗଲେ ଓ ତାଙ୍କର ଆତ୍ମଜୀବନୀ ଲେଖିବାକୁ ଆରମ୍ଭ କରିଥିଲେ । ଧାରାବାହିକ ଭାବରେ ତାହା ପୌରୁଷ ପୃଷ୍ଠାରେ ପ୍ରକାଶିତ ହେଲା । ଏଠାରେ ଉଲ୍ଲେଖନୀୟ ଯେ, ଡକ୍ଟର ପରିଜା ତାଙ୍କ ଜୀବନୀ ଇଂରେଜୀ ଭାଷାରେ ଲେଖୁଥିଲେ, ଯଦିଓ ଓଡ଼ିଆ ଭାଷାରେ ତାଙ୍କର ଦକ୍ଷତା କମ୍ ନ ଥିଲା । ମୁଁ ତାହା ଓଡ଼ିଆରେ ଅନୁବାଦ କରୁଥିଲି । ତାଙ୍କର ଆତ୍ମଜୀବନୀର ଶିରୋନାମ ସେ ଦେଇଥିଲେ Auto-biography of a nobody ଓ ଯାହାର ଅନୁବାଦ 'ଅକିଞ୍ଚନର ଜୀବନ ସ୍ମୃତି' ନାମରେ ପ୍ରକାଶ ପାଇଥିଲା । ଏହା ତାଙ୍କର ଛାତ୍ରଜୀବନର ଶେଷ ଓ ରେଭେନ୍ସା କଲେଜର ଅଧ୍ୟାପକ ଜୀବନର ଆରମ୍ଭ ପର୍ଯ୍ୟନ୍ତ ଦିଆଯାଇଛି । ପରେ 'ମୋ ଛାତ୍ର ଜୀବନ' ନାମରେ ପୁସ୍ତକ ଆକାରରେ ତାହା ପ୍ରକାଶ ପାଇଛି । ଡକ୍ଟର ପରିଜାଙ୍କର ମୃତ୍ୟୁ ପରେ ତାଙ୍କର ଜ୍ୟେଷ୍ଠପୁତ୍ର ଶ୍ରୀ ପ୍ରତାପ ଚନ୍ଦ୍ର ପରିଜା ମୋତେ କହିଥିଲେ ଯେ, ଡକ୍ଟର ପରିଜା ତାଙ୍କର ସମ୍ପୂର୍ଣ୍ଣ ଜୀବନୀଟି ଲେଖିସାରିଛନ୍ତି । ତାହା ଶୀଘ୍ର ପ୍ରକାଶ ପାଇବା ଉଚିତ ବୋଲି ମୁଁ ମନେକରୁଛି ।

ଆଦର୍ଶ ଛାତ୍ର, ଆଦର୍ଶ ଶିକ୍ଷକ, ଆଦର୍ଶ ଶିକ୍ଷାବିତ୍, ଆଦର୍ଶ ବୈଜ୍ଞାନିକ, ଦେଶପ୍ରେମୀ ଓ ଦେଶର ଜଣେ ମହାନ ବରପୁତ୍ର ଭାବରେ ସେ ଓଡ଼ିଆ ଜାତିର ଚିରନମସ୍ୟ ହୋଇ ରହିବେ ।

# ଆଦର୍ଶର ପ୍ରତୀକ – ଡକ୍ଟର ପ୍ରାଣକୃଷ୍ଣ ପରିଜା

**ଜାନକୀବଲ୍ଲଭ ସ୍ୱାଇଁ**

ଶିକ୍ଷାବିତ୍ ଓ ବୈଜ୍ଞାନିକ ଭାବରେ ଯେଉଁମାନେ ସର୍ବଭାରତୀୟ ସ୍ତରରେ ସମ୍ମାନିତ ହୋଇଛନ୍ତି ଡକ୍ଟର ପ୍ରାଣକୃଷ୍ଣ ପରିଜା ସେମାନଙ୍କ ମଧ୍ୟରେ ଜଣେ ଥିଲେ । ସେ ଥିଲେ ଜଣେ ଖ୍ୟାତନାମା ବୈଜ୍ଞାନିକ ଓ ଆଦର୍ଶ ଶିକ୍ଷକ । ଏ ଦେଶର ବହୁ ପଣ୍ଡିତ, ଦାର୍ଶନିକ, ବୈଜ୍ଞାନିକ, ଶିକ୍ଷାବିତ୍ ନିଜ ନିଜ କୃତିତ୍ୱ ପାଇଁ ଜାତୀୟ ତଥା ଅନ୍ତର୍ଜାତୀୟ ସ୍ତରରେ ସମ୍ମାନିତ ହୋଇ ଦେଶ ଓ ଜାତିର ଗୌରବ ମଣ୍ଡନ କରିଛନ୍ତି । ଦେଶ ପାଇଁ, ଜାତି ପାଇଁ ସେମାନଙ୍କର ଅବଦାନ ଚିରସ୍ମରଣୀୟ । ଏହି ପରିପ୍ରେକ୍ଷୀରେ ଡକ୍ଟର ପରିଜା ଯେଉଁ ସମ୍ମାନ ଓ ମର୍ଯ୍ୟାଦାର ଅଧିକାରୀ ହୋଇଛନ୍ତି ସେଥିପାଇଁ ଆମେ ସମସ୍ତେ ବିଶେଷକରି ବାଲିକୁଦାର ଜନସାଧାରଣ ଗର୍ବ ଓ ଗୌରବ ଅନୁଭବ କରିବାର କଥା ।

ସେତେବେଳର ବ୍ରିଟିଶ୍ ସରକାର ଶାସନ କାଳରେ ଗାଁଗହଳି ଭିତରେ ଶିକ୍ଷାର ପ୍ରସାର ନ ଥିଲା । କାଁ ଭାଁ ସ୍କୁଲ କେତୋଟି ଥିଲା । ତଥାପି ଶହେ ବର୍ଷ ପୂର୍ବେ ବାଲିକୁଦାରେ ଗୋଟିଏ ମାଇନର ସ୍କୁଲ ୧୮୮୫ ମସିହାରେ ପ୍ରତିଷ୍ଠା ହୋଇପାରିଥିଲା, ତାହା କମ୍ କଥା ନୁହେଁ । ଏକ ଶତାବ୍ଦୀରୁ ଊର୍ଦ୍ଧ୍ୱରେ ବାଲିକୁଦା ଅଞ୍ଚଳର ଶିକ୍ଷା, ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ସ୍ତରରେ ଯାହା କିଛି ପରିବର୍ତ୍ତନ ହୋଇଛି, ତା'ର ପ୍ରାଣକେନ୍ଦ୍ର ହେଉଛି ବାଲିକୁଦା ଓ ବାଲିକୁଦା ଏମ୍.ଇ.ସ୍କୁଲ । ଜାତୀୟ ସ୍ତରରେ ଯେଉଁ ଜନଜାଗରଣ, ଯେଉଁ ପ୍ରେରଣା ଓ ଉଦ୍‌ବୋଧନ ଓ ଜାତିର ନେତୃବୃନ୍ଦଙ୍କଠାରୁ ସ୍ୱାଧୀନତାର ଯେଉଁ ଆହ୍ୱାନ ଆସୁଥିଲା ତାହା ପ୍ରତିନିଧିତ୍ୱ ହେଉଥିଲା ବାଲିକୁଦା ସ୍କୁଲ ପ୍ରାଙ୍ଗଣରେ ।

ଯେଉଁ କୃତୀଛାତ୍ରଗଣ ବାଲିକୁଦା ମାଇନର ସ୍କୁଲରୁ ଶିକ୍ଷାଲାଭ କରି ସ୍କୁଲକୁ ଗୌରବାନ୍ୱିତ କରିଛନ୍ତି ସେମାନଙ୍କ ମଧ୍ୟରେ ଡକ୍ଟର ପ୍ରାଣକୃଷ୍ଣ ପରିଜା ଏକ ଅସାମାନ୍ୟ କୃତୀସମ୍ପନ୍ନ ଛାତ୍ର ଥିଲେ । ଜଣେ ଆଦର୍ଶ ଛାତ୍ରର ଯେଉଁ ସବୁ ସୁଗୁଣ ଥିବାର କଥା ସେସବୁ ତାଙ୍କର ପ୍ରାଥମିକ ଶିକ୍ଷା ସ୍ତରରୁହିଁ ପ୍ରକାଶିତ ହୋଇଥିଲା । ଅବଶ୍ୟ ସେ ଏକ ନିମ୍ନ ମଧ୍ୟବିତ୍ତ ଏକାନ୍ନବର୍ତ୍ତୀ ବହୁକୁଟୁମ୍ବୀ ପରିବାରରେ ବଢ଼ିଥିଲେ, ଆର୍ଥିକ ସ୍ୱଚ୍ଛଳତା ଭଲ ନ ଥିଲା, ଯାହା ଆମମାନଙ୍କର ଗାଁଗହଳରେ ବହୁ ପିଲାଙ୍କ କ୍ଷେତ୍ରରେ ଘଟିଥାଏ ଓ ଯେଉଁଥିପାଇଁ ଅନେକ ମେଧାବୀ ଛାତ୍ର ଶିକ୍ଷାଲାଭରୁ ବଞ୍ଚିତ ହୋଇଥାଆନ୍ତି ।

ଡକ୍ଟର ପରିଜା ଏପରି କୌଣସି ସମୃଦ୍ଧ କିମ୍ବା ଉନ୍ନତ ପରିବେଶରେ, ବଢ଼ି ନ ଥିଲେ କିମ୍ବା ପରିସ୍ଥିତି ଦୃଷ୍ଟିରୁ ଉଚ୍ଚଶିକ୍ଷା ଲାଭ କରିବାର ଉଚ୍ଚ ଆକାଙ୍କ୍ଷା ବି ପୋଷଣ କରି ନ ଥିଲେ । ଚାଟଶାଳୀ ପାଠ ଶେଷକରି ତାଙ୍କର ଜଣେ ସମ୍ପର୍କୀୟ ମଉସାଙ୍କର କିଛିଦିନ ପାଇଁ ସେ ନକଲନବିସ ଭାବରେ କାର୍ଯ୍ୟ କରିଥିଲେ । ତାଙ୍କ ବାପାଙ୍କର ଏକାନ୍ତ ଜିଦ୍ ଥିଲା ଘର ପାଖ ସ୍କୁଲ ବାଲିକୁଦାରେ ତାଙ୍କୁ ପଢ଼ାଇବା ପାଇଁ । ବାପାଙ୍କ ଇଚ୍ଛାନୁସାରେ ୧୯୦୦ ମସିହାରେ ତାଙ୍କ ବୋଉ ତାଙ୍କୁ ବାଲିକୁଦା ମାଇନର ସ୍କୁଲକୁ ପଠାଇଲେ । ବାଳକ ପ୍ରାଣକୃଷ୍ଣଙ୍କର ସ୍କୁଲ ଶିକ୍ଷା ଆରମ୍ଭ ହେଲା । ଯେ କୌଣସି ପରିବେଶ ଭିତରେ ବଢ଼ିଥିଲେ ବି କାହାର ଜୀବନର ଗତି କେଉଁ ଦିଗରେ ନିୟନ୍ତ୍ରିତ ହେବ ତାହା ହୁଏତ ବିଧି ନିର୍ଦ୍ଦିଷ୍ଟ ହୋଇଛି ।

ସ୍କୁଲ ସ୍ତରରୁ ହିଁ ପ୍ରାଣକୃଷ୍ଣଙ୍କର ଶିକ୍ଷା ପ୍ରତି ପ୍ରଗାଢ଼ ଆଗ୍ରହ ଥିଲା । ଶିକ୍ଷକ ଓ ସାଙ୍ଗସାଥିମାନଙ୍କ ପ୍ରତି ମଧୁର ବ୍ୟବହାର, ପ୍ରାଥମିକ ସ୍ତରରୁ ହିଁ ତାଙ୍କର ଗୁରୁଭକ୍ତି, ନିରଳସ ଜୀବନଯାପନର ଆଭାସ ମିଳିଥିଲା । ଉଚ୍ଚଶିକ୍ଷା ନିମିତ୍ତ ବିଲାତ ଯିବାପାଇଁ ପ୍ରସ୍ତୁତ ହେଲାବେଳେ ସେ ପ୍ରଥମେ ଜୋତା କିଣିଥିଲେ । ଯେଉଁ ନିଷ୍ଠା ଓ ଆଦର୍ଶରେ ସେ ବାଲ୍ୟକାଳରୁ ଶିକ୍ଷାଲାଭ କରିଥିଲେ ଓ ଯେଉଁ ଅଭାବଗ୍ରସ୍ତ ପରିବେଶରେ ବାଲ୍ୟଜୀବନ ଯାପନ କରିଥିଲେ ତା'ର ଆଦର୍ଶ ଓ ମେଧାବୀ ଦରିଦ୍ର ଛାତ୍ରମାନଙ୍କ ପ୍ରତି ତାଙ୍କର ସମ୍ବେଦନଶୀଳତା ସେ ତାଙ୍କର ପରବର୍ତ୍ତୀ ଜୀବନରେ କେବେ ଭୁଲି ନ ଥିଲେ ।

ଜଣେ ବୈଜ୍ଞାନିକ ଓ ଶିକ୍ଷାବିତ୍ ଭାବରେ ତାଙ୍କର କୃତିତ୍ୱ ତାଙ୍କର କେମ୍ବ୍ରିଜ୍ ଅବସ୍ଥାନ ସମୟରେ ହିଁ ପ୍ରକାଶିତ ହୋଇଥିଲା । କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ ଏକ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଶିକ୍ଷାନୁଷ୍ଠାନ । ବିଶ୍ୱର ତଥା ଭାରତର ବହୁ ବିଶିଷ୍ଟ ବ୍ୟକ୍ତିଗଣଙ୍କ ସମ୍ପର୍କରେ ଆସିବାର ସୁଯୋଗ ତାଙ୍କୁ କେମ୍ବ୍ରିଜ୍‌ରେ ହିଁ ମିଳିଥିଲା । କେମ୍ବ୍ରିଜ୍‌ର ଶୃଙ୍ଖଳା, ଶିକ୍ଷା, ଶିକ୍ଷାୟତନ ଓ ଶିକ୍ଷକଙ୍କ ମଧ୍ୟରେ ଘନିଷ୍ଠ ସମ୍ପର୍କ, କେମ୍ବ୍ରିଜ୍‌ର ଆନୁଷ୍ଠାନିକ ଓ ସାଙ୍ଗଠନିକ କ୍ରିୟା-କ୍ଲବ୍ ଜୀବନ, ତାଙ୍କ ଭିତରେ ଅନ୍ତର୍ନିହିତ ପ୍ରତିଭା ବିକାଶ ହେବାରେ ଉପଯୁକ୍ତ କ୍ଷେତ୍ର ଓ ପରିବେଶ ସୃଷ୍ଟି କରିଥିଲା ।

କେମ୍ବ୍ରିଜ୍‌ର ଶୃଙ୍ଖଳା ଓ ଆଦର୍ଶ ଅନୁକରଣରେ କେତେକ ସଂସ୍କାର ପ୍ରଫେସର ପରିଜା ରେଭେନ୍ସା କଲେଜ ଭିତରେ ଆଣିବାକୁ ଚେଷ୍ଟା କରିଥିଲେ । ତାହା ମଧ୍ୟରୁ ଗୋଟିଏ ହେଲା ଓ୍ୱେଷ୍ଟ ହଷ୍ଟେଲରେ ଲେଣ୍ଡିଙ୍ଗ୍ ଲାଇବ୍ରେରି ପ୍ରତିଷ୍ଠା, ସାମାନ୍ୟ କିଛି ପଇସା ଦେଇ ଜଣେ ଦାମିକା ବହି ଲେଣ୍ଡିଙ୍ଗ୍ ଲାଇବ୍ରେରିରୁ ନେଇ ପଢ଼ିପାରିବ ଓ ପୁଣି ଫେରାଇଦେବ । ପ୍ରଫେସର ପରିଜା ଓ୍ୱେଷ୍ଟ ହଷ୍ଟେଲ୍‌ର ଓ୍ୱାର୍ଡେନ୍ ଥିଲେ ।

ଦାରିଦ୍ର୍ୟର କଷାଘାତରେ ଅନେକ ମେଧାବୀ ଛାତ୍ର କିପରି ଦୁଃଖକଷ୍ଟ ପାଆନ୍ତି ଜଣେ ଅନୁଭବୀ ଆଦର୍ଶ ଶିକ୍ଷାବିତ୍ ଭାବରେ ସେ ହୃଦୟଙ୍ଗମ କରିପାରୁଥିଲେ । ଓ୍ୱେଷ୍ଟ ହଷ୍ଟେଲର ଅନ୍ତେବାସୀମାନଙ୍କୁ ପରୀକ୍ଷାର ବ୍ଲାଙ୍କ ଉତ୍ତର ଖାତାଗୁଡ଼ିକ ସିଲାଇ କରିବା କାମ ଦେଇ ସେମାନଙ୍କୁ ସେଥିପାଇଁ କିଛି ପାରିଶ୍ରମିକ ଦେବାର ଏକ ଯୋଜନା ପ୍ରଫେସର ପରିଜା ପ୍ରସ୍ତୁତ କରିଥିଲେ । ଅନୁଭବୀହିଁ ସମଦୁଃଖୀର ଦୁଃଖ ଅନୁଭବ କରିପାରେ । ସେ ରେଭେନ୍ସା କଲେଜର ଅଧ୍ୟକ୍ଷ ଥିବାବେଳେ ତାଙ୍କର ଜଣେ ପ୍ରିୟ ଛାତ୍ର ଯେ କି ପରବର୍ତ୍ତୀ କାଳରେ ରେଭେନ୍ସା କଲେଜରେ ଅଧ୍ୟାପକ ହୋଇଥିଲେ । ବିନା ଚଟି ବିନା ଜୋତାରେ କଲେଜକୁ ଆସୁଥିବା ଲକ୍ଷ୍ୟ କରି ଛାତ୍ରବତ୍ସଳ ଡକ୍ଟର ପରିଜା ନିଜ ତରଫରୁ ଚଟି ହଳେ କିଣି ଅଧ୍ୟାପକଙ୍କୁ ପିନ୍ଧାଇଥିଲେ । କଥାଟି ହୁଏତ ଛୋଟ । କିନ୍ତୁ ଏଠାରେ ହୃଦୟବତ୍ତା ନ ଥିଲେ ଏହା କ'ଣ ସମ୍ଭବ ହୋଇପାରେ ।

(ଶ୍ରୀ ବସନ୍ତକୁମାର ରାୟଙ୍କ ସୌଜନ୍ୟରୁ ପ୍ରାପ୍ତ)

# ଡକ୍ଟର ପରିଜା
# ଉତ୍କଳ ବିଶ୍ୱବିଦ୍ୟାଳୟର ବିଶ୍ୱକର୍ମା

**ଜ୍ଞାନ ଚାନ୍ଦ**

ଯେ କୌଣସି ଅନୁଷ୍ଠାନ ବିଶେଷତଃ ଏକ ଶିକ୍ଷା ଅନୁଷ୍ଠାନର ଉତ୍ତରୋତ୍ତର ଅଭିବୃଦ୍ଧି ଓ କ୍ରମବିକାଶ– ପାଇଁ ନେତୃତ୍ୱ ଏକ ସିଦ୍ଧାନ୍ତମୂଳକ ଆବଶ୍ୟକତା । ଯେଉଁ ଅନୁଷ୍ଠାନଗୁଡ଼ିକ ସେମାନଙ୍କ ଶୈଶବରେ ଅତି ଉଚ୍ଚକୋଟୀର ବ୍ୟକ୍ତିଙ୍କର ନେତୃତ୍ୱ ଲାଭ କରିଛନ୍ତି ସେଗୁଡ଼ିକ ଭାଗ୍ୟବାନ୍, କାରଣ ଏହି ସମୟରେ ହିଁ ସେ ଅନୁଷ୍ଠାନର ଅଭିବୃଦ୍ଧିର ଭବିଷ୍ୟତ ଆଦର୍ଶ ନିର୍ଦ୍ଧାରିତ ହୋଇଥାଏ ଏବଂ ପରବର୍ତ୍ତୀ ସମୟରେ ଯେଉଁ ବିଶାଳ ସୌଧ ନିର୍ମିତ ହେବ ତାର ଭିତ୍ତିପ୍ରସ୍ତର ସ୍ଥାପନ କରାଯାଇଥାଏ ।

ଏ ଦିଗରେ ଉତ୍କଳ ବିଶ୍ୱବିଦ୍ୟାଳୟ ବିଶେଷଭାବରେ ଭାଗ୍ୟବାନ୍, କାରଣ ପ୍ରାରମ୍ଭରୁ ହିଁ ଏହା ପ୍ରଫେସର ପ୍ରାଣକୃଷ୍ଣ ପରିଜାଙ୍କ ବଳିଷ୍ଠ ନେତୃତ୍ୱ ଲାଭ କରିଥିଲା । ଏହାର ପ୍ରଥମ କୁଳପତି ରୂପେ ପ୍ରଫେସର ପରିଜାଙ୍କୁ ଅତି ଦୁଃସାଧ୍ୟ ଓ ମୁକାବିଲା ପରିସ୍ଥିତିରେ କାର୍ଯ୍ୟ କରିବାକୁ ପଡ଼ିଥିଲା । ପ୍ରସିଦ୍ଧ ସର୍ବଭାରତୀୟ ଶିକ୍ଷା ଚାକିରି (ଇଣ୍ଡିଆନ୍ ଏଡୁକେଶନ ସର୍ଭିସ୍) କାଳ ମଧ୍ୟରେ ଲୋକପ୍ରକୃତି ଓ ପରିସ୍ଥିତି ସମ୍ପର୍କରେ ସେ ଲାଭ କରିଥିବା ବିପୁଳ ଅଭିଜ୍ଞତା, ତାଙ୍କର ବୈଜ୍ଞାନିକ ଓ ଆଧୁନିକ ଦୃଷ୍ଟିଭଙ୍ଗୀ, ତାଙ୍କର ଗଭୀର ପାଣ୍ଡିତ୍ୟ ଓ ସର୍ବୋପରି ତାଙ୍କର ଗଭୀର ମାନବଧର୍ମୀ ଗୁଣରାଜିକୁ ସେ ଏହି କାର୍ଯ୍ୟରେ ବିନିଯୋଗ କରିଥିଲେ, ଯାହା ଫଳରେ ଆମେ ଆଜି ଯାହା ଉତ୍କଳ ବିଶ୍ୱବିଦ୍ୟାଳୟରେ ଦେଖିବାକୁ ପାଉଛୁ ସେ ସବୁଥିରେ ତାଙ୍କର ବଳିଷ୍ଠ ବ୍ୟକ୍ତିତ୍ୱର ଛାପ ଓ ତାଙ୍କର ଅସାଧାରଣ ଅବଦାନର ସୁସ୍ପଷ୍ଟ ଚିତ୍ର ଦେଖିବାକୁ ମିଳେ ।

ଉତ୍କଳ ବିଶ୍ୱବିଦ୍ୟାଳୟ ୧୯୪୩ ମସିହାରେ ଜନ୍ମଲାଭ କରିଥିଲା ଏବଂ ନୂତନ ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି ରୂପେ ପ୍ରଫେସର ପରିଜାଙ୍କ ମନୋନୟନ ଯଥାର୍ଥ ଥିଲା । କୁଳପତି ରୂପେ ବିଶ୍ୱବିଦ୍ୟାଳୟର ପ୍ରଶାସନିକ ଆଧାର (framework) ସ୍ଥାପନ କରିବା ତାଙ୍କର ପ୍ରଥମ ପଦକ୍ଷେପ ଥିଲା । ତଦ୍ ସଙ୍ଗେ ସଙ୍ଗେ ସବୁ କଲେଜଗୁଡ଼ିକୁ ବିଶ୍ୱବିଦ୍ୟାଳୟ ସହିତ ସଂପୃକ୍ତ (affiliate) କରିବା, ରେଗୁଲେସନ୍ ବା ନିୟମାବଳୀ ଷ୍ଟାଣ୍ଡିଂ ଅର୍ଡର ପ୍ରଭୃତି ପ୍ରସ୍ତୁତ କରିବା ପାଇଁ ମଧ୍ୟ ସେ ବିହିତ କାର୍ଯ୍ୟାନୁଷ୍ଠାନ

ଗ୍ରହଣ କରିଥିଲେ । ତାଙ୍କ ଅଧିନାୟକତ୍ୱରେ ଉତ୍କଳ ବିଶ୍ୱବିଦ୍ୟାଳୟର ଭିତ୍ତିପ୍ରସ୍ତର ସୁଦୃଢ଼ ରୂପେ ସ୍ଥାପିତ ହୋଇପାରିଥିଲା ।

ଉତ୍କଳ ବିଶ୍ୱବିଦ୍ୟାଳୟରେ କୁଳପତି ରୂପେ ତାଙ୍କ ପ୍ରଥମ ଦଫା କାର୍ଯ୍ୟକାଳ ସରିବା ପରେ ପ୍ରଫେସର ପରିଚ୍ଛା ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ଉପ-କୁଳପତି ପଦରେ ଅଧିଷ୍ଠିତ ହୋଇଥିଲେ । ବନାରସରୁ ଫେରି ସେ କିଛି ଦିନ ପାଇଁ ଓଡ଼ିଶା ଜନସାଧାରଣଙ୍କ ସେବାରେ ନିଜକୁ ନିୟୋଜିତ କରିଥିଲେ । ତତ୍‌ପରେ ସେ ୧୯୫୧ରୁ ୧୯୫୫ ମସିହା ପର୍ଯ୍ୟନ୍ତ ଉତ୍କଳ ବିଶ୍ୱବିଦ୍ୟାଳୟର ଉପ-କୁଳାଧିପତି ଭାବରେ ଦାୟିତ୍ୱ ସମ୍ପାଦନ କରିଥିଲେ ।

ଉତ୍କଳ ବିଶ୍ୱବିଦ୍ୟାଳୟର ସୌଭାଗ୍ୟ ଯେ ପ୍ରଫେସର ପରିଚ୍ଛା ପୁଣି ଦୁଇଥର ପାଇଁ ୧୯୫୫ରୁ ୧୯୬୦ ଓ ୧୯୬୦ରୁ ୧୯୬୬ ମସିହା ପର୍ଯ୍ୟନ୍ତ ଏହାର କୁଳପତି ଆସନ ଅଳଙ୍କୃତ କରିଥିଲେ । ସେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଥିଲାବେଳେ ହିଁ ବିଶ୍ୱବିଦ୍ୟାଳୟରେ ନିଜସ୍ୱ ଅଧ୍ୟାପନା (Teaching) ବିଭାଗ ସବୁ ଖୋଲାଯିବା ପାଇଁ ସିଦ୍ଧାନ୍ତ ଗ୍ରହଣ କରାଯାଇଥିଲା । ୧୯୫୭ ମସିହାରେ ସ୍ନାତକୋତ୍ତର ଦର୍ଶନଶାସ୍ତ୍ର ଓ ସଂସ୍କୃତ ବିଭାଗ ଖୋଲା ଯାଇଥିଲା । ୧୯୫୮ ମସିହାରେ ସ୍ନାତକୋତ୍ତର ମନସ୍ତତ୍ତ୍ୱ, ପରିସଂଖ୍ୟାନ, ରାଜନୀତି ଓ ନୃତତ୍ତ୍ୱ ବିଭାଗ ଖୋଲାଯାଇଥିଲା । ଓଡ଼ିଶାରେ ବାଣିଜ୍ୟ ଶିକ୍ଷାର ଗୁରୁତ୍ୱ ଓ ଆବଶ୍ୟକତା ଉପଲବ୍ଧି କରି ପ୍ରଫେସର ପରିଚ୍ଛା ୧୯୬୨ ମସିହାରେ ସ୍ନାତକୋତ୍ତର ବାଣିଜ୍ୟ ବିଭାଗ ଖୋଲିଥିଲେ ।

ଉତ୍କଳ ବିଶ୍ୱବିଦ୍ୟାଳୟର ବିକାଶରେ ତୃତୀୟ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ହେଉଛି କଟକରୁ ବିଶ୍ୱବିଦ୍ୟାଳୟକୁ ସ୍ଥାନାନ୍ତରିତ କରି ଭୁବନେଶ୍ୱର ବାଣୀବିହାର ଠାରେ ସ୍ଥାପନ କରିବା । ଏହା ଏକ ଅତି କଷ୍ଟସାଧ ନିଷ୍ପତ୍ତି ଥିଲା । ଡକ୍ଟର ପରିଚ୍ଛାଙ୍କ କୁଳପତି କାର୍ଯ୍ୟ କାଳରେ ହିଁ ଭାରତର ତତ୍‌କାଳୀନ ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦ ୧୯୫୮ ମସିହା ଜାନୁଆରୀ ୧ ତାରିଖରେ ବାଣୀବିହାର ଠାରେ ଉତ୍କଳ ବିଶ୍ୱବିଦ୍ୟାଳୟର ଭିତ୍ତିପ୍ରସ୍ତର ସ୍ଥାପନ କରିଥିଲେ ଏବଂ ଭାରତର ଅନ୍ୟତମ ରାଷ୍ଟ୍ରପତି ସ୍ୱର୍ଗତ ଡକ୍ଟର ରାଧାକ୍ରିଷ୍ଣନ୍ ୧୯୬୩ ମସିହା ଜାନୁୟାରୀ ୨ ତାରିଖରେ ଆନୁଷ୍ଠାନିକ ଭାବେ ବାଣୀବିହାର କ୍ୟାମ୍ପସ୍‌ରେ ଉତ୍କଳ ବିଶ୍ୱବିଦ୍ୟାଳୟ ଉଦ୍‌ଘାଟନ କରିଥିଲେ । ତେଣୁ ବାଣୀବିହାର କ୍ୟାମ୍ପସ୍‌ରେ ଆମେ ଯେଉଁସବୁ ସୌଧରାଜି ଓ ରୋପିତ ବୃକ୍ଷସମ୍ପଦ ଦେଖୁଛୁ ସେ ସବୁଥିରେ ଡକ୍ଟର ପରିଚ୍ଛାଙ୍କ ମହାନ୍ ବ୍ୟକ୍ତିତ୍ୱର ସ୍ପର୍ଶ ଅଛି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ବିଗତ ଦଶନ୍ଧିରେ ବାଣୀବିହାର କ୍ୟାମ୍ପସରେ ଯାହାସବୁ କୋଠାବାଡ଼ି ନିର୍ମିତ ହୋଇଛି ସେସବୁର ମୂଳ ଡକ୍ଟର ପରିଚ୍ଛାଙ୍କର ନିପୁଣ କଳ୍ପନା ଓ ସେ କୁଳପତି ଥିବା ସମୟରେ

ସେଗୁଡ଼ିକର ଉଦ୍ଭବ ଏଥିରେ ଦ୍ୱିମତ ନାହିଁ । ଉତ୍କଳ ବିଶ୍ୱବିଦ୍ୟାଳୟରେ ବିଜ୍ଞାନ ବିଭାଗଗୁଡ଼ିକ ପ୍ରତିଷ୍ଠା କରିବା ପାଇଁ ଡକ୍ଟର ପରିଜା ହିଁ ଯୋଜନା କରିଥିଲେ, ଯଦିଓ ପ୍ରକୃତରେ ସେ ଅବସର ଗ୍ରହଣ କଲାପରେ ୧୯୬୭ ମସିହାଠାରୁ ସେଗୁଡ଼ିକ ଗୋଟିକ ପରେ ଗୋଟିଏ ପ୍ରତିଷ୍ଠିତ ହୋଇଥିଲା ।

ଡକ୍ଟର ପରିଜାଙ୍କ କୁଳପତି କାର୍ଯ୍ୟକାଳ ମଧ୍ୟରେ ହିଁ ଉଚ୍ଚଶିକ୍ଷାର ଗଠନ ପ୍ରଣାଳୀ ଓ ପରୀକ୍ଷା ସମୂହର ମୂଲ୍ୟାୟନ ପଦ୍ଧତିରେ ଅନେକ ସଂସ୍କାର ଅଣାଯାଇଥିଲା । ଏହି ସମୟରେ ତିନିବର୍ଷିଆ ସ୍ନାତକ ପାଠ୍ୟକ୍ରମ ଓ ଆଭ୍ୟନ୍ତରୀଣ ମୂଲ୍ୟାଙ୍କନ ପଦ୍ଧତି ପ୍ରବର୍ତ୍ତନ କରାଯାଇଥିଲା ।

ଡକ୍ଟର ପରିଜା ଯେ କେବଳ ଉତ୍କଳ ବିଶ୍ୱବିଦ୍ୟାଳୟର ଶ୍ରୀବୃଦ୍ଧି ସାଧନ କରିଥିଲେ ସେତିକି ନୁହେଁ, ସେ ମଧ୍ୟ ତାଙ୍କର ବ୍ୟକ୍ତିଗତ କୃତିତ୍ୱପୂର୍ଣ୍ଣ କାର୍ଯ୍ୟ ଯୋଗୁଁ ବିଶ୍ୱବିଦ୍ୟାଳୟକୁ ଗୌରବମଣ୍ଡିତ କରିପାରିଥିଲେ । ଉଦ୍ଭିଦ ବିଜ୍ଞାନ ତାଙ୍କର ଉଚ୍ଚକୋଟୀର ଗବେଷଣା ପାଇଁ ସେ ଆନ୍ତର୍ଜାତିକ ସ୍ତରରେ ବିଶେଷ ଖ୍ୟାତି ଅର୍ଜନ କରିଥିଲେ ।

୧୯୬୩ ମସିହାରେ ବିଶ୍ୱବିଦ୍ୟାଳୟର ଅନୁଦାନ ଆୟୋଗ ତାର ସାଧାରଣ ଶିକ୍ଷା ବିଷୟକ ସ୍ଥାୟୀ ପରାମର୍ଶଦାତା କମିଟିର ଅଧ୍ୟକ୍ଷ ରୂପେ ଡକ୍ଟର ପରିଜାଙ୍କୁ ନିଯୁକ୍ତ କରିଥିଲେ । ୧୯୬୩ ମସିହାରେ ମଧ୍ୟ ଡକ୍ଟର ପରିଜା ରାଜ୍ୟଗୋଷ୍ଠୀ ବିଶ୍ୱବିଦ୍ୟାଳୟ ଆସୋସିଏସନର କାଉନ୍‌ସିଲ୍‌ରେ ଭାରତର ଆନ୍ତଃ-ବିଶ୍ୱବିଦ୍ୟାଳୟ ବୋର୍ଡର ଜଣେ ପ୍ରତିନିଧି ରୂପେ ନିର୍ବାଚିତ ହୋଇଥିଲେ । ୧୯୬୪ ମସିହା ଅଗଷ୍ଟ ମାସରେ ଗ୍ରେଟ୍ ବ୍ରିଟେନ୍‌ର ଏଡିନ୍‌ବର୍ଗ ଠାରେ ଅନୁଷ୍ଠିତ ହୋଇଥିବା ଦଶମ ଅନ୍ତର୍ଜାତୀୟ ଉଦ୍ଭିଦବିଦ୍ୟା କଂଗ୍ରେସର ଉପ-ସଭାପତି ରୂପେ ଡକ୍ଟର ପରିଜା ନିର୍ବାଚିତ ହୋଇଥିଲେ ।

ଉତ୍କଳ ବିଶ୍ୱବିଦ୍ୟାଳୟ ଡକ୍ଟର ପରିଜାଙ୍କୁ ତାର ପ୍ରତିଷ୍ଠାତା କୁଳପତି, ସ୍ଥପତି ଓ ତାହାର ଆତ୍ମା ରୂପେ ସଦାସର୍ବଦା ସ୍ମରଣ କରିବ । ଜଣେ ବିଶିଷ୍ଟ ପଣ୍ଡିତ, ବିଜ୍ଞ ବୈଜ୍ଞାନିକ ବରିଷ୍ଠ ଶିକ୍ଷାବିତ୍ ରୂପେ ତାଙ୍କର କୃତିତ୍ୱପୂର୍ଣ୍ଣ କାର୍ଯ୍ୟ ପ୍ରେରଣାର ଉତ୍ସ ହୋଇ ରହିଛି ଓ ଏହା ଧାରାବାହିକ ଭାବରେ ଆଗାମୀ ଯୁଗର ଶିକ୍ଷକ ଓ ଛାତ୍ରମାନଙ୍କୁ ବହୁ ବର୍ଷ ପାଇଁ ଅନୁପ୍ରାଣିତ କରୁଥିବ । ଉତ୍କଳ ବିଶ୍ୱବିଦ୍ୟାଳୟର ପରମ ସୌଭାଗ୍ୟ ଯେ ସେ ଏକ ଶତାବ୍ଦୀର ଏକ ଚତୁର୍ଥାଂଶ ସମୟ ଡକ୍ଟର ପରିଜାଙ୍କର ମହାନ୍ ବ୍ୟକ୍ତିତ୍ୱର ସଂସ୍ପର୍ଶରେ ଆସିବାର ସୁଯୋଗ ଲାଭ କରିଛି ଓ ବିଶ୍ୱବିଦ୍ୟାଳୟ ଏହାକୁ ତାର ସବୁଠାରୁ ଅଧିକ ଅମୂଲ୍ୟ ସମ୍ପତ୍ତି ରୂପେ ଅତି ଆଦରର ସହିତ ମନେ ରଖିବ । (ରଚନା ସମୟ ୧୯୭୭ । ମୂଳ ଇଂରାଜୀ ଲେଖାରୁ ଡକ୍ଟର ଗଦାଧର ମିଶ୍ରଙ୍କ ଦ୍ୱାରା ଓଡ଼ିଆରେ ଅନୂଦିତ ।)

# ପ୍ରାଣକୃଷ୍ଣ ପରିଜା : କେତୋଟି ସ୍ମରଣୀୟ ଅନୁଭୂତି

**ତ୍ରିଲୋଚନ ପ୍ରଧାନ**

ସ୍ୱର୍ଗତ ଶ୍ୟାମଚନ୍ଦ୍ର ତ୍ରିପାଠୀଙ୍କ ଗୋଟିଏ ବହୁମୂଲ୍ୟ ଏବଂ ତଥ୍ୟସମ୍ବଳିତ ସ୍ମରଣିକା ସଙ୍କଳନ ପରେ ଡକ୍ଟର ଗଦାଧର ମିଶ୍ର ବର୍ତ୍ତମାନ ସ୍ୱର୍ଗତ ପ୍ରାଣକୃଷ୍ଣ ପରିଜାଙ୍କ ସ୍ମରଣିକା ପ୍ରସ୍ତୁତ କରିବା ପର୍ଯ୍ୟାୟରେ ମୋତେ ଗୋଟିଏ ପ୍ରବନ୍ଧ ଲେଖିବାକୁ ଅନୁରୋଧ କରିଛନ୍ତି । ମୁଁ ତ ପରିଜାସାହେବଙ୍କଠାରୁ ସାନ । ତାଙ୍କର ଯୁବକ ସମୟରେ ତାଙ୍କ ସଂସ୍ପର୍ଶରେ ଆସିଥିବା ବ୍ୟକ୍ତିମାନେ ସିନା ତାଙ୍କ ବିଷୟରେ ଅନେକ କିଛି ଲେଖିବେ । ମୁଁ ତାଙ୍କ ବିଷୟରେ କ'ଣ ଜାଣେ ଯେ ଲେଖିବି ?

୧୯୪୫ ମସିହାରେ ମୁଁ ରେଭେନ୍ସା କଲେଜରେ ଭର୍ତ୍ତି ହେଲାବେଳକୁ ପରିଜାସାହେବ କଲେଜ ଅଧ୍ୟକ୍ଷ ପଦ ଛାଡ଼ିସାରିଥିଲେ । କିନ୍ତୁ ତାଙ୍କର ଛାପଟା କଲେଜର ପ୍ରତ୍ୟେକ ଅଙ୍ଗପ୍ରତ୍ୟଙ୍ଗରେ ସ୍ପଷ୍ଟଭାବେ ଥିଲା । କେତେବେଳେ କେମିତି ବକ୍ତୃତା ଦେବାକୁ କଲେଜକୁ ଆସିଲାବେଳେ ମୁଁ ତାଙ୍କୁ ଦେଖିଥିଲି । କିନ୍ତୁ ତାଙ୍କ ସାଙ୍ଗରେ ସିଧାସଳଖ ଦେଖାହୁଏ ଯେତେବେଳେ ମୁଁ ୧୯୪୯ ମସିହାରେ ବି.ଏସ୍‌ସି. ଅନର୍ସ ପାସ୍ କରି ଏମ୍.ଏସ୍‌ସି. ପଢ଼ିବାକୁ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ ଯିବାକୁ ପ୍ରୟାସ କଲି । ସେ ସମୟରେ ପରିଜାସାହେବ ସେଠି ଥାନ୍ତି ପ୍ରୋ-ଭାଇସ୍ ଚାନ୍‌ସେଲର୍ ।

ବନାରସରେ ନାମଲେଖା ପ୍ରସଙ୍ଗରେ ମୋତେ ସେସମୟର ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଶ୍ରୀଯୁକ୍ତ ଚିନ୍ତାମଣି ଆଚାର୍ଯ୍ୟଙ୍କ ସହିତ ସାକ୍ଷାତ କରିବା ଦରକାର ପଡ଼ିଥିଲା । ଶ୍ରୀଯୁକ୍ତ ଆଚାର୍ଯ୍ୟ ମୋର କାମଟି ଯଥାଶୀଘ୍ର ତୁଟାଇଦେଇ ମୋତେ ଡକ୍ଟର ପରିଜାଙ୍କ ସହ ସାକ୍ଷାତ କରିବାକୁ ପରାମର୍ଶ ଦେଲେ । ସେ ସମୟରେ ପରିଜାସାହେବ ଛୁଟିରେ କଟକ ଆସିଥାନ୍ତି । ମୁଁ ସାହସ ବାନ୍ଧି ଗଲି ତାଙ୍କର କ୍ୟାଣ୍ଟନ୍‌ମେଣ୍ଟ୍ ରୋଡ଼ ବାସଭବନକୁ ତାଙ୍କୁ ଦେଖା କରିବାକୁ । ଛାତି ଦୁକ୍ ଦୁକ୍ ହେଉଥାଏ । ଶ୍ରୀଯୁକ୍ତ ଆଚାର୍ଯ୍ୟ କହିଥିବାରୁ ଗଲି । ପରିଜାସାହେବଙ୍କୁ ସାକ୍ଷାତ କରିବାକୁ ଯିବାର ସାହସ ମୋର ନ ଥିଲା । କିଛି ସମୟ ଅପେକ୍ଷା ପରେ ଯେତେବେଳେ ଆସି ମୋ ସାଙ୍ଗରେ କଥାବାର୍ତ୍ତା କଲେ ମୋର ଡର ଭୟ ସବୁ ଉଭେଇଗଲା । ଏତେ ସରଳ ସୁନ୍ଦର ବ୍ୟବହାର ମୁଁ ଆଶା କରି ନ ଥିଲି । ବନାରସରେ କ'ଣ କରିବାକୁ ହେବ, କ'ଣ ନ କରିବାକୁ ହେବ ମୋତେ ବୁଝାଇସାରି ସେ ଘର ଭିତରକୁ ଚାଲିଗଲେ ।

ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ପ୍ରୋ-ଭାଇସ୍ ଚାନ୍ସେଲର୍ ହିସାବରେ ଡକ୍ଟର ପରିଜା ଥିଲେ ପ୍ରଶାସନିକ ମୁଖ୍ୟ । ଦକ୍ଷତାର ସହିତ କାର୍ଯ୍ୟ ତୁଲାଉଥିବାରୁ ଛାତ୍ର, ଶିକ୍ଷକ ଏବଂ କର୍ମଚାରୀମାନଙ୍କର ବିଶେଷ ଶ୍ରଦ୍ଧାଭାଜନ ହୋଇପାରିଥିଲେ । ବିଶ୍ୱବିଦ୍ୟାଳୟରେ ତାଙ୍କର ବେଶ୍ ଖାତିର ଥିଲା ଏବଂ ସୁନାମ ଥିଲା । ମୋର ଶିକ୍ଷକ ଡକ୍ଟର ଆସୁଣ୍ଡି ସବୁବେଳେ ତାଙ୍କର ଭୂୟସୀ ପ୍ରଶଂସା କରୁଥିଲେ ।

ମୁଁ ବନାରସ ବିଶ୍ୱବିଦ୍ୟାଳୟରୁ ଏମ୍.ଏସ୍‌ସି. ପାସ୍ କରି ୧୯୫୧ରେ ଲେକ୍‌ଚରର୍ ହେଲି ଏବଂ ଭାରତ ସରକାରଙ୍କ ଫେଲୋସିପ୍ ପାଇ ୧୯୫୩ରେ ଚିକାଗୋ ବିଶ୍ୱବିଦ୍ୟାଳୟକୁ ଗଲି ପିଏଚ୍.ଡି. କରିବାକୁ ଏବଂ ୧୯୫୬ରେ ଉକ୍ତ ଡିଗ୍ରୀ ଲାଭ କରି ପ୍ରଫେସର ସୁବ୍ରମଣ୍ୟ ଚନ୍ଦ୍ରଶେଖରଙ୍କ ପାଖରେ ରିସର୍ଚ୍ଚ ଆସୋସିଏଟ୍ ଭାବେ ଗବେଷଣା ଆରମ୍ଭ କଲା ପରେ ପରେ ଭାରତ ସରକାର ମୋତେ ଭାରତ ଫେରି ଆସିବାକୁ ନିର୍ଦ୍ଦେଶ ଦେଲେ । ମୋର ହାରିଗୁହାରି ଆଦୌ ଶୁଣିଲେ ନାହିଁ । ସେତେବେଳକୁ ପରିଜାସାହେବ ବନାରସ ଛାଡ଼ି ଉତ୍କଳ ବିଶ୍ୱବିଦ୍ୟାଳୟରେ ପୁଣି ଥରେ ଭାଇସ୍ ଚାନ୍ସେଲର୍ ହୋଇଥାନ୍ତି । ମୁଁ ତାଙ୍କ ପାଖକୁ ଚିଠି ଲେଖିଲି ଏବଂ ତାଙ୍କ ପ୍ରଚେଷ୍ଟାରେ ଭାରତ ସରକାର ମୋତେ ଦୁଇବର୍ଷ ରହିବାକୁ ଆଦେଶ ଦେଲେ । ପରିଜାସାହେବ ଏ ବ୍ୟାପାରରେ ସେସମୟର ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବଙ୍କ ସାହାଯ୍ୟ ନେଇଥିଲେ ।

ବିଦେଶରୁ ଫେରି ରେଭେନ୍ସା କଲେଜରେ ଯୋଗ ଦେଲା ପରେ ଚାକିରି କ୍ଷେତ୍ରରେ ମୋର ସବୁ ପ୍ରକାର ଅସୁବିଧା ଦୂର କରିବାରେ ପରିଜାସାହେବ ମୋତେ ସାହାଯ୍ୟ କରିଛନ୍ତି । ଥରେ ମୁଁ ତାଙ୍କୁ ସାକ୍ଷାତ କରିବାକୁ ଯାଇଥିଲାବେଳେ ରାଜସ୍ଥାନ ବିଶ୍ୱବିଦ୍ୟାଳୟ କୁଳପତି ହଂସ ମେହେଟା ମୋତେ ପ୍ରଫେସର ଭାବରେ ନିଯୁକ୍ତି ଦେବାପାଇଁ ଇଚ୍ଛୁକ ବୋଲି କହିଥିଲେ । ମୁଁ ମଧ୍ୟ ତାଙ୍କ ପାଖରୁ ଏ ସମ୍ପର୍କରେ ପତ୍ର ପାଇଥିଲି । ପରିଜାସାହେବ ମୋ ନାମ ନିଶ୍ଚୟ ସୁପାରିସ କରିଥିବେ ବୋଲି ମୁଁ ବୁଝିପାରିଲି । ଅବଶ୍ୟ ସେସମୟରେ ମୁଁ ମେଘନାଦ ସାହା ଇନ୍‌ଷ୍ଟିଚ୍ୟୁଟରୁ ଆସୋସିଏଟ୍ ପ୍ରଫେସର ପଦବୀ ପାଇ ସେଠିକି ଯିବାକୁ ସ୍ଥିର କରିସାରିଥିଲି ।

୧୯୬୦ ମସିହାରେ ପରିଜାସାହେବ ଭାରତୀୟ ବିଜ୍ଞାନ କଂଗ୍ରେସର ସଭାପତି ଭାବେ ନିର୍ବାଚିତ ହୋଇଥାନ୍ତି । ଆମେ ପ୍ରାୟ ୧୦ ଜଣ ରେଭେନ୍ସା କଲେଜର ଅଧ୍ୟାପକ ଯାଇଥାଉ ବମ୍ବେରେ ଏଇ କଂଗ୍ରେସରେ ଯୋଗଦେବାକୁ । ମୁଁ ଯେତେବେଳେ ରେଳ ଷ୍ଟେସନ୍‌ରେ କଟକ ବଗିରେ ଉଠେ ଏବଂ ଫାଷ୍ଟ କ୍ଲାସ୍ ଅପର ବର୍ଥକୁ ଉଠିବାକୁ ବସେ ଦେଖିଲି ଲୋୟର୍ ବର୍ଥରେ କିଏ ଜଣେ ଚଦର ଘୋଡ଼େଇ ହୋଇ ଶୋଇଛନ୍ତି । ଦେଖିଲାବେଳକୁ ସେ ହେଉଛନ୍ତି ପରିଜାସାହେବ । ଆରେ ବାପ୍‌ରେ, ମୁଁ କିପରି

ଉପରକୁ ଉଠିବି ? ପରିଜାସାହେବଙ୍କୁ କିପରି ନିଦରୁ ଉଠାଇବାକୁ ହେବ । ଏହା ଚିନ୍ତା କରୁଥିବା ସମୟରେ ପରିଜାସାହେବ ଛାଏଁ ଛାଏଁ ଉଠିପଡ଼ି ଅତି ସ୍ନେହପୂର୍ବକ ମୋତେ ଉପରକୁ ଉଠିବାକୁ ସାହାଯ୍ୟ କଲେ ।

ତା'ପରଦିନ ସକାଳେ ଆମେ ହାଓଡ଼ା ଷ୍ଟେସନ ଫାଷ୍ଟ କ୍ଲାସ୍ ୱେଟିଙ୍ଗ୍ ରୁମ୍‌କୁ ଯାଇ ଦେଖୁଁ ସେଠି ବସିଛନ୍ତି ପରିଜାସାହେବ । ଆମମାନଙ୍କୁ କହିଲେ ଶୀଘ୍ର ନିତ୍ୟକର୍ମ ଶେଷ କର । ତା'ପରେ ସେ ଆମକୁ ନେଲେ ଷ୍ଟେସନ ଭୋଜନାଳୟକୁ । ଆମେ ସମସ୍ତେ ତାଙ୍କ ସାଙ୍ଗରେ ଗୋଟିଏ ବଡ଼ ଗୋଲଟେବୁଲ୍ ଚାରିପଟେ ବସି ବ୍ରେକ୍‌ଫାଷ୍ଟ ଖାଇସାରିବା ପରେ ପରିଜାସାହେବ ପକେଟରୁ ପର୍ସ ବାହାର କରି ଆମ ସମସ୍ତଙ୍କ ବିଲ୍ ପେ'ମେଣ୍ଟ୍ କଲେ । ଆମେ ସବୁ ଚାହୁଁଥିଲୁ ଟିକିଏ କଲିକତା ସହର ବୁଲିଆସିବୁ । ପରିଜାସାହେବ ଆମ ମନକଥା ଜାଣିପାରିଲେ । ସେ କହିଲେ ତମେ ସବୁ ଯାଅ, ମୁଁ ୱେଟିଙ୍ଗ୍ ରୁମ୍‌ରେ ତମମାନଙ୍କ ଲଗେଜ ଜଗିବି । କିଛି ଚିନ୍ତା କରିବାର ନାହିଁ । ସହର ଘୂରି ଫେରିବା ପରେ ପରିଜାସାହେବ ଗଲେ ଦମ୍‌ଦମ୍ ଏୟାରପୋର୍ଟ ପ୍ଲେନ୍ ଧରିବାକୁ ବମ୍ବେକୁ । ଆମେ ଚାଲିଲୁ ପ୍ଲାଟ୍‌ଫର୍ମକୁ ବମ୍ବେ ମେଲ୍ ଧରିବାକୁ ।

ବିଜ୍ଞାନ କଂଗ୍ରେସ ଅଧିବେଶନ ବସିଲା ବମ୍ବେ ସହର ଓଭାଲ୍ ପଡ଼ିଆରେ । ତାଏସ୍‌ର କେନ୍ଦ୍ରରେ ବସିଛନ୍ତି ସଭାପତି ପରିଜାସାହେବ । ତାଙ୍କ ପାଖରେ ବସିଛନ୍ତି ଭାରତର ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହେରୁ ଏବଂ ବିଦେଶରୁ ଆସିଥିବା ବହୁ ସ୍ୱନାମଧନ୍ୟ ବୈଜ୍ଞାନିକଗଣ । ମୋର ମନେଅଛି ସେଥର ଆସିଥିଲେ ଡେନ୍‌ମାର୍କରୁ ପ୍ରଫେସର ନି'ଲ୍‌ସ୍ ବୋ'ର, ଯୁକ୍ତରାଷ୍ଟ୍ର ଆମେରିକାରୁ ପ୍ରଫେସର ଜର୍ଜ ଗାମୋ ଏବଂ ଇଂଲଣ୍ଡରୁ ପ୍ରଫେସର୍ ଅବ୍‌ଦୁସ୍ ସଲାମ । କଟକ ଫେରି ବୁଝିଲି ପରିଜାସାହେବ ସଲାମ୍‌ଙ୍କୁ ପୁରୀ ଗସ୍ତରେ ପଠାଇଛନ୍ତି । ଏ କଥା ବହୁବର୍ଷ ପରେ ସଲାମ୍ ମୋତେ କହିଥିଲେ ଏବଂ ଦୁଃଖ ପ୍ରକାଶ କରିଥିଲେ ଯେ ସେ ଜଗନ୍ନାଥଙ୍କୁ ଦର୍ଶନ କରିପାରିଲେ ନାହିଁ ।

ଆଉ ଗୋଟିଏ କଥା ମନେ ପଡୁଛି । କଟକ ରେଭେନ୍ସା କଲେଜରେ ବସିଥାଏ ଭାରତୀୟ ବିଜ୍ଞାନ କଂଗ୍ରେସ ଅଧିବେଶନ । କଲେଜ ପ୍ରାଙ୍ଗଣରେ ଟି'ପାର୍ଟିବେଳେ ହସି ଉଠୁଥାଏ କଲେଜ ପରିସର । ବୈଜ୍ଞାନିକ, ଉଚ୍ଚପଦସ୍ଥ କର୍ମଚାରୀ, କଟକର ବିଶିଷ୍ଟ ଭଦ୍ରବ୍ୟକ୍ତିବୃନ୍ଦ, ରାଜନୈତିକ ମନ୍ତ୍ରୀ ଏବଂ ଛାତ୍ରସମୂହ । ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୟାନନ୍ଦ (ବିଜୁ) ପଟ୍ଟନାୟକ ଏବଂ ଶିକ୍ଷାମନ୍ତ୍ରୀ ଶ୍ରୀ ପବିତ୍ର ମୋହନ ପ୍ରଧାନଙ୍କ ଉପସ୍ଥିତି କଥା ମୋର ମନେ ଅଛି ।

ମୁଁ ଏବଂ ଅନ୍ୟ କେତେଜଣ ଶିକ୍ଷକ ଡକ୍ଟର ସଦାଶିବ ମିଶ୍ରଙ୍କ ସଙ୍ଗେ ଆଲୋଚନାରେ ବ୍ୟସ୍ତ । ଦେଖିଲି ଆମ ଆଡ଼କୁ ଦ୍ରୁତଗତିରେ ଆସୁଛନ୍ତି

ପରିଜାସାହେବ । ପାଖରେ ପହଞ୍ଚି ମୋତେ କହିଲେ, ''ତ୍ରିଲୋଚନ, ଏସବୁ ବୈଜ୍ଞାନିକମାନଙ୍କ ଭିତରୁ ଜଣେ ଆଷ୍ଟ୍ରୋନମର୍ ଖୋଜି ବାହାର କର ତ । ଶିକ୍ଷାମନ୍ତ୍ରୀ ପବିତ୍ର ମୋହନ ପ୍ରଧାନ ତାଙ୍କୁ ପଚାରିବେ ପଠାଣି ସାମନ୍ତ ତଥ୍ୟ ବିଷୟରେ । ପଠାଣି ସାମନ୍ତ କହିଛନ୍ତି ବ୍ରିଟିଶ୍‌ମାନେ ଭୁଲ । ପୃଥିବୀ ସୂର୍ଯ୍ୟ ଚାରିପଟେ ଘୂରୁ ନାହିଁ । କଥାଟା ଠିକ୍ ଓଲଟା'' । ଏ କଥା ଶୁଣିବା ମାତ୍ରେ ଡକ୍ଟର ସଦାଶିବ ମିଶ୍ର କହିଲେ, ''ସାର୍, ଏଇ ଛାର କଥାପାଇଁ ଆଷ୍ଟ୍ରୋନମର୍‌ଙ୍କ ପାଖକୁ ଯିବା ଦରକାର କ'ଣ ? ମୋଭଳି ଜଣେ ସାଧାରଣ ଲୋକ ତା'ର ଉତ୍ତର ଦେଇପାରିବ । ବ୍ରିଟିଶ୍‌ମାନେ ଠିକ୍; ପଠାଣି ସାମନ୍ତ ଭୁଲ କହିଛନ୍ତି'' । ଏଥିରେ ଆମେମାନେ ସମସ୍ତେ ଏକମତ ହେଲୁଁ । ପରିଜାସାହେବ ଫେରିଗଲେ ।

କିନ୍ତୁ ପ୍ରକୃତରେ କ'ଣ ଆମେ ସବୁ ଠିକ୍ କହିଥିଲୁଁ ? ବହୁ ବର୍ଷ ପରେ ମୁଁ ବର୍ତ୍ତମାନ ଏ କଥାର ସତ୍ୟାସତ୍ୟ ବୁଝିଛି । ପଠାଣି ସାମନ୍ତ କେବେହେଁ କହି ନାହାନ୍ତି ସୂର୍ଯ୍ୟ ପୃଥିବୀ ଚାରିପଟେ ଘୂରୁଛି । ସେ କହିଛନ୍ତି ଯେ ପୃଥିବୀ ଏବଂ ସୂର୍ଯ୍ୟ ଉଭୟ ସେମାନଙ୍କର ଭାରକେନ୍ଦ୍ର ଚାରିପଟେ ଘୂରୁଛନ୍ତି । କ୍ଲାସିକାଲ୍ ମେକାନିକ୍‌ସ ଠିକ୍ ଏଇ କଥା କହୁଛି । ଯାହାହେଉ, ସେ ଏକ ଗୂଢ଼ ବିଷୟ । ପରିଜାସାହେବ ମଧ୍ୟ ହାଇସ୍କୁଲ ଭୂଗୋଳରେ ଆମମାନଙ୍କ ଭଳି ସୂର୍ଯ୍ୟ ଚାରିପଟେ ପୃଥିବୀ ଘୂରିବାକଥା ପଢ଼ିଥିଲେ । ମାତ୍ର ଏକ ବୈଜ୍ଞାନିକ ଭାବରେ ସେ ନିଜ ସାଧାରଣ ଜ୍ଞାନକୁ ଉପେକ୍ଷା କରି ଜଣେ ବିଶେଷଜ୍ଞଙ୍କ ପାଖରୁ ଏ ବିଷୟରେ ପ୍ରକୃତ ତଥ୍ୟ ଜାଣିବାକୁ ଚାହୁଁଥିଲେ ।

ପରିଜାସାହେବଙ୍କ ଶେଷଦର୍ଶନ ହୁଏ ବାଣୀବିହାର ଅଭ୍ୟର୍ଥନା ସଭାରେ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଅଡ଼ିଟୋରିଅମ୍‌ରେ ଯେଉଁଠି ଶ୍ରୀମତୀ ପରିଜା ମଧ୍ୟ ଉପସ୍ଥିତ ଥିଲେ । ଅଭ୍ୟର୍ଥନାର ଉତ୍ତରରେ ସେ ଯାହା କହିଲେ, ତାହା ବଡ଼ ଅସ୍ପଷ୍ଟ ଥିଲା । ଗୋଟିଏ କଥା ଶୁଣାଗଲା ''ମଣିଷ ବେଶି ବର୍ଷ ବଞ୍ଚିବା ଉଚିତ ନୁହେଁ, କାରଣ ଏହା ଘୋର କଷ୍ଟଦାୟକ ।''

ପରିଜାସାହେବଙ୍କ ସ୍ମୃତିରକ୍ଷା ପାଇଁ ବେଶି କିଛି କରାଯାଇପାରି ନାହିଁ । ଏଥିପାଇଁ ପରିଜା ପ୍ରଫେସରସିପ୍, ପରିଜା ଲାଇବ୍ରେରି ଏବଂ ପ୍ରାଣକୃଷ୍ଣ ପରିଜା ମାର୍ଗ ଯଥେଷ୍ଟ ନୁହେଁ । ଓଡ଼ିଶା ସରକାର ଏ ଦିଗରେ ବିଶେଷ ପଦକ୍ଷେପ ନେବେ ବୋଲି ମୋର ଆଶା ।

# ପ୍ରଫେସର ପ୍ରାଣକୃଷ୍ଣ ପରିଜା
# ବଜ୍ର ପରି କଠିନ, ପୁଷ୍ପ ପରି କୋମଳ

**ଦେବେନ୍ଦ୍ର ଚନ୍ଦ୍ର ମିଶ୍ର**

ପ୍ରଫେସର ପରିଜା ନିଜର ତୀକ୍ଷ୍ଣ ମେଧାଶକ୍ତି, ବଳିଷ୍ଠ ବ୍ୟକ୍ତିତ୍ୱ ଓ ସହଜାତ ମହତ ଗୁଣରାଶି ଦ୍ୱାରା ଓଡ଼ିଶାର ଶିକ୍ଷା, ସଂସ୍କୃତି ଓ ସାମାଜିକ ଜୀବନରେ ଗଭୀର ରେଖାପାତ କରି ଯାଇଛନ୍ତି ।

ମୁଁ ୧୯୩୮ ମସିହା ଜୁଲାଇ ମାସରେ ରେଭେନ୍ସା କଲେଜରେ ପ୍ରଥମ ବାର୍ଷିକ ଶ୍ରେଣୀରେ ନାମ ଲେଖାଇଥିଲି, ସେତେବେଳକୁ ପ୍ରଫେସର ଶ୍ୟାମଚନ୍ଦ୍ର ତ୍ରିପାଠୀ ରେଭେନ୍ସା କଲେଜର ଅଧ୍ୟକ୍ଷ ପଦରୁ ପଦୋନ୍ନତି ପାଇ ଓଡ଼ିଶାର ଡି.ପି.ଆଇ. ହୋଇଥାନ୍ତି । ପ୍ରଫେସର ପରିଜା ତାଙ୍କ ସ୍ଥାନରେ ଅଧ୍ୟକ୍ଷ ହୋଇ ଯୋଗ ଦେଇଥାନ୍ତି । ସେତେବେଳେ ତାଙ୍କର ଖ୍ୟାତି ସମଗ୍ର ଓଡ଼ିଶାରେ ବ୍ୟାପ୍ତ ହୋଇଯାଇଥାଏ । ଜଣେ ବିଶ୍ୱବିଖ୍ୟାତ ବୈଜ୍ଞାନିକ ଭାବରେ, ଜଣେ ଉଚ୍ଚକୋଟୀର ଗବେଷକ ହିସାବରେ, ଜଣେ ଆଦର୍ଶ ଶିକ୍ଷକ ଭାବରେ ସେ ପରିଚିତ ଥିଲେ । ଓଡ଼ିଶାର ଅନ୍ଧକାରମୟ ଯୁଗରେ ପ୍ରଫେସର ଓ ପ୍ରଫେସର ପରିଜା ଓଡ଼ିଶା ଛାତ୍ରସମାଜ ଆଗରେ ଗୁଣ, କର୍ମ ଓ ସାଧନାର ଜ୍ୱଳନ୍ତ ଉଦାହରଣ ଓ ପ୍ରେରଣାର ଉତ୍ସ ଥିଲେ ।

ଡକ୍ଟର ପରିଜା ପ୍ରତିଦିନ ସକାଳ ୧୦ଟା ପୂର୍ବରୁ ନିଜ କ୍ୱାଟରରୁ ଚାଲି ଚାଲି କଲେଜ ଆସୁଥିଲେ ଏବଂ ଠିକ୍ ଦଶଟା ସମୟରେ ଅଫିସରେ ପହଞ୍ଚୁଥିଲେ । ତାଙ୍କୁ ଦେଖିବାକୁ ଇଚ୍ଛା କରୁଥିବା ପିଲାମାନେ କଲେଜ କ୍ୱାଡ୍ରାନ୍‌ଗଲ ପାଖରେ ଅପେକ୍ଷା କରୁଥିଲେ । ତାଙ୍କର ଆସିବା ଗୋଟିଏ ଅଭୁଲା ଦୃଶ୍ୟ ଥିଲା । ସେ ସିଧାସଳଖ ହୋଇ ଚାଲୁଥିଲେ । ପ୍ରତି ପଦକ୍ଷେପ ବଳିଷ୍ଠ ଅଥଚ କ୍ଷିପ୍ର ଓ ସଂଯତ ଥିଲା । ମୁଖମଣ୍ଡଳରେ ଥିଲା ଗାମ୍ଭୀର୍ଯ୍ୟର ଦୀପ୍ତି । ସେ କୌଣସି ଆଡ଼କୁ ନ ଚାହିଁ ନିଜ ଗନ୍ତବ୍ୟପଥରେ ଆଗକୁ ଆଗକୁ ମାଡ଼ି ଚାଲୁଥିଲେ । ଯଦି କୌଣସି ଛାତ୍ର ତାଙ୍କ ହାବୁଡ଼େ ପଡ଼ି ନମସ୍କାର କରୁଥିଲା, ସେ ଗତି ଶିଥିଳ ନ କରି ଗୋଟିଏ ହାତ ଟେକି ପ୍ରତି ନମସ୍କାର କରୁଥିଲେ । ସଭାସମିତିମାନଙ୍କରେ ତାଙ୍କୁ ଦେଖିବାର ଓ ଶୁଣିବାର ସୁଯୋଗ ମିଳୁଥିଲା ।

ମୁଁ ରେଭେନ୍ସା କଲେଜରେ ୧୯୩୮-୧୯୪୦ ଦୁଇବର୍ଷ ପଢ଼ିଥିଲି, ସେହି ସମୟରେ ଶିକ୍ଷା ବାତାବରଣ ଖୁବ୍ ଭଲ ଥିଲା । ପରିଜାସାହେବ ନିଜେ ଜଣେ କର୍ତ୍ତବ୍ୟନିଷ୍ଠା ଶୃଙ୍ଖଳିତ ଓ ନିୟମାନୁବର୍ତ୍ତୀ ବ୍ୟକ୍ତି ଥିଲେ । ଶିକ୍ଷାକ୍ଷେତ୍ରରେ ବେନିୟମ କାର୍ଯ୍ୟ ଓ ବିଶୃଙ୍ଖଳିତ ଆଚରଣକୁ ସେ ବରଦାସ୍ତ କରୁ ନ ଥିଲେ । କର୍ମକ୍ଷେତ୍ରରେ ସେ କଠୋର ଓ ଅନମନୀୟ ଓ ବଜ୍ର ପରି କଠିନ ଜଣା ପଡୁଥିଲେ ମଧ୍ୟ, ତାଙ୍କ ହୃଦୟ ଫୁଲ ପରି କୋମଳ ଥିଲା । ସେ ଜଣେ ଉଚ୍ଚକୋଟୀର ନୀତିବାଦୀ ଓ ନ୍ୟାୟବାନ୍ ବ୍ୟକ୍ତି ଥିଲେ । ନୀତିନିୟମକୁ ଏଡ଼ାଇଦେଇ କାହାକୁ ଉପକୃତ କରିବା ତାଙ୍କ ଚିନ୍ତାର ବାହାରେ ଥିଲା । ୧୯୪୦ ମସିହା ଜାନୁଆରୀ ୨୬ ତାରିଖରେ ଶ୍ରୀ ବିଭୁଧେନ୍ଦ୍ର ମିଶ୍ର ଓ ଶ୍ରୀ ନୀଳମଣି ରାଉତରାୟ କଲେଜ କୋଠା ଉପରେ କଂଗ୍ରେସର ଜାତୀୟ ପତାକା ଉଡ଼ାଇଥିଲେ । ସେମାନଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନ କରାଯାଇଥିଲା । ସେମାନେ ଏହାକୁ ଗ୍ରହଣ ନ କରିବା ଯୋଗୁଁ ସେମାନଙ୍କୁ କଲେଜରୁ ବହିଷ୍କାର କରାଯାଇଥିଲା । ଏହି ଶାସ୍ତି ବିରୋଧରେ କଲେଜରେ ଛାତ୍ର ଧର୍ମଘଟ ତୀବ୍ର ଆକାର ଧାରଣ କରିଥିଲା । ଛାତ୍ରମାନେ ଶ୍ରେଣୀବର୍ଜ୍ଜନ କରି, ସଭାସମିତି କରି ବହିଷ୍କାର ଆଦେଶର ପ୍ରତ୍ୟାହାର ଲାଗି ଦାବି କରିଥିଲେ । ଶ୍ରୀ ରାଉତରାୟ ବି.ଏ. ପରୀକ୍ଷାର୍ଥୀ ଥିଲେ । ବହିଷ୍କାର ଆଦେଶ ଯୋଗୁଁ ସେ ପରୀକ୍ଷା ଦେବାରୁ ବଞ୍ଚିତ ହୋଇଥିଲେ । ତେଣୁ ଛାତ୍ରମାନଙ୍କ ଦ୍ୱାରା ପରୀକ୍ଷା ବର୍ଜନ ଆନ୍ଦୋଳନ ହେଲା ।

ପରୀକ୍ଷା ହେଲା ସତ, କିନ୍ତୁ ବହୁତ ପିଲା କ୍ଷତିଗ୍ରସ୍ତ ହେଲେ । କେତେକ ପରୀକ୍ଷା ଦେଇପାରିଲେ ନାହିଁ । କେତେକ ପଢ଼ାପଢ଼ି କରି ପାରି ନ ଥିବାରୁ ପରୀକ୍ଷାରେ ଭଲ କରିପାରିଲେ ନାହିଁ ଓ କେତେକ ପରୀକ୍ଷାରେ ଫେଲ ହେଲେ ।

ଏହି ଘଟଣା ପରେ ପରିଜାସାହେବଙ୍କ ଚରିତ୍ରର ଅନ୍ୟ ଦିଗ, ସ୍ନେହ, ସହାନୁଭୂତି, ଉଦାରତା ଓ କ୍ଷମାର ପରିପ୍ରକାଶ ହୋଇଥିଲା । ପିଲାମାନଙ୍କ ଦୁର୍ଦ୍ଦଶାରେ ସେ ଖୁବ୍ ଦୁଃଖିତ ହୋଇଥିଲେ । ସେମାନଙ୍କୁ ବିଭିନ୍ନ ପ୍ରକାରରେ ସାହାଯ୍ୟ କରିଥିଲେ ।

ରେଭେନ୍ସା କଲେଜରୁ ଆ.ଏ. ପାସ୍ କଲାପରେ ମୁଁ ବି.ଏ. ପଢ଼ିବାକୁ ପାଟନା ଯାଇ ପାଟନା କଲେଜରେ ନାମ ଲେଖାଇଥିଲି । ବି.ଏ. ଓ ଏମ୍.ଏ. ପାସ୍କରି ୧୯୪୪ରେ ମୁଁ କଟକ ଫେରି ଆସିଲି । ସେତେବେଳକୁ ପ୍ରଫେସର ପରିଜା ରେଭେନ୍ସା କଲେଜ ପ୍ରିନ୍ସିପାଲ ସହିତ ଅନ୍ୟ ଦାୟିତ୍ୱ ବହନ କରୁଥିଲେ । ୧୯୪୩ରେ ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ଥାପିତ ହେଲାପରେ, ସେ ଏହାର ଅସ୍ଥାୟୀ କୁଳପତି ରୂପେ ନିଯୁକ୍ତ ହୋଇଥିଲେ । ୧୯୪୪ ମସିହାରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ଥାୟୀ କୁଳପତି ଭାବରେ ନିଯୁକ୍ତି ପାଇଥିଲେ । ୧୯୪୫ ମସିହାରୁ ୧୯୪୮ ମସିହା ପର୍ଯ୍ୟନ୍ତ ସେ ଏହି ଦାୟିତ୍ୱ ସହ ଓଡ଼ିଶା କୃଷିବିଭାଗର ନିର୍ଦ୍ଦେଶକ ଦାୟିତ୍ୱ ତୁଲାଇଥିଲେ । ୧୯୪୮ରୁ

୧୯୫୧ ପର୍ଯ୍ୟନ୍ତ ସେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ପ୍ରୋ-ଭାଇସ୍ ଚାନସେଲର (Pro-Vice-Chanceller) ଥିଲେ । ସେଠାରୁ ଅବ୍ୟାହତି ପାଇ ସେ ୧୯୫୨ ରୁ ୧୯୫୭ ପର୍ଯ୍ୟନ୍ତ ଓଡ଼ିଶା ବିଧାନସଭାର ସଭ୍ୟ ହୋଇଥିଲେ । ୧୯୫୬ ମସିହାରେ ସେ ପୁଣି ଉତ୍କଳ ବିଶ୍ୱବିଦ୍ୟାଳୟରେ କୁଳପତି ଭାବରେ ନିଯୁକ୍ତି ପାଇଥିଲେ ଓ ସେହି ପଦରେ ୧୯୬୬ ପର୍ଯ୍ୟନ୍ତ ଦୀର୍ଘ ଦଶବର୍ଷ ରହିଥିଲେ ।

୧୯୫୭ରେ ମୁଁ ରେଭେନ୍ସା କଲେଜରେ ଅର୍ଥନୀତି ବିଭାଗରେ ପ୍ରଫେସର ହେଲାପରେ ବିଶ୍ୱବିଦ୍ୟାଳୟ ସିନେଟ୍ ଓ ଏକାଡେମିକ୍ କାଉନସିଲର ସଦସ୍ୟ ହୋଇଥିଲି । ପରେ ସିଣ୍ଡିକେଟ୍‌କୁ ସଦସ୍ୟରୂପେ ନିର୍ବାଚିତ ହୋଇଥିଲି । ଏହି ସମୟରେ ପରିଜାସାହେବଙ୍କ ସହିତ ମୋର ସଂପର୍କ ନିକଟତର ହୋଇଥିଲା ।

କୁଳପତି ହିସାବରେ ପ୍ରଫେସର ପରିଜାଙ୍କ ବିରାଟ ଅବଦାନ ସମସ୍ତଙ୍କୁ ଜଣାଅଛି । ତାଙ୍କ ସମୟରେ ବିଶ୍ୱବିଦ୍ୟାଳୟ କଟକରୁ ତାର ନିଜ କ୍ୟାମ୍ପସ୍ ବାଣୀବିହାରକୁ ସ୍ଥାନାନ୍ତରିତ ହୋଇଥିଲା । ସେଠାରେ ସ୍ନାତକୋତ୍ତର ବିଭାଗ, ଛାତ୍ରାବାସ, ଅଧ୍ୟାପକ ଓ କର୍ମଚାରୀଙ୍କ ବାସଗୃହ ଓ ବିଶ୍ୱବିଦ୍ୟାଳୟ ଅଫିସ ଗୃହ ତାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ନିର୍ମାଣ କରାଯାଇଥିଲା । ଗୋଟିଏ ପରେ ଗୋଟିଏ, ଏହିପରି ୧୧ଟି ସ୍ନାତକୋତ୍ତର ବିଭାଗ ଖୋଲାଯାଇଥିଲା । ଏହି ଦଶବର୍ଷ ମଧ୍ୟରେ ଉତ୍କଳ ବିଶ୍ୱବିଦ୍ୟାଳୟ ଏକ ଉଚ୍ଚମାନର ଶିକ୍ଷାଦାନୀ ବିଶ୍ୱବିଦ୍ୟାଳୟ ଭାବରେ ଦେଶରେ ପ୍ରତିଷ୍ଠା ଲାଭ କରିଥିଲା ।

ପ୍ରଫେସର ପରିଜାଙ୍କର ସ୍ନେହ ଓ ସହାନୁଭୂତିପୂର୍ଣ୍ଣ ବ୍ୟବହାରରେ ଛାତ୍ର, ଶିକ୍ଷକ, କର୍ମଚାରୀ ସମସ୍ତେ ମୁଗ୍ଧ ହୋଇ ଯାଇଥିଲେ । ଏହିସବୁ ସତ୍ତ୍ୱେ କର୍ତ୍ତବ୍ୟ କ୍ଷେତ୍ରରେ ସେ କୌଣସି ତ୍ରୁଟି, ବିଚ୍ୟୁତି, ବିଶୃଙ୍ଖଳା ସହ୍ୟ କରି ପାରୁ ନ ଥିଲେ । ତେଣୁ ତାଙ୍କ କାର୍ଯ୍ୟକାଳ ବିଶ୍ୱବିଦ୍ୟାଳୟର ପରିବେଶ ଶାନ୍ତ ଓ କର୍ମମୁଖର ଥିଲା ।

ତାଙ୍କର ସିଣ୍ଡିକେଟ୍ ଓ ସିନେଟ୍ ପରିଚାଳନା ପ୍ରଣାଳୀ ଆଦର୍ଶ ସ୍ଥାନୀୟ ଥିଲା । ସଭାକୁ ଆସିବା ଆଗରୁ ଆଲୋଚନାର ବିଷୟବସ୍ତୁକୁ ଭଲଭାବରେ ଅଧ୍ୟୟନ କରି, ନିଜର ମତାମତ ଟିପି କରି ରଖୁଥିଲେ । ସଭାରେ ସଭ୍ୟମାନଙ୍କୁ ଆଲୋଚନାରେ ଭାଗ ନେବାକୁ ଓ ମତାମତ ଦେବାକୁ ଉତ୍ସାହିତ କରୁଥିଲେ । କିନ୍ତୁ କେହି ଅବାନ୍ତର କଥା ଉଠାଇଲେ, ତାକୁ ଆଲୋଚନା ବସ୍ତୁ ଉପରକୁ ଆସି କିଛି ନୂଆ କଥା କହିବାକୁ କହୁଥିଲେ । ଏହି ସବୁ କାରଣ ଯୋଗୁଁ ନିର୍ଦ୍ଧାରିତ ସମୟ ମଧ୍ୟରେ କାର୍ଯ୍ୟକ୍ରମଗୁଡ଼ିକର ସମାପ୍ତି ହୋଇପାରୁଥିଲା ।

କର୍ତ୍ତବ୍ୟ କ୍ଷେତ୍ରରେ ତାଙ୍କର ସଂଯମ, କର୍ତ୍ତବ୍ୟନିଷ୍ଠା ଓ ସହନଶୀଳତା ଅସାଧାରଣ ଥିଲା । ଥରେ ସିଣ୍ଡିକେଟ୍ ସଭା ଲାଗି ଦିନ ସ୍ଥିର ହୋଇଥିଲା । ସଭାଦିନ

ପରିଜାସାହେବଙ୍କ ବଡ଼ଝିଅର ମୃତ୍ୟୁସମ୍ବାଦ ଆସି ପହଞ୍ଚିଲା । ସମସ୍ତେ ଭାବିଲେ ବୋଧହୁଏ ପରିଜାସାହେବ ଏହି ଦାରୁଣ ଦୁଃସମ୍ବାଦ ପାଇ ଭାଙ୍ଗି ପଡ଼ିଥିବେ, ତେଣୁ ମିଟିଂକୁ ଆସି ପାରିବେ ନାହିଁ । କିନ୍ତୁ ଆମ ସମସ୍ତଙ୍କୁ ଚକିତ କରି ପରିଜାସାହେବ ଠିକ୍ ସମୟରେ ଆସିଲେ । ମୁଖମଣ୍ଡଳ ବିଷଣ୍ଣ ଥିଲେ ମଧ୍ୟ ସମସ୍ତ ଦୁଃଖକୁ ଭିତରେ ଚାପିରଖି ସଭାକୁ ପରିଚାଳନା କରିଥିଲେ ଏବଂ ପରେ ଚାଲିଯାଇଥିଲେ । କୌଣସି ପରିସ୍ଥିତିରେ ନିଜର କର୍ତ୍ତବ୍ୟରେ ସେ ଅବହେଳା କରୁ ନ ଥିଲେ । ତାଙ୍କର ଏହି ଅଭୁତପୂର୍ବ କର୍ତ୍ତବ୍ୟବୋଧ ଆମ୍ଭମାନଙ୍କୁ ଗଭୀର ଭାବରେ ପ୍ରଭାବିତ କରିଥିଲା ।

ଏହି ସମୟରେ ପରିଜାସାହେବଙ୍କ ସହିତ ମୋର ବ୍ୟକ୍ତିଗତ ସଂପର୍କ ନିକଟତର ହୋଇଥିଲା । ୧୯୬୨ ମସିହା ମାର୍ଚ୍ଚ ୬ ତାରିଖରେ ମୋର ବଡ଼ପୁଅ ପ୍ରଦ୍ୟୋତର ବ୍ରତୋପନୟନରେ ପ୍ରଫେସର ପରିଜା ଯୋଗ ଦେଇଥିଲେ । ବାହାଘର ଆଲୋକସଜ୍ଜା ଓ ଅନ୍ୟାନ୍ୟ ଆୟୋଜନ ଦେଖି ସେ ମୋତେ ଓ ମୋ ସ୍ତ୍ରୀଙ୍କୁ କହିଲେ "ତୁମେ ପୁଅର ବାହାଘର କରୁଛ ନା ବ୍ରତଘର କରୁଛ ? ବ୍ରତଘରରେ ଏତେ ଖର୍ଚ୍ଚ କରିବା ଉଚିତ ନୁହେଁ । ତୁମେ ପୁଅର ପାଠପଢ଼ାରେ ବରଂ ଏହି ଟଙ୍କା ଖର୍ଚ୍ଚ କରିଥିଲେ ଭଲ ହୋଇଥାନ୍ତା ।" ସେ ଅଯଥା ଆଡ଼ମ୍ବର ଓ ଅପବ୍ୟୟର ବିରୋଧରେ ଥିଲେ । ଥରେ ବ୍ରହ୍ମପୁର ଖଲ୍ଲିକୋଟ କଲେଜରେ ଅର୍ଥନୀତିରେ ସ୍ନାତକୋତ୍ତର ଶ୍ରେଣୀ ଖୋଲିବା ନେଇ ପରିଦର୍ଶନରେ ଯିବାର ଥାଏ । ଉଦ୍ଭିଦ ବିଜ୍ଞାନରେ ମଧ୍ୟ ସ୍ନାତକୋତ୍ତର ଶ୍ରେଣୀ ଖୋଲିବାର ପ୍ରସ୍ତାବ ଥାଏ ।

ଦିନେ ପରିଜାସାହେବ ଫୋନ୍‌ରେ ମତେ କହିଲେ " ଦେବେନ୍ଦ୍ର, ତୁମେ କାଲି ବ୍ରହ୍ମପୁର ଖଲ୍ଲିକୋଟ କଲେଜ ଯାଇପାରିବ ?" ମୁଁ ହଁ କଲାରୁ ସେ କହିଲେ "ତାହାହେଲେ ମୁଁ ତମଘରୁ ତୁମକୁ ସକାଳ ୮ଟା ବେଳେ ନେଇଯିବି । ସାଙ୍ଗହୋଇ ଯିବା, ପରିଦର୍ଶନ କାମ ସାରି ଫେରିଆସିବା । ତା ପରଦିନ ଠିକ୍ ସକାଳ ୮ଟାରେ ମୋ କ୍ୱାଟରରେ ପହଞ୍ଚିଲେ । ମୁଁ ତାଙ୍କୁ ପାଛୋଟି ନେଇ ଡ୍ରଇଁରୁମରେ ବସାଇଲି । ସେତେବେଳେ ମୋର ପାଞ୍ଚବର୍ଷର ମଝିଆ ପୁଅ, ପ୍ରତାପ ଗୋଟିଏ ଫିଲ୍ମ ଗୀତ ଗାଇ ଗାଇ ସେଠାରେ ପହଞ୍ଚିଲା । ପରିଜାସାହେବ ତାକୁ ହସି ହସି ପଚାରିଲେ "ବାବୁ ତୁମେ କ'ଣ ଫିଲ୍ମ ଗୀତ ଗାଉଛ । ଆଉ କିଛି ଗୀତ କ'ଣ ଜାଣିନ ?" ସେ ସାଙ୍ଗେ ସାଙ୍ଗେ କହିଲା "ମୁଁ Nursery rhyme ମଧ୍ୟ ଜାଣିଛି ।" ବୋଲିପାରିବ ? ପରିଜାସାହେବ ପଚାରିଲେ । ସେ ସାଙ୍ଗେ ସାଙ୍ଗେ ଗୋଟିଏ Nursery ଗୀତ ବୋଲିଲା । ସେ ଖୁସିହୋଇ ତା ପିଠି ଥାପୁଡ଼ାଇ କହିଲେ "ହଁ ଏଣିକି ଏହି ଗୀତ ବୋଲିବ" ସେ ପିଲାମାନଙ୍କୁ ଏତେ ଭଲପା'ନ୍ତି ଓ ତାଙ୍କ ସାଙ୍ଗରେ ଏପରି ମୁକ୍ତ ଭାବରେ ମିଶିପାରନ୍ତି, ମୋତେ ଏ କଥା ଜଣା ନ ଥିଲା ।

କୁଳପତି ପଦରୁ ଅବ୍ୟାହତି ନେଲାପରେ ମଧ୍ୟ ଡକ୍ଟର ପରିଚ୍ଛା ନୀରବ ହୋଇ ବସି ନ ଥିଲେ । କଟକର ବିଭିନ୍ନ ଶିକ୍ଷା ଓ ସାଂସ୍କୃତିକ ଅନୁଷ୍ଠାନ ସହିତ ସେ ସଂପୃକ୍ତ ହୋଇଥିଲେ । ରେଭେନ୍ସା କଲେଜର ବଟାନି ବିଭାଗରେ ସେ ଗବେଷଣାରତ ଥିଲେ । ଅବସର ନେଲାପରେ ମଧ୍ୟ କାର୍ଯ୍ୟକ୍ଷେତ୍ରରେ ତାଙ୍କର ନିଷ୍ଠା, ସମୟାନୁବର୍ତ୍ତିତା ଓ ଶୃଙ୍ଖଳା ବଜାୟ ରହିଥିଲା ।

୧୯୬୯ ମସିହାରେ, ମୁଁ ରେଭେନ୍ସା କଲେଜର ଅଧ୍ୟକ୍ଷ ଥିବା ସମୟରେ ରେଭେନ୍ସା କଲେଜର ଶତବାର୍ଷିକୀ ଉତ୍ସବ ପାଳନ କରାଯାଇଥିଲା । ଶତବାର୍ଷିକୀ କମିଟିର ସଭାପତି ହେବାପାଇଁ ଅନୁରୋଧ କରିବାଲାଗି ମୁଁ ତାଙ୍କ ବାସଭବନକୁ ଯାଇଥିଲି । ମୁଁ ଶତବାର୍ଷିକୀ ଉତ୍ସବରେ ସଭାପତି ହେବାଲାଗି ଅନୁରୋଧ କଲି । ସବୁ କାର୍ଯ୍ୟକ୍ରମର ବିବରଣୀ ଶୁଣି ସଭାପତି ହେବାପାଇଁ ସମ୍ମତି ଦେଇଥିଲେ ।

ରେଭେନ୍ସା କଲେଜ ଶତବାର୍ଷିକୀ ଉତ୍ସବ ନାନା ବାଧାବିଘ୍ନ ଓ ପ୍ରତିରୋଧ ସତ୍ତ୍ୱେ ଖୁବ୍ ଭଲ ଭାବରେ ସମ୍ପନ୍ନ ହୋଇଥିଲା । ପ୍ରଫେସର ପରିଚ୍ଛା ଏକ ବିରଳ ବ୍ୟକ୍ତିତ୍ୱର ଅଧିକାରୀ ଥିଲେ । ତାଙ୍କଠାରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସଭ୍ୟତାର ସବୁ ଉତ୍କୃଷ୍ଟ ଗୁଣଗୁଡ଼ିକର ସମନ୍ୱୟ ଘଟିଥିଲା । ପାଶ୍ଚାତ୍ୟ ବୈଜ୍ଞାନିକ ଦୃଷ୍ଟିକୋଣ, ସାଂଗଠନିକ ଦକ୍ଷତା, ଶୃଙ୍ଖଳା, ସମୟାନୁବର୍ତ୍ତିତା, ନିୟମାନୁବର୍ତ୍ତିତା ସହିତ ପ୍ରାଚ୍ୟଜଗତର ଆଧ୍ୟାତ୍ମିକତା, ମାନବିକତା ସମଦର୍ଶିତା, ଦୟା ଓ କରୁଣା ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ଥିଲା । ସବୁକ୍ଷେତ୍ରରେ ସେ ବୈଜ୍ଞାନିକ ଦୃଷ୍ଟିକୋଣ ବଜାୟ ରଖୁଥିଲେ ଓ ତଦନୁସାରେ ସମସ୍ୟାର ବିଶ୍ଳେଷଣ କରୁଥିଲେ । ତେଣୁ ବିଜ୍ଞାନସମ୍ମତ ବେଦାନ୍ତ ଦର୍ଶନ ତାଙ୍କର ଆଦରଣୀୟ ଥିଲା । ସେଥିପାଇଁ ସେ କୁସଂସ୍କାର ଓ ଅନ୍ଧବିଶ୍ୱାସର ବିରୋଧୀ ଥିଲେ । କିନ୍ତୁ ସେ ନିଜର ମତବାଦ ଅନ୍ୟ ଉପରେ ଲଦି ଦେଉ ନ ଥିଲେ । ସେ କହୁଥିଲେ "ଯଦି ବା ସିଦ୍ଧ, ଲୋକ ବିରୁଦ୍ଧ, ନା କରଣୀୟ ନା କରଣୀୟ" । ସେ ଦୁଃଖରେ ଅନୁଦ୍‌ବିଗ୍ନ ଓ ସୁଖରେ ବିଗତସ୍ପୃହ ଥିଲେ । ତେଣୁ ସେ ଜଣେ ସ୍ଥିତପ୍ରଜ୍ଞ ବ୍ୟକ୍ତି ଥିଲେ । ତାଙ୍କ ଶିର ଆକାଶକୁ ସ୍ପର୍ଶ କରିଥିଲା ସତ, କିନ୍ତୁ ପାଦ ଦୁଇଟି ପୃଥିବୀ ଉପରେ ଦୃଢ଼ ଭାବରେ ଥିଲା । ସେ ମାଟିର ସନ୍ତାନ ଥିଲେ ତେଣୁ ସେ ମାଟିକୁ ଓ ମାଟିର ମଣିଷକୁ ଭୁଲି ନ ଥିଲେ । ବୌଦ୍ଧିକତାର ନିରସ ବିଶ୍ଳେଷଣ ତାଙ୍କର ବିରାଟ ହୃଦୟକୁ ଶୁଷ୍କ କରିପାରି ନ ଥିଲା । ସେଥିରୁ ସ୍ନେହ ଓ କରୁଣାର ନିରବଚ୍ଛିନ୍ନ ଧାରା ବହି ସଂସାରକୁ ପ୍ଲାବିତ କରିଥିଲା । ଏପରି ଯୋଗଜନ୍ମା ପୁରୁଷ ଏ ଧରାକୁ କ୍ୱଚିତ୍ ଆସିଥା'ନ୍ତି ।

# ଡକ୍ଟର ପରିଜା – ଏକ ଦୀପ୍ତ ପ୍ରତିଭା

ନାଗରୀମୋହନ ପଟ୍ଟନାୟକ

୧୯୨୮ ମସିହା । ମାଟ୍ରିକ୍ ପାସ୍ କରି ରେଭେନ୍ସା କଲେଜର ବିଜ୍ଞାନ ଶ୍ରେଣୀରେ ଯୋଗ ଦେଲି । ସେଇଠି ମୋର ପ୍ରଥମ ଦର୍ଶନ– ପରିଜାସାହେବଙ୍କ ସହିତ । ବିଦେଶରେ ଶିକ୍ଷିତ ଅଧ୍ୟାପକମାନଙ୍କୁ ସେକାଳରେ ସାହେବ ଆଖ୍ୟା ମିଳିଥିଲା । ସେହିପରି ମୋର ଦେଖା ତ୍ରିପାଠୀସାହେବଙ୍କ ଓ ଡକ୍ଟର ବଳଭଦ୍ର ପ୍ରସାଦଙ୍କ ସହ । ବିଜ୍ଞାନ ଶିକ୍ଷା ମୋର ହୁଏତ ମୋତେ ସୁହାଇଲା ନାହିଁ । ଅଳ୍ପ କେତେ ଦିନ ପରେ ମୁଁ କଳା ବିଭାଗକୁ ଚାଲି ଆସିଲି । ତଥାପି ବିଜ୍ଞାନ ଶିକ୍ଷକମାନଙ୍କର ମୋ ପ୍ରତି ଅସୀମ ଦୟା ଓ ଆଶୀର୍ବାଦ । ସାରା ଜୀବନରେ ପଦେ ପଦେ ସେମାନଙ୍କ ସ୍ନେହ ଉପଭୋଗ କରିଆସିଚି ।

ଡକ୍ଟର ପରିଜା ସେକାଳର ଜଣେ ପ୍ରଖ୍ୟାତ ଅଧ୍ୟାପକ । ତାଙ୍କ ଗବେଷଣା, ଖ୍ୟାତି, ଆବିଷ୍କାର ବା ଉଦ୍ଭାବନ ସମ୍ବନ୍ଧରେ କହିବାର ଯୋଗ୍ୟତା ମୋର ନ ଥିଲା ବା ନାହିଁ । ଯଦି କୌଣସି ଉତ୍କଳୀୟ ଭାରତରେ ଅନ୍ୟତ୍ର ପରିଚିତ ଥିଲେ– ସେ ଡକ୍ଟର ପରିଜା । ଲୋକେ ଜଗନ୍ନାଥ ଦେଶ ଜାଣିଥିଲେ, ମାତ୍ର ଓଡ଼ିଶାର ଅବସ୍ଥିତି ବା ବିସ୍ତାର ବିଷୟରେ ଅଜ୍ଞ ଥିଲେ । ପୂର୍ବଭାରତରେ କେତେକ ଲୋକ ଓଡ଼ିଶା ଗୋଟାଏ କୁଲି ଦେଶ ବୋଲି ଜାଣିଥିଲେ । ପଶ୍ଚିମ ଭାରତରେ ସେ ଧାରଣା ମଧ୍ୟ ନ ଥିଲା । ସାମ୍ବାଦିକଙ୍କ ଭାଷାରେ କଟକ ଗୋଟାଏ ଅଖ୍ୟାତ ପଲ୍ଲୀ– ନେତାଜୀଙ୍କ ଜନ୍ମସ୍ଥାନ ଅପରିଚିତ ରହିଥିଲା । କିନ୍ତୁ ରେଭେନ୍ସା କଲେଜ ଜଣାଶୁଣା ଅନୁଷ୍ଠାନ ଓ ଡକ୍ଟର ପରିଜା ଜଣାଶୁଣା ଅଧ୍ୟାପକ ଥିଲେ । ବିଶ୍ୱବିଦ୍ୟାଳୟମାନଙ୍କରେ ବିଶେଷତଃ ବିଜ୍ଞାନ ବିଭାଗରେ ଲାହୋର ଠାରୁ କଲିକତା ପର୍ଯ୍ୟନ୍ତ ଡକ୍ଟର ପରିଜା ବେଶ୍ ପରିଚିତ ଥିଲେ । କେହି ଯଦି ଓଡ଼ିଶାର କୌଣସି ଲୋକ ବିଷୟରେ ଆଲୋଚନା କରୁଥିଲେ ଡକ୍ଟର ପରିଜାଙ୍କ କଥା ପଡୁଥିଲା । ସେ ଥିଲେ ଓଡ଼ିଶାର ପରିଚାୟକ ।

ଥରେ ଏକ ଅଦ୍ଭୁତ ଘଟଣା ଘଟିଲା– ବନାରସରେ । ମୁଁ ବନାରସ ବିଶ୍ୱବିଦ୍ୟାଳୟକୁ ଯାଇଥିଲି କିଛି କାମରେ । ଜଣେ ଯୁବଶିକ୍ଷକ ମତେ ପାଦ ଛୁଇଁ ପ୍ରଣାମ କଲେ । ଯୁକ୍ତ ପ୍ରଦେଶରେ ଏପରି ଅଭିବାଦନ ପ୍ରଚଳିତ ଥିଲା । କିନ୍ତୁ ସେ ଅଭିବାଦନ ଥିଲା ଗଣ୍ୟମାନ୍ୟ ପ୍ରତିଭାବାନ୍‌ଙ୍କ ପାଇଁ । ହଠାତ୍ ବୁଝିପାରିଲି ନାହିଁ ଏପରି

ସମ୍ମାନର କାରଣ କଅଣ । ବିଶେଷ କୌତୂହଳ ହେଲା– କିଛି ପ୍ରଚ୍ଛନ୍ନ ଅନୁସନ୍ଧାନ ମଧ୍ୟ କଲି । ଶେଷରେ ଜଣାପଡ଼ିଲା ଯୁବଶିକ୍ଷକ ମତେ ଡକ୍ଟର ପରିଚ୍ଛାଙ୍କର ଜଣେ କୃତୀଛାତ୍ର ବୋଲି ଧରି ନେଇଥିଲେ– କିଛି ଅପପ୍ରଚାର ଫଳରେ । ଡକ୍ଟର ପରିଚ୍ଛାଙ୍କର ମୁଁ ମାତ୍ର କେତୋଟି ଦିନର ଛାତ୍ର– କୃତିତ୍ୱହୀନ ମଧ୍ୟ । ଯୁବଶିକ୍ଷକଙ୍କ ଅଭିବାଦନ ଡକ୍ଟର ପରିଚ୍ଛାଙ୍କ ଖ୍ୟାତି ପାଇଁ ଉଦ୍ଦିଷ୍ଟ । ସେ ଥିଲେ ଓଡ଼ିଶାର ପ୍ରତ୍ୟକ୍ଷ ପରିଚୟ ପତ୍ର । ନେତାଜୀ ଯାହା କରିଥିଲେ, ସେ କରି ନ ଥିଲେ ।

ପରବର୍ତ୍ତୀ ଯୁଗରେ ଡକ୍ଟର ପରିଚ୍ଛା ହେଲେ କୃଷି ନିର୍ଦ୍ଦେଶକ । ମୁଁ ଥିଲି ଅନୁଶାସନ ସଚିବ । ଯୁଦ୍ଧୋତ୍ତର ଯୋଜନା ଯୁଗ । ସାର୍ ଚନ୍ଦୁଲାଲ ତ୍ରିବେଦୀ ଓଡ଼ିଶାର ଗଭର୍ଣ୍ଣର– ଦୁର୍ଦ୍ଧର୍ଷ ଶାସକ । ଚାହୁଁଥିଲେ ଯୋଜନା କାର୍ଯ୍ୟ କେମିତି ତ୍ୱରାନ୍ୱିତ ହେଉ । ତାଙ୍କ ସମାଲୋଚନାରୁ ତ୍ରାହି ପାଇବା ଦୁଷ୍କର ବ୍ୟାପାର । କୌଣସି ପ୍ରଶାସନିକ ଅଫିସର ତାଙ୍କ ସହିତ ଯୁକ୍ତି କରୁ ନ ଥିଲେ । ତାଙ୍କର ମାସିକ ସମୀକ୍ଷା ଦିନେ ଚାଲିଥାଏ । ପ୍ରଶ୍ନ ଉଠିଲା ଯୋଜନା କାର୍ଯ୍ୟ କିପରି ତ୍ୱରାନ୍ୱିତ ହେବ । ପ୍ରଶ୍ନକର୍ତ୍ତା ନିଜେ ଗଭର୍ଣ୍ଣର– କିଏ କେତେ କଥା କହିଲେ ଯେତେବେଳେ ଡକ୍ଟର ପରିଚ୍ଛାଙ୍କ ପାଳି ଆସିଲା, ସେ ଗୋଟାଏ ବିରାଟ ଅପ୍ରିୟ କଥା କହିଲେ । ତାଙ୍କର ମତ ଥିଲା– ସମୀକ୍ଷାର ବି କେନ୍ଦ୍ରୀକରଣ ହେବା ଉଚିତ । ସେ ସ୍ପଷ୍ଟ କହିଲେ ଗଭର୍ଣ୍ଣର କେବଳ ବହୁ ବ୍ୟୟସାପେକ୍ଷ ଯୋଜନା ଦେଖନ୍ତୁ । ଅନ୍ୟ ଯୋଜନାର ଭାର ଅନ୍ୟମାନଙ୍କୁ ଦିଆଯାଉ । ଏ ମତ ଗଭର୍ଣ୍ଣରଙ୍କ ମତର ସ୍ପଷ୍ଟ ପ୍ରତିପାଦ । ସାର୍ ଚନ୍ଦୁଲାଲଙ୍କ ମୁହଁ ଲାଲ ପଡ଼ିଗଲା, ମାତ୍ର ସେ ନୀରବ ରହିଥିଲେ । ମତାମତ ସ୍ପଷ୍ଟ ପ୍ରକାଶ କରିବା ଡକ୍ଟର ପରିଚ୍ଛାଙ୍କର ଥିଲା ଆଉ ସମ୍ଭବତଃ ଥିଲା ସ୍ୱାଭିମାନ । ମିଟିଂ ପରେ ବହୁ ସଚିବ ପରିଚ୍ଛାଙ୍କର ଧନ୍ୟ ଧନ୍ୟ କରିଥିଲେ ।

ଡକ୍ଟର ପରିଚ୍ଛାଙ୍କର ଗୁଣ ଥିଲା ପ୍ରଚୁର– ପ୍ରତିଭା ବହୁମୁଖୀ । ସେ ଆଜି ନାହାନ୍ତି କିନ୍ତୁ ତାଙ୍କ ଯଶ ରହିଚି– ରହିଥିବ ମଧ୍ୟ । ଭଗବାନ୍‌ଙ୍କୁ ପ୍ରାର୍ଥନା ଓଡ଼ିଶାରେ ତାଙ୍କ ଭଳି କୃତୀ ସନ୍ତାନ ଯୁଗେ ଯୁଗେ ଜନ୍ମ ନିଅନ୍ତୁ ।

# ଡକ୍ଟର ପରିଜାଙ୍କ ସ୍ମୃତି

**ନିତ୍ୟାନନ୍ଦ କାନୁନଗୋ**

ଡକ୍ଟର ପରିଜାଙ୍କ ତିରୋଧାନରେ ଏକ ଯୁଗର ଅବସାନ ହେଲା । ଶିଷ୍ଟାଚାର, ଭଦ୍ରତା, ଶାଳୀନତା ଓ ମାନବିକ ସମ୍ପର୍କରେ ମାର୍ଜିତ ସୁରୁଚିସମ୍ପନ୍ନତା ଓ ସାମାଜିକ ଚାଲିଚଳଣିରେ ଯାହାକିଛି ମଧୁର ଓ ରମଣୀୟ ସେସବୁର ସେ ଥିଲେ ଏକ ପ୍ରତୀକ । ବିଦ୍ୟା ଆହରଣ ଓ ବିଦ୍ୱତ୍ତାରେ ସେ ସର୍ବୋଚ୍ଚ ସ୍ତରରେ ପ୍ରତିଷ୍ଠା ଲାଭ କରିଥିଲେ । ଇଂରେଜ ସରକାର ଓ ସ୍ୱାଧୀନତା ପରେ ଭାରତ ସରକାରଙ୍କଠାରୁ ସେ ଉପାଧିଦ୍ୱାରା ଭୂଷିତ ହୋଇ ସମ୍ମାନିତ ହୋଇଥିଲେ । ସେ କୌଣସି ଉପାଧି ପାଇବାକୁ ଇଚ୍ଛା ପ୍ରକାଶ କରି ନ ଥିଲେ; ତଥାପି ସମ୍ମାନ ପଦପଦବୀ ଦ୍ୱାରା ତାଙ୍କୁ ଭୂଷିତ କରାଯାଇଥିଲା ।

ବିଜ୍ଞାନ ଓ ଶିକ୍ଷା ସମ୍ବନ୍ଧୀୟ ବିଷୟବସ୍ତୁରେ ତାଙ୍କର ପରାମର୍ଶ ଓ ମତାମତ ସାରା ଦେଶରେ ମଗା ଯାଉଥିଲା ଏବଂ ଦେଶରେ ଏଭଳି କୌଣସି ବିଶ୍ୱବିଦ୍ୟାଳୟ କିମ୍ବା ଉଚ୍ଚକୋଟୀର ଗବେଷଣା ସଂସ୍ଥା ନ ଥିଲା ଯେଉଁଠି ସାହାଯ୍ୟ ପ୍ରଦାନ କରିବାକୁ ତାଙ୍କୁ ନିମନ୍ତ୍ରଣ କରାଯାଇ ନ ଥିଲା । ଦୈନନ୍ଦିନ ଜୀବନରେ ତାଙ୍କର ସରଳତା ଓ ଅମାୟିକତ୍ୱ ଅସାଧାରଣ ଥିଲା । ତାଙ୍କ ଜୀବନର ଶେଷ ଦିନ ପର୍ଯ୍ୟନ୍ତ ଅର୍ଥାତ୍ ତାଙ୍କୁ ବାର୍ଦ୍ଧକ୍ୟ ଜରାଗ୍ରସ୍ତ କରିବା ପର୍ଯ୍ୟନ୍ତ, ତାଙ୍କ ମୃତ୍ୟୁର ପ୍ରାୟ ଏକ ମାସ ପୂର୍ବରୁ ସେ ତାଙ୍କର ଲୁଗା ନିଜେ ସଫା କରୁଥିଲେ ଓ ନିଜ ଜୋତା ନିଜେ ପାଲିସ୍ କରୁଥିଲେ । ମୁଁ ଅନୁଭବ କରିଛି ଯେ ତାଙ୍କର ଏଭଳି କିଛି ବିରଳ ଗୁଣ ଥିଲା ଯାହାକୁ ମୁଁ ଭାଷାରେ ପରିସ୍ଫୁଟ କରିବାକୁ ଅସମର୍ଥ ଯାହାକି ତାଙ୍କୁ ବନ୍ଧୁବାନ୍ଧବଙ୍କ ଗହଣରେ ଓ ବିଶେଷତଃ ସାମାଜିକ ଉତ୍ସବରେ ଏକ ଅତି ବିଶିଷ୍ଟ ଆସନ ପ୍ରଦାନ କରୁଥିଲା ।

ମୋର ପିଲାଦିନଠୁ ଓ ପରବର୍ତ୍ତୀ ସମୟରେ ସେ ଯେତେବେଳେ ରେଭେନ୍ସା କଲେଜରେ ପୂର୍ବତନ ବ୍ରିଟିଶ ରାଜକୀୟ ଚାକିରିରେ ପ୍ରଫେସର ରୂପେ ଯୋଗଦାନ କରିଥିଲେ ତାଙ୍କର ଛାତ୍ରରୂପେ ତାଙ୍କ ସମ୍ପର୍କରେ ଆସିବାର ସୌଭାଗ୍ୟ ମୋର ଜୁଟିଥିଲା । ପ୍ରଥମ ମହାସମରର ପୂରା ସମୟ ସେ ଇଂଲଣ୍ଡରେ କଟାଇଥିଲେ, ଯେଉଁଠି ସେ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ ହୋଇ ରହିଥିଲେ । ସୁଭାଷବାବୁ ତାଙ୍କୁ ଗୋଟିଏ ସୁନ୍ଦର ରୌପ୍ୟଖଚିତ ଯଷ୍ଟି ଉପହାର ସ୍ୱରୂପ ଦେଇଥିଲେ ଯାହାକୁ ପରିଜା ଅତି ମୂଲ୍ୟବାନ୍ ଉପଢୌକନ ରୂପେ ସାଇତି ରଖିଥିଲେ । ସୁଭାଷବାବୁଙ୍କର ପରିଜାଙ୍କ ପ୍ରତି ଅତି ଭକ୍ତିପ୍ଲୁତ ସ୍ନେହ ଓ ଶ୍ରଦ୍ଧା ରହିଥିଲା,

ସେ ସବୁବେଳେ ସେମାନଙ୍କର ପାରସ୍ପରିକ ବନ୍ଧୁମାନଙ୍କଠାରୁ ତାଙ୍କ ବିଷୟରେ ପଚରାଉଚରା କରୁଥିଲେ । ପରିଜା ତାଙ୍କର ଯୁବାବସ୍ଥାରୁ ଜଣେ ଦୃଢ଼ ଜାତୀୟବାଦୀ ଥିଲେ ଓ ତାଙ୍କ ପରବର୍ତ୍ତୀ ଜୀବନରେ ସେ ସେହି ମତ ପୋଷଣ କରିଥିଲେ । ସେ ଭାରତୀୟ ଜାତୀୟ କଂଗ୍ରେସର ନୀତି ଓ କାର୍ଯ୍ୟକ୍ରମ ସହିତ ଏକମତ ହୋଇ ନ ଥିଲେ । ମୁଁ ଯେତେବେଳେ କଂଗ୍ରେସରେ ଯୋଗ ଦେଲି ସେ ସେତେବେଳେ ମୋତେ ସେଥିରୁ ନିବୃତ୍ତ ହେବା ପାଇଁ ଚେଷ୍ଟା କରି ନ ଥିଲେ, ଯଦିଓ ମୋର ପରିବାରର ଲୋକମାନେ ତାଙ୍କୁ ସେଥିପାଇଁ ଅନୁରୋଧ କରିଥିଲେ ।

ମୋର ସାରା ରାଜନୈତିକ ଜୀବନ କାଳ ମଧ୍ୟରେ ବିଶେଷତଃ ଯେତେବେଳେ କଂଗ୍ରେସ ଲୋକମାନଙ୍କୁ ଯେତେବେଳେ ବିଭିନ୍ନ ପ୍ରକାରର ଅବାଞ୍ଛିତ ଅପମାନ ଓ ଅମର୍ଯ୍ୟାଦାପୂର୍ଣ୍ଣ ବ୍ୟବହାର ସହ୍ୟ କରିବାକୁ ପଡୁଥିଲା ମୁଁ ଯେତେବେଳେ ତାଙ୍କ ସହିତ ସାକ୍ଷାତ କରିଛି ସେ ମୋ ପ୍ରତି ସଦୟ ବ୍ୟବହାର ପ୍ରଦର୍ଶନ କରିଛନ୍ତି ଏବଂ ଏହା ବ୍ୟତୀତ ସେ ବନ୍ଧୁମାନଙ୍କ ଠାରୁ ମୋର ଭଲମନ୍ଦ ବିଷୟ ପଚାରି ବୁଝୁଥିଲେ । ତାଙ୍କର ବନ୍ଧୁମାନଙ୍କ ମଧ୍ୟରେ ଜଣେ ଘନିଷ୍ଠ ବନ୍ଧୁ ଥିଲେ ପ୍ରଫେସର ତାରାପୋରୱାଲା, ଲବ୍ଧପ୍ରତିଷ୍ଠ ଜ୍ଞାନୀ ପଣ୍ଡିତ ଏବଂ କଲିକତା ବିଶ୍ୱବିଦ୍ୟାଳୟର ପ୍ରାଚୀନ ଇତିହାସ ଓ ସଂସ୍କୃତି ବିଭାଗର ମୁଖ୍ୟ ଅଧ୍ୟାପକ । ସେ କଲିକତାରୁ ପାସେଞ୍ଜର ଟ୍ରେନ୍ ଧରି ଏକ ଛୋଟ ଷ୍ଟେସନ ବୈରୀରେ ଓହ୍ଲାଇ ବଳଦଗାଡ଼ିରେ ୩୬ କି.ମି.ରୁ ଅଧିକ ରାସ୍ତା ଯାତ୍ରା କରି ମାହାଙ୍ଗା ପୋଲିସ୍ ଥାନା ଅନ୍ତର୍ଗତ ବାଲିପଡ଼ିଆ ଗ୍ରାମରେ ପ୍ରଫେସର ପରିଜାଙ୍କ ବିବାହ ଉତ୍ସବରେ ଯୋଗଦାନ କରିଥିଲେ । ଡକ୍ଟର ତାରାପୋରୱାଲାଙ୍କ ସହିତ ମୋର ଥିଲା ଏହି ପ୍ରଥମ ବନ୍ଧୁତ୍ୱ ଯାହାକି ସେ ବଞ୍ଚିଥିଲା ପର୍ଯ୍ୟନ୍ତ ନିବିଡ଼ ବନ୍ଧନରେ ବନ୍ଧାହୋଇ ରହିଥିଲା । ଡକ୍ଟର ପରିଜାଙ୍କ ଆନୁକୂଲ୍ୟରେ ସାରା ଭାରତର ବହୁ ବିଶିଷ୍ଟ ଗୁଣୀ, ଜ୍ଞାନୀ, ଖ୍ୟାତନାମା ପଣ୍ଡିତଙ୍କ ସହିତ ମୋର ପରିଚୟ ହେବାର ସୁଯୋଗ ଲାଭ ହୋଇଥିଲା ଓ ସେମାନଙ୍କ ମଧ୍ୟରୁ ଅନେକଙ୍କ ସହିତ ମୁଁ ଘନିଷ୍ଠ ବନ୍ଧୁତ୍ୱ ସ୍ଥାପନ କରିବାର ପରମ ସୌଭାଗ୍ୟ ଲାଭ କରିଥିଲି ।

ଏକଥା ହୁଏତ ଅନେକ ଜାଣି ନ ଥିବେ ଯେ ମୁଖ୍ୟତଃ ଡକ୍ଟର ପରିଜାଙ୍କ ଐକାନ୍ତିକ ପ୍ରଚେଷ୍ଟା ଯୋଗୁଁ କେନ୍ଦ୍ରୀୟ ଧାନ ଗବେଷଣା ଅନୁଷ୍ଠାନ କଟକଠାରେ ସ୍ଥାପିତ ହୋଇପାରିଥିଲା, ଯଦିଓ ବଙ୍ଗପ୍ରଦେଶରେ ଏହାକୁ ସ୍ଥାପନ କରିବା ପାଇଁ ପ୍ରବଳ ଚାପ ପଡୁଥାଏ, କାରଣ ଏହା ସେତେବେଳେ ମୁସଲିମ୍‌ଲିଗ୍ ମନ୍ତ୍ରିମଣ୍ଡଳ ଶାସନ ଅଧୀନରେ ଥାଏ । ଡକ୍ଟର କେ. ରାମିଆ ଥିଲେ ଜଣେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଧାନ ବିଶେଷଜ୍ଞ । ଡକ୍ଟର ପରିଜା ଡକ୍ଟର ରାମିଆଙ୍କୁ ମୋ ସହିତ ଓ ଓଡ଼ିଶା ରାଜ୍ୟପାଳଙ୍କ ପରାମର୍ଶଦାତା ଶ୍ରୀଯୁକ୍ତ ଗୋଖଲେଙ୍କ ସହିତ ପରିଚିତ କରାଇ ଦେଇଥିଲେ । ଆମ୍ଭେମାନେ ଏକତ୍ର ଆଲୋଚନା କରି ବହୁ ତଥ୍ୟସମ୍ବଳିତ କାଗଜପତ୍ର ପ୍ରସ୍ତୁତ କରି

କଟକରେ କେନ୍ଦ୍ରୀୟ ଧାନ ଗବେଷଣା ଅନୁଷ୍ଠାନ ସ୍ଥାପନ କରିବା ପାଇଁ ଭାରତ ସରକାରଙ୍କ ସ୍ୱୀକୃତି ଲାଭ କରିବା ପାଇଁ ଏକ ରଣ-କୌଶଳ ସୃଷ୍ଟି କରିଥିଲେ ଓ ସେଥିରେ ସଫଳକାମ ହେଲେ ।

ଇଂରେଜ ସରକାରଙ୍କର ଓ ତାଙ୍କର ଅଧିକାଂଶ କର୍ମଚାରୀଙ୍କର କଂଗ୍ରେସ ଲୋକଙ୍କ ପାଇଁ ପ୍ରବଳ ବିତୃଷ୍ଣା ରହିଥିଲା । ଏଭଳି କଟୁ ସମ୍ପର୍କ ମଧ୍ୟରେ ଡକ୍ଟର ପରିଜାଙ୍କ ଘର ଥିଲା ଏକ ନିରପେକ୍ଷ ସ୍ଥଳ, ଯେଉଁଠି ସାମାଜିକ ବନ୍ଧୁତ୍ୱପୂର୍ଣ୍ଣ ପରିବେଶରେ ଉଭୟ ଗୋଷ୍ଠୀର ଲୋକ ଏକତ୍ରିତ ହେଉଥିଲେ । ଏଭଳି ଅନେକ ଉଦାହରଣ ବର୍ଣ୍ଣନା କରିହେବ ଯାହାକି ଅଦ୍ଭୁତ ଲାଗିବ ।

ଯେତେବେଳେ ତାଙ୍କର ଜ୍ୟେଷ୍ଠା କନ୍ୟା, ତାଙ୍କ ସ୍ୱାମୀ ଓ ଭାରତୀୟ ପ୍ରଶାସନ ସେବାରେ ନିଯୁକ୍ତ ଉଦୀୟମାନ ତାଙ୍କର କନିଷ୍ଠ ପୁତ୍ର ସେମାନଙ୍କ ଜୀବନର ସର୍ବୋତ୍କୃଷ୍ଟ ସମୟରେ ଅଳ୍ପ ଅଳ୍ପ ବ୍ୟବଧାନରେ ଇହ ସଂସାର ପରିତ୍ୟାଗ କରି ଚାଲିଗଲେ ଡକ୍ଟର ପରିଜାଙ୍କ ଜୀବନର ଅନ୍ୟ ଏକ ସଂସ୍ଥିତି ପରିଦୃଶ୍ୟ ହୋଇଥିଲା । ସେ ଦାରୁଣ ଦୁଃଖକୁ ଏକ ଦାର୍ଶନିକ ଦୃଷ୍ଟିକୋଣରୁ ବିଷୟବିରାଗୀ ଭାବରେ ଗୀତାର ପରମ ସତ୍ୟ ''ଦୁଃଖେ ଚ ଉଦ୍‌ବିଗ୍ନମନା, ସୁଖେଷୁ ଚ ବିଗତସ୍ପୃହ''' ଉପଲବ୍ଧି କରି ଭାଙ୍ଗି ପଡ଼ି ନ ଥିଲେ ଏବଂ ନିଜର କର୍ତ୍ତବ୍ୟନିଷ୍ଠା ସହକାରେ ସାଧାରଣ କର୍ମକ୍ଷେତ୍ରରେ ନିଜକୁ ନିୟୋଜିତ କରି ରଖିଥିଲେ । ଏଭଳି ଅଦ୍ଭୁତ ଭାବରେ ଏ ଦାରୁଣ ଦୁଃଖକୁ ଜଣେ ଦାର୍ଶନିକ ଭାବରେ ସହ୍ୟ କରିବାର ଶକ୍ତି ତାଙ୍କ ଭଳି ଅନ୍ୟ କୌଣସି ବ୍ୟକ୍ତିଙ୍କଠାରେ ମୁଁ ଦେଖି ନାହିଁ ।

ଶହ ଶହ ଛାତ୍ର ଓ ତାଙ୍କ ସମ୍ପର୍କରେ ଆସିଥିବା ଅଗଣିତ ବ୍ୟକ୍ତିବିଶେଷଙ୍କର ଜୀବନକୁ ସୁଚରିତ୍ର କରି ଗଢ଼ିବାରେ ତାଙ୍କର ପ୍ରଭାବ ସବୁ କାଳକୁ ସ୍ମରଣ ରହିବ ।

(ଶ୍ରୀ ବିବେକାନନ୍ଦ ପଟ୍ଟନାୟକଙ୍କ ମୁଖ୍ୟ ସଂପାଦନାରେ ପ୍ରକାଶିତ 'ଉତ୍କଳ ପ୍ରସଙ୍ଗ' ସ୍ୱତନ୍ତ୍ର ସଂଖ୍ୟା, ୧୯୭୮ରେ ସ୍ଥାନିତ ମୂଳ ଇଂରାଜୀ ଲେଖାରୁ ଡକ୍ଟର ଗଦାଧର ମିଶ୍ରଙ୍କ ଦ୍ୱାରା ଓଡ଼ିଆରେ ଅନୂଦିତ ।)

# ଡକ୍ଟର ପରିଜା : କି ବ୍ୟକ୍ତିତ୍ୱ !

**ନୀଳମଣି ସେନାପତି**

ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କୁ ବିଗତ ଷାଠିଏ ବର୍ଷ ଅନ୍ତରଙ୍ଗ ଭାବରେ ଜାଣିଲା ପରେ ମୁଁ ତାଙ୍କ ବିଷୟରେ ଏତିକି କହିପାରେ :

ସେ କେବେ ପାନ ଖାଇଥିବାର ମୁଁ ଜାଣେ ନାହିଁ । ସେ କେବେ ତମାଖୁ ବା ମଦ ସ୍ପର୍ଶ କରି ନାହାନ୍ତି । ସେ କେବେ ସାଇକେଲ ଚଢ଼ି ନାହାନ୍ତି କିମ୍ବା ନିଜେ ମଟରଗାଡ଼ି ଚଳାଇ ନାହାନ୍ତି । ନିଜର ଧର୍ମପତ୍ନୀଙ୍କ ବ୍ୟତୀତ ଅନ୍ୟ କୌଣସି ସ୍ତ୍ରୀଲୋକର ଛାଇ ତାଙ୍କ ଉପରେ କେବେଁ ପଡ଼ି ନାହିଁ । ଗୋଟିଏ ଖୁରରେ ସେ ସବୁବେଳେ ନିଜେ ନିଜେ ଖିଅର ହୁଅନ୍ତି, ଯାହାକି ସାଧାରଣତଃ ଭଣ୍ଡାରିମାନେ ଅନ୍ୟକୁ ଖିଅର କରିବା ପାଇଁ ବ୍ୟବହାର କରନ୍ତି । ବର୍ତ୍ତମାନ ସେ ଅବା ସେଫ୍‌ଟି-ରେଜର ବ୍ୟବହାର କରୁଥିବେ କିମ୍ବା ତାଙ୍କୁ ଖିଅର କରିବାକୁ ଜଣେ ବାରିକକୁ ଘରକୁ ଡକାଇ ପଠାଉଥିବେ । ସେ କେବେଁ ଟଙ୍କା କରଜ କରି ନାହାନ୍ତି, ଯଦିବା କେବେ କାହାଠୁ ଟଙ୍କା କରଜ କରିଥିବେ ତେବେ ସେ ମାଗିବା ପୂର୍ବରୁ ନିଶ୍ଚିତ ଭାବରେ ତାଙ୍କୁ ଋଣ କରିଶୋଧ କରିଦେଇଥିବେ । ସେ ଜଣେ ସନ୍ନ୍ୟାସୀ ଭଳି ଜୀବନ ଯାପନ କରିଛନ୍ତି, ସୁଖରେ ଅତିଶୟ ଉତ୍‌ଫୁଲ୍ଲ ହୋଇପଡ଼ି ନାହାନ୍ତି କି ଦୁଃଖରେ ଅତ୍ୟନ୍ତ ମ୍ରିୟମାଣ ହୋଇ ଭାଙ୍ଗି ପଡ଼ି ନାହାନ୍ତି, ଯଦିଓ ତାଙ୍କ ଜୀବନରେ ଦୁଃଖର ସୀମା ନ ଥିଲା ।

କିଭଳି ଏ ମଣିଷ !

(ରଚନା କାଳ ୧୯୭୭ । ମୂଳ ଇଂରାଜୀ ଲେଖାରୁ ଡକ୍ଟର ଗଦାଧର ମିଶ୍ରଙ୍କ ଦ୍ୱାରା ଓଡ଼ିଆରେ ଅନୂଦିତ)

# ପ୍ରଫେସର ପ୍ରାଣକୃଷ୍ଣ ପରିଜା
# ମୁଁ ତାଙ୍କୁ ଯେପରି ଜାଣେ

**ପବିତ୍ର କୁମାର ସେନ୍**

୧୯୩୦ ମସିହାରେ ପ୍ରଫେସର ପ୍ରାଣକୃଷ୍ଣ ପରିଜା ଯେତେବେଳେ କଲିକତା ବିଶ୍ୱବିଦ୍ୟାଳୟକୁ ଏମ୍. ଏସ୍‌ସି. ଉଭିଦ ଜୀବନକ୍ରିୟାର ପ୍ରାକ୍ଟିକାଲ ପରୀକ୍ଷକ ହୋଇ ଆସିଥିଲେ, ସେତେବେଳେ ମୁଁ ପ୍ରଥମେ ତାଙ୍କୁ ଦେଖିଥିଲି । ସେ କାଳରେ ଜଣେ ପରୀକ୍ଷକଙ୍କୁ ଅତି ଡର ମାଡୁଥିଲା । ପ୍ରଫେସର ପରିଜାଙ୍କ ସମ୍ବନ୍ଧରେ ଯାହାହେଉ ମୋର ଧାରଣାରେ ଏକ ଆନନ୍ଦଦାୟକ ବିସ୍ମୟ ସୃଷ୍ଟି ହୋଇଥିଲା । ସେ ସାଧାରଣଙ୍କଠାରୁ ଏକ ବ୍ୟତିକ୍ରମ ଭଳି ଜଣାପଡ଼ିଲେ । ପରୀକ୍ଷାର୍ଥୀଙ୍କୁ ଭୀତତ୍ରସ୍ତ କରିବା ପରିବର୍ତ୍ତେ ସେ ତାଙ୍କ ନିଜର ଜ୍ଞାନ ଓ ସସ୍ନେହ ଅନୁରକ୍ତି ଦ୍ୱାରା ସବୁ ପରୀକ୍ଷାର୍ଥୀଙ୍କ ମନ କିଣି ନେଇଥିଲେ ।

ପ୍ରଫେସର ପରିଜାଙ୍କ ପ୍ରତି ମୋର ଯେଉଁ ସମ୍ମାନ ଜାତ ହୋଇଥିଲା ତାହାହିଁ ହୁଏତ ମତେ ପରବର୍ତ୍ତୀ କାଳର ଉଭିଦଜୀବନକ୍ରିୟା ସମ୍ବନ୍ଧରେ ଉଚ୍ଚତର ଜ୍ଞାନ ଆହରଣ କରିବା ଓ ମୋର ଜୀବିକାଅର୍ଜନ ପନ୍ଥାପାଇଁ ଯେ ଆଧେୟ ହୋଇ ନ ଥିଲା ସେ କଥା ମୁଁ ବର୍ତ୍ତମାନ ନିଶ୍ଚିନ୍ତ କରି କହିପାରୁନି । ମୁଁ ଲଣ୍ଡନ ବିଶ୍ୱବିଦ୍ୟାଳୟରେ ଉଭିଦ ଜୀବନକ୍ରିୟା ସମ୍ବନ୍ଧରେ ଗବେଷଣା କରି ପିଏଚ୍. ଡି. ଡିଗ୍ରୀ ଲାଭ କରିସାରିବା ପରେ ଯେତେବେଳେ ୧୯୩୩ରୁ ୧୯୩୫ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରେ ଚାକିରି କରୁଥିଲି ସେତେବେଳେ ମୁଁ ଅନେକ ପ୍ରଫେସର ପରିଜାଙ୍କ ଘନିଷ୍ଠ ସାନିଧ୍ୟ ଲାଭ କରିବାର ସୁଯୋଗ ପାଇଥିଲି ।

ମୋର ପ୍ରଫେସର ଡକ୍ଟର ଏସ୍. ପି. ଅଗରକର ପ୍ରଫେସର ପରିଜାଙ୍କର ଜଣେ ଉତ୍ତମ ବନ୍ଧୁ ଥିଲେ । ସେତେବେଳେ ମୋର ଗବେଷଣା ସଂକ୍ରାନ୍ତରେ ବହୁଥର ତାଙ୍କ ସହିତ ବିଶଦ ଆଲୋଚନା କରିବାର ସୌଭାଗ୍ୟ ମତେ ମିଳିଥିଲା । ପରବର୍ତ୍ତୀ ସମୟରେ ମୁଁ ଯେତେବେଳେ ରାଜକୀୟ (ବର୍ତ୍ତମାନ ଭାରତୀୟ) କୃଷି ଅନୁସନ୍ଧାନ ସଂସ୍ଥା (ଇମ୍ପିରିୟାଲ କାଉନ୍‌ସିଲ ଅଫ୍ ଏଗ୍ରିକଲ୍‌ଚରାଲ ରିସର୍ଚ୍ଚ)ରେ ଜୀବନକ୍ରିୟାତ୍ମକ ଉଭିଦବିଦ୍ ରୂପେ ଯୋଗଦାନ କରିଥିଲି ସେତେବେଳେ ମୁଁ ଦିଲ୍ଲୀ ବା ସିମିଳାଠାରେ

ଅନୁଷ୍ଠିତ ହେଉଥିବା ଏହି ସଂସ୍ଥାରେ ବୈଜ୍ଞାନିକ କମିଟିରେ ତାଙ୍କୁ ବହୁବାର ଭେଟିବାର ସୁଯୋଗ ପାଇଥିଲି । କେତେଥର ମଧ୍ୟ ଆମେ ଏକାଠି ଯାତ୍ରା କରିଥିଲୁ ।

ଥରେ ପ୍ରଫେସର ପରିଜା ଯେତେବେଳେ ପାଟନା ବିଶ୍ୱବିଦ୍ୟାଳୟର ନିୟନ୍ତ୍ରଣାଧୀନ ଭାଗଲପୁର କଲେଜକୁ ପରିଦର୍ଶକ ରୂପେ ଆସିଥିଲେ ମୋର ପରମ ସୌଭାଗ୍ୟ ସେ ମୋ ଘରେ ଅତିଥି ହୋଇଥିଲେ । ମୁଁ ସେତେବେଳେ ଭାଗଲପୁର ଉପକଣ୍ଠରେ ଥିବା ସାବୁରଠାରେ ଅବସ୍ଥିତ ବିହାର କୃଷି ଗବେଷଣା କେନ୍ଦ୍ରରେ ଚାକିରି କରୁଥାଏ । ଏଇସବୁ ଅବସରରେ ମୁଁ ପ୍ରଫେସର ପରିଜାଙ୍କୁ ଜଣେ ମଣିଷ ହିସାବରେ ଘନିଷ୍ଠ ଭାବରେ ଜାଣିବାର ସୁଯୋଗ ପାଇଲି । ତାଙ୍କର ହାସ୍ୟରସିକତା ଓ ତାଙ୍କର ମଧୁର ଅଥଚ ସ୍ପଷ୍ଟବାଦିତା ଗୁଣ ମତେ ସର୍ବଦା ପ୍ରଭାବିତ କରିଛି ।

ପ୍ରଫେସର ପରିଜା ଶାଶ୍ୱତ ଭାରତୀୟ ଓ ଆଧୁନିକ ପାଶ୍ଚାତ୍ୟ ମୂଲ୍ୟବୋଧର ଏକ ପ୍ରୀତିପ୍ରଦ ମିଶ୍ରଣ ଥିଲେ । ତାଙ୍କ ଭଳି ମୁଁ ମଧ୍ୟ ଗ୍ରାମ୍ୟ ପରିବେଶରେ ଲାଳିତ ପାଳିତ ହୋଇଥିଲି, ମୋର ବାଲ୍ୟକାଳ ଓ ଯୁବାବସ୍ଥାରେ ଚଳିତ ଶତାବ୍ଦୀର ପ୍ରାକ୍କାଳରେ ଅଭ୍ୟୁଦୟ ଲାଭ କରିଥିବା ଭାରତୀୟ ସମାଜ ସଂସ୍କାର ଆନ୍ଦୋଳନ ଦ୍ୱାରା ପ୍ରଭୂତଭାବେ ପ୍ରଭାବିତ ହୋଇଥିଲି । ତାଙ୍କ ଜୀବନଶୈଳୀ ଯେ କେବଳ ମୋର ବିକ୍ଷିପ୍ତ ଚିନ୍ତାଧାରାକୁ ସୁଦୃଢ଼ କରିବାକୁ ସାହାଯ୍ୟ କରିଥିଲା ସେତିକି ନୁହେଁ, ତାହା ମୋର ଦୃଷ୍ଟିଭଙ୍ଗୀକୁ ପ୍ରଶସ୍ତ କରିବାରେ ସାହାଯ୍ୟ କରିଥିଲା ।

ଆମ ଦୁଇଜଣଙ୍କର କିଶୋର ଅବସ୍ଥାରେ କେତେକ ଦିଗରେ ସାମଞ୍ଜସ୍ୟ ଥିଲା । ଆମେ ଦୁହେଁ କେହି ଧନୀ ପରିବାରରେ ଜନ୍ମଗ୍ରହଣ କରି ନ ଥିଲୁ । ସେ ତାଙ୍କ ମାଆଙ୍କର କେତେ ବାତ୍ସଲ୍ୟ ମମତା ବିଜଡ଼ିତ ସ୍ମୃତି ମୋ ନିକଟରେ ବର୍ଣ୍ଣନା କରିଥିଲେ, ସେଗୁଡ଼ିକ ଶୁଣୁ ଶୁଣୁ ମୋ ମନରେ ମୋ ମାଆଙ୍କ ପୂର୍ବସ୍ମୃତି ଉଦ୍ରେକ ହୋଇଥିଲା ଓ ମୋ ମାଆଙ୍କ ପ୍ରତି ମୋର ମମତା ଅଧିକ ଦୃଢ଼ୀଭୂତ ହୋଇ ଉଠିଥିଲା ।

ପ୍ରଫେସର ପରିଜା ଆଧୁନିକ ଓଡ଼ିଶାର ନିର୍ମାଣରେ ଅଗ୍ରଣୀମାନଙ୍କ ମଧ୍ୟରେ ଅନ୍ୟତମ ଥିଲେ ସୁଦ୍ଧା ତାଙ୍କ ନିଜ ପ୍ରଦେଶର ସୀମା ବାହାରେ ସେ ଅନେକ ବ୍ୟକ୍ତିଙ୍କୁ ସେମାନଙ୍କ ଜୀବନ ଗଠନରେ ପ୍ରେରଣା ପ୍ରଦାନ କରିଛନ୍ତି, ଏହା ଥିଲା ଜାତୀୟ ସ୍ତରରେ ଓ ମାନବ ଧର୍ମ ପାଳନ କ୍ଷେତ୍ରରେ ତାଙ୍କ ହୃଦୟବତ୍ତାର ପ୍ରକୃତ ପରିଚୟ । ମୁଁ ସବୁବେଳେ ପ୍ରଫେସର ପରିଜାଙ୍କୁ ଜଣେ ମହାନ୍ ଗୁରୁ ଓ ମୋର ପରମ ସୁହୃଦ୍ ରୂପେ ବିବେଚନା କରି ଆସିଛି ଓ ସେ ଆମ୍ଭମାନଙ୍କୁ ଚିରକାଳ ତାଙ୍କ କୃପାବାରି ବର୍ଷଣ କରି ଆଶୀର୍ବାଦ ପ୍ରଦାନ କରୁଥାନ୍ତୁ ।

(ରଚନାକାଳ ୧୯୭୭ ମସିହା । ମୂଳ ଇଂରାଜୀ ଲେଖାରୁ ଡକ୍ଟର ଗଦାଧର ମିଶ୍ରଙ୍କ ଦ୍ୱାରା ଓଡ଼ିଆରେ ଅନୂଦିତ ।)

# ପରିଜାସାହେବ, ଭାରତୀୟ ଓ ପାଶ୍ଚାତ୍ୟ ସଂସ୍କୃତିର ମିଳନ ପୀଠ

ପ୍ରଫୁଲ୍ଲ କୁମାର ପତି

ଓଡ଼ିଶାର ଶିକ୍ଷାବିଭାଗରେ ଦୁଇଜଣ ଓଡ଼ିଆ ସାହେବ ଥିଲେ । ଜଣେ ତ୍ରିପାଠୀ ସାହେବ ଓ ଅନ୍ୟଜଣକ ପରିଜାସାହେବ । ଏମାନେ ବିଲାତରୁ ଶିକ୍ଷାଲାଭ କରିଥିଲେ, ଅବଶ୍ୟ ଆହୁରି ଅନେକ ବିଲାତରୁ ପାସ୍ କରି ଆସିଥିଲେ, କିନ୍ତୁ ତ୍ରିପାଠୀସାହେବ ଓ ପରିଜାସାହେବଙ୍କ ବିଶେଷତ୍ୱ ଥିଲା ଯେ କେବଳ ସେହି ଦୁଇଜଣ ଭାରତୀୟ ଶିକ୍ଷାସେବା (Indian Education Service)ରେ ଯୋଗଦାନ କରିଥିଲେ । ସେ ଦୁହିଁଙ୍କ ମଧ୍ୟରେ ପ୍ରଗାଢ଼ ବନ୍ଧୁତ୍ୱ ଥିଲା, ତ୍ରିପାଠୀସାହେବ ପରିଜାସାହେବଙ୍କୁ "Hollo Pop" ଡାକୁଥିଲେ ଓ ପରିଜାସାହେବ ତ୍ରିପାଠୀସାହେବଙ୍କୁ "Hollow Tip" ଡାକୁଥିଲେ ।

ପୋଷାକ ଦୃଷ୍ଟିରୁ ବାହାରେ ସିନା ସାହେବ, କିନ୍ତୁ କାୟମନୋବାକ୍ୟରେ ଉଭୟେ ଖାଣ୍ଟି ଭାରତୀୟ ଥିଲେ । ପରିଜାସାହେବଙ୍କ ଜନ୍ମ ଗାଁଗହଳିର ଏକ କୃଷକ ପରିବାରରେ । ସେ ଅତି ମେଧାବୀ ଛାତ୍ର ଥିଲେ । ନିଜର ଚେଷ୍ଟା ବଳରେ ସେ ଉଦ୍ଭିଦ ବିଜ୍ଞାନରେ ସର୍ବୋଚ୍ଚ ସୀମାକୁ ପହଞ୍ଚି ପାରିଥିଲେ । ତାଙ୍କର ତଥ୍ୟ Parija Blackman Theory ନାମରେ ଖ୍ୟାତ ଓ ଉଦ୍ଭିଦ ବିଜ୍ଞାନରେ ଏକ ମୌଳିକ ତଥ୍ୟ ଅଟେ ।

ମୁଁ ଯେତେ ଅଧ୍ୟକ୍ଷ ଦେଖିଛି, ସେମାନଙ୍କ ମଧ୍ୟରୁ କେହି ପରିଜାସାହେବଙ୍କ ପାସଙ୍ଗରେ ପଡ଼ିବେ ନାହିଁ । ତାଙ୍କର ବ୍ୟକ୍ତିତ୍ୱ ଏପରି ଥିଲା ଯେ କଲେଜରେ ଶୃଙ୍ଖଳା ରଖିବା ପାଇଁ ତାଙ୍କୁ ଆଦୌ ଚେଷ୍ଟା କରିବାକୁ ପଡୁ ନ ଥିଲା । ପରିଜାସାହେବ ବାରଣ୍ଡାରେ ଚାଲିଗଲେ ଛାତ୍ରମାନେ ଛାଏଁ ଛାଏଁ ଚୁପ୍ ହୋଇ ଯାଉଥିଲେ । ସେ ଏକ ଦରିଦ୍ର ପରିବାରରୁ ଆସିଥିବାରୁ ଦରିଦ୍ର ଛାତ୍ରମାନଙ୍କର କଥା ଭଲଭାବରେ ହୃଦୟଙ୍ଗମ କରିପାରୁଥିଲେ । ସେ ଗୋପନୀୟ ଭାବରେ ଦରିଦ୍ର ଛାତ୍ରଙ୍କୁ ପ୍ରତି ମାସରେ ସାହାଯ୍ୟ କରୁଥିଲେ ।

ତାଙ୍କର ଦୈନନ୍ଦିନ ଜୀବନରେ ଶୃଙ୍ଖଳାର ସ୍ଥାନ ବଡ଼ ଉଚ୍ଚରେ ଥିଲା । ତାଙ୍କର ସମୟାନୁବର୍ତ୍ତିତା ଏକ ଦୃଷ୍ଟାନ୍ତ ସ୍ଥାନୀୟ ଥିଲା । ଜଣେ ଅଧ୍ୟାପକ ହିସାବରେ ତାଙ୍କର ସାରା ଭାରତରେ ଖ୍ୟାତି ଥିଲା । ଉଦ୍ଭିଦ ବିଜ୍ଞାନ ବିଭାଗର ମୁଖ୍ୟ ଅଧ୍ୟାପକ ଥିଲେ ମଧ୍ୟ ସେ ଆଇ. ଏ. ଓ ଆଇ. ଏସ୍‌ସି. ଶ୍ରେଣୀରେ (ସେତେବେଳେ ଉଦ୍ଭିଦ ବିଜ୍ଞାନ

ଆଇ. ଏ. ଓ ଆଇ. ଏସ୍‌ସି.ରେ ଏକ ବିଷୟ ରୂପେ ଥିଲା) ଅଧ୍ୟାପନା କରିବାକୁ ଭଲ ପାଉଥିଲେ ଓ ପ୍ରାକ୍ଟିକାଲ କ୍ଲାସ୍‌ମାନଙ୍କରେ ପ୍ରତ୍ୟେକ ଛାତ୍ରର ଟେବୁଲ ପାଖକୁ ଯାଇ ଆବଶ୍ୟକ ପରାମର୍ଶ ଦେଉଥିଲେ ।

ସେ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି ହେଲେ । କିଛି ବର୍ଷ ପାଇଁ ସେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ପ୍ରୋ-ଭାଇସ୍‌ଚାନ୍‌ସେଲର୍ ହେଲେ ଓ ତା'ପରେ ପୁଣି ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲେ । ପ୍ରଥମରୁ ଉତ୍କଳ ବିଶ୍ୱବିଦ୍ୟାଳୟ ରେଭେନ୍ସା କଲେଜର ଏକ ଅଂଶରେ ଆରମ୍ଭ ହେଲା ଓ ପରେ କଟକର ମେଡିକାଲ କଲେଜ ପାଖରେ ଏକ ସରକାରୀ ଘରେ ଚାଲିଲା ଓ ତାଙ୍କ ସମୟରେ ଉତ୍କଳ ବିଶ୍ୱବିଦ୍ୟାଳୟ ବାଣୀବିହାର ଠାରେ ପ୍ରତିଷ୍ଠିତ ହେଲା । ସେ ଗାଁ ଗହଳିରୁ ଆସିଥିବାରୁ ତାଙ୍କର ସାଧାରଣ ଲୋକ ସହିତ ନିଗୂଢ଼ ସମ୍ପର୍କ ଥିଲା ଏବଂ ଲୋକଙ୍କ ଉପକାର କରିବା ପାଇଁ ସେ ଥରକ ପାଇଁ ବିଧାନସଭାର ସଭ୍ୟଭାବେ ନିର୍ବାଚିତ ହୋଇଥିଲେ । ତାଙ୍କର ଓଡ଼ିଆରେ ବକ୍ତୃତା ଅତୀବ ଚିତ୍ତାକର୍ଷକ ଥିଲା, କାରଣ ତାହା ଢଗଢମାଳିରେ ଭରପୂର ଥିଲା । ଗୋଟିଏ କଥାରେ କହିବାକୁ ଗଲେ ତାଙ୍କଠାରେ ଭାରତୀୟ ଓ ପାଶ୍ଚାତ୍ୟ ସଂସ୍କୃତିର ସବୁ ଭଲ ଗୁଣଗୁଡ଼ିକ ଥିଲା ।

ଉଦ୍ଭିଦ ବିଜ୍ଞାନରେ ତାଙ୍କର ଏପରି ଦକ୍ଷତା ଥିଲା ଯେ ଓଡ଼ିଶା ସରକାର ତାଙ୍କୁ କୃଷି ବିଭାଗର ନିର୍ଦ୍ଦେଶକ ରୂପେ ନିଯୁକ୍ତି ଦେଇଥିଲେ ଓ ତାଙ୍କରି ପ୍ରେରଣାରେ ଓଡ଼ିଶାରେ ସବୁଜ ବିପ୍ଳବର ସୂତ୍ରପାତ ହେଲା । ସେ ଅଧ୍ୟାପକ ଭାବରେ ଯେପରି ପ୍ରବୀଣ ଥିଲେ, ପ୍ରଶାସକ ଭାବରେ ମଧ୍ୟ ସେପରି ସୁଦକ୍ଷ ଥିଲେ ।

ପାରିବାରିକ ଜୀବନରେ ଘାତ ପ୍ରତିଘାତକୁ ଦାର୍ଶନିକ ଦୃଷ୍ଟିକୋଣରୁ ଦେଖି ସେସବୁ ଅତି ଧୈର୍ଯ୍ୟର ସହିତ ସହୁଥିଲେ ଓ କାହାରି ସହାନୁଭୂତି ଆଶା କରୁ ନ ଥିଲେ ।

ଆମ୍ଭେମାନେ ତାଙ୍କର ଛାତ୍ର ଭାବରେ ଓ ପରେ ତାଙ୍କର ସହକର୍ମୀ ଭାବରେ ତାଙ୍କ ସଂସ୍ପର୍ଶରେ ଆସିଛୁ ଏବଂ ସର୍ବଦା ତାଙ୍କ ପ୍ରତି ଆମର ଭକ୍ତିଭାବ ଅତୁଟ ରହିଛି । ତାଙ୍କୁ ଆମେ ମଣିଷ ଭାବରେ ଦେଖୁ ନ ଥିଲୁ, ତାଙ୍କୁ, ଆମେ ଦେବତା ଦୃଷ୍ଟିରେ ଦେଖୁଥିଲୁ । ତାଙ୍କର ବ୍ୟକ୍ତିତ୍ୱର ବିଭିନ୍ନ ବିଚାରକୁ ଆକର୍ଷଣୀୟ ଭାବରେ ପ୍ରକାଶ କରିପାରିଲେ ତାହା ଆମ ଦେଶର ଲୋକମାନଙ୍କ ପାଇଁ ଏକ ଆଦର୍ଶର ଉତ୍ସ ହୋଇପାରିବ ଏବଂ ତାହା ଦ୍ୱାରା ଆଜିକାଲିର ବିଶୃଙ୍ଖଳ ସମାଜ ଶୃଙ୍ଖଳିତ ହୋଇପାରିବ ।

# ସ୍ମୃତି ତ କଦାପି ନୁହେଁ ଫିଙ୍ଗିବାର

**ବସନ୍ତ କୁମାର ବେହୁରା**

ସାଲ ତାରିଖ ସ୍ମରଣ ନାହିଁ । ୧୯୬୦ ଦଶକର କଥା ହେବ ପରା । ଉତ୍କଳ ବିଶ୍ୱବିଦ୍ୟାଳୟର ଅଫିସ କଟକରେ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ ମୁଖ୍ୟ ପ୍ରବେଶ ଫାଟକ ସାମନା ଏକ ଦୋତାଲା କୋଠା ଘରେ ହେଉଥାଏ । କୁଳପତି ପ୍ରଫେସର ପ୍ରାଣକୃଷ୍ଣ ପରିଜା । ସେଦିନ ଆମେ ବିଶ୍ୱବିଦ୍ୟାଳୟର ଏକାଡେମିକ୍ କାଉନ୍‌ସିଲ୍‌ର ଏକ ମିଟିଂ ପାଇଁ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜର ଏକ ବିଭାଗୀୟ ବକ୍ତୃତା କକ୍ଷ, ଖୁବ୍ ସମ୍ଭବତଃ, ଶରୀର ବିଜ୍ଞାନ ଲେକଚରର୍ ହଲ୍‌ରେ, ଠୁଳ ହୋଇ, ସଭାପତି କୁଳପତି ପରିଜାଙ୍କ ଆଗମନ ପାଇଁ ଅପେକ୍ଷା କରିଥାଉଁ । 'ପରିଜାସାହେବ' ସମୟାନୁବର୍ତ୍ତିତା ସଭାକାର୍ଯ୍ୟ ବିଷୟରେ ଅଦ୍ୱିତୀୟ । ସେ ଯେଉଁଠି ପରିଚାଳକ, ସେଠି ସଭାକାର୍ଯ୍ୟ ନିର୍ଦ୍ଧାରିତ ସମୟରେ ଆରମ୍ଭ ହେବ ହିଁ ହେବ । କୌଣସି ନିର୍ଦ୍ଦିଷ୍ଟ ସମୟରେ ମିଟିଂ ହେବ ବୋଲି ନୋଟିସ୍ ହୋଇଛି, ପରିଜାସାହେବ ସଭା କାର୍ଯ୍ୟ ଆରମ୍ଭ କଲେ, ଆପଣ ତଦନୁସାରେ ଆପଣଙ୍କ ଘଣ୍ଟାକୁ ଆଗ ପଛ କରି ସମୟ ଠିକ୍ କରିପାରନ୍ତି । ସେଦିନ କିନ୍ତୁ ନିର୍ଦ୍ଧାରିତ ସମୟ ଅତୀତ ହେବାକୁ ବସିଲା । କୁଳପତି ପରିଜାଙ୍କ ଦେଖା ନାହିଁ । ମୁଁ କହି ପକାଇଲି– "ଆଜି କ'ଣ ପରିଜାସାହେବଙ୍କ ବିଳମ୍ବ ହେଲାଣି ।" ଡକ୍ଟର ସଦାଶିବ ମିଶ୍ର, ସେତେବେଳେ ସମ୍ଭବତଃ ରେଭେନ୍ସା କଲେଜର ଅଧ୍ୟକ୍ଷ, ପରବର୍ତ୍ତୀ କାଳର ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି, ମଜାଳିଆ କଥା କହିବାରେ ଅଦ୍ୱିତୀୟ, ପରିହାସ କରି କହିଲେ, "ବସନ୍ତ, ତୁମ ଘଣ୍ଟାଟି ନିଜ ପଇସାରେ କିଣିଛ (ନା ଯୌତୁକ) ?" ସେଦିନ ପରିଜାସାହେବଙ୍କର ସଭାରେ ପହଞ୍ଚିବାକୁ ପ୍ରାୟ ଦୁଇ ମିନିଟ୍ ବିଳମ୍ବ ହୋଇଯାଇଥିଲା । ସେଥିପାଇଁ ସେ କାରଣ ଦେଇ ଅତ୍ୟନ୍ତ ଦୁଃଖ ପ୍ରକାଶ କରିଥିଲେ । ବିଳମ୍ବର କାରଣ, ସେ ହଠାତ୍ ତଲବ ପାଇ କୁଳାଧିପତି କିମ୍ବା ଅନ୍ୟ କୌଣସି ଉଚ୍ଚ ପଦାସୀନ ବ୍ୟକ୍ତିଙ୍କ ସହିତ ସାକ୍ଷାତ ପାଇଁ ଯାଇଥିଲେ ଏବଂ ସେଠାରେ କାର୍ଯ୍ୟ ସରିବା ସଙ୍ଗେ ସଙ୍ଗେ ମିଟିଂକୁ ଆସିବାରେ ବିଳମ୍ବ ହୋଇଯାଇଥିଲା ।

'ପରିଜାସାହେବ'ଙ୍କ ସମୟାନୁବର୍ତ୍ତିତା ସମ୍ବନ୍ଧରେ ତଳେ ଯେଉଁ ଘଟଣାଟି କଥା ଲେଖୁଛି, ତାହା ନିଜେ ଅଙ୍ଗେ ନିଭାଇବା କଥା ନୁହେଁ, ଶୁଣା କଥା, ଶୁଣିଛି ପ୍ରଫେସର ବୈଦ୍ୟନାଥ ମିଶ୍ରଙ୍କଠାରୁ, ଯେ ପରେ ଭୁବନେଶ୍ୱରଠାରେ ଅବସ୍ଥିତ, ଓଡ଼ିଶା କୃଷି ଓ

ବୈଷୟିକ ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲେ । ସେଇ ସମୟର, ଅର୍ଥାତ୍ ୧୯୬୦ ଦଶକର କଥା ହେବ ପ୍ରାୟ । ବିଶ୍ୱବିଦ୍ୟାଳୟ ଅଫିସ୍, କଟକରେ, ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ୍ କଲେଜ ସାମନା କୋଠାରେ ଚାଲିଥାଏ । ବଡ଼ ହଲ୍ ଘର ନ ଥିବାରୁ, ବିଶ୍ୱବିଦ୍ୟାଳୟ ହତା ଭିତରେ ସାମିୟାନା ଟଙ୍ଗା ହୁଏ । ଚୌକି ପଡ଼ି, ବଡ଼ ବଡ଼ ମିଟିଂ ହୁଏ । ସେ ଦିନର ସଭା, କୌଣସି ଏକ ବିଶ୍ୱଦିବସ ପାଳନ ଉପଲକ୍ଷେ ବିଶ୍ୱବିଦ୍ୟାଳୟ ଦ୍ୱାରା ଆୟୋଜିତ । ସଭାପତି କୁଳପତି ପରିଜା । ମଞ୍ଚ ଉପରେ ତାଙ୍କ ପାଖକୁ ବସିଛନ୍ତି, ରେଜିଷ୍ଟ୍ରାର ଗୋରାଚାନ୍ଦ ରଥ, ଯେ ପରବର୍ତ୍ତୀ କାଳରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲେ । ସେଦିନ ମିଟିଂରେ ବକ୍ତା ଦୁଇଜଣ । ତନ୍ମଧ୍ୟରୁ ଜଣେ, ଉପରୋକ୍ତ, ସେ ସମୟର କଟକ, ରେଭେନ୍ସା କଲେଜର ଅର୍ଥନୀତି ପ୍ରଫେସର ଡକ୍ଟର ବୈଦ୍ୟନାଥ ମିଶ୍ର । ସେ ପହଞ୍ଚିଛନ୍ତି, ଦ୍ୱିତୀୟ ବକ୍ତା ପହଞ୍ଚି ନାହାନ୍ତି । ଶ୍ରୋତାଙ୍କ ଆସନରେ ଜଣେ ହେଲେ କେହି ନାହିଁ । ସଭାକାର୍ଯ୍ୟ ପାଇଁ ନିର୍ଦ୍ଧାରିତ ସମୟ ହୋଇଗଲା । ପରିଜାସାହେବ ସ୍ୱଗତୋକ୍ତି କଲେ– ''ଯେତେଦିନ ଯାଏଁ ପରିଜା ଏ ବିଶ୍ୱବିଦ୍ୟାଳୟର କୁଳପତି, ସେତେଦିନଯାଏ ସଭାକାର୍ଯ୍ୟ ନିର୍ଦ୍ଧାରିତ ସମୟରେ ଆରମ୍ଭ ହେବହିଁ ହେବ ।'' ଏହା କହି ସେ ବୈଦ୍ୟନାଥବାବୁଙ୍କୁ ତାଙ୍କ ଭାଷଣ ଆରମ୍ଭ କରିବାକୁ ନିର୍ଦ୍ଦେଶ ଦେଲେ । ବୈଦ୍ୟନାଥବାବୁ ଭାଷଣ ଦେବାକୁ ଆରମ୍ଭ କଲେ — ସମ୍ମୁଖରେ ଶୂନ୍ୟ ଚୌକିଗୁଡ଼ିକୁ, ଶ୍ରୋତା କେବଳ ଦୁଇଜଣ, ମଞ୍ଚ ଉପରେ କୁଳପତି ପରିଜା ଓ ରେଜିଷ୍ଟ୍ରାର୍ ଗୋରାଚାନ୍ଦବାବୁ । ଅବଶ୍ୟ ପରେ ପରେ ଶ୍ରୋତାମାନଙ୍କ ଦ୍ୱାରା ସଭାସ୍ଥଳ ପୂର୍ଣ୍ଣ ହୋଇଯାଇଥିଲା ଓ ଦ୍ୱିତୀୟ ବକ୍ତା ଆସିଯାଇଥିଲେ ।

'ପରିଜାସାହେବ' ସ୍ୱାଧୀନତା ପୂର୍ବର ବ୍ରିଟିଶ୍ ରାଜତ୍ୱ ଅମଳର ଲୋକ । ସେ ବିଲାତର ସୁପ୍ରସିଦ୍ଧ କ୍ୟାମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ ଓ ଗବେଷଣା କରିଥିଲେ । ବ୍ରିଟିଶ୍ ଲୋକେ ଭାରତୀୟ ଲୋକଙ୍କୁ ପରାଧୀନତାର ଶୃଙ୍ଖଳରେ ବାନ୍ଧି ରଖିଥିଲେ ସତ, ମାତ୍ର ଆମକୁ ତିନୋଟି କଥା ଶିଖାଇଥିଲେ, ଯାହା ଆମେ ସ୍ୱାଧୀନତା ପାଇଁ କଠୋର ସଂଗ୍ରାମ କରି, ସ୍ୱାଧୀନ ଭାରତ ଗଢ଼ିଲା ପରେ, ପାଳନ ନ କରି ତାଚ୍ଛଲ୍ୟ ସହକାରେ ଫିଙ୍ଗିଦେଇଛୁ । ସେଗୁଡ଼ିକ ହେଲା— ସମୟାନୁବର୍ତ୍ତିତା, ଶୃଙ୍ଖଳା ଓ କାର୍ଯ୍ୟ ପ୍ରତି ଅନୁରକ୍ତି । ସମୟାନୁବର୍ତ୍ତିତା ଏକ ବିଶେଷ ଗୁଣ, ଏକ ଉଚ୍ଚକୋଟୀର ଜୀବନଧାରା । ପରିଜାସାହେବଙ୍କର ଉକ୍ତ ତିନୋଟିଯାକ ଗୁଣ ଥିଲା ।

ଯେଉଁ ଦେଶ ଯେତେ ସଭ୍ୟ ଏବଂ ବିଜ୍ଞାନ ଓ ଶିଳ୍ପ କାରିଗରୀ ଆଦିରେ ଯେତେ ଆଗୁଆ, ସେ ଦେଶମାନଙ୍କରେ ଉକ୍ତ ତିନୋଟି ବିଷୟ ପ୍ରତି ସମସ୍ତେ ସଜାଗ । ବିଲାତ, ଆମେରିକା ଓ ଜାପାନ ପରି ଆଗୁଆ ଦେଶମାନଙ୍କର ସେସବୁ ପ୍ରତି ବିଶେଷ ନଜର ଦେଇଥାନ୍ତି । ଆମେ କେତେ ଗୁରୁତ୍ୱ ଦେଉଁ ?

# ଆଜି ମନେପଡ଼େ

**ବଂଶୀଧର ପରିଜା**

ଆମ ଗାଁରେ ବେଶ୍ ଗୋଟାଏ ଚହଳ ପଡ଼ିଯାଇଥାଏ । ପ୍ରାଣକୃଷ୍ଣ ପରିଜା ବିଲାତରୁ ଫେରିବା ପରେ ଆମ ଗାଁକୁ ପ୍ରଥମ କରି ଆସୁଛନ୍ତି । ଗାଁ ଚାହାଳି ଦି'ଟି ବେଶ୍ ସଫାସୁତୁରା କରି ରଖିଥାଆନ୍ତି ଶିକ୍ଷକମାନେ, କାଳେ ପ୍ରାଣକୃଷ୍ଣବାବୁ ପଶିଯିବେ ଚାହାଳି ଦେଖିବାକୁ । ନୃସିଂହନାଥ ମଠକୁ ସେ ଯିବେ ନିଶ୍ଚୟ । ତେଣୁ ମହନ୍ତ ମହାରାଜ ଖୁବ୍ ଆଗ୍ରହରେ ଅପେକ୍ଷା କରି ଥାଆନ୍ତି । ଇଚ୍ଛାପୁରଠାରୁ ଖମ୍ୱାକୁଳ ବାଟ ମାଇଲିଏ ଖଣ୍ଡେ ହେବ । କିନ୍ତୁ ଅକାଳରେ ଡଙ୍ଗା ପାରିହେବାକୁ ସମୟ ନିଏ । ଗୋପାଳପୁର ବାବୁମାନେ ସାପୁଆ କାଠଡଙ୍ଗା ପାଖରେ ଜଣେ ଲୋକ ରଖିଥାଆନ୍ତି ପରିଜାଙ୍କୁ ସୁବିଧାରେ ଡଙ୍ଗାରେ ନଈ ପାରିକରିଦେବାକୁ । ସେ ଇଚ୍ଛାପୁର ପହଞ୍ଚିଲା ପରଠାରୁ ଖମ୍ୱାକୁଳ ଓ ଗୋପାଳପୁରର କେତେକ ଲୋକ ତାଙ୍କୁ ଦେଖାକରି ଆସିଲେଣି ତାଙ୍କ ଘରେ । ସେ ନମ୍ରତା ସହକାରେ ସମସ୍ତଙ୍କୁ କହୁଥାଆନ୍ତି ଆମ ଗାଁକୁ ଆସି ଘରେ ଘରେ ସଙ୍ଖୋଳିବେ । କେବେ କେତେବେଳେ ଆସିବେ କେହି କିନ୍ତୁ କହିପାରୁ ନ ଥାନ୍ତି । ଦିନେ ସକାଳେ ଚହଳ ପଡ଼ିଗଲା ପ୍ରାଣକୃଷ୍ଣବାବୁ ନଈ ପାରି ହୋଇ ଗାଁ ମୁଣ୍ଡରେ । ଆମେ ପିଲାମାନେ ଦୌଡ଼ିଗଲୁ ନଈକୂଳକୁ । ଗାଁର ମୁରବି ଲୋକମାନେ ଗାଁ ଦାଣ୍ଡରେ ନିଜ ନିଜ ଘର ଆଗରେ । ସେ ଗୋଟି ଗୋଟି କରି ସମସ୍ତଙ୍କୁ ନମସ୍କାର କରୁଥାଆନ୍ତି ମୁଣ୍ଡ ନୁଆଁଇ । ଆମ ଘର ପାଖରେ ପହଞ୍ଚି ଜେଜେଙ୍କୁ ସସମ୍ଭ୍ରମେ ନମସ୍କାର କରିବାବେଳେ ଜେଜେ ତାଙ୍କୁ ଦେଶର ଉଜ୍ଜ୍ୱଳ ରତ୍ନ ବୋଲି କହି କୁଣ୍ଢାଇ ପକାଇଲେ । ମୁଁ ପାଖରେ ଠିଆହୋଇଥାଏ । ମତେ ପାଦପାଖରେ ମୁଣ୍ଡ ଲଗାଇ ନମସ୍କାର କରିବାକୁ ନିର୍ଦ୍ଦେଶ ଦେଲେ ଜେଜେ । କିନ୍ତୁ ପରିଜା ମତେ ସେ ସୁଯୋଗ ଦେଲେ ନାହିଁ । ସେ ହଠାତ୍ ମୋ ଦି' ଖୁଆକୁ ଧରି ଟେକିଦେଲେ ମୋତେ । ଗାଁର ଅଗଣି ରଣା ମାଳୀ ଭକ୍ତି ସହକାରେ ତୁଳସୀପତ୍ର, ଗୋଡିବାଣଫୁଲ ଓ କନିଅରଫୁଲରେ ଉପହାର ଦେଇଥିବା ଫୁଲତୋଡ଼ାଟି ମତେ ଧରେଇଦେଇ ମୋ ମୁଣ୍ଡ ଆଉଁଶି ଦେଲେ । ଜେଜେ ମୋ କଥା ତାଙ୍କୁ କହିପାରିଥାଆନ୍ତେ । ବାଲିକୁଦାରୁ ପାସ୍ କଲେ କଟକ ଯିବି କହିଦେଲି ତାଙ୍କ ପ୍ରଶ୍ନର ଉତ୍ତରରେ । କଟକ ଏଠିକି କେତେ ବାଟ ସେ ପଚାରିବାରୁ ହଠାତ୍ ମୋ ପାଟିରୁ ବାହାରିଗଲା କୋଡ଼ିଏ କ୍ରୋଶ । ସେ ହସି ହସି ଆଉଥରେ ମୋ ମୁଣ୍ଡ ଆଉଁଶି ଦେଲେ । ସେଇ ମୋର ପରିଜାଙ୍କ ସଙ୍ଗେ ପ୍ରଥମ ଦେଖା । ଗୋରା

ତକ୍‌ତକ୍ ଲମ୍ବା ଚେହେରା । କଳାମଚମଚ ନିଶ । ଆଖିରେ ଚଷମା । ଧୋତି, ପଞ୍ଜାବି, କାନ୍ଧରେ ଚାଦର । ସେ ବେଶ ତାଙ୍କର ଏବେ ବି ମନେଅଛି ମୋର ।

ତା'ପର ଦେଖା ବାଲିକୁଦା ମାଇନର ସ୍କୁଲରେ । ପୂଜ୍ୟ ହେଡ୍‌ମାଷ୍ଟର ସ୍ୱର୍ଗତ ରାଜକିଶୋର କାନୁନ୍‌ଗୋ ମୋ ବିଷୟରେ କ'ଣ କହି ମତେ ପରିଜାଙ୍କୁ ଚିହ୍ନାଇଦେବାବେଳେ ସେ ମତେ ଆଗରୁ ଜାଣିଛନ୍ତି ବୋଲି କହି ହସିଦେଲେ ।

କଟକ କଲେଜିଏଟ୍ ସ୍କୁଲରେ ପଢ଼ିବାବେଳେ ରେଭେନ୍ସା କଲେଜସ୍ଥିତ ତାଙ୍କ ବାସଭବନକୁ ବରାବର ଯାଉଥିଲି । କଲେଜରେ ଆଇ.ଏସ୍‌ସି. ପଢ଼ିବାବେଳେ ସେ ମତେ ତାଙ୍କ ନିଜ କୋଠିରେ ରହିବାକୁ କହିଲେ । ଦିନେ ତାଙ୍କ ବଡ଼ପୁଅ ପ୍ରତାପରୁଦ୍ର (ଠୁରା) ଗୁରୁଣ୍ଡିବା ଅବସ୍ଥାରେ ଅମୃତାଞ୍ଜନ ଶିଶିର ଠିପି ଗିଳିଦେଲା । ତଣ୍ଟିରେ ଠିପି ଲାଗିଗଲା । ଶ୍ରୀମତୀ ପରିଜା ଚିତ୍‌କାର କରି କାନ୍ଦି ଉଠିଲେ । ପରିଜାସାହେବ ଘରେ ନ ଥାନ୍ତି ସେତେବେଳେ । ଆମେ ଚେଷ୍ଟାକରି ଠିପି ବାହାର କରି ପାରିଲୁନି । ଗାଡ଼ିରେ ପୁଅକୁ ଡାକ୍ତରଖାନା ନେବାକୁ ବାହାରିଲାବେଳେ ବଟାନି ଡିପାର୍ଟମେଣ୍ଟରୁ ପରିଜାସାହେବ ବାହାରିଆସି ପୁଅକୁ ଦେଖି ବଡ଼ ବିବ୍ରତ ହୋଇପଡ଼ିଲେ । ସଙ୍ଗେ ସଙ୍ଗେ ଡାକ୍ତରଖାନାକୁ ପୁଅକୁ ନେଇ ଠିପି ବାହାର କରାଗଲା ।

ପରିଜାସାହେବଙ୍କ ଆପେଣ୍ଡିସାଇଟିସ୍ ଅପରେସନ୍ ସେ ସମୟରେ ଆଉ ଏକ ଉଲ୍ଲେଖନୀୟ ଘଟଣା ୧୯୩୬ ମସିହାରେ । ସେ ସେତେବେଳେ ରେଭେନ୍ସା କଲେଜରେ ଅଧ୍ୟକ୍ଷ । ଦିନେ ପେଟରେ ସେ ବିଶେଷ ଯନ୍ତ୍ରଣା ଅନୁଭବ କରିବାରୁ କଟକ ମେଡିକାଲ୍ ସ୍କୁଲରେ ସେତେବେଳର ଅଧ୍ୟକ୍ଷ ମେଜର ଓନିଲଙ୍କୁ ଡକାଗଲା । ସେ ସାଙ୍ଗେ ସାଙ୍ଗେ କଟକ ଡାକ୍ତରଖାନାକୁ ପରିଜାସାହେବଙ୍କୁ ନେଇଯିବା ପାଇଁ ପରାମର୍ଶ ଦେଲେ । ତାହାହିଁ ହେଲା । ସେ ସନ୍ଧ୍ୟାରେ ମେଡିକାଲ ସ୍କୁଲର କି ଦୃଶ୍ୟ ? ରେଭେନ୍ସା କଲେଜର ପ୍ରାୟ ସମସ୍ତ ପ୍ରଫେସର, କର୍ମଚାରୀ, ବହୁଛାତ୍ର ଓ କଟକର ବହୁ ବିଶିଷ୍ଟ ଲୋକଙ୍କ ସମାବେଶରେ ମେଡିକାଲ କମ୍ପାଉଣ୍ଡ ଭରପୂର । ବର୍ତ୍ତମାନ ଯେଉଁଠି ବହୁ ମହଲା କୋଠାବାଡ଼ି ତିଆରି ହୋଇ କଲେଜ ହେବା ପରେ ବିଭିନ୍ନ ବିଭାଗ ଓ ରୋଗୀ ଓ୍ୱାର୍ଡ଼ ସ୍ଥାପନ କରାଯାଇଛି । ସେ ଜାଗାସବୁ ସେତେବେଳେ ଖେଳପଡ଼ିଆ ଥିଲା । ଅପରେସନ ହେବା କଥା ପରିଜାସାହେବଙ୍କୁ ଜଣାଇଦିଆଗଲା । ଅପରେସନ୍ କରିବା ପୂର୍ବରୁ ଓନିଲସାହେବ ନିଜ କୋଠରିରେ ଆଣ୍ଠୁମାଡ଼ି ପ୍ରାର୍ଥନା କରିବା ଆମେ ଦେଖିଛୁ । ଅପରେସନ୍ ପରେ ସାଧାରଣ ଓ୍ୱାର୍ଡରେ ତାଙ୍କୁ ରଖାହେଲା । ସେ ରାତିରେ ଆମେ ଆଠଜଣ ପାଳିକରି ଜଗିରହିଲୁ । ସେ ଭଲହୋଇ ଘରକୁ ଫେରିବା ପର୍ଯ୍ୟନ୍ତ ଆମେ ଜଗିରହିଥିଲୁ ସେଠାରେ । ସେତେବେଳକୁ ମୁଁ ତାଙ୍କ ପରିବାରର ଜଣେ ବୋଲି ଗଣାହୋଇ ସାରିଥିଲି ।

ପରିଜାସାହେବ ପ୍ରାୟ ସବୁଦିନ ପ୍ରିନ୍ସିପାଲ୍ ଅଫିସ୍‌ରୁ କାମ ଶେଷକରି ବଟାନି ଡିପାର୍ଟମେଣ୍ଟକୁ ଆସୁଥିଲେ । ସେ ଆସିବା ପର୍ଯ୍ୟନ୍ତ ମୁଁ ସେଠାରେ ରହିଥାଏ । ତାଙ୍କର କେତେକ ବ୍ୟକ୍ତିଗତ କାମ ଓ ପ୍ରାକ୍ଟିକାଲ କ୍ଲାସ୍ ବିଷୟରେ ଆଲୋଚନା ହୁଏ । ଦିନେ ପ୍ରିନ୍ସିପାଲ୍ ଅଫିସ୍‌ରେ ଷ୍ଟାଫ୍ ମିଟିଂ ଥାଏ । ୫ଟା ପର୍ଯ୍ୟନ୍ତ ମୁଁ ଅପେକ୍ଷା କଲି ସେ ବଟାନି ଡିପାର୍ଟମେଣ୍ଟକୁ ନ ଫେରିବାରୁ ବସାକୁ ଚାଲିଆସିଲି । ସେତେବେଳେ ମୁଁ କଲେଜ ମୁଖ୍ୟଫାଟକ ପାଖରେ ଗୋଟିଏ ଭଡ଼ାଘରେ ରହୁଥିଲି । ଘରେ ପହଞ୍ଚି ଲୁଗାପଟା ବଦଳାଇ ନାହିଁ ହଠାତ୍ ଖଣ୍ଡେ ଚିଠି ପାଇଲି । ଲେଖାଥିଲା "Banshi Babu, see me immediately". ସାଙ୍ଗେ ସାଙ୍ଗେ ବଟାନି ଲାବରେଟୋରିରେ ପହଞ୍ଚି ଦେଖେ ସେ ନାହାନ୍ତି । ମନଟା ଭାରି ଖରାପ ହୋଇଗଲା । ରାଗ ଲାଗିଲା । ଆସିଲି ତାଙ୍କ ବଙ୍ଗଳାକୁ । ଉପରମହଲାକୁ ନ ଯାଇ ତଳ ମହଲାରେ ବସି ଖବର ଦେଲି ମୁଁ ଆସିଚି ବୋଲି । ଉପରକୁ ଯିବାକୁ ନିର୍ଦ୍ଦେଶ ଆସିଲା । ମତେ ଦେଖିବାମାତ୍ରେ ଡାକିଲେ "ଦୀନା, ବଂଶୀବାବୁ ଆସିଲେଣି ଛକଖିଆ ଆଣ" । ସେଇ ଖାଇବା ଟେବୁଲ ଉପରେ ତାଙ୍କ ଚାହା କୁଆଡ଼େ ଗଲା । ମୋ ରାଗ ବି ମିଳାଇଗଲା ।

ତାଙ୍କ ବଡ଼ ଝିଅ ମନ୍ଦାକିନୀ (ମିନି)ର ବାହାଘର ହେଲା ନାଳକୂଳପାଖ ପ୍ରିନ୍ସିପାଲ୍ କୋଠିରେ । ଉପହାର ସବୁ ରଖିବା ଦାୟିତ୍ୱ ମୋ ଉପରେ । ଭାରି ବିବ୍ରତ ହୋଇଗଲି । କେତେପ୍ରକାର ଶାଢ଼ି, ସୁନାରୁପାର ଗହଣା, ନଗଦ ଟଙ୍କା, ବହୁ ଦାମିକା ଉପହାର ଇତ୍ୟାଦି ଆସି ଗଦାହୋଇଥାଏ । ତାଙ୍କ ସାନଝିଅ ସୌଦାମିନୀ (କୁନି)କୁ ମତେ ସାହାଯ୍ୟ କରିବା ପାଇଁ କୁହାଯାଇଥାଏ । ସେ କିନ୍ତୁ ବାହାଘର ଉପଭୋଗ କରିବାରେ ବ୍ୟସ୍ତ । ମୋଟେ ମୋ ପାଖକୁ ଆସେ ନାହିଁ । ବେଦୀରୁ ବରକନ୍ୟା ଫେରିବା ପରେ ବରଯାତ୍ରୀ ଓ ଅନ୍ୟାନ୍ୟ ନିମନ୍ତ୍ରିତ ଲୋକ ଦେଖିବା ପାଇଁ ସବୁ ଉପହାର ଗୋଟିଏ ବଖରାରେ ସଜାହୋଇ ରଖାହେଲା । ସେତେବେଳେ କୁନିଙ୍କ ସାହାଯ୍ୟ । ବାହାଘର ଶେଷ ହେବାର ୪/୫ ଦିନ ପରେ ଘରର ପୂର୍ବ ଅବସ୍ଥା ଫେରି ଆସିଲା । ମୋ ମୁଣ୍ଡ ଉପରେ ବିରାଟ ବୋଝ ଲଦାହେଲାପରି ଅନୁଭବ କରୁଥାଏ । ହଜାର ହଜାର ଟଙ୍କାର ଜିନିଷ, କେମିତି ସେ ଦାୟିତ୍ୱରୁ ମୁକ୍ତି ପାଇବି । ଉପହାରର ତାଲିକା ଓ ଚାବି ପେଛା ନେଇ ପରିଜାସାହେବଙ୍କ ପାଖରେ ଥୋଇ ତାଲିକା ଅନୁସାରେ ଜିନିଷ ମିଳାଇଦେବା ପାଇଁ କାହାକୁ କହିବାକୁ ଅନୁରୋଧ କଲି ମୁଁ । ସେ ଚାବିପେଛା ଓ ତାଲିକା ଧରି ହସି ହସି ଖାଇବା ଟେବୁଲ ପାଖକୁ ଡାକିନେଲେ । ଖାଇଲୁ । ସେ ଅଧ୍ୟାୟ ସେଇଠି ଶେଷ ।

ଚିଲିକା ଭିତରେ ବଢୁଥିବା ଦଳ ଯୋଗୁଁ ଚିଲିକା କୂଳରେ ଗ୍ରାମମାନଙ୍କରେ ମାଲେରିଆ ବିଶେଷ ଭାବରେ ଦେଖା ଦେଉଚି ବୋଲି ରିପୋର୍ଟ ପାଇ ଭାରତ

ସରକାର ଚିଲିକା ଭିତରେ ଦଳ ବିଷୟରେ ଗବେଷଣା କରିବା ପାଇଁ ଏକ ଯୋଜନା କଲେ । ସେ ଯୋଜନା ପରିଜାସାହେବଙ୍କ ଅଧୀନରେ କାର୍ଯ୍ୟକାରୀ ହେବ । ମୁଁ ସେଥିରେ ରିସର୍ଚ୍ଚ ଆସିଷ୍ଟାଣ୍ଟ ନିଯୁକ୍ତି ପାଇ ୧୯୩୯ ମସିହାରେ ଯୋଗଦେଲି । ବାଲୁଗାଁର ଗୋଟିଏ ଭଡ଼ାଘରେ ଲାବରେଟୋରୀ ଓ ମୁଁ ମଧ୍ୟ ସେଇଘରେ ରହୁଥାଏ । ପ୍ରାୟ ପ୍ରତି ମାସରେ ପରିଜାସାହେବ କାମର ଅଗ୍ରଗତି ଦେଖିବାକୁ ଯାଉଥିଲେ । କଲେଜରେ ପରିଜା ଓ ବାଲୁଗାଁରେ ପରିଜାଙ୍କ ଭିତରେ ବହୁତ ତଫାତ୍ । କଲେଜରେ ପରିଜାଙ୍କୁ ଦେଖିଲେ ଛାତ୍ରମାନେ ଡରରେ ଦୂରେଇ ଯାଆନ୍ତି କିନ୍ତୁ ବାଲୁଗାଁରେ ପିଲାମାନଙ୍କ ସହିତ ମିଶି ଖେଳକୌତୁକ କରି ସେମାନଙ୍କୁ ମୁଗ୍ଧ କରୁଥିଲେ । କଲେଜ ପିଲାଙ୍କୁ ଭ୍ରମଣରେ ନେଇ ଅବକାରୀ ବିଭାଗର ବାଲୁଗାଁରେ ଗୋଟିଏ ଆକୋମୋଡେସନ୍ ବୋଟ୍ ଥାଏ । ଗୋଟିଏ ଶୋଇବା ଘରେ ଦୁଇଟି ଖଟ, ଗୋଟିଏ ରୋଷାଇଘର ଗୋଟିଏ ପାଇଖାନା । ବୋଟ୍‌ଟି ପାଲଟଣା ବୋଟ୍ । ପରିଜାସାହେବ ଗଲେ ଆମକୁ ସେ ବୋଟ୍‌ଟି ମିଳେ । ସାତପଡ଼ା, ପାରିକୁଦ, ମାଲୁଦ ପ୍ରଭୃତି ଦୂରସ୍ଥାନକୁ ଗଲେ ସେ ବୋଟ୍ ବ୍ୟବହାର କରୁ । ଆମର ମଧ୍ୟ ଡଙ୍ଗାଟି ଉପରେ ରଖାଯାଇଥାଏ । ଦିନେ ପାରିକୁଦ ରାଜା ପରିଜାସାହେବଙ୍କୁ ତାଙ୍କ ଗଡ଼କୁ ଯିବାକୁ ନିମନ୍ତ୍ରଣ କରିଥାଆନ୍ତି । ମତେ ମଧ୍ୟ ନିମନ୍ତ୍ରଣ ଥାଏ । ଚିଲିକା କୂଳରୁ କୃଷ୍ଣପ୍ରସାଦଗଡ଼ ୨/୩ ମାଇଲରୁ ବେଶି । ପରିଜାଙ୍କୁ ନେବାପାଇଁ ରଜା ଗୋଟିଏ ପାଲିଙ୍କି ପଠାଇଥାଆନ୍ତି । ପାଲିଙ୍କି ଦେଖି ପରିଜା ହସିହସି କହିଲେ, "ଆଉଥରେ କାହିଁକି ପାଲିଙ୍କିରେ ବସିବା ଯୋଗ ।" ସେ କଥାର ମର୍ମ ସେଠାରେ ଥିବା ସାଧାରଣ ଲୋକ ବୁଝିପାରିଲେନି । ମୁଁ ବୁଝିଲି । ଚାଲି ଚାଲି ଗଲୁ । ପରିଜାଙ୍କ ସାଙ୍ଗରେ ଚାଲିବା ବଡ଼ କଷ୍ଟ । ଖୁବ୍ ଜୋର୍‌ରେ ଚାଲୁଥିଲେ ସେ । କୃଷ୍ଣପ୍ରସାଦରେ ପହଞ୍ଚିଲା ବେଳକୁ ଦିନ ୧୨ଟା । ଗୋଟିଏ ଘରେ ଖୁବ୍ ସାଜସଜା ହୋଇଥାଏ । ସେଠାରେ ରହିଲୁ । ଗୋଟାଏ ବେଳେ ରଜା ବିଜେକଲେ । ଗପ ହେଉ ହେଉ ପରିଜାଙ୍କ ଖାଇବା ବେଳ ପାରହୋଇଗଲା । ଦିନ ୨ଟା ବେଳକୁ ରୁପାଥାଳିରେ ବହୁପ୍ରକାର ମାଛ, ମାଂସ, ଭଜା ଇତ୍ୟାଦି ଟେବୁଲରେ ସଜାହୋଇ ଆମକୁ ଡକରା ଆସିଲା । ଗଲୁ କିନ୍ତୁ ପରିଜା ବିଶେଷ କିଛି ଖାଇଲେ ନାହିଁ । ବଡ଼ି ଭଜାକୁ ଖୁବ୍ ପସନ୍ଦ କଲେ ସେ । ମତେ ଖାଇବାକୁ କହିଲେ । ନ ଖାଇଲେ ଅଭଦ୍ରାମି ହେବ । ଖଣ୍ଡେ ଚିଠିରେ ଆତିଥ୍ୟ ଯୋଗୁଁ ରଜାଙ୍କୁ ଧନ୍ୟବାଦ ଦେଇ ବାହାରି ଆସିଲୁ । ସେଦିନ ସେ କିଛି ଖାଇ ନ ଥିଲେ ବି ମନର ପ୍ରଫୁଲ୍ଲତା କମି ନ ଥିଲା ତାଙ୍କର । ବାଟରେ ତାଙ୍କଠାରୁ ବହୁତ ମଜା କଥା ଶୁଣି, ଚାଲିବା କଷ୍ଟ ଭୁଲିଗଲୁ ।

ଦୀର୍ଘ ପ୍ରାୟ ଅର୍ଦ୍ଧଶତାବ୍ଦୀ ଧରି ସେ ଓଡ଼ିଶାର ଶିକ୍ଷାକ୍ଷେତ୍ରରେ କର୍ଣ୍ଣଧାର ଥିଲେ । ରେଭେନ୍ସା କଲେଜରେ ପ୍ରଫେସର, ଅଧ୍ୟକ୍ଷ ଓ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଭାବରେ ଓଡ଼ିଶାରେ ଶିକ୍ଷାର ଉନ୍ନତି ପାଇଁ ତାଙ୍କର ଅବଦାନ ଅତୁଳନୀୟ । ଖାଲି ଯେ ସେ ବିଲାତରୁ ଉଚ୍ଚଶିକ୍ଷା ପାଇ ଆସିଛନ୍ତି ବୋଲି ଲୋକେ ତାଙ୍କୁ ଆଦର ଓ ସମ୍ମାନ କରୁଥିଲେ ତା ନୁହେଁ, ତାଙ୍କର ନିର୍ମଳ ଚରିତ୍ର, ନମ୍ରତା, ସମୟାନୁବର୍ତ୍ତିତା ଓ ସାଧାରଣ ଲୋକଙ୍କ ସଙ୍ଗେ ମିଶିବାର ଆନ୍ତରିକତା ଯୋଗୁଁ ସାଧାରଣ ଲୋକଙ୍କର ହୃଦୟକୁ କିଣିନେଇଥିଲେ ସେ । ବିଲାତରେ ସାତବର୍ଷ ରହି ଫେରିବା ପରେ ମଦ, ସିଗାରେଟ୍ ଇତ୍ୟାଦି ସେ ଛୁଇଁ ନ ଥିଲେ । ଛାତ୍ରବତ୍ସଳ ପରିଜା ତାଙ୍କ ଆୟରୁ ଏକ ନିର୍ଦ୍ଦିଷ୍ଟ ଭାଗ ଗରିବ ଓ ମେଧାବୀ ଛାତ୍ରଙ୍କୁ ଦାନ କରୁଥିଲେ । ସେଥିଯୋଗୁଁ ସେ ଛାତ୍ରମହଲରେ ପୂଜ୍ୟ । ଯେ କେହି ଅଭାବଗ୍ରସ୍ତ ବ୍ୟକ୍ତି ନିରାଶ ହୋଇ ଫେରନ୍ତି ନାହିଁ ପରିଜାଙ୍କ ପାଖରୁ । ଓଡ଼ିଆଜାତି ଓ ଓଡ଼ିଶା ପ୍ରତି ପ୍ରଗାଢ଼ ମମତା ଥିଲା ତାଙ୍କର । ଓଡ଼ିଶା ବା ଓଡ଼ିଆଙ୍କ ପ୍ରତି କେହି ତାଚ୍ଛଲ୍ୟଭାବ ପ୍ରକାଶ କଲେ ସେ ସହ୍ୟ କରିପାରୁ ନ ଥିଲେ । ସଙ୍ଗେ ସଙ୍ଗେ ତୀବ୍ର ଭାଷାରେ ସେ ତା'ର ଉପଯୁକ୍ତ ଉତ୍ତର ନ ଦେଇ ଛାଡୁ ନ ଥିଲେ । ସାରା ଭାରତବର୍ଷର ଶିକ୍ଷାନୁଷ୍ଠାନରେ ପରିଜାଙ୍କୁ ଉପଯୁକ୍ତ ସମ୍ମାନ ଦିଆଯାଉଥିଲା । ଏ ଦେଶର ଯେ କୌଣସି ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଛାତ୍ରଙ୍କୁ ଗ୍ରହଣ କରିବା ପାଇଁ ପରିଜାସାହେବଙ୍କ ହାତଲେଖା ଖଣ୍ଡିଏ ଯଥେଷ୍ଟ । ତାଙ୍କର ଛାତ୍ରମାନଙ୍କୁ ବିଶିଷ୍ଟ ବ୍ୟକ୍ତିଙ୍କ ସହିତ ପରିଚୟ କରାଇବାରେ ବିଶେଷ ଆଗ୍ରହ ଥିଲା ପରିଜାସାହେବଙ୍କର । ମାଡ୍ରାସ୍ ବିଶ୍ୱବିଦ୍ୟାଳୟର ସେତେବେଳର ପ୍ରଫେସର ଏମ୍.ଓ.ପି. ଆୟଙ୍ଗାର ଶୈବାଳରେ ଜଣେ ଖ୍ୟାତନାମା ବୈଜ୍ଞାନିକ । ସେ ପରିଜାଙ୍କର ବିଶିଷ୍ଟ ବନ୍ଧୁ । ତାଙ୍କରି ସାହଚର୍ଯ୍ୟରେ ଆୟଙ୍ଗାର ସହିତ ଚିଲିକାର ଶୈବାଳ ବିଷୟରେ ଆଲୋଚନା କରିବାର ସୁଯୋଗ ପାଇଥିଲି । ଡକ୍ଟର ଏମ୍. ଏସ୍. ରାନ୍ଧାଓ୍ୱା ଆଇ. ସି. ଏସ୍. ଶୈବାଳରେ ବହୁତ ଗବେଷଣା କରିଛନ୍ତି । ପରିଜା ତାଙ୍କୁ ଚିଲିକାର ଶୈବାଳ ଦେଖାଇବାକୁ ଆଣି ତାଙ୍କ ସହିତ ପରିଚୟ କରାଇ ଦେଇଥିଲେ ମତେ ।

ବିଲାତରେ ଥିବାବେଳେ ମୁଁ ପ୍ରଫେସର ଜି.ଇ.ବ୍ରିଗସ୍‌ଙ୍କ ସହିତ ଦେଖାକରିବାକୁ ଥରେ କେମ୍ବ୍ରିଜ୍ ଯାଇଥିଲି । ତାଙ୍କ ସେକ୍ରେଟରୀ ମତେ ପରବର୍ତ୍ତୀ ସପ୍ତାହରେ ଯିବାକୁ କହିଲେ । ମୋ ନାମଲେଖା କାଗଜ ଖଣ୍ଡିଏ ଦେଇ ଫେରିଆସିବାର ଅଳ୍ପ ସମୟ ପରେ ସେହି ଭଦ୍ରମହିଳା ପଛରୁ ଡାକିଲେ । ବ୍ରିଗସ୍‌ସାହେବ ମତେ ଦେଖି ଭାରି ଖୁସିହେଲେ । ପରିଜାଙ୍କର ସ୍ୱାସ୍ଥ୍ୟ ଓ ଭଲମନ୍ଦ ବଡ଼ ଆଗ୍ରହର ସହିତ ପଚାରି ବୁଝିଲେ । ତାଙ୍କ ସହିତ ମୋର ଦେଖା ହୋଇଥିଲା ବୋଲି ପରିଜାଙ୍କୁ ଜଣାଇବାକୁ କହିଲେ । ପ୍ରଫେସର ଏମ୍. ଥର୍ମାସ୍‌ଙ୍କ ପାଖରେ ଡରହାମ ବିଶ୍ୱବିଦ୍ୟାଳୟରେ ମୁଁ

ପିଏର୍.ଡି. ପାଇଁ ଗବେଷଣା କରୁଥିଲି । ପ୍ରଫେସର ଥର୍ମାସ୍ ଥିଲେ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟର ଛାତ୍ର । ୧୯୨୭-୨୮ ମସିହାରେ ପରିଜାଙ୍କ ସହିତ ତାଙ୍କର ପରିଚୟ । ପରିଜାଙ୍କୁ ଖୁବ୍ ସମ୍ମାନ କରୁଥିଲେ ସେ । ସେ କହୁଥିଲେ, "Parija has a great analytical mind"(ତୀକ୍ଷ୍ଣ ବିଚାରବୁଦ୍ଧି ସମ୍ପନ୍ନ) ।

ପ୍ରଫେସର ପରିଜାଙ୍କର ଜ୍ଞାନ, ଶିକ୍ଷାଦୀକ୍ଷା ପ୍ରଣାଳୀ ଓ ଗବେଷଣାଲବ୍ଧ ତତ୍ତ୍ୱ ଜଗତ ବିଖ୍ୟାତ । ତାଙ୍କର ଅଗଣିତ ଛାତ୍ର ଓ ସହକର୍ମୀ କହିବେ । ତାଙ୍କ ପାଖରେ ଗବେଷଣା କରିବା ପାଇଁ ଓଡ଼ିଶା ବାହାରୁ ବହୁ ବିଜ୍ଞାନୀ ଆସୁଥିଲେ । ଡକ୍ଟର ଏସ୍. ଏମ୍. ସରକାରଙ୍କ ପରି ପ୍ରଫେସର ପରିଜାସାହେବଙ୍କ ଅଧୀନରେ କାମ କରି ଯାଇଛନ୍ତି ।

ଶେଷ ଜୀବନରେ ବହୁ ମାନସିକ ଧକ୍କା ଲାଗିଥିଲା ତାଙ୍କୁ । ତାଙ୍କ ଆଗରେ ତାଙ୍କର ଅତି ଆଦରର ବଡ଼ଝିଅ ଓ ବଡ଼ଜ୍ୱାଇଁ ଇହଲୀଳା ସାଙ୍ଗ କରିଥିଲେ । ତାଙ୍କ ସାନପୁଅର ଅକାଳ ବିୟୋଗ ପରିଜା ଦମ୍ପତିଙ୍କ ପାଇଁ ଦାରୁଣ ଆଘାତ । କଟକର ଓ କଟକ ବାହାରର ବହୁ ବ୍ୟକ୍ତି ତାଙ୍କର ସେ ଦୁଃଖରେ ସମବେଦନା ଜଣାଇବା ପାଇଁ ତାଙ୍କ ବାସଭବନକୁ ଯାଇଥିଲେ । କିଏ ବା କ'ଣ କହି ତାଙ୍କୁ ସାନ୍ତ୍ୱନା ଦେବ ? ଲୋକେ ଆସୁଥାଆନ୍ତି, ଯାଉଥାଆନ୍ତି । କେତେକ ନିଶ୍ଚଳ ହୋଇ ତାଙ୍କୁ ଘେରି ବସିଥାଆନ୍ତି । ବହୁତ ରାତି ହୋଇଗଲା । ସେପରି ମାନସିକ ଅବସ୍ଥାରେ ମୋତେ ଅନାଇ କହିଲେ "କେମେତି ଯିବ" ? ଧନ୍ୟ ତାଙ୍କର ଧୈର୍ଯ୍ୟ ! ମୁଁ ନମସ୍କାର କରି ବିଦାୟ ନେଲି ।

ଅନେକ ସମୟରେ ସେ ଖୁବ୍ ମନଖୋଲା କଥାବାର୍ତ୍ତା ହୁଅନ୍ତି ଏକୁଟିଆ ବେଳେ । ଦିନେ କହିଲେ, ଦୀର୍ଘ ଜୀବନ କେବେ ସୁଖମୟ ନୁହେଁ । ସେତିକିବେଳେ କହିଥିଲେ, He who drinks the draught must not draw it to the dregs" । ( ଯେ କୌଣସି ପାନୀୟ ପିଇବ ଶେଷବୁନ୍ଦା ପର୍ଯ୍ୟନ୍ତ ପିଇବା ଅନୁଚିତ) ।

ଶ୍ରୀମତୀ ପରିଜାଙ୍କ ଶୁଦ୍ଧିକ୍ରିୟାରେ ଯୋଗଦେଇଥିଲି । ଘର ଭିତରକୁ ଗଲି ପରିଜାସାହେବଙ୍କୁ ଦେଖାକରିବାକୁ । ଆରାମ ଚୌକିରେ ବସିଥାନ୍ତି । ମତେ ଦେଖି କହିଲେ, "ବଂଶୀ ଆସିଚ ? ବସ । ଖାଇଲଣି ? କେମିତି ଫେରିବ ?" ସେଇ ଶେଷ ଦେଖା– ଶେଷ ବିଦାୟ । ଆଉ ଜୀବନରେ ସେପରି ସ୍ନେହବୋଳା କଥା ଶୁଣିବାକୁ ସୁଯୋଗ ମିଳିବନି ।

(ଶ୍ରୀ ବସନ୍ତକୁମାର ରାୟଙ୍କ ସୌଜନ୍ୟରୁ ପ୍ରାପ୍ତ)

# ଅମ୍ଲାନ ଜୀବନ

**ବଂଶୀଧର ସାମନ୍ତରାୟ**

୧୯୫୮ ମସିହା । କାନାଡ଼ାର ଟରଣ୍ଟୋ ସହରରେ ବ୍ରିଟିଶ୍ ରାଷ୍ଟ୍ରଗୋଷ୍ଠୀର ବିଭିନ୍ନ ବିଶ୍ୱବିଦ୍ୟାଳୟର କୁଳପତି ଓ ପ୍ରତିନିଧିମାନଙ୍କର ସମ୍ମିଳନୀ ହେଉଥାଏ । ବଡ଼ ବଡ଼ ସମ୍ମିଳନୀରେ ସାଧାରଣତଃ ଅନେକ ପ୍ରତିନିଧି ଯୋଗ ଦେଇଥାନ୍ତି । ସେମାନଙ୍କର ପରିଚୟଲାଗି ପୋଷାକର ଛାତି ପାଖରେ ନାମ ଓ ଠିକଣା ଲେଖାଥିବା ବ୍ୟାଜ୍ ଲଗାଇ ଦିଆଯାଇଥାଏ । ଏହି ସମ୍ମିଳନୀରେ ମଧ୍ୟ ସେହିଭଳି ବ୍ୟାଜ୍ ଲଗାଇ ଦିଆଯାଇଥିଲା । ବ୍ରିଟେନ୍‌ର ଜଣେ କୁଳପତି ଡକ୍ଟର ଏରିକ୍ ଆଶ୍‌ବି ଜଣେ ଭାରତୀୟ କୁଳପତିଙ୍କ ନାମ ତାଙ୍କ ବ୍ୟାଜ୍‌ରେ ଦେଖି ହଠାତ୍ କହିପକାଇଲେ, 'ପରିଜା' । ଏ ତ କ୍ଲାସିକାଲ୍ (ସୁବିଦିତ ଓ ପ୍ରାଚୀନ) ନାମ । ଭାରତୀୟ କୁଳପତି ଜଣକ କହିଲେ, ''ହଁ, ମୁଁ ସେହି କ୍ଲାସିକାଲ୍ ଲୋକ । ଏହି କ୍ଲାସିକାଲ୍ ନାମଯୁକ୍ତ ବୈଜ୍ଞାନିକଜଣକ ହେଉଛନ୍ତି ପ୍ରାଣକୃଷ୍ଣ ପରିଜା, ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ।

ପ୍ରାଣକୃଷ୍ଣ ପରିଜା ୧୮୯୧ ମସିହା ଏପ୍ରିଲ୍ ପହିଲାରେ ବାଲିକୁଦା ଥାନାର ଇଛାପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ବାଲ୍ୟକାଳରୁ ସେ ଜଣେ ମେଧାବୀ ଛାତ୍ର ଥିଲେ । ପ୍ରାଥମିକ ଶିକ୍ଷା ସମାପ୍ତ ପରେ ସେ ବାଲିକୁଦା ମାଇନର ସ୍କୁଲ୍‌ରେ ପଢ଼ିଲେ । ସେଠାରୁ କୃତିତ୍ୱର ସହିତ ପାସ୍ କରି ବୃତ୍ତି ପାଇ କଟକର ରେଭେନ୍ସା କଲେଜିଏଟ୍ ସ୍କୁଲ୍‌ରେ ପଢ଼ିଲେ । ପ୍ରଥମେ ମେସ୍‌ରେ ରହୁଥିଲେ; ମାତ୍ର ପରେ ସ୍କୁଲ ବୋର୍ଡ଼ିଂରେ ସ୍ଥାନ ପାଇଲେ । ସେଠାରୁ ୧୯୦୯ ମସିହାରେ କଲିକତା ବିଶ୍ୱବିଦ୍ୟାଳୟର ଏଣ୍ଟ୍ରାନ୍ସ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ୭ମ ସ୍ଥାନ (ଓଡ଼ିଶାରେ ୧ମ ସ୍ଥାନ) ଅଧିକାର କରି ବୃତ୍ତି ପାଇଥିଲେ । ସେତେବେଳେ ପ୍ରବେଶିକା ପରୀକ୍ଷା ବା ଏଣ୍ଟ୍ରାନ୍ସ ପରୀକ୍ଷାର ନାମ 'ମ୍ୟାଟ୍ରିକୁଲେସନ୍'କୁ ପରିବର୍ତ୍ତିତ ହୋଇ ନ ଥିଲା ।

ଏଣ୍ଟ୍ରାନ୍ସ ପରୀକ୍ଷା ପରେ ସେ ରେଭେନ୍ସା କଲେଜ୍‌ରେ ଆଇ.ଏସ୍‌ସି. କ୍ଲାସ୍‌ରେ ନାମ ଲେଖାଇଲେ । ସେଠାରୁ ଦୁଇବର୍ଷ ପରେ କଲିକତା ବିଶ୍ୱବିଦ୍ୟାଳୟରୁ ପ୍ରଥମ ଶ୍ରେଣୀରେ ୫ମ ସ୍ଥାନ (ଓଡ଼ିଶାରେ ୧ମ ସ୍ଥାନ) ଲାଭ କରି ବୃତ୍ତି ପାଇଲେ । ତା'ପରେ କଲିକତାର ପ୍ରେସିଡେନ୍ସି କଲେଜରେ ଗଣିତରେ ଅନର୍ସ ନେଇ ବି.ଏସ୍‌ସି. ପଢ଼ିଲେ ଓ ସେଠାରୁ ୨ୟ ଶ୍ରେଣୀ ଅନର୍ସରେ ବି.ଏସ୍‌ସି. ପାସ୍ କରି ଗ୍ରାଜୁଏଟ୍ ହେଲେ ।

ସେହି ସମୟରେ ମେଧାବୀ ଛାତ୍ରମାନଙ୍କୁ ଇଂଲଣ୍ଡରେ ପଢ଼ିବା ପାଇଁ ବୃତ୍ତି ଦିଆଯାଉଥିଲା । ବି.ଏସ୍‌ସି. ପାସ୍ କରି ପରିଜା ଏମ୍.ଏସ୍‌ସି. କ୍ଲାସ୍‌ରେ କଲିକତା

ବିଶ୍ୱବିଦ୍ୟାଳୟରେ ପଢ଼ିବା ସମୟରେ ବିହାର ଓ ଓଡ଼ିଶା ସରକାର ବିଲାତରେ ପଢ଼ିବାପାଇଁ ରାଷ୍ଟ୍ରୀୟ ବୃତ୍ତି (ଷ୍ଟେଟ୍ ସ୍କଲାର୍‌ସିପ୍) ବିଜ୍ଞାପିତ କରିଥିଲେ । ପ୍ରାଣକୃଷ୍ଣ ସେହି ବୃତ୍ତି ପାଇଁ ଆବେଦନ କରି ଉପଯୁକ୍ତ ବିବେଚିତ ହୋଇ ୧୯୧୪ ମସିହାରେ ଇଂଲଣ୍ଡ ଯାତ୍ରା କଲେ । ସେତେବେଳେ ପାଣିଜାହାଜରେ ସମୁଦ୍ରରେ ବିଲାତ ଯିବାକୁ ପଡ଼ିଥିଲା । ପ୍ରାୟ ୨୫ ଦିନରୁ ମାସେ ସମୟ ଲାଗୁଥିଲା ।

ସେଠାରେ ସେ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ବି.ଏ.ରେ ନାମ ଲେଖାଇଲେ । କେମ୍ବ୍ରିଜ୍‌ର ଆର୍ଟସ୍ ହେଉ ବା ବିଜ୍ଞାନ ହେଉ ସବୁଥିରେ ବି.ଏ. ଉପାଧି ଥିଲା ଏବଂ ଆଜିଯାଏ ମଧ୍ୟ ଅଛି । ଏହି ସ୍ନାତକ ପରୀକ୍ଷା ତିନିବର୍ଷ ପଢ଼ାଯାଏ । ଏହା ଦୁଇ ଭାଗରେ ବିଭକ୍ତ– ପ୍ରଥମ ଓ ଦ୍ୱିତୀୟ । ପରିଜା ପ୍ରଥମ ଭାଗରେ ନେଚୁରାଲ୍ ସାଇନ୍ସ (ପ୍ରାକୃତିକ ବିଜ୍ଞାନ) ଓ ଦ୍ୱିତୀୟ ଭାଗରେ ଉଦ୍ଭିଦ ବିଦ୍ୟା ନେଇ ବି.ଏ. ଟ୍ରାଇପସ୍ (ଅନର୍ସ) ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପାସ୍ କରିଥିଲେ ।

କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ପଢ଼ିବା ସମୟରେ ବଡ଼ ବଡ଼ ବୈଜ୍ଞାନିକମାନେ ତାଙ୍କର ଶିକ୍ଷକ ଥିଲେ । କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ଫ୍ରାଙ୍କ୍ ସ୍ମାର୍ଟ ଗନ୍‌ଭିଲେ ନାମକ ଜଣେ ପିଲାର ବାପା ତାଙ୍କ ପୁତ୍ର ଫ୍ରାଙ୍କ୍‌ର ଅକାଳ ବିୟୋଗ ପରେ ଗୋଟିଏ ଗବେଷଣା ବୃତ୍ତି ଖଞ୍ଜିଦେଇଥିଲେ । ଏହି ବୃତ୍ତି ପାଇଁ ବହୁତ ମେଧାବୀ ଛାତ୍ର ଦରଖାସ୍ତ କରିଥିଲେ । ମାତ୍ର ସେମାନଙ୍କ ମଧ୍ୟରୁ ପ୍ରାଣକୃଷ୍ଣ ପରିଜା ଏହି ବୃତ୍ତି ଲାଭ କରିଥିଲେ ଓ ସେ ସମୟରେ ଉଦ୍ଭିଦ ପ୍ରକ୍ରିୟା ତତ୍ତ୍ୱର ରିଡ଼ର୍ (ପ୍ରାଧ୍ୟାପକ) ଫ୍ରେଡେରିକ୍ ଫ୍ରଷ୍ଟ ବ୍ଲାକ୍‌ମ୍ୟାନ୍ (ସଂକ୍ଷେପରେ ଏଫ୍.ଏଫ୍. ବ୍ଲାକ୍‌ମ୍ୟାନ୍)ଙ୍କ ତତ୍ତ୍ୱାବଧାନରେ ଗବେଷଣାରେ ନିଯୁକ୍ତ ହେଲେ । ବ୍ଲାକ୍‌ମ୍ୟାନ୍ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ଉଦ୍ଭିଦବିଜ୍ଞାନର ରିଡ଼ର୍ ଥିଲେ ମଧ୍ୟ ସେ ଥିଲେ ପୃଥିବୀର ଜଣେ ବିଖ୍ୟାତ ଉଦ୍ଭିଦ ପ୍ରକ୍ରିୟା ବିଷୟ ବିଶେଷଜ୍ଞ । ପରିଜା ଏହି ବୃତ୍ତି ପାଇବାରେ ପ୍ରଥମ ଭାରତୀୟ । ଏହି ବୃତ୍ତିର ସମୟ ପରିସମାପ୍ତ ପରେ ପରିଜା ବିଲାତ ସରକାରଙ୍କ ଫୁଡ୍ ଇନ୍‌ଭେଷ୍ଟିଗେସନ୍ ବୋର୍ଡ଼ର ବୃତ୍ତିଲାଭ କରି ଉଦ୍ଭିଦର ପ୍ରଶ୍ୱସନ ବିଷୟରେ ଗବେଷଣା କରିଥିଲେ ।

ଏହା ପରେ ପରିଜା ୧୯୨୧ ମସହାରେ ଇଣ୍ଡିଆନ୍ ଏଜୁକେସନ୍ ସର୍ଭିସ୍‌ରେ ନିଯୁକ୍ତି ପାଇ ରେଭେନ୍ସା କଲେଜରେ ଉଦ୍ଭିଦବିଜ୍ଞାନ ପ୍ରଫେସର ଭାବରେ ଯୋଗଦେଲେ । ଏହି ଉଚ୍ଚ ପଦରେ ଅଧିଷ୍ଠିତ ହେବା ପରେ ସେ ପରିଜାସାହେବ ନାମରେ ପରିଚିତ ହେଲେ ।

ପରିଜାସାହେବ ବିଲାତ ଯିବାର ବର୍ଷକ ପରେ ଶ୍ୟାମଚନ୍ଦ୍ର ତ୍ରିପାଠୀ ବିହାର ଓ ଓଡ଼ିଶା ପ୍ରଦେଶର ରାଷ୍ଟ୍ରୀୟ ବୃତ୍ତି ପାଇ କେମ୍ବ୍ରିଜ୍‌ରେ ପଦାର୍ଥବିଜ୍ଞାନ ପଢ଼ିବାକୁ ଯାଇଥିଲେ । ସେଠାରେ ପଦାର୍ଥ ବିଜ୍ଞାନରେ ବି.ଏ. ଟ୍ରାଇପସ୍ ପାସ୍ କରି ସେ ୧୯୨୦ ମସିହାରେ ଭାରତକୁ ଫେରି ଆସିଥିଲେ । ସେ ପ୍ରଥମେ ରେଭେନ୍ସା କଲେଜିଏଟ୍ ସ୍କୁଲ୍‌ର ପ୍ରଧାନ ଶିକ୍ଷକ ହେଲେ । ମୁଁ ସେହିବର୍ଷ ସେହି ସ୍କୁଲ୍‌ରେ ୪ର୍ଥ

ଶ୍ରେଣୀରେ ପଢୁଥିଲି ଏବଂ ତ୍ରିପାଠୀସାହେବ ସପ୍ତାହକେ ଦୁଇଥର ଆମକୁ ଇଂରାଜୀ କନ୍‌ଭରସେସନ୍ ଶିଖାଉଥିଲେ । ସେଠାରୁ କେତେମାସ ପରେ ରେଭେନ୍ସା କଲେଜର ତଦାନୀନ୍ତନ ପଦାର୍ଥବିଜ୍ଞାନ ପ୍ରଫେସର ଶରତଚନ୍ଦ୍ର ମଜୁମ୍‌ଦାର ପାଟନାକୁ ଭୂଗୋଳ ପ୍ରଫେସର ହୋଇ ବଦଳି ହୋଇଯିବାରୁ ତ୍ରିପାଠୀସାହେବ ସେଠାକୁ ପଦାର୍ଥବିଜ୍ଞାନ ପ୍ରଫେସର ହୋଇ ଆସିଲେ ଓ କିଛିଦିନ ପରେ ଇଣ୍ଡିଆନ୍ ଏଡୁକେସନ୍ ସର୍ଭିସ୍‌ରେ ନିଯୁକ୍ତି ପାଇବାରୁ ତାଙ୍କର ପଦୋନ୍ନତି ହୋଇଥିଲା । ସେ ମଧ୍ୟ ତ୍ରିପାଠୀସାହେବ ନାମରେ ଅଭିହିତ ହେଉଥିଲେ । ସେ ପରିଜାସାହେବଙ୍କ ପରେ ବିଲାତ ଯାଇଥିଲେ ମଧ୍ୟ ତାଙ୍କ ଆଗରୁ ବିଲାତରୁ ଫେରି ଇଣ୍ଡିଆନ୍ ଏଡୁକେସନ୍ ସର୍ଭିସ୍‌ରେ ନିଯୁକ୍ତି ପାଇଥିବାରୁ ସେ ପରିଜାସାହେବଙ୍କଠାରୁ ସରକାରୀ ଚାକିରିରେ ସିନିୟର ହୋଇଥିଲେ ।

କେମ୍ବ୍ରିଜ୍‌ରେ ଏ ଦୁଇଜଣ ପଢ଼ିବା ସମୟରେ ବିଲାତରେ ଆଉ ଦୁଇଜଣ ଓଡ଼ିଆ ଯୁବକ ଯଥା: ଭୁବନାନନ୍ଦ ଦାସ (ସ୍ୱାମୀ ବିଚିତ୍ରାନନ୍ଦ ଦାସଙ୍କ ଯାଆଁଳା ଭାଇ) ଓ ସଚ୍ଚିଦାନନ୍ଦ ରାୟ ମଧ୍ୟ ପଢୁଥିଲେ । ଭୁବନାନନ୍ଦ ଗ୍ଲାସ୍‌ଗୋଠାରେ ଇଞ୍ଜିନିଅରିଂ ପଢୁଥିଲେ ଓ ସଚ୍ଚିଦାନନ୍ଦ ଅକ୍ସଫୋର୍ଡ଼ରେ ବି.ଏ. ପଢୁଥିଲେ । ପ୍ରଖ୍ୟାତ ସାହିତ୍ୟିକ ଓ ବାଗ୍ମୀ ସ୍ୱର୍ଗତ ବିଶ୍ୱନାଥ କରଙ୍କ ଦ୍ୱାରା ସମ୍ପାଦିତ ଓ ପ୍ରକାଶିତ 'ଉତ୍କଳ ସାହିତ୍ୟ' ମାସିକ ସାହିତ୍ୟ ପତ୍ରିକାରେ ୧୯୨୦ ମସିହାର ଏକ ସଂଖ୍ୟାରେ ବିଲାତରେ ପଢୁଥିବା ଏହି ଚାରିଜଣ ଓଡ଼ିଆ ଯୁବକଙ୍କର ଏକ ଫଟୋ ପ୍ରକାଶିତ ହୋଇଥିଲା । ଏଥିରେ ପ୍ରାଣକୃଷ୍ଣ ପରିଜା ଓ ଭୁବନାନନ୍ଦ ଦାସ ଚୌକିରେ ବସିଛନ୍ତି ଓ ସେମାନଙ୍କ ଚୌକିକୁ ଆଉଜି ଛିଡ଼ା ହୋଇଛନ୍ତି ଶ୍ୟାମଚନ୍ଦ୍ର ତ୍ରିପାଠୀ ଓ ସଚ୍ଚିଦାନନ୍ଦ ରାୟ । ଭାରତକୁ ଫେରି ଇଞ୍ଜିନିଅର ଭୁବନାନନ୍ଦ ସ୍ୱାଧୀନ ବ୍ୟବସାୟ କରି ପରବର୍ତ୍ତୀ ସମୟରେ କେନ୍ଦ୍ରୀୟ ବ୍ୟବସ୍ଥାପକ ସଂସଦର ମେମ୍ବର ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍ ଓ ମେମ୍ବର ଅଫ୍ ପାର୍ଲିଆମେଣ୍ଟ ହୋଇଥିଲେ । ସଚ୍ଚିଦାନନ୍ଦ ଭାରତକୁ ଫେରି ମହାରାଜା କଲେଜ, ପାରଳାଖେମୁଣ୍ଡିର ଅଧ୍ୟକ୍ଷ ହୋଇଥିଲେ ଓ ପରେ ଓଡ଼ିଶା ଶିକ୍ଷା ବିଭାଗର ଡି.ପି.ଆଇ. ହୋଇଥିଲେ ।

୧୯୨୧ ମସିହାରେ ପରିଜାସାହେବ ରେଭେନ୍ସା କଲେଜରେ ଉଦ୍ଭିଦବିଜ୍ଞାନର ପ୍ରଫେସର ରୂପେ ଯୋଗଦେଲାବେଳକୁ ରେଭେନ୍ସା କଲେଜ ବର୍ତ୍ତମାନର କୋଠାକୁ ଉଠି ଆସିଥାଏ । ରେଭେନ୍ସା କଲେଜ ଯେଉଁ ପୁରୁଣା କୋଠାଘରେ ହେଉଥିଲା, ସେଠାରେ ରେଭେନ୍ସା କଲେଜିଏଟ୍ ସ୍କୁଲ ସ୍ଥାପିତ ହୋଇଥାଏ । ଚାଉଳିଆଗଞ୍ଜର ରେଭେନ୍ସା କଲେଜର ନୂଆ କୋଠା 'କେମ୍ବ୍ରିଜ୍ ଓ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟ ଅନୁକରଣରେ ନିର୍ମିତ ହୋଇଥାଏ । ଏଥିରେ ପୂର୍ବ ଓ ପଶ୍ଚିମ ପାଖରେ ଦୁଇଟି ହଷ୍ଟେଲ୍ ଥାଏ । ତ୍ରିପାଠୀ ସାହେବ ଆଗରୁ ପୂର୍ବ ପାଖ ହଷ୍ଟେଲ୍‌ର ୱାର୍ଡ଼େନ୍ ହୋଇଥାନ୍ତି ଓ ପରିଜାସାହେବ ଆସି ଯୋଗଦେଲା ପରେ ସେ ପଶ୍ଚିମ ପାଖ ହଷ୍ଟେଲ୍‌ର ୱାର୍ଡ଼େନ୍ ହେଲେ ।

ରେଭେନ୍ସା କଲେଜରେ ପରିଜାସାହେବ ପ୍ରଫେସର ରୂପେ ଯୋଗଦେବା ପରେ ଉଦ୍ଭିଦବିଜ୍ଞାନ ବିଭାଗର ବଗିଚା ଓ ମିଉଜିୟମ୍‌ର ସଂସ୍କାର କରିଥିଲେ । ଭାରତର

ବିଭିନ୍ନ ସ୍ଥାନରୁ ଦୁର୍ଲଭ ଉଦ୍ଭିଦ ସବୁ ସଂଗ୍ରହ କରି ସେହି ଉଦ୍ୟାନରେ ରୋପଣ କରିଥିଲେ । ୧୯୨୭ ମସିହାରେ ସେ ପୁଣି ଥରେ ବିଲାତ ଯାଇଥିଲେ । ତାଙ୍କର ଗବେଷଣାଲବ୍ଧ ତଥ୍ୟସବୁ ଏକତ୍ର କରି ବର୍ଷକ ମଧ୍ୟରେ ସେ ପ୍ରକାଶଯୋଗ୍ୟ ଅବସ୍ଥାରେ ବ୍ଲାକ୍‌ମ୍ୟାନଙ୍କୁ ଜିମା କରିଦେଲେ । ସେ ଗବେଷଣା ନଅଟି ସନ୍ଦର୍ଭ ସମ୍ବଳିତ । ତା'ପରେ ପରିଜାସାହେବ ୧୯୨୮ରେ ଭାରତ ଫେରିଆସିଲେ । ଏହା ମଧ୍ୟରେ ବ୍ଲାକ୍‌ମ୍ୟାନ୍ ସେଇ ନଅଟି ସନ୍ଦର୍ଭରୁ ଗୋଟିଏ ବ୍ଲାକ୍‌ମ୍ୟାନ୍ ଓ ପରିଜାଙ୍କ ନାମରେ, ଆଉ ଗୋଟିଏ ପରିଜାଙ୍କ ନାମରେ ଓ ତୃତୀୟଟି ବ୍ଲାକ୍‌ମ୍ୟାନ୍ ନିଜ ନାମରେ ସେତେବେଳର ସର୍ବପ୍ରଧାନ ବିଜ୍ଞାନପତ୍ରିକା 'ପ୍ରସିଡିଙ୍ଗସ୍ ଅଫ୍ ରୟାଲ୍ ସୋସାଇଟି ଅଫ୍ ଲଣ୍ଡନ୍'ରେ ୧୯୨୮ ମସିହାରେ ପ୍ରକାଶ କଲେ । ବାକି ଛଅଟି ସନ୍ଦର୍ଭ ବ୍ଲାକ୍‌ମ୍ୟାନଙ୍କ ପାଖରେ ଥିଲା । ତାଙ୍କ ମୃତ୍ୟୁ ପରେ ପ୍ରଫେସର ଏଫ୍.ଏଫ୍. ବ୍ଲାକ୍‌ମ୍ୟାନ୍‌ଙ୍କୁ ପ୍ରଣେତା ରୂପେ ରଖି କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ ସମସ୍ତ ନଅଟି ଯାକ ସନ୍ଦର୍ଭ ଆନାଲିଟିକ୍ ଷ୍ଟଡ଼ିଜ୍ ଇନ୍ ପ୍ଲାଣ୍ଟ ରେସ୍‌ପିରେସନ୍ ଶୀର୍ଷକ ଏକ ପୁସ୍ତକରେ ୧୯୫୪ ମସିହାରେ ଛପାଇଦେଲେ ।

ରୟାଲ୍ ସୋସାଇଟି ପତ୍ରିକାରେ ଯେଉଁ ତିନୋଟି ସନ୍ଦର୍ଭ ଛପା ହୋଇଥିଲା ସେଥିରୁ ୨ଟିରେ କେବଳ ଗବେଷଣା ତଥ୍ୟ ଦିଆଯାଇଥିଲା । ତାହାର ଆଲୋଚନା ହୋଇ ତଥ୍ୟର ତାତ୍ପର୍ଯ୍ୟ ଦିଆଯାଇ ନ ଥିଲା । ବ୍ଲାକ୍‌ମ୍ୟାନ୍ ୩ୟ ସନ୍ଦର୍ଭରେ ପରିଜାସାହେବଙ୍କ ନାମରେ ପ୍ରକାଶିତ ୨ୟ ସନ୍ଦର୍ଭର ତଥ୍ୟର ବିଶ୍ଳେଷଣ କରି ଓ ଦୃଷ୍ଟାନ୍ତ ଦେଇ ତାଙ୍କର ମତବାଦ ପ୍ରତିଷ୍ଠା କଲେ । ସେ ଦର୍ଶାଇଥିଲେ ଯେ ପ୍ରଶ୍ୱସନ ସର୍କରାର ବିଭାଜନ ପ୍ରକ୍ରିୟା ହୋଇଥିବାରୁ ଓ ସେଥିରୁ ଶକ୍ତି ନିର୍ଗତ ହେଉଥିବାରୁ ତାହା ଅନେକଗୁଡ଼ିଏ ଧାରାବାହିକ ଛୋଟ ଛୋଟ ପ୍ରକ୍ରିୟାର ସଂଯୋଜିତ ସମଷ୍ଟି । ଅମ୍ଳଜାନ ଅଭାବରେ ଏହିସବୁ ପ୍ରକ୍ରିୟାଗୁଡ଼ିକ ସଂଘଟିତ ହେଉଥିବାରୁ ଯେତେ ଅଙ୍ଗାରକାମ୍ଳ ବାଷ୍ପ ନିର୍ଗତ ହେଉଛି ତାହା ଅମ୍ଳଜାନ ଉପସ୍ଥିତିରେ କମିଯାଉଛି । ଅର୍ଥାତ୍ ଅମ୍ଳଜାନ ଅଭାବରେ ଅଙ୍ଗାରକାମ୍ଳ ବାଷ୍ପର ଉଦ୍ଭବ ଅଧିକ ହେଉଛି । ଅମ୍ଳଜାନ ଉପସ୍ଥିତିରେ ତାହା ତ ବେଶି ହେବାର କଥା, ମାତ୍ର କମ୍ କାହିଁକି ହେଉଛି ? ବ୍ଲାକ୍‌ମ୍ୟାନ୍ ତାକୁ ବିଶ୍ଳେଷଣ କରି କହିଲେ ଯେ ଅମ୍ଳଜାନ ଉପସ୍ଥିତିରେ ଏହି ମଧ୍ୟବର୍ତ୍ତୀ ପ୍ରକ୍ରିୟାଗୁଡ଼ିକର ଉତ୍ପାଦ (ପ୍ରଡକ୍ଟ) ମୂଳ ପଦାର୍ଥ ଗଠନରେ ନିୟୋଜିତ ହୋଇଯିବାରୁ ଅଳ୍ପ ଅଙ୍ଗାରକାମ୍ଳ ବହିର୍ଗତ ହୁଏ । ଅମ୍ଳଜାନ ଉପସ୍ଥିତିରେ ମଧ୍ୟବର୍ତ୍ତୀ ପ୍ରକ୍ରିୟାମାନଙ୍କର ଉତ୍ପାଦନଗୁଡ଼ିକ ମୂଳ ପଦାର୍ଥ ଦିଗରେ ସଂଶ୍ଳେଷିତ ହୋଇଯିବାରୁ ଏପରି ହେଉଛି । ଏହା ଏକ ପ୍ରକାର ସଂଶ୍ଳେଷଣ । ବିଶ୍ଳେଷଣାତ୍ମକ ପ୍ରକ୍ରିୟାରେ ଅମ୍ଳଜାନ ଯୋଗେ ଏ ପ୍ରକାର ସଂଶ୍ଳେଷଣ ଘଟୁଛି । ଏହି ତଥ୍ୟର ନାମ ସେ ଦେଇଥିଲେ 'ଅକ୍ସିଡେଟିଭ୍ ଆନାବଲିଜମ୍' ।

ରୟାଲ୍ ସୋସାଇଟି ପତ୍ରିକାରେ ଏହି ସନ୍ଦର୍ଭଗୁଡ଼ିକ ପ୍ରକାଶିତ ହେବା ପରେ ପରେ ଉଦ୍ଭିଦ ଶରୀରତତ୍ତ୍ୱ ବିଷୟରେ ଯେତେ ପୁସ୍ତକ ପ୍ରକାଶିତ ହେଲା, ସେଥିରେ ଏହି ମତବାଦ ବିଶେଷଭାବେ ଆଲୋଚିତ ହେଲା ଏବଂ ସେଥିରେ ବ୍ଲାକ୍‌ମ୍ୟାନ୍ ଓ ପରିଜାଙ୍କ

ନାମ ଉଲ୍ଲେଖ ଥିଲା । ସାରା ପୃଥିବୀର ଉଦ୍ଭିଦ ବିଶାରଦମାନେ ଗୁରୁ ବ୍ଲାକ୍‌ମ୍ୟାନ୍ ଓ ଶିଷ୍ୟ ପରିଜ୍ଞାଙ୍କ ନାମ ସହିତ ପରିଚିତ ହୋଇଗଲେ ।

ଏରିକ୍ ଆଶ୍‌ବି ଲଣ୍ଡନରେ ଇମ୍ପିରିୟାଲ୍ କଲେଜ ଅଫ୍ ସାଇନ୍ସ ଆଣ୍ଡ୍ ଟେକ୍‌ନୋଲଜିର ଉଦ୍ଭିଦ ବିଦ୍ୟାର ଛାତ୍ର । ମୁଁ ମଧ୍ୟ ସେହି କଲେଜରେ ପିଏଚ୍.ଡି. (ଡକ୍ଟରେଟ୍) କରିଛି ଏବଂ ଆଶ୍‌ବିଙ୍କୁ ମଧ୍ୟ ଜାଣେ । ସେ ନିଜର ଛାତ୍ରାବସ୍ଥାରେ ଉଦ୍ଭିଦର ପ୍ରକ୍ରିୟାତତ୍ତ୍ୱ ପଢ଼ିଲାବେଳେ ବ୍ଲାକ୍‌ମ୍ୟାନ୍ ଓ ପରିଜ୍ଞାଙ୍କ ନାମ ସହିତ ପରିଚିତ ହୋଇଥିଲେ । ଏଣୁ ତିରିଶ ବର୍ଷ ପରେ ସେଇ ନାମକୁ ଦେଖି ପରିଜ୍ଞାଙ୍କ ନାମକୁ କ୍ଲାସିକାଲ୍ (ସୁବିଦିତ ଓ ପ୍ରାଚୀନ) କହିପକାଇଲେ ।

୧୯୨୮ ମସିହାରେ ମୁଁ ରେଭେନ୍ସା କଲେଜରେ ଆଇ.ଏସ୍‌ସି. ଶ୍ରେଣୀରେ ନାମ ଲେଖାଇଲି । ସେତେବେଳେ ବିଜ୍ଞାନ ବିଷୟ ଯଥା– ପଦାର୍ଥବିଜ୍ଞାନ, ରସାୟନ ବିଜ୍ଞାନ ଓ ଗଣିତ ଶାସ୍ତ୍ର ଏହି ତିନୋଟି ବିଷୟ ପଢ଼ାଯାଉଥିଲା । ଏହା ସହିତ ଯେଉଁମାନେ ମାଟ୍ରିକୁଲେସନ୍ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପାସ୍ କରିଥାଆନ୍ତି ସେମାନେ ଉଦ୍ଭିଦବିଜ୍ଞାନ ୪ର୍ଥ ବିଷୟ ଅଧିକା ନେଇ ପଢ଼ିପାରୁଥିଲେ । ଏଣୁ ମୁଁ ଏହି ଚାରୋଟି ବିଷୟ ନେଇ ଆଇ.ଏସ୍‌ସି. ପଢ଼ିଲି । ଏହା ସହିତ ଇଂରାଜୀ ସାହିତ୍ୟ ଓ ଓଡ଼ିଆ ବାଧ୍ୟତାମୂଳକ ବିଷୟ ଥିଲା ।

ପରିଜ୍ଞାସାହେବଙ୍କ ସହିତ ମୋର ପ୍ରଥମ ପରିଚୟ ହୋଇଥିଲା । ସେ ଯେତେବେଳେ ବିଲାତରୁ ଆସି ୧୯୨୧ ମସିହାରେ ରେଭେନ୍ସା କଲେଜରେ ଯୋଗଦେଲେ ତାଙ୍କ ଅଭ୍ୟର୍ଥନା ଭୋଜିରେ ସେ ଭୋଜିକୁ ମୁଁ ମୋର ପିତୃବ୍ୟ ଇଂରାଜୀ ସାହିତ୍ୟରେ ରେଭେନ୍ସା କଲେଜରେ ତଦାନୀନ୍ତନ ଅଧ୍ୟାପକ କୃତ୍ତିବାସ ସାମନ୍ତରାୟଙ୍କ ସାଙ୍ଗରେ ଆସିଥିଲି । ସେଠାରେ ତ୍ରିପାଠୀସାହେବ ମୋ ସହିତ ପୁରୁଣା ଛାତ୍ର ହିସାବରେ କଥାବାର୍ତ୍ତା ହେବାରୁ ସେତେବେଳେ ପରିଜ୍ଞାସାହେବଙ୍କ ସହିତ ପରିଚୟ କରାଇଦେଇଥିଲେ ।

ପ୍ରଫେସର ପରିଜ୍ଞାଙ୍କ ସମ୍ମାନାର୍ଥେ ମୋ କକାଙ୍କ ବାସଭବନରେ ମଧ୍ୟ ଏକ ରାତ୍ରିଭୋଜନର ଆୟୋଜନ କରାଯାଇଥିଲା । ସେଠାକୁ ରେଭେନ୍ସା କଲେଜ କ୍ୟାମ୍ପସ୍‌ରେ ରହୁଥିବା ଅଧ୍ୟାପକମାନଙ୍କୁ ନିମନ୍ତ୍ରଣ କରାଯାଇଥିଲା । ସେହି ସମାରୋହରେ ଶ୍ରୀ ଭୁବନାନନ୍ଦ ଦାସ ଏବଂ ତାଙ୍କ ଯାଆଁଳା ଭାଇ ସ୍ୱାମୀ ବିଚିତ୍ରାନନ୍ଦ ଦାସ ମଧ୍ୟ ଉପସ୍ଥିତ ଥିଲେ । ସେଠି ମୁଁ ଆଉ ଥରେ ପ୍ରଫେସର ପରିଜ୍ଞାଙ୍କ ସହିତ କଥାବାର୍ତ୍ତା ହବାର ସୁଯୋଗ ଲାଭ କରିଥିଲି । ତାଙ୍କର ଡେଙ୍ଗା ଚେହେରା, ସେ ପିନ୍ଧିଥିବା ଚଷମା ଭିତରୁ ପରିସ୍ଫୁଟ ହେଉଥିବା ଉଜ୍ଜ୍ୱଳ ଚକ୍ଷୁଦ୍ୱୟ ଏବଂ ବିଦ୍ୱତ୍ତାପୂର୍ଣ୍ଣ ଅବନମିତ ଭଙ୍ଗୀ ମୋ ମନରେ ଏକ ଗଭୀର ଛାପ ଅଙ୍କନ କରିଦେଇଥିଲା । ସେ ସମୟରେ ସେ ନିଶ ରଖିଥିଲେ । ଏହିଭଳି ଭାବରେ ମୁଁ ପ୍ରଫେସର ପରିଜ୍ଞାଙ୍କୁ ଜାଣିବାକୁ ପାଇଲି ।

ପ୍ରଫେସର ପରିଜାଙ୍କର ଜଣେ ଛାତ୍ରଭାବରେ ମୁଁ ରେଭେନ୍ସା କଲେଜରେ ୧୯୨୮ ରୁ ୧୯୩୨ ମସିହାଯାଏ ପଢ଼ିଥିଲି । ପରିଜାସାହେବଙ୍କ ପାଠ ପଢ଼ାଇବା ପ୍ରଣାଳୀରେ ସମସ୍ତେ ମୁଗ୍ଧ ହୋଇଯାଉଥିଲେ । କେତେବେଳେ ତାଙ୍କ ଲେକ୍ଚର ଓ ପ୍ରାକ୍ଟିକାଲ୍ କ୍ଲାସ୍ ହେବ ତାକୁ ପିଲାମାନେ ଚାହିଁ ରହୁଥିଲେ । ପାଠ କିପରି ଆଗ୍ରହଜନକ ହେବ ତାହା ତାଙ୍କୁ ଭଲଭାବରେ ଜଣାଥିଲା । କେଉଁଠି ଢଗଟିଏ, କେଉଁଠି ପଦ୍ୟାଂଶଟିଏ କିମ୍ବା କେଉଁ କେଉଁ ଘଟଣା କହିଲେ ଉପଯୁକ୍ତ ହେବ ତାହା ପ୍ରୟୋଗ କରି ପିଲାମାନଙ୍କ ଉତ୍ସାହ ଓ ଏକାଗ୍ରତା ଜାଗ୍ରତ କରାଉଥିଲେ । ମୋର ମନେପଡୁଛି ଥରେ ଜଣେ ପିଲା ପ୍ରାକ୍ଟିକାଲ୍ କ୍ଲାସ୍‌ରେ ବିମର୍ଷ ହୋଇ ବସିଥାଏ । ତାକୁ ଦେଖି ପରିଜାସାହେବ କହିଲେ, କ'ଣ ! ତମର ବଡ଼ପୁଅ ମରିଯାଇଛି କି ? ଏପରି କାହିଁକି ନିର୍ଲିପ୍ତ ହୋଇ ବସିଛ ?'' ସାଙ୍ଗେ ସାଙ୍ଗେ ସେ ପିଲା ତା'ର ଭୁଲ ବୁଝିପାରି ପ୍ରାକ୍ଟିକାଲ୍ କାମରେ ମନ ଦେଲା ।

ବିଜ୍ଞାନପଢ଼ାରେ ବିଶେଷତଃ ଉଦ୍ଭିଦ ବିଦ୍ୟାରେ ପର୍ଯ୍ୟଟନ (ଏକ୍ସକରସନ୍) ଗୋଟିଏ ଅବିଚ୍ଛେଦ୍ୟ ଅଙ୍ଗ । ଆମେ ସବୁ ତାଙ୍କ ସାଙ୍ଗରେ ସ୍ଥାନ ବୁଲି ଦେଖିଛୁ । ଯେଉଁଠାକୁ ସେ ଯାଆନ୍ତି ସେଠି ସେ ଆଦର, ସମ୍ମାନ ଓ ଅଭ୍ୟର୍ଥନା ପାଇଥାନ୍ତି । ତାଙ୍କର ଛାତ୍ର ହିସାବରେ ଆମେ ସବୁ ଅଧିକ ଯତ୍ନ ବି ପାଇଥାଉ । ଥରେ ଆଠମଲ୍ଲିକର ରାଜାସାହେବ ତାଙ୍କୁ ଏହି ପ୍ରକାର ଭ୍ରମଣ ପାଇଁ ନିମନ୍ତ୍ରଣ କରିଥିଲେ । ଆମେ ସବୁ ତାଙ୍କ ସାଙ୍ଗରେ ଯାଇଥିଲୁ । ସେଠାରେ ଆଠମଲ୍ଲିକର ଦର୍ଶନୀୟ ସ୍ଥାନ, ଉଷ୍ଣ ପ୍ରସ୍ରବଣ ପ୍ରଭୃତି ଦେଖି ଓ ପର୍ବତାରୋହଣରେ ଯୋଗଦେଇ ଯେଉଁ ଜ୍ଞାନ ଆହରଣ କରିଥିଲୁ ମୋର ଆଜିଯାଏ ତାହା ମନେଅଛି । ସେଠାରେ ଆଠମଲ୍ଲିକର ଦେବାନ୍ ଶ୍ରୀଯୁକ୍ତ ବାମଦେବ ମିଶ୍ରଙ୍କ ସାହଚର୍ଯ୍ୟ ପାଇଥିଲୁ । ବାମଦେବବାବୁ ଜଣେ ରହସ୍ୟପ୍ରିୟ ବ୍ୟକ୍ତି ଓ ତାଙ୍କ ଅମଳର ଅଧ୍ୟାପକମାନଙ୍କର ବ୍ୟଙ୍ଗ କାରିକେଚର କରିବାରେ ସେ ଧୁରନ୍ଧର ।

ସେଠାରୁ ବୌଦ, ନୟାଗଡ଼, ଖଣ୍ଡପଡ଼ା ଓ ଖୋର୍ଦ୍ଧାଦେଇ କଟକ ଫେରିଲୁ । ଖଣ୍ଡପଡ଼ାରେ ଯେ ଦେବାନ୍ ଥିଲେ ସେ ଆମପାଇଁ ହାତୀରେ ଚଢ଼ି ଜଙ୍ଗଲ ଦେଖିବାର ବନ୍ଦୋବସ୍ତ କରିଦେଇଥିଲେ । ସେହି ସମୟରେ ଆମେ ହାତୀ ଉପରୁ ଦେଖିଲୁ ଗୋଟାଏ ମହାବଳ ବାଘ ଆମ ଆଡ଼କୁ ଆସୁଛି । ସେ ବାଘ ହଠାତ୍ ଅଟକିଯାଇ ସଙ୍ଗେ ସଙ୍ଗେ ଫେରିଗଲା । ପରିଜାସାହେବଙ୍କ ସହିତ ଏହି ଭ୍ରମଣ ସମୟରେ ଭଲଭାବରେ ମିଶିବାର ସୁଯୋଗ ମିଳିଥାଏ । ତାଙ୍କୁ ଏତେ ଚିତ୍ତାକର୍ଷକ ଗପ ଜଣାଥିଲା ଯେ ସେ ବାଟଯାକ ବସ୍‌ରେ ବସିଲାବେଳେ କିମ୍ବା ବଣ ବୁଲିଲାବେଳେ ଗପ କହିକରି ଆମ ସମସ୍ତଙ୍କୁ ମୋହିତ କରିଦିଅନ୍ତି । ବେଳେବେଳେ ରହସ୍ୟ ମଧ୍ୟ କରିଥାଆନ୍ତି । ଥରେ ଗୋଟିଏ ପିଲାକୁ ହଠାତ୍ କହିଲେ, ''ତମ ଆଡ଼େ ପିଇସା ଶଳାକୁ କୁଆଡ଼େ ଶୁଦ୍ଧି ହୁଅନ୍ତି ?'' ପିଲାଟି ସଙ୍ଗେ ସଙ୍ଗେ କହିଲା, ''ପିଇସାକୁ ତ ଶୁଦ୍ଧି ହୁଅନ୍ତି ନାହିଁ । ତାଙ୍କ ଶଳାକୁ କାହିଁକି ଶୁଦ୍ଧି ହେବେ ?'' ସେହିସବୁ ଗପଗୁଡ଼ିକ ଯଦି ସେ ଲେଖିପକାଇ

ଥାଆନ୍ତେ କିମ୍ବା ଆମେ ସବୁ ଶୁଣି ମନେ ରଖିଥାଆନ୍ତୁ ତାହା ଓଡ଼ିଆ ସାହିତ୍ୟର ବିଶିଷ୍ଟ ସମ୍ପଦ ହୋଇଥାଆନ୍ତା ।

ଏହିଭଳି ଉଦ୍ଭିଦ ବିଦ୍ୟା ଓ ଅର୍ଥନୀତି ଛାତ୍ର ଓ ଅଧ୍ୟାପକମାନଙ୍କର ଥରେ କୁଜଙ୍ଗ ପରିଭ୍ରମଣ ହୋଇଥିଲା । ଆହୁରି ଗୁଡ଼ିଏ ସ୍ଥାନ ଆମେ ତାଙ୍କ ସହିତ ଯାଇଥିଲୁ । ଆମେ ଯେ କେବଳ ପ୍ରକୃତି କୋଳରେ ବଢୁଥିବା ବୃକ୍ଷଲତାଙ୍କ ସମ୍ବନ୍ଧରେ ଜ୍ଞାନ ଆହରଣ କରୁଥିଲୁ ସେତିକି ନୁହେଁ, ଆମେ ଅନ୍ୟାନ୍ୟ ବିଜ୍ଞାନ ବିଷୟରେ, ଅନ୍ୟ ଦେଶ ବିଦେଶ ସମ୍ବନ୍ଧରେ, ବିଦେଶର ବିଭିନ୍ନ ବିଶ୍ୱବିଦ୍ୟାଳୟ ସମ୍ବନ୍ଧରେ, ଆମର ପ୍ରାଚୀନ ସଂସ୍କୃତି ସମ୍ବନ୍ଧରେ ଅନେକ ଜ୍ଞାନଲାଭ କରୁଥିଲୁ । ତାଙ୍କ ତୁଣ୍ଡରୁ ଅସଂଖ୍ୟ ଗଳ୍ପ, ଅମାୟିକ ହାସ୍ୟରସପୂର୍ଣ୍ଣ ଥଟ୍ଟା ପରିହାସ ଶୁଣିବାକୁ ପାଉଥିଲୁ ।

ପରିଜାସାହେବ ରେଭେନ୍ସା କଲେଜରେ ପ୍ରଫେସର ଥିବା ସମୟରେ ସେ କଲେଜରେ କେବଳ ଇଂରେଜ ଲୋକମାନେ ହିଁ ଧାରାବାହିକ ଭାବରେ ଅଧ୍ୟକ୍ଷ ଆସନରେ ଅଧିଷ୍ଠିତ ଥିଲେ, ସେମାନେ ହେଲେ ଏଚ୍.ଲାମ୍ବର୍ଟ; ଡବ୍ଲୁ.ଓ.ସ୍ମିଥ୍; ପି.ଓ.ହୁଇଟ୍‌ଲକ୍; ଟି.ସି.ଅର୍ଗିଲ୍ ଓ ଡବ୍ଲୁ.ଭି.ଡ୍ୟୁକ୍ । ଏ ସମସ୍ତଙ୍କର ପ୍ରଫେସର ପରିଜାଙ୍କ ପ୍ରତି ବିଶେଷ ସଦିଚ୍ଛା ଥିଲା ଓ ସେମାନେ ତାଙ୍କ କଥା ପ୍ରତି ଯଥେଷ୍ଟ ଗୁରୁତ୍ୱ ପ୍ରଦାନ କରୁଥିଲେ । ସେ କଲେଜ ଗଭର୍ଣ୍ଣିଂ ବଡ଼ି (ପରିଚାଳନା ସମିତି), ଫ୍ରି ଷ୍ଟୁଡେଣ୍ଟସିପ୍ କମିଟି (ଛାତ୍ରବୃତ୍ତି ପ୍ରଦାନ କମିଟି) ଓ ସୋସିଆଲ୍ ସର୍ଭିସ୍ ଗିଲ୍ଡ (ସାମାଜିକ ସେବା ସାହାଯ୍ୟ ସମିତି)ର ସଦସ୍ୟ ଥିଲେ ଏବଂ ଅଭାବଗ୍ରସ୍ତ ଓ ଯୋଗ୍ୟ ଛାତ୍ରମାନଙ୍କୁ ଆର୍ଥିକ ଅନୁଦାନ ପ୍ରଦାନ କରିବାରେ ସାହାଯ୍ୟ କରୁଥିଲେ । ସେ ରେଭେନ୍ସା କଲେଜର ଅଧିକାଂଶ ପିଲାଙ୍କୁ ବ୍ୟକ୍ତିଗତ ଭାବରେ ଜାଣିଥିଲେ । ଛାତ୍ରମାନଙ୍କର ନାମ, ସେମାନଙ୍କର ପିତାମାତାଙ୍କ ନାମ, ଗ୍ରାମ, ବନ୍ଧୁବାନ୍ଧବ, ଆର୍ଥିକ ଅବସ୍ଥା ପ୍ରଭୃତି ସମ୍ବନ୍ଧରେ ସବିଶେଷ ସମ୍ବାଦ ମନେ ରଖିବାରେ ତାଙ୍କର ସ୍ମରଣ ଶକ୍ତି ଅତି ପ୍ରଖର ଥିଲା ।

ରେଭେନ୍ସା କଲେଜରେ ବିଭିନ୍ନ ପ୍ରଶାସନିକ କାର୍ଯ୍ୟରେ ନିୟୋଜିତ ଥାଇ ସୁଦ୍ଧା ପ୍ରଫେସର ପରିଜାଙ୍କ ଗବେଷଣା ଚାଲୁ ରହିଥିଲା । ବିଲାତୀ ଦଳ, ବଢ଼ି ମରୁଡ଼ିରୁ ଧାନ କିପରି ରକ୍ଷା ପାଇବ, ଚିଲିକାର ଦଳ ଓ ବିଲ ବା ଦଳଥିବା ପୋଖରୀ ପ୍ରଭୃତିରୁ ଜନ୍ମୁଥିବା ନେଳି ସବୁର ବୈଜ୍ଞାନିକ ଗବେଷଣା କରି ତଥ୍ୟ ବିଭିନ୍ନ ବୈଜ୍ଞାନିକ ପତ୍ରିକାରେ ପ୍ରକାଶ କରୁଥିଲେ । ଏହିସବୁ ପ୍ରୟୋଗାତ୍ମକ ଗବେଷଣା କାର୍ଯ୍ୟ ସହିତ ମୌଳିକ ବିଷୟ ଯଥା– ଉଦ୍ଭିଦର ପ୍ରଶ୍ୱସନ, ପ୍ରସ୍ୱେଦନ ଓ ଜୈବ ରାସାୟନିକ ପ୍ରକ୍ରିୟାର ମଧ୍ୟ ଗବେଷଣା ହେଉଥିଲା ।

ପରିଜାସାହେବ ୧୯୨୧ରେ ରେଭେନ୍ସା କଲେଜରେ ପ୍ରଫେସର ରୂପେ ଯୋଗଦେବା ସମୟରେ ଉଦ୍ଭିଦ ବିଦ୍ୟାରେ କେବଳ ଆଇ.ଏସ୍‌ସି. ପଢ଼ାଯାଉଥିଲା । ୧୯୨୪ରେ ତାଙ୍କ ପ୍ରଚେଷ୍ଟାରେ ଉଦ୍ଭିଦ ବିଦ୍ୟାରେ ବି.ଏସ୍‌ସି. ପାଶ୍ କ୍ଲାସ୍

ଖୋଲିଥିଲା । ୧୯୩୦ରେ ଉଭିଦ ବିଦ୍ୟାରେ ବି.ଏସ୍‌ସି. ଅନର୍ସ କ୍ଲାସ୍ ଆରମ୍ଭ ହୋଇଥିଲା । ମୁଁ ତାଙ୍କର ପ୍ରଥମ ବ୍ୟାଚ୍ ଉଭିଦ ବିଦ୍ୟା ଅନର୍ସ ଛାତ୍ର ଥିଲି । ବିହାର ଓ ଓଡ଼ିଶା ପ୍ରଦେଶରେ ପାଟନା ବିଶ୍ୱବିଦ୍ୟାଳୟ ଅଧୀନରେ ସେତେବେଳେ ଆଉ କୌଣସି କଲେଜରେ ଉଭିଦ ବିଜ୍ଞାନରେ ବି.ଏସ୍‌ସି. ଅନର୍ସ କ୍ଲାସ୍ ନ ଥିଲା ।

୧୯୩୬ ମସିହାରେ ରେଭେନ୍ସା କଲେଜର ଅଧ୍ୟକ୍ଷ ପ୍ରଫେସର ଶ୍ୟାମଚନ୍ଦ୍ର ତ୍ରିପାଠୀ କେତେ ମାସ ପାଇଁ ବିଲାତ ଯାଇଥିଲେ ଓ ପ୍ରଫେସର ପରିଜା ସେସମୟରେ କଲେଜର ଅସ୍ଥାୟୀ ଅଧ୍ୟକ୍ଷ ହୋଇଥିଲେ । ୧୯୩୮ ମସିହାରେ ପ୍ରଫେସର ଶ୍ୟାମଚନ୍ଦ୍ର ତ୍ରିପାଠୀ ଓଡ଼ିଶାର ଶିକ୍ଷାବିଭାଗର ନିର୍ଦ୍ଦେଶକ ହେବାରୁ ପ୍ରଫେସର ପରିଜା କଲେଜର ସ୍ଥାୟୀ ଅଧ୍ୟକ୍ଷ ହେଲେ । ସେହି ବର୍ଷ ମୁଁ ଉଭିଦବିଜ୍ଞାନରେ ଡିମନ୍‌ଷ୍ଟ୍ରେଟର (ସେତେବେଳେ ବିଜ୍ଞାନ ବିଭାଗଗୁଡ଼ିକରେ ଲେକଚରର୍‌ମାନଙ୍କୁ ଡିମନ୍‌ଷ୍ଟ୍ରେଟର୍ କୁହାଯାଉଥିଲା ।) ରୂପେ ଯୋଗ ଦେଇଥିଲି । ତା'ପୂର୍ବରୁ ୧୯୩୬ରୁ ମୁଁ ତାଙ୍କ ତତ୍ତ୍ୱାବଧାନରେ ରେଭେନ୍ସା କଲେଜରେ ଜଣେ ଗବେଷକ ଛାତ୍ର ରୂପେ ଗବେଷଣା କାର୍ଯ୍ୟ କରୁଥିଲି ଓ ସାମୟିକଭାବେ କେତେ ମାସ ପାଇଁ ଉଭିଦବିଜ୍ଞାନ ଡିମନ୍‌ଷ୍ଟ୍ରେଟର୍ ରୂପେ ମଧ୍ୟ କାମ କରିଥିଲି ।

ଅଧ୍ୟକ୍ଷରୂପେ ପ୍ରଫେସର ପରିଜା ରେଭେନ୍ସା କଲେଜର ସର୍ବାଙ୍ଗୀଣ ଉନ୍ନତି କରିଥିଲେ । ଅଧ୍ୟାପନାର ମାନ, କ୍ରୀଡ଼ାର ମାନ, ଅଧ୍ୟୟନ ଅନୁପୂରକ (ଏକ୍ସଟ୍ରା-କରିକୁଲାର୍) କାର୍ଯ୍ୟାବଳୀର ମାନ ସବୁଥିରେ ଉନ୍ନତି ସାଧିତ ହୋଇଥିଲା ଓ ସର୍ବୋପରି ସେ ଦୃଢ଼ତାର ସହିତ କଠୋର ଶାସନ, ଶୃଙ୍ଖଳା ପ୍ରବର୍ତ୍ତନ କରିଥିଲେ । ତାଙ୍କ ସମୟରେ ଗବେଷଣା କାର୍ଯ୍ୟକୁ ଯଥେଷ୍ଟ ଉତ୍ସାହ ପ୍ରଦାନ କରାଯାଉଥିଲା । ୧୯୩୯ରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଥାଏ । ଖାଦ୍ୟପେୟ ଓ ବାସସ୍ଥାନର ଖୁବ୍ ଅଭାବ ପଡ଼ିଥାଏ । ଛାତ୍ରମାନଙ୍କ ସୁବିଧାପାଇଁ ଦିବାଧ୍ୟାୟୀ ଛାତ୍ର (ଡେ-ସ୍କଲାର୍)ଙ୍କ ଲାଗି କଟକ ସହରକୁ କେତେଗୁଡ଼ିଏ ଟ୍ୟୁଟୋରିଆଲ୍ ଗ୍ରୁପ୍‌ରେ ବିଭକ୍ତ କରି ଜଣେ ଜଣେ ଅଧ୍ୟାପକଙ୍କୁ ପ୍ରତ୍ୟେକ ଗ୍ରୁପ୍‌ର ତତ୍ତ୍ୱାବଧାରକ ରୂପେ ସେ ନିଯୁକ୍ତ କରିଥିଲେ । ସେମାନେ ଛାତ୍ରମାନଙ୍କର ଅଭାବ ଅସୁବିଧା ବୁଝି ତା'ର ନିରାକରଣ କରିବାରୁ ପିଲାମାନଙ୍କର ଅନେକ ସୁବିଧା ହେଉଥିଲା ।

ପରିଜାସାହେବଙ୍କ ଅଧ୍ୟକ୍ଷତା ସମୟରେ ପଠନୋତ୍ତର ବକ୍ତୃତା (ଏକ୍ସଟ୍ରା-ମ୍ୟୁରାଲ୍ ଲେକଚର୍)ର ପ୍ରଚଳନ ହୋଇଥିଲା । ଅଧ୍ୟାପକମାନେ ସନ୍ଧ୍ୟା ସମୟରେ ବିଭିନ୍ନ ବିଷୟରେ ଭାଷଣ ଦେଉଥିଲେ । ପରିଜାସାହେବ ସେହିସବୁ ଭାଷଣବେଳେ ନିଜେ ଉପସ୍ଥିତ ଥାଆନ୍ତି । ରେଭେନ୍ସା କଲେଜରେ ବର୍ଷକୁ ଦୁଇ ତିନିଦିନ ଯାଏ ଏକ୍ସଟେନ୍‌ସନ୍ ବକ୍ତୃତା ହୁଏ । ଭାରତର ଖୁବ୍ ଖ୍ୟାତିସମ୍ପନ୍ନ ବ୍ୟକ୍ତିମାନଙ୍କୁ ବକ୍ତୃତା ପ୍ରଦାନ କରିବାକୁ ନିମନ୍ତ୍ରଣ କରାଯାଉଥିଲା । ମୋର ସ୍ପଷ୍ଟ ମନେପଡୁଛି କେମ୍ବ୍ରିଜ୍‌ରେ ତାଙ୍କର ସମସାମୟିକ ବନ୍ଧୁ ଡକ୍ଟର ବୀରବଲ ସାହାନି ଓ ନୋବେଲ୍ ପୁରସ୍କାର ବିଜେତା ତାଙ୍କର

ଅନ୍ୟତମ ବନ୍ଧୁ ଡକ୍ଟର ଚନ୍ଦ୍ରଶେଖର ଭେଙ୍କଟ ରାମନ୍‌ଙ୍କ ପ୍ରଦତ୍ତ ବକ୍ତୃତା । ସାହାନୀଙ୍କ ଜୀବାଶ୍ମ (ଫସିଲ୍) ଉଦ୍ଭିଦ ବିଷୟକ ବକ୍ତୃତା ଏତେ ହୃଦୟଗ୍ରାହୀ ହୋଇଥିଲା ଯେ ପରିଜାସାହେବ କହିଲେ, "ସରଗରୁ ଆସିଲା କେଉଁ ବିନ୍ଧାଣି, ଶୁଖିଲା କାଠରୁ ବୁହାଇଲା ପାଣି ।" ଶ୍ରୋତାବୃନ୍ଦ ଅତିଶୟ ଆପ୍ୟାୟିତ ହୋଇଥିଲେ ।

ତାଙ୍କ ଅମଳରେ ରେଭେନ୍ସା କଲେଜ ପ୍ରତିଷ୍ଠାର ସ୍ମୃତିରକ୍ଷା ଦିବସ (କମିମୋରେସନ୍ ଡେ)ରେ ପ୍ରତିବର୍ଷ ଭାରତର ବିଖ୍ୟାତ ଲୋକମାନେ ନିମନ୍ତ୍ରିତ ହୋଇ ସେ ଉତ୍ସବରେ ଯୋଗଦେଇଥାଆନ୍ତି । ଡକ୍ଟର ସର୍ବପଲ୍ଲୀ ରାଧାକୃଷ୍ଣନ୍, ଡକ୍ଟର କାଳିଦାସ ନାଗ, ଶ୍ରୀମତୀ ସରୋଜିନୀ ନାଇଡୁ ପ୍ରଭୃତି ସେ ସଭା ସବୁ ଅଳଙ୍କୃତ କରିଥିଲେ । ମୋର ସ୍ମରଣ ହେଉଛି ଯେ ବଡ଼ ବାଗ୍ମୀ, ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ନାରୀନେତ୍ରୀ ଓ ଭାରତର ବୁଲ୍‌ବୁଲ୍ ରୂପେ ପ୍ରଖ୍ୟାତ କବି ଶ୍ରୀମତୀ ସରୋଜିନୀ ନାଇଡୁ ଯେଉଁଥର ମୁଖ୍ୟ ଅତିଥି ହୋଇ ଆସିଥିଲେ, ସେଥର ପରିଜାସାହେବଙ୍କ ଅଣ୍ଟା ଧରିଥାଏ । ଶ୍ରୀମତୀ ନାଇଡୁ ରହସ୍ୟ କରି କହିଲେ, "ତୁମମାନଙ୍କର ଅଧ୍ୟକ୍ଷ ଧନୀମାନଙ୍କର ଏକ ରୋଗ (ଲମ୍ବାଗୋ)ରେ ପୀଡ଼ିତ ।" ଶ୍ରୋତାମାନଙ୍କ ସହିତ ନିଜେ ପରିଜାସାହେବ ଅଣ୍ଟାଧରା ରୋଗର ଉତ୍କଟ ଯନ୍ତ୍ରଣା ସତ୍ତ୍ୱେ ସେଇ ରହସ୍ୟ ଉପଭୋଗ କରିଥିଲେ ।

ପରିଜାଙ୍କ ଅଧ୍ୟକ୍ଷତା କାଳରେ ଇଂରେଜ ଶାସନ ବିରୋଧରେ କଲେଜ ଛାତ୍ରମାନେ ବାରମ୍ବାର ଆନ୍ଦୋଳନ କରୁଥାନ୍ତି । ଛାତ୍ରମାନଙ୍କ ସମସ୍ୟା ଯଥେଷ୍ଟ ଅଣଆୟତ୍ତାଧୀନ ହୋଇପଡ଼ିଥିଲା । ଯେଉଁଭଳି ସିଦ୍ଧହସ୍ତରେ ସେ ଛାତ୍ରମାନଙ୍କ ସମସ୍ୟାର ମୁକାବିଲା କରୁଥାନ୍ତି, ତାହା ବାସ୍ତବିକ ପ୍ରଶଂସନୀୟ । ତାଙ୍କର ମହତ୍ ଉଦ୍ଦେଶ୍ୟ ଥିଲା ଯେ ଛାତ୍ରସମାଜ କଲେଜରେ ସମସ୍ତ ସୁବିଧା ସୁଯୋଗ ଓ ଅଧ୍ୟାପକମାନଙ୍କର ଅଧ୍ୟାପନାର ସଦୁପଯୋଗ କରି ଏକ ସୁଶୃଙ୍ଖଳିତ ଗୋଷ୍ଠୀରୂପେ ସେମାନଙ୍କ ଲକ୍ଷ୍ୟସାଧନ ଉଦ୍ଦେଶ୍ୟରେ ଅଧ୍ୟୟନ କାର୍ଯ୍ୟରେ ନିଜକୁ ଉତ୍ସର୍ଗୀକୃତ କରି ରଖନ୍ତୁ ।

ତାଙ୍କର ଅଧ୍ୟକ୍ଷତା କାର୍ଯ୍ୟକାଳରେ ଇଷ୍ଟ୍ ହଷ୍ଟେଲ୍ ଓ ୱେଷ୍ଟ୍ ହଷ୍ଟେଲ୍ ଏ ଦୁଇଟିର ୱାର୍ଡ଼େନ୍ ପୋଷ୍ଟ ଲୋପ କରିଦିଆଯିବା ପରେ ମୁଁ ତାଙ୍କ ଦ୍ୱାରା ଇଷ୍ଟ୍ ହଷ୍ଟେଲ୍‌ର ସୁପରିଣ୍ଟେଣ୍ଡେଣ୍ଟ୍ ରୂପେ ନିଯୁକ୍ତ ହୋଇଥିଲି । ସେତେବେଳେ ଦ୍ୱିତୀୟ ମହାସମର ଯୋଗୁଁ ରାତିରେ ଆଲୁଅ ଜାଳିବାର କଟକଣା, ଖାଦ୍ୟ ଅଭାବ ଓ ଛାତ୍ରମାନଙ୍କ ପାଇଁ ବାସସ୍ଥାନର ଅଭାବ ବିରାଟ ସମସ୍ୟା ରୂପେ ଛିଡ଼ା ହୋଇଥାଏ । ଆମ୍ଭେମାନେ ଏ କଠୋର ସମୟରେ ତାଙ୍କର ସାହାଯ୍ୟ ଓ ସୁଚିନ୍ତିତ ପରାମର୍ଶ ଯେଉଁଭଳିଭାବରେ ପାଉଥିଲୁ, ତାହା ମୁଁ ସମ୍ପୂର୍ଣ୍ଣରୂପେ ମନେ ରଖିଛି । ଏହି ମହାସମର ସମୟରେ ଜାପାନୀମାନେ କୁଜଙ୍ଗ ନିକଟରେ ଏକ ସୈନ୍ୟଛାଉଣୀ ଉପରେ ବୋମାବର୍ଷଣ କରିଥିଲେ ଏବଂ ଆହତ ସୈନ୍ୟମାନଙ୍କୁ ରେଭେନ୍ସା କଲେଜକୁ ସ୍ଥାନାନ୍ତରିତ କରାଯାଇ ସେଠାରେ ରଖାଯାଇଥିଲା ଓ ପ୍ରଫେସର ପରିଜାଙ୍କ ସହାନୁଭୂତିସମ୍ପନ୍ନ ଯତ୍ନରେ ଚିକିତ୍ସା କରାଯାଇଥିଲା ।

ଓଡ଼ିଶାର ଯେତେ ଛାତ୍ର ଭାରତର ବିଭିନ୍ନ ବିଶ୍ୱବିଦ୍ୟାଳୟରେ ଉଚ୍ଚତର ସ୍ନାତକ ଶିକ୍ଷା ଲାଭ କରିଛନ୍ତି ସେମାନଙ୍କ ମଧ୍ୟରୁ ଅଧିକାଂଶ ପରିଜାସାହେବଙ୍କ ସୁପାରିସ ପତ୍ର ନେଇ ଯାଇଛନ୍ତି ଏବଂ ପରିଜାସାହେବ ସେସବୁ ବିଶ୍ୱବିଦ୍ୟାଳୟରେ ଏତେଦୂର ସମ୍ମାନିତ ଯେ ସେସବୁ ପିଲାମାନେ ଭଲରେ ରହି ପାଠପଢ଼ି କୃତିତ୍ୱ ଅର୍ଜନ କରିଅଛନ୍ତି । ୧୯୩୨ ମସିହାରେ ମୁଁ ରେଭେନ୍ସା କଲେଜରୁ ଉଦ୍ଭିଦବିଜ୍ଞାନ (ଅନର୍ସ) ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପ୍ରଫେସର ପରିଜାଙ୍କ ସୁପାରିସ କ୍ରମେ ଆଲାହାବାଦ ବିଶ୍ୱବିଦ୍ୟାଳୟର ଉଦ୍ଭିଦବିଜ୍ଞାନରେ ଏମ୍.ଏସ୍‌ସି. କ୍ଲାସ୍‌ରେ ନାମ ଲେଖାଇଲି । ସେଠାରେ ହିଁ ମୁଁ ପୂର୍ଣ୍ଣଭାବରେ ଜାଣିବାକୁ ପାଇଲି ଯେ ଜଣେ କେତେବଡ଼ ଲବ୍ଧପ୍ରତିଷ୍ଠ ବୈଜ୍ଞାନିକ ଓ ତାଙ୍କର ଗବେଷଣା କେତେ ଉଚ୍ଚକୋଟୀର ତଥା ଗୁରୁତ୍ୱପୂର୍ଣ୍ଣ ଥିଲା ।

ପ୍ରଫେସର ପରିଜା ଜଣେ ସୁସାହିତ୍ୟିକ ଥିଲେ । ଛାତ୍ରାବସ୍ଥାରେ ସେ ଶିଶୁମାନଙ୍କ ପାଇଁ ଗପ ଓ ପଦ୍ୟ ଲେଖୁଥିଲେ । ବିଲାତରୁ ଫେରିବା ପରେ ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟଙ୍କ ସମ୍ପାଦନାରେ ପ୍ରକାଶିତ ହେଉଥିବା ପିଲାଙ୍କ ପତ୍ରିକା 'ପଞ୍ଚାମୃତ'ରେ 'ଖଜୁରି ଗଛ', 'ଛତୁ' ପ୍ରଭୃତି ବିଷୟରେ ଲେଖିଥିଲେ । ଏହା ସହିତ ବିଜ୍ଞାନ ବିଷୟକ ପ୍ରବନ୍ଧ ଓଡ଼ିଆରେ ଲେଖି ବିଭିନ୍ନ ପତ୍ରିକାରେ ପ୍ରକାଶ କରୁଥିଲେ । ବିଲାତରେ ସାତବର୍ଷ କଟେଇବା ପରେ ଧାରାବାହିକ ଭାବେ ବାଗ୍ମୀ ଓ ସାହିତ୍ୟିକ ବିଶ୍ୱନାଥ କରଙ୍କ ସମ୍ପାଦିତ 'ଉତ୍କଳ ସାହିତ୍ୟ' ପତ୍ରିକାରେ 'କେମ୍ବ୍ରିଜ୍ ଅଧିବାସ' ବିଷୟରେ ଲେଖୁଥିଲେ । ପରବର୍ତ୍ତୀ ସମୟରେ ପଣ୍ଡିତ ନୀଳକଣ୍ଠ ଦାସଙ୍କ ଦ୍ୱାରା ସମ୍ପାଦିତ 'ନବଭାରତ' ପତ୍ରିକାରେ କେତେଗୁଡ଼ିଏ ବିଜ୍ଞାନ ପ୍ରବନ୍ଧ ପ୍ରକାଶ କରିଥିଲେ । ପ୍ରଫେସର ପରିଜା ହେଉଛନ୍ତି ପ୍ରଥମ ଓଡ଼ିଆ ଯେ କି ଗୁଡ଼ିଏ ଲୋକପ୍ରିୟ ବୈଜ୍ଞାନିକ ପ୍ରବନ୍ଧ ବିଭିନ୍ନ ଓଡ଼ିଆ ସାହିତ୍ୟ ପତ୍ରିକାରେ ପ୍ରକାଶ କରିଥିଲେ । ସର୍ବୋପରି ପ୍ରଫେସର ପରିଜା ଉତ୍କଳ ସାହିତ୍ୟ ସମାଜର ସଭାପତି ମଧ୍ୟ ହୋଇଥିଲେ ।

୧୯୪୩ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେଲା । ପ୍ରଫେସର ପରିଜା ରେଭେନ୍ସା କଲେଜର ଅଧକ୍ଷ ଥାଇ ମଧ୍ୟ ଓଡ଼ିଶା ସରକାରଙ୍କ ଦ୍ୱାରା ମନୋନୀତ ହୋଇ ଏହି ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି ଭାବରେ ଅବସ୍ଥାପିତ ହୋଇଥିଲେ । ୧୯୪୪ ମସିହାରେ ସେ ଏହାର ନିର୍ବାଚିତ କୁଳପତି ହିସାବରେ ନିଯୁକ୍ତ ହୋଇଥିଲେ । ସେ ସେହି ଦାୟିତ୍ୱରେ ୧୯୪୮ ମସିହାଯାଏ ଥାଇ ସୁଦ୍ଧା ୧୯୪୫ ମସିହାରେ ଓଡ଼ିଶାର କୃଷିବିଭାଗର ପ୍ରଥମ ନିର୍ଦ୍ଦେଶକ ରୂପେ ଯୋଗଦେଲେ । ୧୯୪୮ ମସିହାରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ପଦରୁ ଅବ୍ୟାହତି ପାଇଲେ ଏବଂ କୃଷି ନିର୍ଦ୍ଦେଶକ ପଦରୁ ମଧ୍ୟ ଅବସର ନେଲେ ।

୧୯୪୯ ମସିହାରୁ ୧୯୫୧ ମସିହା ଯାଏ ପ୍ରଫେସର ପରିଜା ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ଉପ-କୁଳପତି (ପ୍ରୋ-ଭାଇସ୍‌ଚାନ୍‌ସେଲର) ଓ ଉଦ୍ଭିଦବିଜ୍ଞାନ ବିଭାଗର ଅବୈତନିକ ପ୍ରଫେସର ହୋଇଯାଇଥିଲେ । ଶେଷରେ ସେ କୁଳପତି

ପଦପାଇଁ ସେଠାରେ ସର୍ବାଧିକ ଭୋଟ ପାଇଥିଲେ ସୁଦ୍ଧା ତାଙ୍କୁ କୁଳପତି କରା ନ ଯିବାରୁ ସେ ସଙ୍ଗେ ସଙ୍ଗେ କଟକ ଫେରିଆସିଲେ ବୋଲି ବନାରସର ଜଣେ ଅଧ୍ୟାପକ ମୋତେ କହିଥିଲେ ।

ଓଡ଼ିଶାକୁ ଫେରିଆସି ପ୍ରଫେସର ପରିଜା ଉତ୍କଳ ବିଶ୍ୱବିଦ୍ୟାଳୟର ଉପ-କୁଳାଧିପତି (ପ୍ରୋ-ଚାନ୍ସେଲର୍)ଭାବେ ୧୯୫୧ରୁ ୧୯୫୫ ପର୍ଯ୍ୟନ୍ତ ଅବସ୍ଥାପିତ ହେଲେ । ୧୯୫୨ ମସିହାରେ କଟକ ଜିଲ୍ଲା ବାଲିକୁଦା ନିର୍ବାଚନ ମଣ୍ଡଳୀରୁ ସେ ଓଡ଼ିଶା ବିଧାନସଭାକୁ ସ୍ୱାଧୀନ ସଭ୍ୟ ଭାବରେ ନିର୍ବାଚିତ ହୋଇଥିଲେ । ଶିକ୍ଷା, କୃଷି ଓ ବିଜ୍ଞାନ ପ୍ରଭୃତି ବିଭିନ୍ନ କ୍ଷେତ୍ରରେ ତାଙ୍କର ବିପୁଳ ଅଭିଜ୍ଞତା ଥିବାରୁ ତାଙ୍କର ଗଠନମୂଳକ ବାସ୍ତବବାଦୀ ପ୍ରସ୍ତାବଗୁଡ଼ିକ ଶାସନ କ୍ଷମତାରେ ଥିବା ଦଳଦ୍ୱାରା ବିଶେଷ ଆଦୃତ ହେଉଥିଲା । ତାଙ୍କ ଯତ୍ନରେ ଓଡ଼ିଶା ସରକାରଙ୍କ ବିଦ୍ୟାଧରପୁର କୃଷି ଫାର୍ମକୁ କେନ୍ଦ୍ର ସରକାରଙ୍କ ଖାଦ୍ୟ ଓ କୃଷି ବିଭାଗକୁ ହସ୍ତାନ୍ତର କରାଯିବାରେ ସେଠାରେ କେନ୍ଦ୍ରୀୟ ଧାନ ଗବେଷଣା ସଂସ୍ଥା ସ୍ଥାପିତ ହେଲା ।

ଏହା ପରେ ୧୯୫୫ରୁ ୧୯୬୬ ପର୍ଯ୍ୟନ୍ତ ପ୍ରଫେସର ପରିଜା ପୁଣି ଦୁଇ ଟର୍ମ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ରୂପେ ନିର୍ବାଚିତ ହୋଇଥିଲେ । ଏହି ସମୟରେ ଆର୍ଟସ୍ ଓ ବାଣିଜ୍ୟରେ ବିଭିନ୍ନ ଶିକ୍ଷାଦାନକାରୀ ବିଭାଗ ସ୍ଥାପିତହେଲା । ଏହା ଆଗରୁ ଉତ୍କଳ ବିଶ୍ୱବିଦ୍ୟାଳୟ କେବଳ ଅଙ୍ଗୀକରଣକାରୀ (ଆଫିଲିଏଟିଂ) ବିଶ୍ୱବିଦ୍ୟାଳୟ ଥିଲା । ପରିଜାସାହେବଙ୍କ ଅମଳରେ ଏହା ଉଭୟ ଶିକ୍ଷାଦାନକାରୀ (ଟିଚିଙ୍ଗ୍) ଓ ଅଙ୍ଗୀକରଣକାରୀ ବିଶ୍ୱବିଦ୍ୟାଳୟ ଭାବରେ କାର୍ଯ୍ୟ କଲା ।

୧୯୫୮ ମସିହା ଜାନୁଆରୀରେ ତାଙ୍କ ପ୍ରଚେଷ୍ଟାରେ ସେତେବେଳକାର ଭାରତର ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦ ଭୁବନେଶ୍ୱରର ବାଣୀବିହାରଠାରେ ବିଶ୍ୱବିଦ୍ୟାଳୟର ଭିତ୍ତିପ୍ରସ୍ତର ସ୍ଥାପନ କରିଥିଲେ ଏବଂ ୧୯୬୩ ମସିହା ଜାନୁଆରୀ ଦୁଇ ତାରିଖରେ ତଦାନୀନ୍ତନ ରାଷ୍ଟ୍ରପତି ଡକ୍ଟର ସର୍ବପଲ୍ଲୀ ରାଧାକୃଷ୍ଣନ୍ ବିଶ୍ୱବିଦ୍ୟାଳୟର ଉଦ୍‌ଘାଟନ ଉତ୍ସବ ସମ୍ପନ୍ନ କରିଥିଲେ । ତାଙ୍କର କାର୍ଯ୍ୟକାଳ ସମୟରେ ଉତ୍କଳ ବିଶ୍ୱବିଦ୍ୟାଳୟ କଟକରୁ ବର୍ତ୍ତମାନ ଅବସ୍ଥିତ ବାଣୀବିହାରକୁ ସ୍ଥାନାନ୍ତରିତ ହୋଇଥିଲା । ସେଠି ବିଶ୍ୱବିଦ୍ୟାଳୟ ଅଫିସ୍ ଓ ବିଭିନ୍ନ ଶିକ୍ଷାଦାନକାରୀ ବିଭାଗଗୁଡ଼ିକ ପାଇଁ କୋଠାବାଡ଼ି, କର୍ମଚାରୀମାନଙ୍କର ବାସଗୃହ, ଛାତ୍ରମାନଙ୍କର ହଷ୍ଟେଲ୍ ଓ କ୍ରୀଡ଼ା କସରତ ପାଇଁ ଜିମ୍‌ନାସିୟମ୍ ପ୍ରଭୃତି ନିର୍ମାଣ କରାଯାଇଥିଲା । ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍‌ରେ ରାସ୍ତା ତିଆରି ହୋଇଥିଲା, ରାସ୍ତାର ଦୁଇକଡ଼ରେ ବୃକ୍ଷରୋପଣ କରାଯାଇଥିଲା । ଲାଇବ୍ରେରି ଗୃହ ଓ ପଢ଼ିବା ହଲ୍ ପ୍ରଭୃତି ତାଙ୍କରି ସମୟରେ ନିର୍ମିତ ହୋଇଥିଲା ।

କଲେଜ ସ୍ତରରେ ତିନିବର୍ଷିଆ ସ୍ନାତକ ପାଠ୍ୟକ୍ରମ ପ୍ରଚଳନ ଓ ବିଶ୍ୱବିଦ୍ୟାଳୟ ପରୀକ୍ଷା ପଦ୍ଧତିରେ ଆଭ୍ୟନ୍ତରୀଣ ମୂଲ୍ୟ ନିର୍ଦ୍ଧାରଣ ପ୍ରବର୍ତ୍ତନ ସପକ୍ଷରେ ମତପ୍ରଦାନ ଦେବାରେ ପ୍ରଫେସର ପରିଜା ଅନ୍ୟତମ ଶିକ୍ଷାବିତ୍ ଥିଲେ । ଆଭ୍ୟନ୍ତରୀଣ ମୂଲ୍ୟ

ନିର୍ଦ୍ଧାରଣ ସ୍ୱଳ୍ପକାଳ ଚାଲିଲା ପରେ ଯଦିଓ ବନ୍ଦ ହୋଇଯାଇଥିଲା ବର୍ତ୍ତମାନ ଏହା ଓଡ଼ିଶାର କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟରେ ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ତଥା ଭାରତର ଅନେକ ବିଶ୍ୱବିଦ୍ୟାଳୟରେ ସେମେଷ୍ଟର (Semester) ପରୀକ୍ଷା ପଦ୍ଧତି ନାମରେ ଏକ ନିୟମିତ ଅଙ୍ଗ ହୋଇସାରିଲାଣି ।

ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ସ୍ୱୀକୃତିପ୍ରାପ୍ତ କଲେଜଗୁଡ଼ିକରେ ଉପଯୁକ୍ତ ଭାବରେ ଶିକ୍ଷାଦାନ କରାଯାଉଛି କି ନାହିଁ ଓ ସେସବୁ ଶିକ୍ଷାନୁଷ୍ଠାନଗୁଡ଼ିକରେ ଉପଯୁକ୍ତ କ୍ଲାସଗୃହ, ଲାବୋରେଟୋରୀ ଓ ଲାଇବ୍ରେରି ଅଛି କି ନାହିଁ ତାହା ନିରୂପଣ କରିବା ଉଦ୍ଦେଶ୍ୟରେ ଦକ୍ଷ ପ୍ରବୀଣ ବିଶେଷଜ୍ଞ ଅଧ୍ୟାପକମାନଙ୍କ ଦ୍ୱାରା ସେଗୁଡ଼ିକର ସାମୟିକ ପରିଦର୍ଶନ କରାଇବାର ବ୍ୟବସ୍ଥା ପ୍ରବର୍ତ୍ତନ କୁଳପତି ଡକ୍ଟର ପରିଜାଙ୍କ କଳ୍ପନାପ୍ରସୂତ ଥିଲା ।

ପ୍ରଫେସର ପରିଜା ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଥିବା ସମୟରେ ସମ୍ବଲପୁର ଜିଲ୍ଲାର ବୁର୍ଲା ଠାରେ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ଏକ ଇଞ୍ଜିନିଅରିଂ କଲେଜ ସ୍ଥାପିତ ହୋଇଥିଲା । ଉତ୍କଳ ବିଶ୍ୱବିଦ୍ୟାଳୟର ଏକାଡ଼େମିକ୍ କାଉନ୍‌ସିଲ୍, ସିନେଟ୍ କିମ୍ବା ସିଣ୍ଡିକେଟ୍‌ରେ ଯେ ତାଙ୍କୁ ସଭାପତିତ୍ୱ କରିଥିବାର ଦେଖିଥିବ ସେ କେବେହେଲେ ପ୍ରତ୍ୟେକ ବିଷୟରେ ତାଙ୍କର ବିଶଦ ଜ୍ଞାନ, ସଠିକ ଯଥାଯଥ ଭାଷା ପ୍ରୟୋଗ ଓ ବିଷୟବସ୍ତୁର ଯାଥାର୍ଥ୍ୟ ଉପରେ ଗୁରୁତ୍ୱ ପ୍ରଦାନ ଏବଂ ସର୍ବୋପରି କଠୋର ଶୃଙ୍ଖଳା ମଧ୍ୟରେ ସଭାକାର୍ଯ୍ୟ ନିର୍ବାହ କାର୍ଯ୍ୟାବଳୀକୁ ନିରୀକ୍ଷଣ କରିବାରେ ବିଫଳ ହୋଇ ନ ଥିବେ ।

୧୯୬୦ ମସିହାରେ ପରିଜାସାହେବ ଭାରତୀୟ ବିଜ୍ଞାନ କଂଗ୍ରେସର ବମ୍ବେ ଅଧିବେଶନରେ ସଭାପତି ହୋଇଥିଲେ । ଭାରତର ବିଜ୍ଞାନ୍‌ବିତ୍‌ମାନଙ୍କର ଏହି ସଭାପତି ପଦ ଏକ ସର୍ବୋଚ୍ଚ ସମ୍ମାନ ବୋଲି ଧରାଯାଇଥାଏ ।

ପ୍ରଫେସର ପରିଜା ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଥିବାବେଳେ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ପ୍ରଥମଥର ପାଇଁ ଭାରତୀୟ ବିଜ୍ଞାନ କଂଗ୍ରେସର ୪୯ତମ ଅଧିବେଶନ ୧୯୬୨ ମସିହାରେ ରେଭେନ୍ସା କଲେଜ କ୍ୟାମ୍ପସ୍‌ରେ ତାଙ୍କ ପ୍ରଚେଷ୍ଟାରେ ଅନୁଷ୍ଠିତ ହୋଇଥିଲା । ଦେଶବିଦେଶରୁ ବହୁସଂଖ୍ୟକ ବୈଜ୍ଞାନିକ ଯୋଗଦେଉଥିବା ଏହି ବିରାଟ ଅଧିବେଶନ ପାଇଁ ବିଶ୍ୱବିଦ୍ୟାଳୟକୁ ବହୁ ପୂର୍ବରୁ ଅନେକ ଦିନ ଧରି ଉପଯୁକ୍ତ ପ୍ରସ୍ତୁତି କରିବାକୁ ପଡ଼ିଥିଲା । ଏହି ଅଧିବେଶନ ପାଇଁ ପରିଜାସାହେବ ଅଭ୍ୟର୍ଥନା ସମିତିର ଚେୟାରମ୍ୟାନ୍ ଥିଲେ ଓ ମୁଁ ଜଣେ ସ୍ଥାନୀୟ ସମ୍ପାଦକ ଭାବରେ କାର୍ଯ୍ୟ କରିଥିଲି ।

ମୋର ସ୍ମରଣ ଅଛି ପ୍ରଫେସର ପରିଜା କିପରି ଜଣେ ଯୁବକଭଳି ଅଦମ୍ୟ ଉତ୍ସାହରେ ଦିନରାତି ଆମ୍ଭମାନଙ୍କ ସହିତ ଅକ୍ଳାନ୍ତ ପରିଶ୍ରମ କରିଥିଲେ । ଏହି ଅଧିବେଶନ ଖୁବ୍ ସଫଳ ହୋଇଥିଲା । ରେଭେନ୍ସା କଲେଜର ବିରାଟ ସୌଧମାଳା ନୂତନ ରଙ୍ଗରେ ରଞ୍ଜିତ ହୋଇ ଓ ଏହାର ସୁବିସ୍ତୀର୍ଣ୍ଣ କ୍ୟାମ୍ପସ୍ ପରିଷ୍କାର ପରିଚ୍ଛନ୍ନ

ହୋଇ ଏତେଦୂର ମନୋରମ ଶୋଭାରେ ମଣ୍ଡିତ ହୋଇଥିଲା ଯେ ଆଗନ୍ତୁକ ପ୍ରତିନିଧିମାନେ ଏହି କଲେଜକୁ ଏକ ବିଶ୍ୱବିଦ୍ୟାଳୟ ବୋଲି ମନେ କରିଥିଲେ । ଭାରତରୁ ଓ ଦେଶବିଦେଶରୁ ଆସିଥିବା ପ୍ରତିନିଧିଗଣ ଏହି ସମ୍ମିଳନୀରେ ଗଭୀର ଆନନ୍ଦ ଲାଭ କରିଥିଲେ ।

ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ଏହି ଅଧିବେଶନକୁ ଉଦ୍ଘାଟନ କରିଥିଲେ । ଉଦ୍ଘାଟନ ଉତ୍ସବରେ ସ୍ୱାଗତିକା ରୂପେ କବିବର ରାଧାନାଥ ରାୟଙ୍କ ଲିଖିତ ସଂସ୍କୃତ ପଦ୍ୟ 'ଭାରତଗୀତିକା' କେତେକ ଛାତ୍ରୀ ଗାନ କରିଥିଲେ । ଭାରତବର୍ଷର ଅଧିକାଂଶ ପ୍ରତିନିଧି ଯେଉଁମାନେ ଏ ବନ୍ଦନା ଶୁଣିଥିଲେ ଏହାର ରଚୟିତା କିଏ ବୋଲି ଜାଣିବାକୁ ଚାହିଁଥିଲେ ଓ ଅନେକ ମତପ୍ରକାଶ କରିଥିଲେ ଯେ ଯଦି ଏହି ବନ୍ଦନା ଭାରତ ସ୍ୱାଧୀନତାବେଳେ କର୍ତ୍ତୃପକ୍ଷଙ୍କୁ ଜଣାଥାଆନ୍ତା, ହୁଏତ ଏହା ଭାରତର ଜାତୀୟ ସଂଗୀତ ହେବାର ଗୌରବ ଲାଭ କରିଥାଆନ୍ତା । ଏହି ଅଧିବେଶନର ବିରାଟ ସାଫଲ୍ୟ ପ୍ରଫେସର ପରିଜାଙ୍କ ଅପୂର୍ବ ସାଂଗଠନିକ ପ୍ରତିଭା ଯୋଗୁଁ ସମ୍ଭବ ହୋଇଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ପରିଜାସାହେବ ନିଜ କାମ ନିଜ ହାତରେ କରିବାକୁ ପସନ୍ଦ କରୁଥିଲେ । ସେ ବିଲାତରୁ ଫେରି ରେଭେନ୍ସା କଲେଜରେ ପ୍ରଫେସର ରୂପେ ଯୋଗଦେଇ ଆଇ.ଇ.ଏସ୍. ହୋଇ ମଧ୍ୟ ଗାଁର ତନ୍ତପ୍ରସୂତ ଧୋତି ପିନ୍ଧୁଥିଲେ । ଆମେ ସବୁ ତାଙ୍କ ଭ୍ରମଣ ସମୟରେ ଦେଖିଛୁ, ସେ ସକାଳୁ ଉଠି, ନିତ୍ୟକର୍ମ ସାରି, ନିଜ ଜୋତା ନିଜେ ପାଲିସ୍ କରି, ପୋଷାକପତ୍ର ପିନ୍ଧି ସାରାଦିନ ପାଇଁ ପ୍ରସ୍ତୁତ ହୋଇ ଯାଆନ୍ତି । ଏହି ଅଭ୍ୟାସ ତାଙ୍କର ଘରେ ଓ ବାହାରେ ସର୍ବଦା ଅନୁସରଣ କରିଥାନ୍ତି । ଅତିଶୟ ପୀଡ଼ିତ ଥିବା ସମୟରେ ମଧ୍ୟ ପ୍ରତିଦିନ ସେ ନିଜେ ନିଜେ ଖିଅର ହୋଇଥାନ୍ତି ।

ପରିଜାସାହେବଙ୍କର ଗୋଟିଏ ବିଶିଷ୍ଟ ଗୁଣ ହେଲା ସମୟାନୁବର୍ତ୍ତିତା । ସେ ସବୁବେଳେ ଯେଉଁଠାକୁ ଯାଉଥିଲେ କିମ୍ବା ସଭାସମିତିରେ ଯୋଗ ଦେଉଥିଲେ, ଠିକ୍ ସମୟରେ ଉପସ୍ଥିତ ହେଉଥିଲେ । ତାଙ୍କର ଉପସ୍ଥିତି ଠିକ୍ ସମୟରେ ହେଉଥିବାରୁ ଲୋକେ କହୁଥିଲେ ପରିଜାସାହେବ ଉପସ୍ଥିତ ହେଲେ ସେମାନେ ନିଜ ନିଜର ଘଣ୍ଟା ମିଳାଇ ନେଉଥିଲେ ।

ଯେ କୌଣସି ସଭାରେ ପରିଜାସାହେବ ସଭାପତିତ୍ୱ କରୁଥିଲେ ସେଠି ସମସ୍ତେ ସଂଯମର ସହିତ ଦରକାର ଥିବା କଥା ଛଡ଼ା ଅନ୍ୟ କିଛି କହିବାକୁ ସେ ପ୍ରଶ୍ରୟ ଦେଉ ନ ଥିଲେ । ଅବାନ୍ତର କଥା କହିଲେ କିମ୍ବା କିଛି ନୂଆ କଥା ନ କହିଲେ ସେ ଲୋକକୁ ବସାଇ ଦେଉଥିଲେ । ମୋର ଜଣେ ବନ୍ଧୁ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ପ୍ରଫେସର ମତେ ଥରେ କହିଥିଲେ ଯେ ପରିଜାସାହେବ ଯେଉଁଭଳି ଦକ୍ଷତାର ସହିତ ଶାନ୍ତିଶୃଙ୍ଖଳାରେ ଗୋଟିଏ ସଭା କାର୍ଯ୍ୟକୁ ନିୟନ୍ତ୍ରଣ କରୁଥିଲେ ତାଙ୍କ ସମକକ୍ଷ ଅନ୍ୟ ଜଣେ ଲୋକକୁ ସେ ଆଜିପର୍ଯ୍ୟନ୍ତ ଦେଖି ନାହାନ୍ତି । ବିଶ୍ୱବିଦ୍ୟାଳୟ ସଭାରେ ଓ

ଅନ୍ୟାନ୍ୟ ସଭାସମିତିରେ ଆମେ ସମସ୍ତେ ଏକଥା ଉପଲବ୍ଧି କରୁଥିଲୁ । ସମୟାନୁବର୍ତ୍ତିତାରେ ଏବଂ ସଭା ପରିଚାଳନା କରିବାରେ ସେ ଭାରତବର୍ଷରେ ଅଦ୍ୱିତୀୟ ଥିଲେ ।

୧୯୪୮ ସାଲରେ ମୁଁ ଲଣ୍ଡନ ବିଶ୍ୱବିଦ୍ୟାଳୟର ଇମ୍ପିରିଆଲ୍ କଲେଜ ଅଫ୍ ସାଇନ୍ସ ଆଣ୍ଡ ଟେକ୍‌ନୋଲଜିରେ ପ୍ରଫେସର ଏପ୍.ଜି.ଗ୍ରେଗରିଙ୍କ ତତ୍ତ୍ୱାବଧାନରେ ଗବେଷଣା କାମ ଶେଷକରି ଥରେ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟର ବଟାନି ସ୍କୁଲକୁ (ବଟାନି ଡିପାର୍ଟମେଣ୍ଟ) ଯାଇଥିଲି । ସେତେବେଳକୁ ଖରାଦିନ ଛୁଟି । ଅଳ୍ପ କେତେଜଣଙ୍କ ଛଡ଼ା ଅଧିକାଂଶ ଛୁଟିରେ ଯାଇଥାନ୍ତି । ଜଣେ ତରୁଣଙ୍କୁ ଦେଖି ମୁଁ ଇମ୍ପିରିଆଲ୍ କଲେଜରୁ ଆସିଛି ଏବଂ ମତେ ଟିକିଏ ଏ ବିଭାଗ ଦେଖେଇଦିଅ ବୋଲି କହିଲି । ଇମ୍ପିରିଆଲ୍ କଲେଜ ନାଁ ଶୁଣି ସେ ସେତେ ଆଗ୍ରହ ଦେଖାଇଲେ ନାହିଁ । କହିଲେ, ''ପ୍ରଫେସର ଜି.ଇ. ବ୍ରିଗସ୍‌ଙ୍କୁ ପଚାରି ଆସେ ।'' ବ୍ରିଗସ୍ ସେ ପିଲାର ବାପା । ବ୍ରିଗସ୍ ଜନ୍ ନାମକ ଜଣେ ଗବେଷକଙ୍କୁ ଦେଖାଇଦେବାକୁ କହିଲେ । ମୁଁ ଜନ୍ ସାଙ୍ଗରେ ଗଲି ଏବଂ କଥାବାର୍ତ୍ତା ସମୟରେ ତାଙ୍କୁ ମୁଁ ପ୍ରଫେସର ପରିଜାଙ୍କ ଛାତ୍ର ବୋଲି କହିଲି । ଏହି ସମୟରେ ଶିଡ଼ି ଉପରେ ଆମେ ଦୁହେଁ ଚଢୁଛୁ, ଉପରୁ ପ୍ରଫେସର ବ୍ରିଗସ୍ ଓହ୍ଲାଇ ଆସୁଥିଲେ । ଜନ୍ ତାଙ୍କୁ ମୁଁ ପରିଜାଙ୍କ ଛାତ୍ର ବୋଲି ମୋର ପରିଚୟ ଦେଲେ । ବ୍ରିଗସ୍ ପରିଜାଙ୍କ ନାମ ଶୁଣି ଅତିଶୟ ଖୁସି ହୋଇ ମୋତେ କୁଣ୍ଢାଇ ପକାଇଲେ । ମତେ ଭଲକରି ସବୁ ଦେଖାଇଦେବା ପାଇଁ ଜନ୍‌ଙ୍କୁ କହିଲେ । ତା'ପରେ ମତେ କହିଲେ, ''ପରିଜାଙ୍କୁ କହିବ ମୋର ଲଢ଼େଇ ପରେ ତାଙ୍କ ସହିତ ଶେଷ ଦେଖା ହୋଇଥିଲା । ସେତେବେଳକୁ ମେରୀ (ତାଙ୍କ ଝିଅ) ଜନ୍ମ ହୋଇଥିଲା । ପୁଣି କେବେ ଆସିବେ ମୋତେ ଲେଖିବେ । ପରିଜାସାହେବଙ୍କର ସୁନାମ ଏବେଯାଏ କେମ୍ବ୍ରିଜ୍‌ରେ ବୋଧହୁଏ ରହିଥିବ ।

ପରିଜାସାହେବ ବିଲାତରେ ଦୀର୍ଘ ୭ ବର୍ଷ ଥିବା ମଧ୍ୟରେ ଭାରତୀୟ ବିଦ୍ୟାର୍ଥୀ ଓ ଭାରତୀୟ ସିଭିଲ୍ ସର୍ଭିସ୍‌ରେ ତାଲିମ୍ ପାଉଥିବା ତରୁଣମାନେ ପ୍ରାୟ କେମ୍ବ୍ରିଜ୍ ଓ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରୁଥିଲେ । ସେଠାରେ ସେମାନେ ପରିଜାସାହେବଙ୍କ ସହିତ ପରିଚିତ ହୋଇ, ତାଙ୍କର ଗବେଷଣାର ସୁନାମ ଜାଣି ତାଙ୍କୁ ସମ୍ମାନ କରୁଥିଲେ । ଚିନ୍ତାମନ୍ ଦେଶମୁଖ, ବୀରବଲ ସାହାନି, ଆଫଜଲ୍ ହୁସେନ୍, ହନୁମନ୍ତରାଓ, ରାମାନୁଜନ୍, ଜନ୍ ମାଥାଇ ପ୍ରଭୃତି ବହୁ ଭାରତୀୟ ତାଙ୍କର ଚିହ୍ନା ଥିଲେ । ସେ ରେଭେନ୍ସା କଲେଜରେ ରହିବା ଦିନଠାରୁ ଏହି ବନ୍ଧୁମାନେ ପ୍ରାୟ ତାଙ୍କ ଘରେ ଆସି ଅତିଥି ହେଉଥିଲେ । ଆହୁରି ମଧ୍ୟ ପରିଜାସାହେବ ସର୍ବତ୍ର ପରୀକ୍ଷକ ହେବାରେ କିମ୍ବା ସଭାସମିତିରେ ଯୋଗଦେବାରେ ବହୁ ବନ୍ଧୁ ଅର୍ଜନ କରିଥିଲେ । ସେମାନେ ମଧ୍ୟ ତାଙ୍କୁ ଦେଖା କରିବାକୁ ତାଙ୍କ ଘରକୁ ଆସୁଥିଲେ । ପରିଜାସାହେବ ଓ ଶ୍ରୀମତୀ ସୁନ୍ଦରମଣୀ ପରିଜା ସେମାନଙ୍କର ଚର୍ଚ୍ଚା କରି ଆନନ୍ଦ ଅନୁଭବ କରୁଥିଲେ ।

ସେ ରେଭେନ୍ସା କଲେଜରେ ଅଧ୍ୟକ୍ଷ ଥିବା ସମୟରେ ହତା ଭିତରେ ଯେଉଁ ତରୁଣ ଅଧ୍ୟାପକମାନେ ଥିଲେ ଶ୍ରୀମତୀ ପରିଜା ସେମାନଙ୍କୁ ଓ ତାଙ୍କ ପରିବାରମାନଙ୍କୁ ଆପଣାର କୁଟୁମ୍ବ ଭଳି ଦେଖୁଥିଲେ ।

ପ୍ରଫେସର ପରିଜା ଜାତୀୟ ସ୍ତରରେ ମାନବସମ୍ବଳ (Manpower) କମିଟି, ଭାରତୀୟ ଭାଷା କମିଶନ୍, କେନ୍ଦ୍ରୀୟ ଜଙ୍ଗଲଜାତ ଦ୍ରବ୍ୟ ଉପଯୋଗ ବୋର୍ଡ଼, ଖାଦ୍ୟ ଓ କୃଷି ମନ୍ତ୍ରଣାଳୟର ବିଶେଷଜ୍ଞ କମିଟି, ଚଳଚ୍ଚିତ୍ର ଯାଞ୍ଚ୍ ବୋର୍ଡ଼, ଭାରତ ଓ ଶ୍ରୀଲଙ୍କାର ବିଶ୍ୱବିଦ୍ୟାଳୟଗୁଡ଼ିକର ଷ୍ଟାଣ୍ଡିଂ କମିଟି, ବିଶ୍ୱବିଦ୍ୟାଳୟ ଗ୍ରାଣ୍ଟସ୍ କମିଶନ୍‌ର ସାଧାରଣ ଶିକ୍ଷା କମିଟି ପ୍ରଭୃତି ଅନେକ କମିଟିରେ ସଦସ୍ୟ କିମ୍ବା ଚେୟାରମ୍ୟାନ୍ ରୂପେ ନିଯୁକ୍ତ ହୋଇ ସାରଗର୍ଭକ ଆଲୋଚନା ମାଧ୍ୟମରେ ସମ୍ମାନ ଲାଭ କରିଥିଲେ ।

ଓଡ଼ିଶାରେ ଆଉ ନୂଆ ବିଶ୍ୱବିଦ୍ୟାଳୟ ସ୍ଥାପନ କରାଯିବାର ଆବଶ୍ୟକତା ଅଛିକି, ଥିଲେ ସେଗୁଡ଼ିକର ରୂପରେଖ କଅଣ ହେବା ଉଚିତ ଓ ଓଡ଼ିଶାରେ ଗୋଟିଏ ବୈଷୟିକ ବିଶ୍ୱବିଦ୍ୟାଳୟ ସ୍ଥାପନ କରାଯିବାର ଆବଶ୍ୟକତା ଅଛିକି, ଏସବୁ ବିଷୟରେ ପୁଙ୍ଖାନୁପୁଙ୍ଖ ଅନୁଧ୍ୟାନ କରି ସରକାରଙ୍କୁ ଏକ ରିପୋର୍ଟ ପ୍ରଦାନ କରିବାପାଇଁ ଓଡ଼ିଶା ସରକାର ପ୍ରଫେସର ପରିଜାଙ୍କ ଅଧ୍ୟକ୍ଷତାରେ ଏକ ରାଜ୍ୟ ବିଶ୍ୱବିଦ୍ୟାଳୟ କମିଟି ଗଠନ କରିଥିଲେ ଓ ସେଥିରେ ମୁଁ ଜଣେ ସଦସ୍ୟ ଥିଲି । ଏହି କମିଟି ସରକାରଙ୍କୁ ସୁପାରିସ କରିଥିଲେ ଯେ ସମ୍ବଲପୁରରେ ଗୋଟିଏ ଆବାସିକ (ରେସିଡେନ୍‌ସିଆଲ୍) ବିଶ୍ୱବିଦ୍ୟାଳୟ ସ୍ଥାପିତ ହେଉ, ସେଥିପାଇଁ ଉପଯୁକ୍ତ ସମୟ ଉପସ୍ଥିତ ହୋଇସାରିଛି, ସମୟକ୍ରମେ କ୍ଷେତ୍ର ପ୍ରସ୍ତୁତ ହେଲେ ବ୍ରହ୍ମପୁରଠାରେ ଗୋଟିଏ ଆବାସିକ ବିଶ୍ୱବିଦ୍ୟାଳୟ ସ୍ଥାପିତ ହେଉ ଏବଂ ରେଭେନ୍ସା କଲେଜକୁ ନାଭିପିଣ୍ଡ ରୂପେ ଗ୍ରହଣ କରି କଟକରେ ଗୋଟିଏ ସଂଘୀୟ (ଫେଡ଼େରାଲ୍) ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରାଯାଉ । ଉତ୍କଳ ବିଶ୍ୱବିଦ୍ୟାଳୟ ସମଗ୍ର ଓଡ଼ିଶା ପାଇଁ ଏକ ଅଙ୍ଗୀକରଣକାରୀ (ଆଫିଲିଏଟିଂ) ବିଶ୍ୱବିଦ୍ୟାଳୟ ରୂପେ ରହୁ । ଓଡ଼ିଶାରେ ଗୋଟିଏ ବୈଷୟିକ ବିଶ୍ୱବିଦ୍ୟାଳୟ ସ୍ଥାପନ କରାଯିବା ପାଇଁ ଉପଯୁକ୍ତ ସମୟ ହୋଇ ନାହିଁ ବୋଲି ଉପଲବ୍ଧ କରାଯାଇଥିଲା ।

୧୯୬୭ ମସିହାରେ ଯେତବେଳେ ସମ୍ବଲପୁର ଓ ବ୍ରହ୍ମପୁରଠାରେ ବିଶ୍ୱବିଦ୍ୟାଳୟ ସ୍ଥାପନପାଇଁ ଦାବି ଓ ଆନ୍ଦୋଳନ ହୋଇଥିଲା ମୁଁ ସେତେବେଳେ ଓଡ଼ିଶା ଶିକ୍ଷା ବିଭାଗର ନିର୍ଦ୍ଦେଶକ ରୂପେ ପରିଜା କମିଟିର ସୁପାରିସ ପ୍ରତି ଓଡ଼ିଶା ସରକାରଙ୍କ ଧ୍ୟାନ ଆକର୍ଷଣ କରିଥିଲି ଓ ସରକାର ଏହି ରିପୋର୍ଟକୁ ଆଂଶିକ ଭାବରେ କାର୍ଯ୍ୟକାରୀ କରିଥିଲେ ।

ପରିଜାସାହେବଙ୍କ ପରିବାର ଏକ ସୁଖୀ ପରିବାର ଥିଲା । ତାଙ୍କର ଦୁଇ ଝିଅ ଓ ତିନି ପୁଅ । ବଡ଼ଝିଅ ମନ୍ଦାକିନୀ ମିଦନାପୁରର ଏକ ସମ୍ଭ୍ରାନ୍ତ ଘରେ ବିବାହ କରିଥିଲା । ସାନଝିଅ ସୌଦାମିନୀ ପାଟନାରେ ଡାକ୍ତରୀ ପାସ୍ କରି ବିଲାତରେ ଏମ୍.ଆର୍.ସି.ଜି.ଓ. କରି ପଞ୍ଜାବ ବିଶ୍ୱବିଦ୍ୟାଳୟର ଖ୍ୟାତିସମ୍ପନ୍ନ ଗଣିତ ପ୍ରଫେସର

ଆର୍.ପି. ବମ୍ଭାଙ୍କୁ ବିବାହ କରି ଚଣ୍ଡୀଗଡ଼ରେ ଅବସ୍ଥାନ କରୁଛି । ବଡ଼ପୁଅ ପ୍ରତାପରୁଦ୍ର ଉଚ୍ଚ ଶିକ୍ଷା ପାଇ ବ୍ୟବସାୟରେ ନିଯୁକ୍ତ । ମଝିଆ ପୁଅ ଲଲାଟେନ୍ଦୁ ଓ ସାନପୁଅ ଭାଲଚନ୍ଦ୍ର ଦୁଇଜଣ ଆଇ.ଏ.ଏସ୍ (ଇଣ୍ଡିଆନ୍ ଆଡ୍‌ମିନିଷ୍ଟ୍ରେଟିଭ୍ ସର୍ଭିସ୍) ପାଇଥିଲେ । ବିଧିର ବିଡ଼ମ୍ବନା ଏପରି ଯେ ପରିଚ୍ଛାସାହେବ ଓ ଶ୍ରୀମତୀ ପରିଚ୍ଛାଙ୍କ ଜୀବଦ୍ଦଶାରେ ବଡ଼ଝିଅ ଓ ବଡ଼ ଜ୍ୱାଇଁ ଇହଲୀଳା ସମ୍ବରଣ କଲେ । ସାନପୁଅ ମଧ୍ୟ ତାଙ୍କ ଆଗରେ ଚାଲିଗଲା । ଏ ଯେଉଁ ଦାରୁଣ ଆଘାତ ସେ ପାଇଲେ ତାହା ଅତିଶୟ ଦୁଃଖଦାୟକ । ସ୍ୱାମୀ-ସ୍ତ୍ରୀ ଦୁହେଁ ଏହି ଦାରୁଣ ଅବସ୍ଥା ଯେପରି ଧୈର୍ଯ୍ୟର ସହିତ ସମ୍ଭାଳିଥିଲେ ତାହା ଦେଖିଲେ ତାଙ୍କୁ ତପଚାରୀ ବୋଲି ଲୋକେ ବିଚାରୁଥିଲେ । ପରିଚ୍ଛାସାହେବ ଶୁଭ ଘଟଣାରେ ଉଲ୍ଲସିତ ହେବାର କି ଦୁଃଖଦୁର୍ଦ୍ଦଶାରେ ବିବ୍ରତ ହେବାର କେହି ଦେଖି ନାହାଁନ୍ତି ।

୧୯୭୮ ମସିହା ମେ ମାସରେ ପରିଚ୍ଛାସାହେବଙ୍କ ସ୍ତ୍ରୀ ସୁନ୍ଦରମଣୀ ଇହଲୀଳା ସମ୍ବରଣ କରିଥିଲେ । ତା'ର ପ୍ରାୟ ୧୫ ଦିନ ପରେ ଅର୍ଥାତ୍ ସେହି ୧୯୭୮ ମସିହା ଜୁନ୍ ୨ ତାରିଖରେ ଡକ୍ଟର ପ୍ରାଣକୃଷ୍ଣ ଶେଷନିଃଶ୍ୱାସ ତ୍ୟାଗ କଲେ । ଏକ ଅମ୍ଳାନ ଜୀବନର ଅବସାନ ହୋଇଗଲା ।

ଶେଷରେ ସମସ୍ତଙ୍କ ତୁଣ୍ଡରେ କବିଙ୍କ ଭାଷା—

''ତୁମ୍ଭ ମାଟି ଦେହ ଗ୍ରାସିଛି ଶ୍ମଶାନ,
ମାତ୍ର ଯଶୋଦେହେ ତୁମ୍ଭେ ଆୟୁଷ୍ମାନ ।''

(ଏହି ପ୍ରବନ୍ଧର କିଛି ଅଂଶ ମୂଳ ଇଂରାଜୀ ଲେଖାରୁ ଡକ୍ଟର ଗଦାଧର ମିଶ୍ରଙ୍କଦ୍ୱାରା ଓଡ଼ିଆରେ ଅନୂଦିତ ହୋଇଅଛି ।)

# ପରିଜାସାହେବ – କେତେଗୁଡ଼ିଏ ଅଭୁଲା ସ୍ମୃତି

**ବାଙ୍କବିହାରୀ ଦାସ**

ଚାରିବର୍ଷ ପାଖାପଖି ରେଭେନ୍ସା କଲେଜରେ ଛାତ୍ର ଥିଲାବେଳେ କଲେଜର ପ୍ରିନ୍ସିପାଲ ଥାଆନ୍ତି ଓଡ଼ିଶାର ବରପୁତ୍ର ବିଶିଷ୍ଟ ଶିକ୍ଷାବିତ୍ ଓ ବୈଜ୍ଞାନିକ ପ୍ରାଣକୃଷ୍ଣ ପରିଜା । ନାନା ଭାବରେ ତାଙ୍କ ସଂସ୍ପର୍ଶରେ ଆସିଥିଲେହେଁ କଳାଶ୍ରେଣୀର ଛାତ୍ରଥିବାରୁ ତାଙ୍କଠାରୁ ପ୍ରତ୍ୟକ୍ଷଭାବରେ ଶ୍ରେଣୀରେ ଶିକ୍ଷାଲାଭ କରିବାର ସୁବିଧା ପାଇପାରି ନ ଥିଲି । କିନ୍ତୁ ତାଙ୍କ ଭଳି ବ୍ୟକ୍ତିଙ୍କର ସଂସ୍ପର୍ଶରେ ଆସିବା କମ୍ ସୌଭାଗ୍ୟର କଥା ନ ଥିଲା ।

ସେତେବେଳେ ସମସ୍ତେ ତାଙ୍କୁ ପରିଜାସାହେବ ବୋଲି ଡାକୁଥିଲେ । ଚେହେରାରେ ଓ ପଦାକୁ ବ୍ୟବହାରରେ ଏତେ ଗମ୍ଭୀର ଯେ ସମସ୍ତେ ତାଙ୍କୁ ଭୟଙ୍କର ଭାବରେ ଭୟ କରୁଥିଲେ । ତାଙ୍କ ଆଗକୁ ଯିବାକୁ କିଏବା ସାହସ କରିବ ? କିନ୍ତୁ ମଣିଷ ହିସାବରେ ବା ଶିକ୍ଷକ ହିସାବରେ ସେ ଠିକ୍ ଓଲଟା । ଭିତରଟା ଅତି ନମ୍ର ଓ ସ୍ନେହରେ ଭର୍ତ୍ତି । ଛାତ୍ରଙ୍କ ପ୍ରତି ଶ୍ରଦ୍ଧା ଓ ସହାନୁଭୂତିରେ ପୂର୍ଣ୍ଣ । ଯିଏ ତାଙ୍କ ନିକଟକୁ ଯାଇଛି, ସେ ଜାଣିଛି ସେ କେତେ ଛାତ୍ରବତ୍ସଳ ଓ ସ୍ନେହୀ ଥିଲେ ।

ଏହା ହେଉଛି ୧୯୩୯ ସାଲରୁ ୧୯୪୨ ସାଲର କଥା । ସେତେବେଳକୁ ସେ ଭାରତର ଜଣେ ପ୍ରଖ୍ୟାତ ଉଦ୍ଭିଦବିତ୍ ହିସାବରେ ଖ୍ୟାତି ଅର୍ଜନ କରିସାରିଲେଣି ଓ ଜଣେ ବୈଜ୍ଞାନିକ ହିସାବରେ ଭାରତର ବିଜ୍ଞାନ ଜଗତରେ ପ୍ରମୁଖ ସ୍ଥାନ ହାସଲ କରିସାରିଲେଣି । ପ୍ରତ୍ୟେକ ଓଡ଼ିଆ ତାଙ୍କ ପାଇଁ ଗର୍ବ କରୁଥାଏ ।

ମୋର ଭଲ ଭାବରେ ସ୍ମରଣ ଅଛି ଦିନେ ସମାଜବାଦୀ ଆନ୍ଦୋଳନର ଜଣେ ପ୍ରମୁଖ ନେତା ଓ ପଣ୍ଡିତ ଆଚାର୍ଯ୍ୟ ନରେନ୍ଦ୍ରଦେବ ପ୍ରାୟ ଚାରିଜଣଙ୍କର ଶେଷଭାଗରେ ହଠାତ୍ ପଚାରିଲେ ତୁମେ ପ୍ରାଣକୃଷ୍ଣ ପରିଜାଙ୍କୁ ଜାଣ ମୁଁ କହିଲି ମୁଁ ତାଙ୍କୁ ଭଲଭାବରେ ଜାଣେ ଏବଂ ପଢୁଥିଲାବେଳେ ସେ ଆମ କଲେଜରେ ଅଧ୍ୟକ୍ଷ ଥିଲେ । ହଠାତ୍ ଆଚାର୍ଯ୍ୟଜୀ କହିଲେ ଯେ ଆମେ ତାଙ୍କୁ ବନାରସ ବିଶ୍ୱବିଦ୍ୟାଳୟର ପ୍ରୋ-ଭାଇସ୍‌ଚାନ୍‌ସଲର କରି ଆଣୁଛୁଁ, ତାଙ୍କଭଳି ଜ୍ଞାନୀଲୋକ ଖୁବ୍ କମ୍ ଅଛନ୍ତି । ଏହିପରି ନାନା କଥାରୁ ମୁଁ ଜାଣିଛି ଓଡ଼ିଶାବାସୀ ତାଙ୍କ ବିଷୟରେ ଯେତେ ଜାଣିଥାନ୍ତୁ ବା ନାହିଁ, ଓଡ଼ିଶା ବାହାରେ ତାଙ୍କର ସୁନାମ ଓ ଖ୍ୟାତି ବହୁତ ଥିଲା । ଭାରତର ପଣ୍ଡିତ ଓ ବିଜ୍ଞ ମଣ୍ଡଳୀରେ ସେ ଥିଲେ ଜଣେ ଉଜ୍ଜ୍ୱଳ ଜ୍ୟୋତିଷ୍କ ।

ଛାତ୍ରଜୀବନର ବହୁ କଥା ପରିଚ୍ଛାସାହେବଙ୍କ ସମ୍ବନ୍ଧରେ ମନକୁ ଆସୁଛି । ମୋ ଜୀବନରେ ଦୁଇଟି ଘଟଣା ଘଟିଛି, ଯାହା ମୁଁ କେବେହେଲେ ଭୁଲିପାରିବି ନାହିଁ । ସେ ସାହାଯ୍ୟ କରି ନ ଥିଲେ ମୋର ଜୀବନରେ ଏକ ବିରାଟ ଅବଶୋଷ ରହିଥାନ୍ତା ।

ପାଟଣା ବିଶ୍ୱବିଦ୍ୟାଳୟ ସେତେବେଳେ ଓଡ଼ିଶାର କଲେଜ ପରୀକ୍ଷାରେ କେବଳ ନୁହେଁ, ମାଟ୍ରିକ ପରୀକ୍ଷାର ମଧ୍ୟ ତତ୍ତ୍ୱବଧାରକ ଥିଲେ । ୧୯୩୯ ମସିହାରେ ରେଭେନ୍ସା କଲିଜିଏଟ୍ ସ୍କୁଲରୁ ପ୍ରଥମ ଶ୍ରେଣୀରେ ବୃତ୍ତି ପାଇ ଯେତେବେଳେ ରେଭେନ୍ସା କଲେଜରେ ନାମ ଲେଖାଇବାକୁ ଗଲି, ସେତେବେଳେ ଇଚ୍ଛା ଅନୁସାରେ ବିଷୟ (ସବ୍ଜେକ୍ଟ) ମିଳିଲା ନାହିଁ । ଇଂରାଜୀ, ଓଡ଼ିଆ ବାଧ୍ୟତାମୂଳକ ବିଷୟ ଥିଲା ବେଳେ ଆଉ ତିନୋଟି ପାଠ୍ୟ ବିଷୟ ନେବାକୁ ହେବ । ମୋର ଇଚ୍ଛା ଥିଲା ଗଣିତ, ଅର୍ଥନୀତି ଓ ସଂସ୍କୃତ ନେବାକୁ । ବାଧ୍ୟ ହୋଇ ସଂସ୍କୃତ ସ୍ଥାନରେ ଓଡ଼ିଆ ନେଇଥିଲି । ଦିନେ ମନକଷ୍ଟରେ ମନରେ ବହୁତ ସାହସ ବାନ୍ଧି ଅଧ୍ୟକ୍ଷଙ୍କ ଅଫିସ୍‌କୁ ଗଲି । ମୋର ଆପତ୍ତି ଶୁଣି ସେ କହିଲେ ଆଜିପର୍ଯ୍ୟନ୍ତ କେହି ଏପରି ବିଷୟ ଏକାଠି ନେଇ ନାହାନ୍ତି । ଜଣକ ପାଇଁ ଏହାର ପ୍ରବର୍ତ୍ତନ କଲେ ରୁଟିନ୍ ଓ ସେମିନାରକୁ ସଂଶୋଧନ କରିବାରେ ବହୁ ଅସୁବିଧା ଉପୁଜିବ । ମନକଷ୍ଟରେ ଫେରିଆସିଲା ବେଳକୁ ହଠାତ୍ ପଛରୁ ଡାକି କହିଲେ ତୁମ ଇଚ୍ଛା ଅନୁସାରେ ସେସବୁ ବିଷୟକୁ ପ୍ରବର୍ତ୍ତନ କରିବାକୁ ଚେଷ୍ଟା କରିବି । ସତକୁସତ ଦିନେ ପରେ ନୋଟିସ୍ ବୋର୍ଡରେ ମୋ ଅନୁରୋଧ ଅନୁସାରେ ବିଷୟ ଗୋଷ୍ଠୀ ପ୍ରବର୍ତ୍ତନ ହେଲା । ଜଣେ ଅଚିହ୍ନା ନୂତନକରି ନାମ ଲେଖାଇଥିବା ଛାତ୍ରପ୍ରତି ଏପରି ସ୍ନେହ ଓ ସହାନୁଭୂତି କେବେହେଲେ ଭୁଲି ହେବ ନାହିଁ । ସେହିପରି ଏକ ଅବସ୍ଥା ଉପୁଜିଲା ୧୯୪୧ ସାଲରେ ବି.ଏ. ଅନର୍ସରେ ନାମ ଲେଖାଇବା ବେଳେ । ମୁଁ ଗଣିତ ଓ ଅର୍ଥନୀତି ସହିତ ଅର୍ଥନୀତିରେ ଅନର୍ସ ନେବାକୁ ଚାହିଁଲି । ଏପରି ବିଷୟର ସମ୍ମେଳନ ନ ଥିଲା କାରଣ ଯେଉଁମାନେ ଅନର୍ସ ନେଉଥିଲେ ସେମାନେ ଦ୍ୱିତୀୟ ବିଷୟଟା ଟିକିଏ ହାଲୁକା ସବ୍ଜେକ୍ଟ ନେଉଥିଲେ । ମୋର ଏକା ଜିଦ୍ ଗଣିତ ପଢ଼ିବି କାରଣ ଅର୍ଥନୀତି ଓ ଗଣିତ ଉଭୟ ବିଷୟବସ୍ତୁ ମୋତେ ବହୁତ ଆକର୍ଷଣ କରିଥାଏ । ସାହସ କରି ପୁନର୍ବାର ପରିଚ୍ଛାସାହେବଙ୍କୁ ଭେଟିଲି ଓ ଜିଦ୍‌କଲି । ସେ ପ୍ରଥମେ ପଛେଇଲେ, ବୁଝାଇଲେ ଯେ ଅନ୍‌ର୍ସରେ ଭଲକରିବାକୁ ହେଲେ ପାସ୍ ସବ୍ଜେକ୍ଟ ଗଣିତଭଳି ଏକ କଷ୍ଟକର ବିଷୟ କାହିଁକି ନେବ ? କିନ୍ତୁ ଶେଷରେ ମୋ କଥା ରହିଲା ଏବଂ ଏହି ବିଷୟ ଗୋଷ୍ଠୀର ପ୍ରବର୍ତ୍ତନ ହେଲା । ମୁଁ ଏକମାତ୍ର ଛାତ୍ର ଏହି ବିଷୟ ଗୋଷ୍ଠୀରେ ନାମ ଲେଖାଇଲି ।

ଏହି ଦୁଇଟି ଘଟଣାରୁ ଯେ କୌଣସି ଲୋକ ବୁଝିବ ପରିଚ୍ଛାସାହେବ କେତେଦୂର ପର୍ଯ୍ୟନ୍ତ ଛାତ୍ରବତ୍ସଳ ଥିଲେ ଓ ମେଧାବୀ ଛାତ୍ରମାନଙ୍କୁ ସାହାଯ୍ୟ କରିବାକୁ ପଛାଉ ନ ଥିଲେ । ଏପରି ଛାତ୍ରବତ୍ସଳ ଶିକ୍ଷକ ଆଜିକାଲି ବିରଳ ।

ସ୍ନେହୀ ଓ ଛାତ୍ରବତ୍ସଳ ଥିଲେ, କିନ୍ତୁ ଭୟଙ୍କର ଭାବରେ ଶୃଙ୍ଖଳା ରକ୍ଷା କରିବାରେ ପଟୁ ଥିଲେ । ଅଧ୍ୟାପକ ବା ଛାତ୍ର କାହାରି କର୍ତ୍ତବ୍ୟ ତ୍ରୁଟି ବା ବିଶୃଙ୍ଖଳାକୁ ସେ ପ୍ରଶ୍ରୟ ଦେଇ ନ ଥିଲେ । ସେଥିପାଇଁ ସମୟେ ସମୟେ ସେ ଅପ୍ରିୟ ହେବାକୁ ମଧ୍ୟ ଭୟ କରୁ ନ ଥିଲେ । ଦ୍ୱିତୀୟ ମହାଯୁଦ୍ଧ ବେଳେ ଓ ତାହା ପୂର୍ବରେ ଭାରତରେ ଜାତୀୟବାଦର ସ୍ରୋତ ଛାତ୍ର ସମାଜକୁ ପ୍ରଭାବିତ କରୁଥିଲା । ତେଣୁ ଶିକ୍ଷାୟତନରେ ପ୍ରଶାସକ ହିସାବରେ ଶୃଙ୍ଖଳା ରକ୍ଷା କଲାବେଳକୁ ଅପ୍ରୀତିକର ଅବସ୍ଥା ଉପୁଜୁଥିଲା । ଏକ ଦିଗରେ ବ୍ରିଟିଶ ଶାସନ ଅଧୀନରେ ଏକ ଉଚ୍ଚ ଓ ନାମଜାଦା କଲେଜର ଅଧ୍ୟକ୍ଷ ତଥା ପ୍ରଶାସକ, ଅନ୍ୟ ଦିଗରେ ଦେଶପ୍ରୀତି ଓ ଜାତୀୟତାଭାବ । ସେଥିପାଇଁ ସମୟେ ସମୟେ ଜାତୀୟବାଦୀ ଛାତ୍ରମାନେ ପରିଜାସାହେବଙ୍କୁ ଭୁଲ୍ ବୁଝୁଥିଲେ ଓ ବ୍ରିଟିଶ୍ ରାଜ୍ୟର ପରିପୋଷକ ହିସାବରେ ବିରୋଧ କରୁଥିଲେ । ଯେଉଁମାନେ ପରିଜାସାହେବଙ୍କୁ ନିକଟରୁ ଜାଣିଛନ୍ତି, ସେମାନେ ଜାଣନ୍ତି ଯେ ତାଙ୍କର ଓଡ଼ିଶାପ୍ରୀତି ଓ ଜାତୀୟପ୍ରୀତି କାହାଠାରୁ ଊଣା ନ ଥିଲା, କିନ୍ତୁ ଶିକ୍ଷାୟତନର ଅଧ୍ୟକ୍ଷ ହିସାବରେ ପାଠପଢ଼ା ଓ ଶୃଙ୍ଖଳାକୁ ସେ ଆଦୌ ଗୌଣ ସ୍ଥାନ ଦେଉ ନ ଥିଲେ । ଆଗେ ଯେଉଁମାନେ ଜାତୀୟବାଦୀ ଛାତ୍ର ହିସାବରେ କଲେଜ ଜୀବନରେ କିଛି ପରିମାଣରେ ଜଣାଶୁଣା ଥିଲୁ, ସେମାନେ ପ୍ରଥମେ ପରିଜାସାହେବଙ୍କୁ ଭୁଲ୍ ବୁଝୁଥିଲେ ମଧ୍ୟ ପରବର୍ତ୍ତୀ କାଳରେ ଠିକଣା ଭାବରେ ବୁଝିଥିଲେ ଓ ତାଙ୍କପ୍ରତି ଭକ୍ତି ବୃଦ୍ଧି ପାଇଥିଲା ।

ପରିଜାସାହେବ କେବଳ ଛାତ୍ରବତ୍ସଳ ନ ଥିଲେ ଗରିବ, ମେଧାବୀ ଛାତ୍ରଙ୍କ ପ୍ରତି ତାଙ୍କର ଅଗାଧ ସ୍ନେହ ଥିଲା । ସେଥିପାଇଁ ଯେଉଁମାନେ ଆର୍ଥିକ ଅନଟନ ଯୋଗୁଁ ପଢ଼ାରେ ଆଗେଇବାରେ ଅସୁବିଧାରେ ପଡୁଥିଲେ, ସେଇମାନଙ୍କୁ ଅଜାତରରେ ସେ ରୀତିମତ ଆର୍ଥିକ ସାହାଯ୍ୟ କରୁଥିଲେ । ପରିଜାସାହେବ ନିଜ ହାତରେ ନିଜକୁ ଗଢ଼ିଥିଲେ, ତେଣୁ ସେ ଗରିବ ମେଧାବୀ ଛାତ୍ରଙ୍କ ସମସ୍ୟା ସହଜରେ ବୁଝିପାରୁଥିଲେ ।

ପରବର୍ତ୍ତୀ ଜୀବନରେ ସେ କୃଷିବିଭାଗର ଡାଇରେକ୍ଟର ହୋଇଛନ୍ତି ଓ ଉତ୍କଳ ବିଶ୍ୱବିଦ୍ୟାଳୟର ତିନିଥର କୁଳପତି ମଧ୍ୟ ହୋଇଛନ୍ତି । ତାଙ୍କ ଯୋଗୁଁ ଉତ୍କଳ ବିଶ୍ୱବିଦ୍ୟାଳୟର ସମ୍ମାନ ବୃଦ୍ଧି ହୋଇଥିଲା ଏବଂ ଭାରତୀୟ ବିଶ୍ୱବିଦ୍ୟାଳୟ ମହଲରେ ଏହାର ପ୍ରତିଷ୍ଠା ବୃଦ୍ଧି ପାଇଥିଲା । ସେତେବେଳେ ଓଡ଼ିଶାରେ ଗାଁଗଣ୍ଡାରେ କଲେଜ ପ୍ରତିଷ୍ଠା ହେବାକୁ ଆରମ୍ଭ ହେଉଥାଏ । ଆଜିକାଲି ଛତୁ ଫୁଟିଲା ଭଳି ଅବଶ୍ୟ କଲେଜ ହେଉ ନ ଥାଏ । ପରିଜାସାହେବ କଲେଜ ସଂଖ୍ୟା ବୃଦ୍ଧି ଉପରେ ଯେତେ ଗୁରୁତ୍ୱ ଦେଉ ନ ଥିଲେ, କଲେଜର ଗୁଣାତ୍ମକ ମାନ ବୃଦ୍ଧି ଉପରେ ବେଶି ଗୁରୁତ୍ୱ ଦେଉଥିଲେ । ଶିକ୍ଷାର ପ୍ରସାର ହେବ, ଅଥଚ ଶିକ୍ଷାର ମାନ ହ୍ରାସ ହେବ, ଏଥିରେ ତାଙ୍କର ବିଶ୍ୱାସ ନ ଥିଲା ।

ରାଜନୀତି ପ୍ରତି ତାଙ୍କର ସ୍ପୃହା ନ ଥିଲେହେଁ ବନ୍ଧୁମାନଙ୍କ ଚାପରେ ପ୍ରଥମ ସାଧାରଣ ନିର୍ବାଚନରେ ସେ ଓଡ଼ିଶା ବିଧାନସଭାକୁ ସ୍ୱାଧୀନ ପ୍ରାର୍ଥୀ ହିସାବରେ ନିଜ ଗ୍ରାମାଞ୍ଚଳ କଟକ ଜିଲ୍ଲା ବାଲିକୁଦା ନିର୍ବାଚନ ମଣ୍ଡଳୀରୁ ପ୍ରାର୍ଥୀ ହୋଇଥିଲେ । ସେତେବେଳେ ରାଜନୀତି ଓ ଗାଁଗହଳି ସହିତ ଦୈନନ୍ଦିନ ସଂପୃକ୍ତ ନ ଥିବା ବ୍ୟକ୍ତି ସ୍ୱାଧୀନ ଭାବରେ ଜୟଲାଭ କରିବା ସହଜ ନୁହେଁ । ତେଣୁ ଅନେକେ ଭାବୁଥିଲେ ତାଙ୍କ ଭଳି ଜ୍ଞାନୀ ଓ ଗୁଣୀ ଲୋକ ହାରିଯିବ । କିନ୍ତୁ ଆଶ୍ଚର୍ଯ୍ୟର କଥା, ଅଗଣିତ ଶିକ୍ଷକ ଓ ଛାତ୍ର ପରିଜାସାହେବଙ୍କ ପାଇଁ ବାନରସେନାଭଳି ଲାଗିଗଲେ ଏବଂ ସେ ଜିତିଗଲେ ।

ସେତେବେଳେ ଘଟଣାଚକ୍ରରେ ପ୍ରଥମ ବିଧାନସଭାରେ ଗୋଦାବରୀଶ ମିଶ୍ର, ନୀଳକଣ୍ଠ ଦାଶ ପ୍ରମୁଖ ଓଡ଼ିଶାର ପ୍ରତିଷ୍ଠିତ ବ୍ୟକ୍ତି ବିଧାନସଭାରେ ସଭ୍ୟ ଥିଲେ ଓ ବିରୋଧୀଦଳରେ ବସୁଥିଲେ । ଶିକ୍ଷା ସମ୍ବନ୍ଧରେ ଯେତେ ଆଲୋଚନା ହେଉଥିଲା, ସେଥିରେ ପରିଜାସାହେବଙ୍କ ମତକୁ ସର୍ବାଧିକ ସମ୍ମାନ ଦିଆଯାଉଥିଲା । ସେ କେବଳ ସ୍ୱାଧୀନ ସଭ୍ୟ ନ ଥିଲେ, ବାସ୍ତବରେ ସ୍ୱାଧୀନଚେତା ନେତା ଥିଲେ । କିନ୍ତୁ କିଛିଦିନ ପରେ ଜଣାଗଲା ବିଧାନସଭାରେ ଯେପରି ଦଳୀୟ ମନୋଭାବ ନେଇ ବିଚାର ଆଲୋଚନା ଚାଲିଥିଲା, ସେଥିରେ ପରିଜାସାହେବ ଖାପଖୁଆଇ ଚାଲିପାରିଲେ ନାହିଁ । ସେତେବେଳେ ମୁଖ୍ୟମନ୍ତ୍ରୀ ଥାଆନ୍ତି ନବକୃଷ୍ଣ ଚୌଧୁରୀ, ଜଣେ ଜ୍ଞାନୀ ଲୋକ ଓ ଜ୍ଞାନୀଲୋକଙ୍କ ପ୍ରତି ତାଙ୍କର ଅଗାଧ ସମ୍ମାନ । ସରକାରୀ ଓ ବିରୋଧୀଦଳ ଉଭୟରେ ବହୁ ଗୁଣୀ ଲୋକ ଥାଆନ୍ତି । ସେଥିରେ ଯଦି ତାଙ୍କୁ ତତ୍କାଳୀନ ବିଧାନସଭା ପରିବେଶ ଭଲ ଲାଗିଲା ନାହିଁ, ସେ ଯଦି ଥାଆନ୍ତେ ତେବେ ବର୍ତ୍ତମାନର ବିଧାନସଭାରେ ସେ ମୁହୂର୍ତ୍ତେ ବସିପାରନ୍ତେ ନାହିଁ । ସମୟକ୍ରମରେ ଅଧୋଗତି କେତେଥର ଆସିଲାଣି, ତାହା ଦେଖିଲେ ଯେ କୌଣସି ବିବେକବାନ୍ ଲୋକର ରାଜନୀତି ଓ ପାର୍ଲିଆମେଣ୍ଟାରୀ ସଂସ୍କୃତି ପ୍ରତି ବୀତସ୍ପୃହ ହେବ ।

ଏ ବ୍ୟତିକ୍ରମରେ ପରିଜାସାହେବ ପୁନର୍ବାର ଫେରିଆସିଲେ ତାଙ୍କ ପୂର୍ବର ଶିକ୍ଷାୟତନ ବାତାବରଣକୁ । ପୁନର୍ବାର ଉତ୍କଳ ବିଶ୍ୱବିଦ୍ୟାଳୟର ଭାଇସ୍ ଚାନ୍ସେଲର ହୋଇ । ପ୍ରାଣକୃଷ୍ଣ ପରିଜା ଯେତେବେଳେ ବିଲାତରେ ଉଚ୍ଚଶିକ୍ଷା ଲାଭ କରି ଫେରିଲେ, ସେତେବେଳେ ତାଙ୍କ ନାମ 'ପରିଜାସାହେବ' ହୋଇଗଲା କାରଣ ସେତେବେଳେ ବିଲାତରେ ଶିକ୍ଷାଲାଭ କରିବା ଜଣେ ଓଡ଼ିଆ ପକ୍ଷରେ ବିରଳ ସୁଯୋଗ । କିନ୍ତୁ ଆଶ୍ଚର୍ଯ୍ୟର କଥା ସେହି ନାମଟା ଶ୍ମଶାନକୁ ଯିବାପର୍ଯ୍ୟନ୍ତ ରହିଗଲା । ସେହି ପରିଜାସାହେବଙ୍କ ସ୍ମୃତି ପ୍ରତି ମୋର ସଭକ୍ତି ଶ୍ରଦ୍ଧାଞ୍ଜଳି ।

# ପରିଜାସାହେବ – ଏକ ଅଭୁଲା ସ୍ମୃତି

**ବାଞ୍ଛାନିଧି ମିଶ୍ର**

୧୯୬୦ ମସିହା । ମୁଁ ଦୁଇବର୍ଷ ହେବ ରେଭେନ୍ସା କଲେଜ ଉଦ୍ଭିଦ ବିଜ୍ଞାନ ବିଭାଗରେ ଅଧ୍ୟାପକ ଥାଏ । ଗବେଷଣା କରିବାର ପ୍ରବଳ ଇଚ୍ଛା ଥିଲେ ମଧ୍ୟ ଅଭାବ ଥିଲା ନିଜର ଅନୁଭୂତି । ସେତେବେଳେ ଡଃ ବଂଶୀଧର ସାମନ୍ତରାୟ ଥାଆନ୍ତି ଉଦ୍ଭିଦ ବିଜ୍ଞାନର ବିଭାଗୀୟ ମୁଖ୍ୟ । ଦିନେ ସେ ସମସ୍ତ ଅଧ୍ୟାପକଙ୍କୁ ଡାକି ପରିଜାସାହେବଙ୍କ ତତ୍ତ୍ୱାବଧାନରେ ଗବେଷଣା କରିବା ପାଇଁ ମତାମତ ଲୋଡ଼ିଥିଲେ । ସେଥିରେ ମୋ ବ୍ୟତୀତ ଅନ୍ୟ କେହି ଆଗ୍ରହ ପ୍ରକାଶ କରି ନ ଥିଲେ । ତେଣୁ ଏହାର ଚାରିଦିନ ପରେ ଡଃ ସାମନ୍ତରାୟ ଖଣ୍ଡେ ଚିଠି ଦେଇ ପରିଜାସାହେବଙ୍କୁ ସାକ୍ଷାତ କରିବାକୁ କହିଲେ । ସେତେବେଳେ ପରିଜାସାହେବ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଥାଆନ୍ତି । ସେ କେଣ୍ଟନ୍‌ମେଣ୍ଟ୍ ରୋଡ଼ସ୍ଥ ନିଜ ବାସଭବନରେ ରହୁଥାନ୍ତି । ପରଦିନ ସକାଳେ ତାଙ୍କ ଘରେ ଚିଠିଟି ନେଇ ପହଞ୍ଚିଲି । ମୋତେ ଆଗରୁ କୁହାଯାଇଥିଲା ପରିଜାସାହେବ ବଡ଼ ସମୟାନୁବର୍ତ୍ତୀ । ସେ ଯେଉଁ ସମୟ ଦେଇଥିବେ, ସେଥିରେ ମିନିଟ୍‌ଟିଏ ବି ଏପଟ ସେପଟ ହେବନି । ଚାକର ହାତରେ ମୋ ଆସିବା ଖବର ଓ ଡକ୍ଟର ସାମନ୍ତରାୟଙ୍କ ଚିଠିଟି ଦେଲି । ତାଙ୍କର ପଢ଼ାରୁମ୍‌ରେ ସାକ୍ଷାତ ହେଲା । ସେ ପ୍ରଥମେ ଅମରି ଗଛ ବିଷୟରେ ଅନେକ ପ୍ରଶ୍ନ କଲେ । ମୁଁ ଯେତିକି ଜାଣିଥାଏ, ସେତିକି କହିଲି । ତା'ପରେ ମୋତେ ଅଫିସ୍‌ରେ ଦେଖା କରିବାକୁ କହିଲେ । ସେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟ ଅଫିସ୍ କଟକର ଯୋବ୍ରା ନିକଟସ୍ଥ ଏକ ଘରୋଇ କୋଠିରେ ଚାଲୁଥାଏ । ସେଦିନ ଅଫିସ୍‌ରେ ମୋତେ ଗୋଟିଏ କାର୍ଯ୍ୟ ଯୋଜନା (Work plan)ଦିଆଗଲା ଓ କିଛି ସମୟ ତା' ଉପରେ ଆଲୋଚନା ମଧ୍ୟ ହେଲା । ସେହିଦିନଠୁଁ ମୋର "ଅମରି ଗଛ ଉପରେ ପରିବେଶର ପ୍ରଭାବ" ଗବେଷଣା କାର୍ଯ୍ୟ ଆରମ୍ଭ ହେଲା ।

ପରିଜାସାହେବ ପ୍ରାୟ ୧୦/୧୫ ଦିନରେ ଥରେ ଉଦ୍ଭିଦ ବିଜ୍ଞାନ ଗବେଷଣାଗାରକୁ ଆସି କାମ ସବୁ ତଦାରଖ କରନ୍ତି ଓ ତାଙ୍କର ମତାମତ ତଥା ନିର୍ଦ୍ଦେଶ ଦିଅନ୍ତି । ଦିନେ ସେ ଖବର ଦେଲେ ଯେ ସେ ସକାଳ ୯ ଘଣ୍ଟା ୧୫ ମିନିଟ୍‌ରେ ଲେବୋରେଟରୀରେ ପହଞ୍ଚିବେ । ମୁଁ ସକାଳ ୮ ଘଣ୍ଟାରୁ ବ୍ୟସ୍ତ ରହିଲି । ଠିକ୍ ୯ ଘଣ୍ଟା ୧୫ ମିନିଟ୍‌ରେ କୁଳପତିଙ୍କ ପିଅନ ଆସି ଖଣ୍ଡେ ଚିଠି ଦେଲା । ସେଥିରେ ଲେଖା ଥିଲା,

My dear Banchhanidhi,

I am sorry. I have to take my wife to the hospital. I shall inform you about my next visit letter.

Sincerely yours,
sd/-P. Parija

ମୁଁ ଥରେ ଛାତ୍ରମାନଙ୍କୁ ନେଇ ଡେରାଡୁନ୍, ମସୁରୀ ଆଦି ସ୍ଥାନକୁ ପରିଭ୍ରମଣରେ ଯାଇଥିଲି । ଡେରାଡୁନ୍‌ର ବନ ଅନୁସନ୍ଧାନ କେନ୍ଦ୍ର (F.R.I.)ହର୍‌ବାରିଅମ୍(herbarium)ପାଇଁ ଖୁବ୍ ପ୍ରସିଦ୍ଧ । ଅନେକ ହର୍‌ବାରିଅମ୍‌କୁ ଓଲଟାଇ ଜାଣିଲେ ଅମରି ଗଛର ବଟାନିକାଲ୍ ନାମ Ipomoea Carnea ନୁହଁ । କିନ୍ତୁ ତା'ର ପ୍ରକୃତ ନାମ କେହି କହିପାରିଲେ ନାହିଁ । କଟକ ଫେରି ଏ ବିଷୟ ପରିଜାସାହେବଙ୍କୁ ଜଣାଇଲି । ସେ ମୋତେ କଲିକତା ଯାଇ ଫାଦର୍ ସାନ୍ତାପୁଙ୍କୁ (ଫାଦର୍ ସାନ୍ତାପୁ ତତ୍କାଳୀନ ବଟାନିକାଲ୍ ସର୍ଭେ ଅଫ୍ ଇଣ୍ଡିଆର ମୁଖ୍ୟ) ଦେଖା କରିବାକୁ ଉପଦେଶ ଦେଲେ । କଲିକତାରେ ମଧ୍ୟ ଠିକ୍ ନାମ ଜାଣି ହେଲା ନାହିଁ । ବାଧ୍ୟହୋଇ ନମୁନା (specimen)କ୍ୟୁ ଗାର୍ଡନ୍‌କୁ (ଇଂଲଣ୍ଡ) ପଠାଇବାକୁ ପଡ଼ିଲା । କ୍ୟୁ ଗାର୍ଡନ୍‌ର ହର୍‌ବାରିଅମ୍ ମୁଖ୍ୟ ଏହି ଗଛର ନାମ Ipomoea Crassicaulis ବୋଲି ଜଣାଇଲେ । ଏହା ହେଉଛି ପରିଜାସାହେବଙ୍କର ଦୃଷ୍ଟିକୋଣ ଓ କାର୍ଯ୍ୟଦକ୍ଷତାର ଏକ ଦୃଷ୍ଟାନ୍ତ । ଆଜି ଏହି ଗଛକୁ Ipomoea fistulosa ବୋଲି ଅନେକ ଜାଣନ୍ତି । କିନ୍ତୁ ଏହା ଯେ ନ ବଦଳିବ କିଏ କହିପାରିବ ?

୧୯୬୪ ମସିହାରେ ମୋର ଗବେଷଣା ନିବନ୍ଧ (Ph. D. thesis) ଲେଖା ହୋଇସାରିଛି । ସେହି ସମୟରେ ପରିଜାସାହେବଙ୍କୁ ଭାରତୀୟ ପ୍ରଶାସନିକ ସେବା I.A.S.)ମୌଖିକ ପରୀକ୍ଷା ପାଇଁ ୨/୩ ମାସ ବିଭିନ୍ନ ସ୍ଥାନକୁ ଯିବାକୁ ପଡ଼ିଲା । ମୁଁ ଯେତେବେଳେ ପାଣ୍ଡୁଲିପି (manuscript) ଧରି ତାଙ୍କୁ ଦେଖାକଲି ସେ ୨/୩ ମାସ ଅନୁପସ୍ଥିତ ରହିବେ ବୋଲି କହିଲେ ଓ ମୋତେ ଅପେକ୍ଷା କରିବାକୁ ନିର୍ଦ୍ଦେଶ ଦେଲେ । ମୁଁ ଠିକ୍ ଫେରିବା ସମୟରେ ସେ କହିଲେ, "ଯଦି ତମର କିଛି ଆପତ୍ତି ନ ଥିବ ମୁଁ ପାଣ୍ଡୁଲିପିକୁ ସାଙ୍ଗରେ ନେଇଯିବି" । ମୋର ଆପତ୍ତି ବା ଉଠିବ କ'ଣ ? ମୁଁ ଖୁସିରେ ପୂରା ଫାଇଲ୍‌ଟା ତାଙ୍କୁ ବଢ଼େଇଦେଲି । ସେ ତାକୁ ରଖିଲେ ଓ ଠିକ୍ ଅଢ଼େଇ ମାସରେ ତାକୁ ସଂଶୋଧନ କରି ଫେରାଇ ଦେଲେ । ସେଇ ସଂଶୋଧିତ ପାଣ୍ଡୁଲିପିଟି ଏ ପର୍ଯ୍ୟନ୍ତ ମୋ ପାଖରେ ଅଛି । ସେ ପାଣ୍ଡୁଲିପିକୁ ବ୍ୟୋମଜାନଘାଟିର(air port) ବିଶ୍ରାମାଗାରରେ ସଂଶୋଧନ କରୁଥିବା ମୋର କେତେଜଣ ବନ୍ଧୁ ଦେଖିଥିଲେ ।

୧୯୬୫ ମସିହା ଜୁଲାଇ ୧୧ ତାରିଖରେ ପିଏଚ୍.ଡି. ମୌଖିକ ପରୀକ୍ଷା ରେଭେନ୍ସା କଲେଜ ଉଦ୍ଭିଦ ବିଜ୍ଞାନ ବିଭାଗରେ ହେଲା । ପ୍ରଫେସର ରାମଦେବ ମିଶ୍ର (ବାରାଣସୀ) ଓ ଡକ୍ଟର ଚାଟାର୍ଜୀ (ଯୋଧପୁର) ଏ ଦୁହେଁ ପ୍ରଫେସର ପରିଜାଙ୍କ ସହ ମୌଖିକ ପରୀକ୍ଷା କଲେ । ତା'ର ଠିକ୍ ଦୁଇଦିନ ପରେ ମୋର ପିଏଚ୍. ଡି. ପରୀକ୍ଷା ଫଳ ପ୍ରକାଶିତ ହେଲା ।

ମୁଁ ପରିଜାସାହେବଙ୍କ ସଂସ୍ପର୍ଶରେ ଏହାପରେ ବହୁତ ଥର ଆସିଛି । ମୋତେ ଓ ମୋ ସ୍ତ୍ରୀଙ୍କୁ ସେ ଖୁବ୍ ଭଲ ପାଉଥିଲେ । ମୁଁ ଯେବେ ସ୍ତ୍ରୀଙ୍କୁ ନେଇ ତାଙ୍କ ଘରକୁ ଯାଏ, ସେ ପ୍ରଥମେ ସ୍ତ୍ରୀଙ୍କୁ ନେଇ ନିଜ ସ୍ତ୍ରୀ ପାଖରେ ବସାନ୍ତି ଓ ମୋତେ ତାଙ୍କର ପଢ଼ାରୁମ୍‌କୁ ନେଇଯାନ୍ତି । ସେ ଖୁବ୍ କମ୍ କହନ୍ତି ଓ ଭୀଷଣ କ୍ଷଣକୋପୀ । ଟିକିଏ ଭୁଲ୍ ଦେଖିଲେ ଖୁବ୍ ରାଗି ଯାଆନ୍ତି । କିନ୍ତୁ ସେହି ରାଗ କେବଳ ଦୁଇମିନିଟ୍ । ଆଉ ଗୋଟିଏ ମୁଖ୍ୟ ବିଷୟ ହେଉଛି, ସେ କେବେହେଲେ କାହା ବିଷୟରେ ତର୍ଜମା କରନ୍ତି ନାହିଁ ବା ନିଜର ମତାମତ ଦିଅନ୍ତି ନାହିଁ । ସେ ଚାହାନ୍ତି ଗୋଟିଏ କଥା – ତାହା ହେଉଛି 'କାର୍ଯ୍ୟ' । ଗବେଷଣା ବା ପାଠ୍ୟକ୍ରମ ବିଷୟରେ ଯେତେ ପ୍ରଶ୍ନ କଲେ ମଧ୍ୟ ସେ ଅବିଚଳିତ ମନରେ ଶୁଣନ୍ତି ଓ ସେଗୁଡ଼ିକର ଉତ୍ତର ଦେବାରେ କେବେହେଲେ ପଶ୍ଚାତ୍‌ପଦ ହୁଅନ୍ତି ନାହିଁ ।

ମୋର ମନେହୁଏ, ଯଦିଚ ପରିଜାସାହେବ ଇହଜଗତରେ ନାହାନ୍ତି, ତଥାପି ତାଙ୍କର ବହୁମୁଖୀ ପ୍ରତିଭା ଏବଂ ଉଦାର ବ୍ୟକ୍ତିତ୍ୱ ଚିରଦିନ ପାଇଁ ଅମଳିନ ରହିବ । ତାଙ୍କର ପ୍ରେରଣା ଜ୍ୟୋତି ବର୍ତ୍ତମାନ ଯୁବସମାଜକୁ ଶୁଦ୍ଧ ଜୀବନ ପଦ୍ଧତି, ସମୟାନୁବର୍ତ୍ତିତା, ଦେଶସେବା ମନୋବୃତ୍ତି ପାଇଁ ଅମ୍ଳାନ ଆଲୋକ ଯୋଗାଇବ । ଶେଷରେ ମୁଁ ଏହି ମହାମାନବଙ୍କର ପୁଣ୍ୟ ସ୍ମୃତି ଉଦ୍ଦେଶ୍ୟରେ ମୋର ଶ୍ରଦ୍ଧାପ୍ଳୁତ ବିନମ୍ର ପ୍ରଣାମ ଜଣାଉଛି ।

# ସାର୍ (ପରିଜାସାହେବ)ଙ୍କ ସାଙ୍ଗରେ ମୋର ସମ୍ପର୍କ

**ବାଞ୍ଛାନିଧି ହୋତା**

୧୯୩୦ ଜୁନ୍ ଶେଷ ସପ୍ତାହ । ପୁରୀ ଜିଲ୍ଲାସ୍କୁଲରୁ ପାସ୍ କରି ଆସିଲି କଟକ କଲେଜରେ ନାଁ ଲେଖାଇବାକୁ । ସେତେବେଳେ ଓଡ଼ିଶାରେ ଏକମାତ୍ର କଲେଜ ରେଭେନ୍ସା କଲେଜ, ମୁଁ ଆସି ପହଞ୍ଚିଲି ଦର୍ଶନଶାସ୍ତ୍ର ପ୍ରଫେସର ଶ୍ରୀଯୁକ୍ତ ରତ୍ନାକର ପତିଙ୍କର ବସାରେ, ସେଠି ମୁଁ ପହଞ୍ଚିବାର କାରଣ, ମୋର କକେଇ ପଣ୍ଡିତ କୃପାସିନ୍ଧୁ ହୋତା ତାଙ୍କୁ ମୋର କଲେଜ ପଢ଼ା କଥା କହି ଯାଇଥିଲେ । ସେ ସେତେବେଳକୁ ହଜାରୀବାଗ ଜେଲ୍‌ରେ ରାଜନୈତିକ ବନ୍ଦୀ । ଲବଣ ସତ୍ୟାଗ୍ରହ ଓ ବ୍ରିଟିଶ୍ ସରକାରଙ୍କର ବିରୋଧରେ ସଭାସମିତିରେ ବକ୍ତୃତା ଦେଇ ଦୁଇବର୍ଷ ଏଗାରମାସ ଜେଲ୍‌ଦଣ୍ଡ ଭୋଗୁଥିଲେ । ଅଧ୍ୟାପକ ପତି ମହାଶୟ ଆନନ୍ଦର ସହିତ ମୋତେ ତାଙ୍କ ବସାରେ ରହିବାକୁ କହିଲେ ଓ ଆଠଦିନ ଭିତରେ ସବୁ ସୁବିଧା କରାଯିବ ବୋଲି ଅଭୟ ଦେଲେ । ମୁଁ ତାଙ୍କ ଘରେ ପାଞ୍ଚ, ଛ'ଦିନ ରହିଛି, ଦିନେ ମତେ ସେ କହିଲେ "ମୁଁ ପରିଜାସାହେବଙ୍କ ସାଙ୍ଗରେ ତୁମ ବିଷୟରେ କଥାବାର୍ତ୍ତା କରିଛି । ତୁମେ କାଲି କଲେଜରେ ନାମ ଲେଖାଅ ଓ ତା' ପରଦିନ ପଶ୍ଚିମ ଛାତ୍ରାବାସକୁ ଯାଅ ସେଠି ତୁମର ସବୁ ବନ୍ଦୋବସ୍ତ ହେଇଯିବ ।" ପରିଜାସାହେବ ସେତେବେଳେ ଉଦ୍ଭିଦ ବିଜ୍ଞାନ ବିଭାଗର ପ୍ରଫେସର ଓ ପଶ୍ଚିମ ଛାତ୍ରାବାସର ୱାର୍ଡେନ୍ । ମୋର ସବୁ ବନ୍ଦୋବସ୍ତ ହୋଇଗଲା । ମୁଁ ହଷ୍ଟେଲରେ ରହିଲି ଓ କଲେଜ କ୍ଲାସ୍‌ରେ ଯୋଗ ଦେଲି । ପ୍ରାୟ ମାସକ ପରେ କଲେଜ ନୋଟିସ୍ ବୋର୍ଡ଼ରେ ମୋ ନାମରେ ଗୋଟିଏ ଚିଠି ଦେଖିଲି । ସେଥିରେ ଲେଖାଥିଲା ଯେ ହଜାରୀବାଗ ଜେଲ୍ ବିହାରରୁ ଏ ଚିଠିଟି ସେନ୍‌ସର୍ ହୋଇ ଆସିଛି । କକେଇ ଲେଖିଥିଲେ "ବାବୁ ତୁ ଏଥି ଭିତରେ କଲେଜରେ ଆସି ନାମ ଲେଖାଇଥିବୁ । ମୁଁ ଏଠାରେ ସବୁଠାରୁ ବେଶୀ ଖୁସିରେ ଅଛି । କାରଣ ମୋର ବିଶିଷ୍ଟ ବନ୍ଧୁମାନେ ଯଥା— ଶ୍ରୀ ରାଜେନ୍ଦ୍ର ପ୍ରସାଦ, ଆଚାର୍ଯ୍ୟ କୃପାଳିନୀ, ଶ୍ରୀ ରାଜକୃଷ୍ଣ ବୋଷ, ଶ୍ରୀ ଗୋପବନ୍ଧୁ ଚୌଧୁରୀ, ଶ୍ରୀ ନବକୃଷ୍ଣ ଚୌଧୁରୀ, ଆଚାର୍ଯ୍ୟ ହରିହର ଦାଶ ଇତ୍ୟାଦିଙ୍କୁ ଦୁଇବର୍ଷ ବା ଅଢ଼େଇବର୍ଷ ପୁରସ୍କାର ମିଳିଛି । ମତେ କିନ୍ତୁ ଦୁଇବର୍ଷ ଏଗାରମାସ ମିଳିଛି । କଟକ ନଈବାଲି ବକ୍ତୃତା ପାଇଁ ଦୁଇବର୍ଷ ପୁରୀରେ ପିକେଟିଂ ଓ ସଭା ପାଇଁ ଆଠମାସ ଓ ବାଲେଶ୍ୱରରେ ଲୁଣମରା ପାଇଁ ତିନିମାସ—ଗାଏ ମୋଟ ଦୁଇବର୍ଷ ଏଗାରମାସ ।" ମୁଁ ଏ ଚିଠିଟି ପରିଜାସାହେବଙ୍କୁ ଦେଖାଇଲି । ସେ ପଢ଼ିଲେ, କିନ୍ତୁ

କିଛି ମତେ କହିଲେ ନାହିଁ । ମୁଁ କିନ୍ତୁ ଲକ୍ଷ୍ୟ କଲି ଯେ, ମୋର ସୁବିଧା ଅସୁବିଧାରେ ଯେତେବେଳେ ମୁଁ ତାଙ୍କ ପାଖକୁ ଯାଏ ସେ ମତେ ସାହାଯ୍ୟ କରନ୍ତି ।

ମୁଁ ଉଦ୍ଭିଦ ବିଜ୍ଞାନ ନେଲି, ଖାସ୍ ତାଙ୍କ କ୍ଲାସ୍‌ରେ ପଢ଼ିବା ପାଇଁ, ତାଙ୍କ ଅଧ୍ୟାପନାର ଶୈଳୀ ଅତି ଚମତ୍କାର । କ୍ଲାସ୍‌କୁ ଠିକ୍ ସମୟରେ ଆସି ଅଧ୍ୟାପନା କରିବେ ଓ ଲେକ୍‌ଚର ଦେବେ । କ୍ଲାସ୍ ଛୁଟି ହେବାକୁ ଦଶମିନିଟ୍ ଥିବ ଲେକ୍‌ଚର ବନ୍ଦକରି ସେ ପଚାରିବେ କିଛି ପ୍ରଶ୍ନ ? ପ୍ରଶ୍ନ ଶୁଣି ତାର ସନ୍ତୋଷଜନକ ଉତ୍ତର ଦେଇ ଘଣ୍ଟା ବାଜିବା ମାତ୍ରକେ କ୍ଲାସ୍‌ରୁ ବାହାରି ଯିବେ । ପ୍ରାକ୍ଟିକାଲ କ୍ଲାସରେ ଅତି ସରଳ ଭାବରେ ସବୁ କାମ କରିବାରେ ସାହାଯ୍ୟ କରିବେ ।

ତାଙ୍କର ସମୟଜ୍ଞାନ ଖୁବ୍ ଥିଲା । ସକାଳ ଆଠଟା ତିରିଶରେ ହଷ୍ଟେଲ ଅଫିସ୍‌ରେ ଆସି ପହଞ୍ଚିବେ ଓ ପନ୍ଦର ମିନିଟ୍ ରହି ଉଦ୍ଭିଦ ବିଜ୍ଞାନ ଲାବୋରେଟୋରୀକୁ ଯିବେ । ସେଠାରୁ ଲଞ୍ଚ୍ ସମୟକୁ ଘରକୁ ଫେରିବେ ଓ ମଧ୍ୟାହ୍ନ ଭୋଜନ ପରେ ଯାହା କ୍ଲାସ ଥିବ ତାହା ନେବେ ।

ସେତେବେଳେ University Patnaରେ ଥାଏ । ସେ Senete, Syndicate, Board of studies ଇତ୍ୟାଦିର member ଥାଆନ୍ତି । ଅନ୍ୟାନ୍ୟ Universityକୁ ମଧ୍ୟ ସେ ବହୁବାର Examiner ବା adviser ହିସାବରେ ଯାଆନ୍ତି । କିନ୍ତୁ ତାଙ୍କ ଅନୁପସ୍ଥିତିରେ ତାଙ୍କ କ୍ଲାସ୍ ନେବା ବିଷୟରେ ପୂରା ବନ୍ଦୋବସ୍ତ କରିଯାଇଥାଆନ୍ତି । ସେତେବେଳକୁ B.Sc.ରେ Botany (Hons.) Class ଖୋଲିଥାଏ ଓ ପ୍ରାୟ ସବୁବେଳେ ବାହାର ଆଡୁ ଆସି ତାଙ୍କ ତତ୍ତ୍ୱାବଧାନରେ ଦୁଇଜଣ ବା ତିନିଜଣ research କରୁଥାଆନ୍ତି ।

ପରିଜାସାହେବଙ୍କର ଗୋଟିଏ ପାଠ ଖୁବ୍ ମନେଅଛି ।The ascent of sapକୁ ଏପରି ପ୍ରାଞ୍ଜଳ ଭାବରେ ବୁଝାଇଥିଲେ ଯେ ମୋର ବା'ଷଠି ବର୍ଷ ପରେ ମଧ୍ୟ ସେ କଥା ପୂରା ମନେ ଅଛି । ଆମର Text book Lawson & Sahani ଥିଲା । ସେଥିରେ ଗୋଟିଏ ଲେଖା ମୁଁ ତାଙ୍କୁ Classରେ ଦେଖାଇଲି । ସେ ଭିନ୍ନ ରକମ କହିଲାରୁ ମୁଁ ତାଙ୍କୁ ବହି ଦେଖାଇଲି । ସେ ମତେ କହିଲେ "ବାଞ୍ଛାନିଧି ! What is in print is not always correct." I.A. University ପରୀକ୍ଷାରେ Botany Practicalରେ Wheatର cross section କରି microscope underରେ mount କରି result ଲେଖିବାର ଥିଲା । ମୁଁ ନର୍ଭସ୍ ହେଇ ମୋ ଆଙ୍ଗୁଠି rajorରେ କାଟିଦେଲି ଓ ବହୁତ୍ ରକ୍ତ ବୋହିଲା । External Examiner Mr. Choudhury ମୋ ପାଖକୁ ଚାଲିଆସିଲେ । ପରିଜାସାହେବ କହିଲେ "Banchhanidhi will pass on compassionate ground."

ସାର୍‌ଙ୍କୁ ଥରେ ଆମେ tennis courtରେ ଏକ ରାତ୍ରିଭୋଜନ ପାଇଁ ଡାକିଥିଲୁ । ଜହ୍ନ ପଡ଼ିଥାଏ—ଆଲୁଅର ବନ୍ଦୋବସ୍ତ କରି ନ ଥିଲୁ । ସାର୍ ଠିକ୍ ଆଠଟାରେ ଆସିଥିଲେ । ପ୍ରଫେସର ନାରାୟଣ ମିଶ୍ର ସେଠାରେ ଥିଲେ । ଖାଇସାରି ସାର୍ ଦୁଇମିନିଟ୍ କହିଲେ– "I understand love 15, I understand love 30, But I could not understand love 40.

West hostelର anniversaryରେ outdoor, Indoor ଖେଳର competition ହୁଏ । ଡୁ-ଡୁ ଖେଳରେ 1st word ଓ 3rd wordର ଗୋଳମାଳ ହେଲା । ସାର୍‌ଙ୍କ ପର୍ଯ୍ୟନ୍ତ କଥା ଗଲା । ସେତେବେଳେ ମୋର 4th year. ସଂଧ୍ୟାବେଳେ ଦିନେ 4th yearର ପାଞ୍ଚ ସାତ ଜଣ boarder ତାଙ୍କୁ ଦେଖା କଲୁ ଓ ଡୁ-ଡୁ ଖେଳର ଗୋଳମାଳ ତୁଟାଇ ଦେବାକୁ କହିଲୁ । ସେ କହିଲେ"It's not my job." ମୁଁ promptly କହିଲି "ସାର୍ ଏଗୁଡ଼ା ତ ଆପଣଙ୍କର ଦେଖିବା କଥା । ସେ ସାଙ୍ଗେ ସାଙ୍ଗେ ଉତ୍ତର ଦେଲେ "Banchhanidhi ! you want to teach me my duty ?"ମୋ ଦେହରୁ ଝାଳ ବୋହିଗଲା, ମୁଁ କେଡ଼େ ଭୁଲ୍ କରିଛି ଭାବି ମୁହଁ ତଳକୁ ପୋତି ଦେଇଥାଏ । ସାର୍ ସେତେବେଳେ ଆଉଜଣେ boarder ଦୟାନିଧି ମିଶ୍ରଙ୍କୁ କହିଲେ, "ଦୟାନିଧି ତୁମେ ତ ଆରବର୍ଷକୁ hostelକୁ ଆସିବ । ଦୟାନିଧିବାବୁ ଉତ୍ତର ଦେବା ପୂର୍ବରୁ ମୁଁ କହିଲି ସେ hostelକୁ ପଢ଼ିବା ପାଇଁ ନ ଆସିଲେ ମଧ mess Secy. ହବାକୁ ଆସିବେ । ସାର୍ ହସିଦେଇ କହିଲେ,"Banchhanidhi is always humerous."

1933—December B.A. test result ବାହାରିଥାଏ, ମୁଁ ଓ ଆଉ ତିନିଜଣଙ୍କର result with held ହୋଇଥାଏ due to non payment of confectioners' dues. ସାର ଏକଥା ଶୁଣି result ବାହାରିବା ପରଦିନ ମତେ hostel officeକୁ ଡାକି ପଠାଇଲେ । ମୁଁ ଯେମିତି ଯାଇ ପହଞ୍ଚିଛି ମତେ ସାର୍ କହିଲେ "ବାଞ୍ଛାନିଧି ତମର test result କାହିଁକି with held ହେଲା ? ତମର କେତେ ଟଙ୍କା ବାକି ଅଛି ଓ କାହିଁକି ବାକି ଅଛି ?" ମୁଁ କହିଲି "ସାଙ୍ଗମାନଙ୍କ ସାଙ୍ଗେ ମିଶି ଜଳଖିଆ ଖାଇଦେଲି । ମୋ ଉପରେ ଚବିଶ୍ ଟଙ୍କା ବାକି ଅଛି ।" ସେ ପଚାରିଲେ "ତମ ପାଖେ କେତେ ଟଙ୍କା ଅଛି ?" ମୁଁ କହିଲି "ଛଅ ଟଙ୍କା ଅଛି ।" ସେ ସାଙ୍ଗେ ସାଙ୍ଗେ କହିଲେ, "ସାଧୁବାବୁ (ସାଧୁଚରଣ ପରିଜା ଆମ hostel clerk) ମୋ accountରୁ ଅଠର ଟଙ୍କା adjust କରି ଦେଇଦେବେ ଆଜି ଯେପରି ତା'ର ନାଁ ବାହାରିବ ।

ମୁଁ Patna ରେ M.A. ପଢ଼ିଲା ବେଳେ ସେ ମୋ କଥା history Prof. ɤ.J. Taraporewallaଙ୍କୁ ପଚାରି ବୁଝନ୍ତି ।

ଓଡ଼ିଶା ସରକାର ଗୋଟିଏ ନିଶାନିବାରଣ ତଦନ୍ତ କମିଟି ବସାଇଲା ବେଳେ ସାର୍ ସେଥିର chairman ଓ ମୁଁ secy. ଥିଲୁ । ଗୋଟିଏ ରାତିରେ ମୁଁ ଓ ସେ ଗୋପାଳପୁର ଡାକବଙ୍ଗଳାରେ ରହିଥିଲୁ– ଅନ୍ୟ memberମାନେ ଅନ୍ୟାନ୍ୟ ଜାଗାରେ ଥିଲେ । ଖାଇଲା ବେଳେ ମୁଁ କହିଲି "ସାର୍ ଆପଣ କହିଥିଲେ examples are better than precepts. କିନ୍ତୁ ମୋ ଘରେ ସେଇଟା fail ମାରିଗଲା । ମୁଁ ଓ ମୋର ସ୍ତ୍ରୀ ସକାଳ ଛଅଟା ବା ତା' ପୂର୍ବରୁ ଉଠୁ—କିନ୍ତୁ ଆମ ପିଲାମାନଙ୍କୁ ଡାକିଲେ ସୁଦ୍ଧା ଡେରି କରି ଉଠୁଛନ୍ତି । ସେ କହିଲେ "ବାଞ୍ଛାନିଧି ମୋ କଥା ଶୁଣିବ ? ମୁଁ ରାତିପିନ୍ଧାଖଣ୍ଡିକ ଗାଧୋଇଲା ବେଳେ ଧୋଇକରି ଶୁଖାଇ ଦିଏ । କିନ୍ତୁ ଆମ ଘରେ ଅନ୍ୟମାନେ bathroomରେ ଗାଧୋଇଲା ବେଳେ ଲୁଗା ପକେଇଦେଇ ଆସନ୍ତି ?" ମୁଁ କହିଲି "ତେବେ ସାର୍ ଅନୁତାପର କିଛି କାରଣ ନାହିଁ । ଆପଣଙ୍କ ପରି ଲୋକଙ୍କ ଘରେ ତ ଶୃଙ୍ଖଳା ରହିପାରୁନି ।" ସେ ହସି ଦେଇଥିଲେ ।

ପ୍ରତି ବର୍ଷ ଜୁନ୍ ୨ ତାରିଖ ଦିନ କଟକରେ ଅନୁଷ୍ଠିତ ହେଉଥିବା ସାର୍‌ଙ୍କ ଶ୍ରାଦ୍ଧସଭାକୁ ମୁଁ ନିୟମିତ ଯାଇ ନିଜର କର୍ତ୍ତବ୍ୟ ପାଳନ କରୁଛି ।

# ପ୍ରଶାସକ ଗୁରୁ

ବିକ୍ରମ ଦାସ

୧୯୪୭ ମସିହା । ମୁଁ ରେଭେନ୍ସା କଲେଜିଏଟ୍ ସ୍କୁଲର ୯ମ ଶ୍ରେଣୀର ଛାତ୍ର । ଡାକ୍ତରଙ୍କ ପରାମର୍ଶରେ ମୋର ଟନ୍‌ସିଲ୍ ଅପରେସନ୍ ପାଇଁ ମୁଁ କଟକ ବଡ଼ଡାକ୍ତରଖାନାର ସର୍ଜିକାଲ ୱାର୍ଡରେ ଥାଏ । ସେହି ୱାର୍ଡର ଦୁଆରମୁହଁ ପାଖ କଣରେ କନାବାଡ଼ ଘେରାହୋଇ ଜଣେ କିଏ ବଡ଼ ଲୋକ ଥାଆନ୍ତି । ତାଙ୍କ ଘେର ଭିତରକୁ ମୁଣ୍ଡ ନୁଆଁଇ ନମସ୍କାର କରି ମାନ୍ୟଗଣ୍ୟ ବ୍ୟକ୍ତିମାନେ ଜଣ ଜଣ ହୋଇ ପଶି ପୁଣି ବାହାରି ଯାଉଥାଆନ୍ତି ।

ମୁଁ ପଚାରିବାରେ ଶୁଣିଲି ସେଠାରେ ପରିଜାସାହେବ ରହିଛନ୍ତି । ସେ କାଳରେ ଇଂରେଜ ରାଜତ୍ୱରେ ସାହେବ ବା ଗୋରାମାନେ ମଧ କଟକରେ ଥାଆନ୍ତି । କିନ୍ତୁ ସେମାନଙ୍କ ସଂଖ୍ୟା ବହୁତ କମ୍ । ମୋର ପରିଜାସାହେବଙ୍କୁ ଦେଖିବାର କୌତୂହଳ ହେଲା । ପରିଜା ଟିକିଏ ଆରୋଗ୍ୟ ଲାଭ କଲାପରେ ବାରଣ୍ଡାକୁ ନିଆଯାଇ ଗୋଟିଏ ଆରାମ ଚଉକିରେ ବସାଗଲା । ମୁଁ ମୋ ଖଟିଆରୁ ଉଠିଯାଇ ସାହେବ ଦର୍ଶନ ପାଇଁ ବାରଣ୍ଡା କରରେ ଲୁଚିକରି ଠିଆହେଲି । ଗୋରା ଚମଡ଼ା ସାହେବଙ୍କ ସ୍ଥାନରେ ମୁଁ ଦେଖିଲି ଜଣେ ଡେଙ୍ଗାଳିଆ ସାଧାରଣ ଓଡ଼ିଆ ଲୋକ । ସେ ମଧ ତାଙ୍କ ନିକଟରେ ଠିଆହୋଇଥିବା ଜଣେ ଦୁଇଜଣଙ୍କ ସଙ୍ଗେ ଓଡ଼ିଆଭାଷାରେ କଥାବାର୍ତ୍ତା ହେଉଥିଲେ ।

ମୁଁ ମୋ ଖଟିଆକୁ ଫେରିଆସି ମୋ ଖଟିଆ ପାଖରେ ଅନ୍ୟ ଖଟିଆରେ ଥିବା ଜଣେ ଭଦ୍ରଲୋକଙ୍କୁ ପଚାରିଲି ‘‘ମହାଶୟ ! ସେ କ’ଣ ଖଟିଆରେ ଥିବା ଓଡ଼ିଆ ଭଦ୍ରଲୋକଙ୍କୁ ଲୋକେ କାହିଁକି ସାହେବ ବୋଲି କହୁଛନ୍ତି ?’’ ସେ ଭଦ୍ରଲୋକ କହିଲେ ସାହେବଙ୍କ ରୂପ ନ ଥିଲେ ମଧ ସବୁଗୁଣ ତାଙ୍କଠାରେ ଅଛି । ସେ ବିଲାତରୁ ଉଚ୍ଚ ଉପାଧି ଧରି ରେଭେନ୍ସା କଲେଜରେ ସାହେବଙ୍କ ଚଉକିରେ ବସିଛନ୍ତି ।

ତାଙ୍କ ବିଷୟରେ ଅଧିକ ଜାଣିବାକୁ ମୁଁ ଆଗ୍ରହ ପ୍ରକାଶ କରିବାରୁ ସେ କହିଲେ, ‘‘ସେହି ପ୍ରାଣକୃଷ୍ଣ ପରିଜା ଜଣେ ଅତି ଗରିବ ଘରର ପିଲାଥିଲେ । ପାଠ ପଢ଼ିବା ପାଇଁ ତାଙ୍କର ଅତ୍ୟନ୍ତ ଆଗ୍ରହ ଥିଲା । ବତିଖୁଣ୍ଟ ଆଲୁଅ ତଳେ ବସି ସେ ତାଙ୍କ ପଢ଼ାବହି ସବୁ ପଢୁଥିଲେ । ନିଜ ମେଧା ବଳରେ ବୃତ୍ତି ପାଇ ପଢ଼ି ପଢ଼ି ଶେଷରେ ବିଲାତ ଯାଇ ପାଠରେ ଉଚ୍ଚ ଉପାଧି ଧରି ଦେଶକୁ ଫେରି, ଓଡ଼ିଶାର ଏକମାତ୍ର କଲେଜ – ରେଭେନ୍ସା କଲେଜର ପ୍ରାଧାପକ ହେଲେ ।’’

ମୁଁ ପଚାରିଲି ତାଙ୍କ ନିକଟକୁ କାହିଁକି ଏତେ ଲୋକ ଆସୁଛନ୍ତି ? ସେ ଭଦ୍ରଲୋକ କହିଲେ, ''ପରିଜାସାହେବ ନିଜ ପାଠପଢ଼ା କଷ୍ଟ କଥା ଭୁଲି ନାହାନ୍ତି । ସେ ଗରିବ ଛାତ୍ରମାନଙ୍କୁ ବରାବର ଅର୍ଥ ସାହାଯ୍ୟ କରନ୍ତି । ତାଙ୍କଠାରୁ ସାହାଯ୍ୟ ପାଇଥିବା ବହୁଛାତ୍ର ପାଠପଢ଼ି ସମାଜରେ ଉଚ୍ଚ ସ୍ଥାନ ଅଧିକାର କରିଛନ୍ତି । ସେମାନେ ପରିଜାଙ୍କ ଅପରେସନ କଥା ଶୁଣି ତାଙ୍କୁ ସାକ୍ଷାତ କରିବାକୁ ଆସି ଶୁଭେଚ୍ଛା ଜଣାଇ ଚାଲିଯାଉଛନ୍ତି ।''

ଗୋଟିଏ ଜଣାଶୁଣା ସଂଗ୍ରାମୀ ପରିବାରରେ ମୋର ଜନ୍ମ । ମୁଁ ଜଣେ ଜାତୀୟବାଦୀ ଛାତ୍ର ଥିଲି । ମୁଁ କଲେଜିଏଟ ସ୍କୁଲରେ ଏକାଦଶ ଶ୍ରେଣୀରେ ପଢ଼ିଲାବେଳେ ଏକ ବିରାଟ ଛାତ୍ର ସତ୍ୟାଗ୍ରହରେ ଯୋଗଦେଇ କାରାବରଣ କଲି । ମୋର କଟକ ଜେଲ ଭିତରେ ବିଚାର ହୋଇ ଅନୁଗୁଳ ଜେଲକୁ ବଦଳି ହେଲା । ଖରାଦିନ, ଅନୁଗୁଳର ଗରମ ସହ୍ୟ ନ କରି ପାରି ମୋ ସ୍ୱାସ୍ଥ୍ୟ ଭାଙ୍ଗିପଡ଼ିଲା । କାରାମୁକ୍ତ ହୋଇ ମୁଁ ସିଧା ଗ୍ରାମକୁ ଗଲି । ସେହି ସମୟରେ କଂଗ୍ରେସ ସଭାପତି ପଦରୁ ଇସ୍ତଫା ଦେଇ ନେତାଜୀ ସୁଭାଷ ଓଡ଼ିଶା ଆସି 'ସଂଗ୍ରାମ' ପ୍ରଚାର ଚଳାଇଲେ । ମୁଁ ସେଥିରେ ଏତେ ଉଦ୍‌ବୁଦ୍ଧ ହୋଇଗଲି ଯେ ସେ ବର୍ଷ ଆଉ ପାଠପଢ଼ା ପାଇଁ ସ୍କୁଲକୁ ନ ଫେରି ଜନତାଙ୍କ ଭିତରେ ପ୍ରଚାର ଚଳାଇବା ପାଇଁ ମଫସଲରେ ଗାଁ ଗାଁ ବୁଲିଲି । ପରବର୍ଷ ଆଉ କଟକ ନ ଫେରି ଗ୍ରାମ ନିକଟ ସତ୍ୟବାଦୀ ହାଇସ୍କୁଲରେ ନାମ ଲେଖାଇ ପରୀକ୍ଷା ଦେଇ ମାଟ୍ରିକ୍ ପାସ୍ କଲି । ସେତେବେଳକୁ କଟକରେ ସଂଗ୍ରାମୀ ଛାତ୍ରଙ୍କ ଭିତରେ ଶୃଙ୍ଖଳାପ୍ରିୟ ଅଧକ୍ଷ ପରିଜାସାହେବଙ୍କ ଛାତ୍ର ଆନ୍ଦୋଳନ ଦମନ ନୀତିର ପ୍ରତିବାଦ ଚାଲିଥାଏ । ଆଇନ କ୍ଲାସ ରେଭେନ୍ସା କଲେଜ ଅଧୀନରେ ଚାଲିଥାଏ, ମୋର ଜ୍ୟେଷ୍ଠଭ୍ରାତା ଆଇନ ଛାତ୍ର ଅଶୋକ ଦାସ ଓ ତାଙ୍କ ସଙ୍ଗୀମାନେ ଛାତ୍ରନେତା ପାଇଁ ପରିଜାଙ୍କ କାର୍ଯ୍ୟର ଘୋର ବିରୋଧ କରୁଥାଆନ୍ତି । ସେତେବେଳର କଲେଜ ଛାତ୍ରଙ୍କର ''ପରିଜା – ମରିଜା'' ସ୍ଲୋଗାନ ବି ମୋ କାନରେ ବାଜିଥାଏ । ଇଂରେଜ ସରକାର ପରିଜାଙ୍କ କୃତିତ୍ୱ ପାଇଁ ତାଙ୍କୁ ଓ. ବି. ଇ. (ଅର୍ଡର ଅଫ୍ ଦି ବ୍ରିଟିଶ ଇମ୍ପାୟାର) ଉପାଧି ପ୍ରଦାନ କରିଥିବାରୁ, ତାଙ୍କୁ ଅତ୍ୟାଚାରୀ ବିଦେଶୀ ଇଂରେଜ ସରକାରଙ୍କ ବୁଢ଼ୁଚାବୁହା ବୋଲି ପ୍ରଚାର କରାଯାଇ, ତାଙ୍କ ପଛରେ ତାଙ୍କୁ ସେପରି ଗାଳିଗୁଲଜ କରାଯାଉଥିଲା ।

ରେଭେନ୍ସା କଲେଜ ଓଡ଼ିଶାର ଏକମାତ୍ର ଡିଗ୍ରୀ କଲେଜ ଥିବାରୁ ମୁଁ ମାଟ୍ରିକ୍ ପରେ କଟକ ଆସି କଳା ବିଭାଗରେ ଆଇ. ଏ. ରେ ନାମ ଲେଖାଇଲି । ''ମୋର ପିତା ପଣ୍ଡିତ ନୀଳକଣ୍ଠ ଦିଲ୍ଲୀ ଲାଟ୍‌ସଭାର ସଦସ୍ୟ ଓ ବହୁ ଅନୁଷ୍ଠାନର କାର୍ଯ୍ୟରତ ଥାଇ, ଭାରତ ଓ ଓଡ଼ିଶା ରାଜନୀତିରେ ଏତେ କାର୍ଯ୍ୟବ୍ୟସ୍ତ ଥାଆନ୍ତି ଯେ ମୋ କଥା କି ଘର

କଥା ବୁଝିବାକୁ ତାଙ୍କୁ ବେଳ ନ ଥାଏ । ଆମ ନିଜର ଭାର ସେ ଆମ ଉପରେ ଛାଡ଼ି ଦେଇଥାଆନ୍ତି । ମୋର ବଡ଼ଭାଇ ଅଶୋକ ଦାସ ମଧ୍ୟ ଛାତ୍ର ରାଜନୀତି ଓ ସୁଭାଷଙ୍କ ଦଳର ଉଗ୍ରପନ୍ଥୀ ରାଜନୀତିରେ ଓତପ୍ରୋତ ଭାବରେ ଜଡ଼ିତ ଥାଆନ୍ତି ।

ମୋ କଲେଜ ନାମଲେଖା କଥାରେ ସେମାନେ ମୁଣ୍ଡ ପୂରାଇ ନ ଥିଲେ । ମୁଁ ନାମ ଲେଖାଇବାର କିଛିକାଳ ପରେ କଟକ ନବଭାରତ ପ୍ରେସ୍‌ରେ ସେ ଦୁଇଜଣଙ୍କ ସଙ୍ଗେ ମୋର ଦେଖା ହୋଇଗଲା । ମୁଁ ମୋ ପାଠ୍ୟଭାବରେ କେଉଁ ୪ର୍ଥ ବିଷୟ ନେଇଛି ବୋଲି ଭାଇନା ମୋତେ ପ୍ରଶ୍ନ କଲେ । ମୁଁ କହିଲି, 'କଳା'ରେ କ'ଣ ୪ର୍ଥ ବିଷୟ ଅଛି ? ମୁଁ ଆଇ. ଏ.ରେ ନାମ ଲେଖାଇ ସଂସ୍କୃତ, ଏକୋନମିକ୍ସ, ଲଜିକ୍ ଏହି ୩ଟି ବିଷୟ ନେଇଛି ।''

ସେ ମୋତେ କହିଲେ ଆଜିକାଲି ଯୁଗରେ ବିଜ୍ଞାନରେ ଅର୍ଥ ଉପାର୍ଜନ ଓ ଜ୍ଞାନ ଆହରଣ ବହୁ ପନ୍ଥା ରହିଛି । କଳା ନେଇ କଅଣ ଲାଭ ? ମୁଁ କହିଲି ରେଭେନ୍ସା କଲେଜରେ ବିଜ୍ଞାନ ମିଳିବା କଅଣ ଏତେ ସହଜ ?

ମୋ କଥା ଶୁଣି ଭାଇନା ତାଚ୍ଛଲ୍ୟ କରି କହିଲେ, ''ଯଦି ସଂସ୍କୃତ ପଢ଼ିବା କଥା ତେବେ ଅର୍ଥ ଶ୍ରାଦ୍ଧ କରି ରେଭେନ୍ସା କଲେଜରେ ପଢ଼ିବା କଅଣ ଦରକାର ? ତୁ ପୁରୀ ଯାଇ ଏମାର ମଠରେ ରହି ସଂସ୍କୃତ ଟୋଲରେ ନାମ ଲେଖା । ଚିତା ଚଇତନ କରି ସେଠାରେ ରହିଲେ ଖାଇବା ଖର୍ଚ୍ଚ ମଧ୍ୟ ପଡ଼ିବ ନାହିଁ । ମଠ ବାଡ଼ିରୁ ମାଗଣା ଅଭଡ଼ା ଗଣ୍ଡିଏ ଗଣ୍ଡିଏ ମଧ୍ୟ ସବୁଦିନ ମିଳିଯିବ । ଶସ୍ତା ସୁବିଧାରେ ତୋ 'କଳା'ର ସଂସ୍କୃତ ହାସଲ କରିହେବ ।

ତାଙ୍କ କଥା ଶୁଣି ମୋତେ ବଡ଼ ଅପମାନ ଲାଗିଲା । ମୁଁ କହିଲି, ''ହେ ପରାମର୍ଶଦାତା, ଆପଣ ଆଜିଯାଏ କେଉଁଠି ଥିଲେ ? ମୋ ପାଠର କି ତତ୍ତ୍ୱ ନେଇ, କି ସାହାଯ୍ୟ କରୁଥିଲେ ? ଏବେ ଆସି ମାମଲତକାରୀ କରି ମୋତେ ଥଟ୍ଟା କଲେ ମୁଁ କଅଣ କରିପାରିବି ? ମୋର କଅଣ ବିଜ୍ଞାନ ପଢ଼ିବାକୁ ମନ ନ ଥିଲା ?

ମୋ କଥାରେ ଭାଇନା ନରମ ହୋଇଯାଇ ନୀରବରେ ବସିଥିବା ଆମ ପିତା ନୀଳକଣ୍ଠଙ୍କୁ କହିଲେ ''ଆପଣ ଖଣ୍ଡିଏ ଚିଠି ଲେଖି ଏହା ହାତରେ ପରିଜାସାହେବଙ୍କ ପାଖକୁ ପଠାନ୍ତୁ । ପରିଜାସାହେବ ଇଚ୍ଛା କଲେ ତାକୁ କଳାରୁ ବିଜ୍ଞାନ ବିଭାଗକୁ ବଦଳାଇ ଆଣିପାରିବେ । ଭାଇନାଙ୍କ ଅନୁରୋଧରେ ପିତା ସଙ୍ଗେ ସଙ୍ଗେ ଚିଠିଟିଏ ଲେଖି ମୋ ହାତକୁ ବଢ଼ାଇଦେଇ ନିର୍ଲିପ୍ତ ଭାବରେ ତାଙ୍କ ପଢ଼ାପଢ଼ିରେ ଲାଗିଗଲେ ।

ମୁଁ ସେ ଚିଠିଟି ଧରି ଯିବା ବେଳେ ମୋ ମନ ଭାରାକ୍ରାନ୍ତ ହୋଇ ଉଠିଲା । ଏବର ରେଭେନ୍ସା କଲେଜ ସ୍ୱୟଂଚାଳିତ ହେବାର ଆବହାୱାରେ ଦୁର୍ଦ୍ଦଶାର ସମ୍ମୁଖୀନ ହୋଇ ନଗ୍ନ ଉଦ୍ୟାନ ଓ ଭଗ୍ନ ପରିବେଶକୁ ଧରି ଯେପରି ନୀରବରେ ଅଶ୍ରୁପାତ କରୁଛି, ମୋ

ଭଳି ଏକ ସ୍ୱୟଂଚାଳିତ ଛାତ୍ର ସେତେବେଳେ ଅଭିଭାବକଙ୍କ ତତ୍ତ୍ୱର ଅଭାବରୁ ଭବିଷ୍ୟତ ଭାବନା ଶୂନ୍ୟ ହୋଇ ସେପରି କାର୍ଯ୍ୟ କରିଥିବା ବିଚାର ମୋତେ ମଧ୍ୟ କାନ୍ଦ କାନ୍ଦ ଲାଗୁଥିଲା । ଆଗକୁ ଠେଲି ହେଲାଭଳି ପାଦ ଚଳାଇ ମୁଁ ରେଭେନ୍ସା କଲେଜ ଦିଗରେ ଚାଲିଥିଲି ।

ସେତେବେଳେ ଭାଇନାଙ୍କ ପାଠପଢ଼ା ବେଳ କଥା ମଧ୍ୟ ମୋର ମନେପଡ଼ିଲା । ସେ ଓକିଲାତି ପଢ଼ିଲା ବେଳେ ସାଥୀମାନଙ୍କୁ ଧରି ଛାତ୍ର ସଂଗଠନ କାର୍ଯ୍ୟରେ ଖୋର୍ଦ୍ଧା ଯାଇଥିଲେ । ପ୍ରିନ୍ସିପାଲ ପରିଜା ଦରମା ଦେବାପାଇଁ ନୋଟିସ୍ ଜାରି କରିଥିଲେ । ସେହି ନିର୍ଦ୍ଦିଷ୍ଟ ତାରିଖ ସୁଦ୍ଧା ଦରମା ନ ଦେଲେ ନାମ କଟିଯିବା ନିଶ୍ଚିତ ବୋଲି ଘୋଷଣା କରିଥିଲେ । ଭାଇନା ପ୍ରଭୃତି ସେ କଥା ଜାଣିଥିଲେ ମଧ୍ୟ ଦରମା ଦାଖଲ ନ କରି ଖୋର୍ଦ୍ଧା ଚାଲିଯାଇଥିଲେ । ଭାଇନା ଓ ତାଙ୍କ ସାଥୀମାନେ ଖୋର୍ଦ୍ଧାରୁ ପରିଜାସାହେବଙ୍କ ନିକଟକୁ ଚିଠିଟିଏ ଲେଖିଜଣାଇଲେ – 'ଆମେ ଛାତ୍ର ସଂଗଠନ କାର୍ଯ୍ୟରେ ଏବେ କଟକ ବାହାରେ ଅଛୁ । ଦରମା ଗ୍ରହଣ ଶେଷ ତାରିଖ ସୁଦ୍ଧା ଆମେ ଯାଇ କଟକରେ ପହଞ୍ଚିବା ସମ୍ଭବ ନୁହେଁ । ତେଣୁ ଆପଣ ଦରମା ଗ୍ରହଣ ତାରିଖକୁ ଆଉ ପନ୍ଦର ଦିନ ଆଗକୁ ଘୁଞ୍ଚାଇ ଦିଅନ୍ତୁ । ଦରମା ନ ଦେବା ଅଭିଯୋଗରେ ଆମ ନାମ କାଟିଦେଲେ ଆମ ଉପରେ ପ୍ରତିଶୋଧ ନେଇ ଆମ କାର୍ଯ୍ୟରେ ବାଧା ଦେବା ପାଇଁ ଆପଣ ସେପରି କରିଛନ୍ତି ବୋଲି ଛାତ୍ରମାନେ ଆପଣଙ୍କୁ ଦୋଷ ଦେବେ ।''

ସେ ଚିଠି ପାଇ ମଧ୍ୟ ଶୃଙ୍ଖଳାପ୍ରିୟ ପରିଜା ଦରମା ଗ୍ରହଣ ତାରିଖ ଘୁଞ୍ଚାଇ ନ ଥିଲେ । କିନ୍ତୁ ଭାଇନା ପ୍ରଭୃତିଙ୍କ ନାମ ମଧ୍ୟ କଟି ନ ଥିଲା । ସେ ସଂପୃକ୍ତ କିରାଣିକୁ ଡାକି ସେମାନଙ୍କ ଦରମା ହିସାବ କରାଇ ନିଜ ମନିବ୍ୟାଗରୁ କାଢ଼ି ସେମାନଙ୍କ ଦରମା ଦାଖଲ କରିଦେଇଥିଲେ । ପରିଜାଙ୍କ ବିରୋଧରେ ସମସ୍ତ ପ୍ରଚାର ଶୁଣିବା ସତ୍ତ୍ୱେ ମୁଁ ସେ ଘଟଣା ମନେପକାଇ, ପରିଜାଙ୍କ ଉପରକୁ ଯେତେ ରୁକ୍ଷ ହେଲେ ମଧ୍ୟ ସେ ଜଣେ ଛାତ୍ରବତ୍ସଳ ଓ ବିଚାରବନ୍ତ ଲୋକ ବୋଲି ମୋର ଧାରଣା ହୋଇଥିଲା । ତେଣୁ ବାଟରେ ଗଲାବେଳେ ସେ ମୋତେ ସାହାଯ୍ୟ କରିପାରନ୍ତି ବୋଲି ମୋ ମନରେ କିଞ୍ଚିତ୍ ଆଶାର ସଞ୍ଚାର ହୋଇଥିଲା ।

ମୁଁ ଅତି ସନ୍ତର୍ପଣରେ ପ୍ରିନ୍ସିପାଲଙ୍କ ଅଫିସ୍‌କୁ ଯାଇ ଠିଆହେଲି । ସେ ମୋ ଖଦଡ଼ ପୋଷାକକୁ ଏମୁଣ୍ଡରୁ ସେମୁଣ୍ଡ ନିରୀକ୍ଷଣ କଲାବେଳେ ମୁଁ ଚିଠିଖଣ୍ଡି ତାଙ୍କ ହାତକୁ ବଢ଼ାଇଦେଲି ।

ସେ ଚିଠିଟି ପଢ଼ିସାରି ମୋ ଆଡ଼େ ଚାହିଁ କହିଲେ, ''ନାମଲେଖାବେଳେ ବିଜ୍ଞାନରେ ନାମ ନ ଲେଖାଇ ଏତେ ଦିନ କାହିଁକି ଶୋଇପଡ଼ିଥିଲ ? ଏବେ ବିଜ୍ଞାନ ଶ୍ରେଣୀରେ ପାଠ ପଢ଼ାପଢ଼ି ବହୁତ ଆଗେଇଯିବଣି, ତେଣୁ ବିଜ୍ଞାନ ନେଲେ ବି ତୁମେ

କ'ଣ ସେଥିରେ ଉଠିପାରିବ ? ତା ଛଡ଼ା ବିଜ୍ଞାନରେ ମୋଟେ ୧୪୦ଟି ସିଟ୍ । ସେଥିରେ ଭାରି ଭିଡ଼, ଗୋଟିଏ ହେଲେ ସ୍ଥାନ ଖାଲି ନାହିଁ । ଏ ସମୟରେ ତୁମକୁ କଳାରୁ ବିଜ୍ଞାନକୁ ସ୍ଥାନାନ୍ତରିତ କରିବା ଏକାବେଳକେ ଅସମ୍ଭବ । ତୁମେ ଯାଅ ଏକଥା ନୀଳକଣ୍ଠବାବୁଙ୍କୁ ବୁଝାଇ କରି କହିବ ସେ ଯେପରି ମୋତେ ଭୁଲ୍ ନ ବୁଝନ୍ତି ।

ମୁଁ ତାଙ୍କ କଥା ଶୁଣି କହିଲି, ଆପଣ ତାହେଲେ କ'ଣ ମୋ ଭାଇନା ଅଶୋକବାବୁଙ୍କ କଥାକୁ ସମର୍ଥନ କରୁଛନ୍ତି । ତାଙ୍କ କଥା ଅନୁସାରେ ମୁଁ ପୁରୀଯାଇ ଚୁଟିଚୈତନ ଓ ଚିତାକାଟି ସଂସ୍କୃତ ଟୋଲ୍‌ରେ ପଢ଼ିବି ନ ହେଲେ ପାଠ ଛାଡ଼ି ମୂର୍ଖ ହୋଇ ବୁଲିବି । ମୋ କଥା ଶୁଣି ପରିଚ୍ଛା ପୁଣି ମୋ ଉପରେ ଦୃଷ୍ଟି ପକାଇ କହିଲେ, କଅଣ, କଅଣ ? ଭଲକରି କହ ? ମୁଁ ଘଟଣାଟି ପୂରା ବର୍ଣ୍ଣନା କଲାପରେ ସେ ତାଙ୍କ ଠାଣିରେ ହସିପକାଇ କହିଲେ, ''ତା ହେଲେ ତ ବଡ଼ ଅସୁବିଧା କଥା । ଅଶୋକ ବିଜ୍ଞାନର ଛାତ୍ର, ତେଣୁ ସେ ତୁମ ଉପରେ ବି ବିଜ୍ଞାନକୁ ଲଦି ଦେବାକୁ ଚେଷ୍ଟା କରୁଛି । ସେ ବଡ଼ ଜିଦ୍‌ଖୋର ପିଲା । ହଉ ତୁମେ ଯେତେବେଳେ ତା ଯୋଗେ ଏଡ଼େବଡ଼ ବିପଦରେ ପଡ଼ିଯାଇଛ ତୁମକୁ ସାହାଯ୍ୟ କରିବା ଆମର କର୍ତ୍ତବ୍ୟ ।

ସେ ଟିକିଏ ଭାବିସାରି କହିଲେ, ''ତୁମେ ଛାତ୍ରାବାସକୁ ଯାଇ ପଚାରିଦେଖ, ଯଦି ତମ ଶ୍ରେଣୀର କୌଣସି ବିଜ୍ଞାନ ଛାତ୍ର ବିଜ୍ଞାନରେ ନ ପାରି କଳା ନେବାକୁ ଚାହୁଁଥିବ ତେବେ ତାକୁ ନେଇ ମୋ ପାଖକୁ ଆସ, ମୁଁ ବିଚାର କରିବି ।

ମୁଁ ଛାତ୍ରାବାସକୁ ଯାଇ ଶୁଣିଲି ମୋର ସାଥୀ (ଗୋରାଜାନକୀ) ଜାନକୀବଲ୍ଲଭ ମହାନ୍ତିର ବିଜ୍ଞାନରେ ମନ ଲାଗୁ ନାହିଁ । ସେ କଳାକୁ ବଦଳାଇବାକୁ ଚାହୁଁଛି । ଓଡ଼ିଆ ପଢ଼ି ଓଡ଼ିଆ ସାହିତ୍ୟଚର୍ଚ୍ଚା କରିବା ତାର ଇଚ୍ଛା । ତା କଥା ଶୁଣି ଅନ୍ଧକୁ ଲଉଡ଼ି ମିଳିଲା ପରି ମୋତେ ଲାଗିଲା, ଭାଇନାଙ୍କ ଠାରୁ ପାଇଥିବା ଅପମାନରୁ ଉଦ୍ଧାର ପାଇବା ପାଇଁ ମୁଁ ଜାନକୀକୁ ସଙ୍ଗରେ ଧରି ପରିଚ୍ଛାସାହେବଙ୍କ ନିକଟକୁ ଗଲି । ସେ ସଙ୍ଗେ ସଙ୍ଗେ ଆମର ବିଷୟ ବଦଳିବା ପାଇଁ ଆଦେଶ ଦେଲେ । ମୁଁ ବିଜ୍ଞାନ ଛାତ୍ର ହୋଇଗଲି । ତା ନ ହୋଇଥିଲେ ପରେ ମୁଁ ଡାକ୍ତର ହୋଇପାରି ନ ଥାନ୍ତି ।

ପରିଚ୍ଛାସାହେବଙ୍କ ପ୍ରଶାସନର ସେହି ଛାତ୍ରବତ୍ସଳତା ଓ ଉଦାରତା ବିଷୟ ମନେପଡ଼ିଲେ ଏବେବି କୃତଜ୍ଞତାରେ ମୋର ମୁଣ୍ଡ ନଇଁଯାଏ ।

# ଡକ୍ଟର ପ୍ରାଣକୃଷ୍ଣ ପରିଜା–ଏକ ସ୍ମୃତିଚାରଣ

**ବିଦ୍ୟାଧର ମିଶ୍ର**

ବିଲାତରେ ସାତବର୍ଷ ରହିଲାପରେ ପ୍ରାଣକୃଷ୍ଣ ପରିଜା ୧୯୨୧ ମସିହାରେ ଭାରତୀୟ ଶିକ୍ଷା ସର୍ଭିସ୍‌ରେ ଚାକିରି ପାଇ ଓଡ଼ିଶାକୁ ଫେରିଆସିଲେ ଓ ରେଭେନ୍ସା କଲେଜରେ ଉଦ୍ଭିଦ ବିଜ୍ଞାନ ପ୍ରଫେସର ରୂପେ ଯୋଗଦେଲେ । ମୋର ବଡ଼ଭାଇ ୧୯୨୪-୨୫ ମସିହାରେ ରେଭେନ୍ସା କଲେଜରେ ଆଇ.ଏସ୍‌ସି. ପଢୁଥିଲେ । ସେ ପରିଜାଙ୍କ ସଙ୍ଗରେ ପରିଚିତ ହୋଇ ତାଙ୍କର ସ୍ନେହ ଓ ଶ୍ରଦ୍ଧା ଲାଭ କରିଥିଲେ । ସେ ପରିଜାଙ୍କର ମହତ୍ ଗୁଣ ଆମ ପରିବାରରେ ଏବଂ ଆମ ଗାଁରେ ବହୁବାର ଗପ କରୁଥିଲେ । ଗାଁର ଅନ୍ୟ ବହୁଲୋକ ମଧ୍ୟ ଅନେକ ସମୟରେ ପରିଜାଙ୍କର ଗୁଣଗାନ କରୁଥିଲେ । ସେମାନେ କହୁଥିଲେ, ପରିଜା କେଡ଼େ ବିଦ୍ୱାନ୍ ଏବଂ ବଡ଼ଲୋକ । ସେଥି ସଙ୍ଗେ ସଙ୍ଗେ ସେ କିପରି ଚରିତ୍ରବାନ୍ ଓ ବିନୟୀ ଏବଂ କିପରି ସରଳ ଜୀବନ ଯାପନ କରୁଥିଲେ । ଗାଁଲୋକମାନେ ତାଙ୍କୁ ଅବାଧରେ ଭେଟି ପାରୁଥିଲେ ଏବଂ ସେ ତାଙ୍କର ସୁଖ ଦୁଃଖ ବୁଝୁଥିଲେ । ଗରିବ ପିଲାମାନଙ୍କୁ ପାଠ ପଢ଼ିବାପାଇଁ ସାହାଯ୍ୟ କରୁଥିଲେ । ଆମ ପିଲା ସମୟରେ ପରିଜା ଆମ ଅଞ୍ଚଳର ଲୋକମାନଙ୍କ ପାଇଁ ସବୁ ବିଷୟରେ ଜଣେ ଆଦର୍ଶ ବ୍ୟକ୍ତି ଥିଲେ । ପୃଥିବୀର ଲୋକମାନେ ଧ୍ରୁବତାରା ଆଡ଼କୁ ଚାହିଁଲାପରି ଆମ ଅଞ୍ଚଳର ଉଭୟ ଶିକ୍ଷିତ ଏବଂ ଅଶିକ୍ଷିତ ଲୋକମାନେ ଆଦର୍ଶର ଧ୍ରୁବତାରା ରୂପେ ପରିଜାଙ୍କ ଆଡ଼କୁ ଚାହିଁଥିଲେ ।

୧୯୩୬ ମସିହାରେ ମୁଁ ରେଭେନ୍ସା କଲେଜର ପ୍ରଥମ ବାର୍ଷିକ ଶ୍ରେଣୀରେ ନାମ ଲେଖାଇଲାବେଳେ ଶ୍ୟାମଚନ୍ଦ୍ର ତ୍ରିପାଠୀ କଲେଜର ଅଧ୍ୟକ୍ଷଥିଲେ ଏବଂ ପରିଜା ପଶ୍ଚିମ-ଛାତ୍ରାବାସର ୱାର୍ଡେନ୍ ଥିଲେ । ସେହିବର୍ଷ ଇଂଲଣ୍ଡର ରାଜା ଅଷ୍ଟମ ଏଡ଼ୱାର୍ଡଙ୍କ ଅଭିଷେକ ଉତ୍ସବରେ ଯୋଗ ଦେବାପାଇଁ ତ୍ରିପାଠୀ ଛ'ମାସ ମୟୂରଭଞ୍ଜ ରାଜାଙ୍କ ସହ ବିଲାତ ଗଲେ । ସେ ଛ'ମାସ ପରିଜା ପ୍ରିନ୍ସପାଲ ହୋଇଥିଲେ । ପରିଜା ସେତେବେଳେ ଆଇ.ଇ.ଏସ୍. ଅଫିସର, ଛାତ୍ରାବାସର ୱାର୍ଡେନ ବା କଲେଜର ପ୍ରିନ୍ସପାଲ୍ । ତାଙ୍କର ଉଚ୍ଚପଦବୀ ଏବଂ ଗାମ୍ଭୀର୍ଯ୍ୟପୂର୍ଣ୍ଣ ବ୍ୟବହାର ହେତୁ ଆମେ କଲେଜର ଆଇ.ଏ. ଶ୍ରେଣୀର ପିଲା ଭୟରେ ତାଙ୍କ ପାଖରେ ପଶି ପାରୁ ନ ଥିଲୁ । କିନ୍ତୁ ଏହି ଗାମ୍ଭୀର୍ଯ୍ୟ ମଧ୍ୟରେ ସେ ଅତି ସ୍ନେହୀ ଓ ସରଳ ଲୋକ ଥିଲେ । ଧୋତି ପଞ୍ଜାବି ପିନ୍ଧି ସନ୍ଧ୍ୟାବେଳେ ଷ୍ଟେସନ ଆରପାଖ ଓ.ଏମ୍.ପି.ପଡ଼ିଆଆଡ଼େ ବୁଲିଯିବା

ବେଳେ କେତେଥର ମୁଁ ତାଙ୍କୁ ଦେଖିଛି । ଥରେ କଲେଜ ଡିବେଟିଂ ସୋସାଇଟିର ଗୋଟିଏ ସଭାରେ ସଭାପତି ହିସାବରେ ତାଙ୍କ ବକ୍ତୃତାର ଗୋଟିଏ ପଦ ''ଦାରିଦ୍ର୍ୟ ଏକ ଅପରାଧ ନୁହେଁ'' ଆଜିଯାଏ ମୋ ମନେ ଅଛି ।

୧୯୩୮ ମସିହାରେ ଆମେ ତୃତୀୟ ବାର୍ଷିକ ଶ୍ରେଣୀରେ ପଢ଼ିଲାବେଳେ ତ୍ରିପାଠୀ ଓଡ଼ିଶାର ଡି.ପି.ଆଇ ହୋଇଗଲେ ଏବଂ ପରିଜା ରେଭେନ୍ସା କଲେଜର ସ୍ଥାୟୀ ପ୍ରିନ୍ସିପାଲ ହେଲେ । ବିଭିନ୍ନ ସାଂସ୍କୃତିକ ଉତ୍ସବ, ସଭାସମିତିରେ ପ୍ରିନ୍ସିପାଲ ଉପସ୍ଥିତ ରହୁଥିଲେ ବା ସେଗୁଡ଼ିକୁ ପରିଚାଳିତ କରୁଥିଲେ ଏବଂ ଆମ୍ଭେମାନେ ବରାବର ତାଙ୍କର ସାନ୍ନିଧ୍ୟ ଲାଭ କରୁଥିଲୁ ।

୧୯୩୮ ରୁ ୧୯୪୦ ମଧ୍ୟରେ କଲେଜରେ ଅନେକଥର ଧର୍ମଘଟ ହୋଇଥିଲା । ସବୁଠାରୁ ବଡ଼ ଧର୍ମଘଟ ହୋଇଥିଲା ୧୯୪୦ ମସିହା ବି.ଏ. ପରୀକ୍ଷା ବର୍ଜନ ପାଇଁ । ତାହା ଗୋଟିଏ ଜାତୀୟ ସମସ୍ୟା ଉପରେ ଆଧାରିତ ହୋଇଥିବାରୁ ଆମେ ସମସ୍ତେ ସ୍ୱତଃପ୍ରବୃତ୍ତ ହୋଇ ସେଥିରେ ଯୋଗ ଦେଇଥିଲୁ । ଧର୍ମଘଟମାନଙ୍କରେ ଯୋଗଦେବା ହେତୁ ଆମେସବୁ ଜଣାଶୁଣା ପିଲା ପ୍ରିନ୍ସିପାଲଙ୍କର ବିରାଗଭାଜନ ହୋଇଥିଲୁ । ତଥାପି ପରୀକ୍ଷା ଫଳ ବାହାରିବା ପରେ ପରିଜା ତାଙ୍କର ମହତ ଗୁଣରେ ମୋତେ କ୍ଷମା ଦେଇଥିଲେ ଏବଂ ପାଟନାରେ ଏମ୍.ଏ. ପଢ଼ିବାପାଇଁ ଯିବା ବେଳକୁ ଖଣ୍ଡିଏ ଭଲ ସାର୍ଟିଫିକେଟ ଦେଇଥିଲେ ।

ଚାରିବର୍ଷପରେ ଆମେ ଯେତେବେଳେ କଲେଜ ଛାଡ଼ିଲୁ, ସେତେବେଳେ ଆମେ ସମସ୍ତେ ଉପଲବ୍ଧି କରିଥିଲୁ ଯେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଶିକ୍ଷାବିତ୍ ଏବଂ ଅଧ୍ୟାପକ ପରିଜାଙ୍କ ଯୋଗୁଁ ଭାରତବର୍ଷରେ ରେଭେନ୍ସା କଲେଜର ସୁନାମ ବହୁଗୁଣରେ ବୃଦ୍ଧି ପାଇଥିଲା । ଆମ୍ଭେମାନେ ତାଙ୍କର ଛାତ୍ର ବୋଲି ବିଶେଷ ଗର୍ବ କରୁଥିଲୁ । ଭାରତର ଅନ୍ୟ ବିଶ୍ୱବିଦ୍ୟାଳୟମାନଙ୍କରେ ପଢ଼ିବା ବା ଓଡ଼ିଶା ଓ ଓଡ଼ିଶା ବାହାରେ ଚାକିରି ପ୍ରଭୃତି କରିବା ସୁବିଧା ପାଇଁ କିମ୍ବା ଅନ୍ୟ କୌଣସି ଅସୁବିଧାରୁ ଉଦ୍ଧାର ପାଇବାପାଇଁ ଆମେ ସବୁବେଳେ ତାଙ୍କର ସାହାଯ୍ୟ ଓ ସହାନୁଭୂତି ଚାହୁଁଥିଲୁ । ଆମ୍ଭେମାନେ ଜାଣିଥିଲୁ ଯେ ସେତେବେଳେ ଭାରତର ସବୁ ବିଶ୍ୱବିଦ୍ୟାଳୟରେ ଏବଂ ସବୁ ପ୍ରଦେଶରେ ଯେଉଁମାନେ ସର୍ବୋଚ୍ଚ ସ୍ଥାନରେ ବା ଉଚ୍ଚପଦବୀମାନଙ୍କରେ ଥିଲେ ସେମାନେ ସମସ୍ତେ ପରିଜାଙ୍କର ଜଣାଶୁଣା ଥିଲେ ଏବଂ ତାଙ୍କୁ ବିଶେଷ ସମ୍ମାନ ଦେଖାଉଥିଲେ । ପରିଜାଙ୍କର ପଦେ କଥା ବା ଧାଡ଼ିଏ ଲେଖା ଆମ୍ଭମାନଙ୍କୁ ଜୀବନପଥରେ ସବୁବେଳେ ସାହାଯ୍ୟ କରିବ ବୋଲି ଆମର ଦୃଢ଼ଧାରଣା ଥିଲା । ଏମ୍.ଏ. ପାସ୍ କରିସାରିବାପରେ, ୧୯୪୩ ମସିହାରେ ଏକ ବ୍ୟକ୍ତିଗତ କାରଣରୁ ମୁଁ କଲିକତାର ହୃଦ୍‌ରୋଗ ବିଶେଷଜ୍ଞ ସୁଭାଷ ବୋଷ୍‌ଙ୍କ ବଡ଼ଭାଇ ସୁନୀଲ ବୋଷ୍‌ଙ୍କର

ପରାମର୍ଶ ନେବାକୁ ଚାହୁଁଥିଲି । ସୁନୀଲ ବୋଷ୍ ପରିଜାଙ୍କର ସହପାଠୀ ଥିଲେ । ତାଙ୍କ ପାଖକୁ ମୋ କଥା ଲେଖି ଖଣ୍ଡେ ଚିଠି ଦେବାକୁ ମୁଁ ପରିଜାଙ୍କୁ ଅନୁରୋଧ କରିଥିଲି । ସେ ଆଗ୍ରହର ସହିତ ମୋ ହାତରେ ସୁନୀଲ୍ ବୋଷ୍‌ଙ୍କ ପାଖକୁ ଖଣ୍ଡେ ଚିଠି ଦେଇଥିଲେ ଏବଂ ଡକ୍ଟର ବୋଷ୍ ସେ ଚିଠି ପାଇ ମୋତେ ବିଶେଷ ସୁବିଧା ପ୍ରଦାନ କରିଥିଲେ ।

୧୯୪୩ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେଲା । ପରିଜା ସେତେବେଳେ ରେଭେନ୍ସା କଲେଜର ପ୍ରିନ୍ସିପାଲ୍ ଥିଲେ । ତାଙ୍କ ପରି ସର୍ବଭାରତୀୟ ଏବଂ ଆନ୍ତର୍ଜାତିକ ଶିକ୍ଷାକ୍ଷେତ୍ରରେ ଖ୍ୟାତି ଲାଭ କରିଥିବା ବ୍ୟକ୍ତି ଓଡ଼ିଶାରେ ଆଉ କେହି ନ ଥିଲେ । ସୁତରାଂ ଅପ୍ରତିଦ୍ୱନ୍ଦ୍ୱୀ ଭାବରେ ସେ ନିଜ ପ୍ରତିଷ୍ଠିତ ବିଶ୍ୱବିଦ୍ୟାଳୟର କୁଳପତି ହେଲେ । ସେତେବେଳେ କୁଳପତି ପଦ ଅବୈତନିକ ଥିଲା ଏବଂ ବିଶ୍ୱବିଦ୍ୟାଳୟର କୌଣସି ସ୍ନାତକୋତ୍ତର ବା ସ୍ନାତକ ଶିକ୍ଷାଦାନୀ ବିଭାଗ ନ ଥିଲା । ପରିଜା ତାଙ୍କର ଅନ୍ୟ ପଦବୀ ସହ ପାଞ୍ଚବର୍ଷ ବିଶ୍ୱବିଦ୍ୟାଳୟର କୁଳପତି ରହିଲେ ।

୧୯୪୮ ରୁ ୧୯୫୬ ମସିହା ମଧ୍ୟରେ ପରିଜା ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ କେତେବର୍ଷ ଉପକୁଳପତି ଏବଂ ପାଞ୍ଚ ବର୍ଷ ଓଡ଼ିଶା ବିଧାନସଭାର ସଦସ୍ୟ ଥିଲେ । ୧୯୫୬ ମସିହାରେ ପରିଜା ପୁଣି ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ଥାୟୀ କୁଳପତି ହେଲେ ଏବଂ ୧୯୬୬ ମସିହା ପର୍ଯ୍ୟନ୍ତ ଦଶବର୍ଷ ସେହି ପଦବୀରେ ରହିଲେ । ମୁଁ ୧୯୫୫ ମସିହାରେ ଲଣ୍ଡନରୁ ଫେରି ୧୯୫୬ ମସିହାଠାରୁ ଉତ୍କଳ ବିଶ୍ୱବିଦ୍ୟାଳୟର ଗ୍ରାମ୍ୟ ଅର୍ଥନୀତି ଗବେଷଣା ବିଭାଗରେ ଚାକିରି କଲି । ମୁଁ ସେ ବିଭାଗରେ ପ୍ରଥମେ ରିଡ଼ର୍ ଏବଂ ପରେ ପ୍ରଫେସର ହିସାବରେ ପ୍ରାୟ କୋଡ଼ିଏ ବର୍ଷ କାର୍ଯ୍ୟ କରିଥିଲି । ପ୍ରଥମ ଦଶବର୍ଷ ପରିଜା ବିଶ୍ୱବିଦ୍ୟାଳୟର କୁଳପତି ଥିଲେ ମୁଁ ତାଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ କାର୍ଯ୍ୟ କରିବାକୁ ସୁଯୋଗ ପାଇଥିଲି ।

୧୯୫୬ ମସିହାରୁ ୧୯୬୬ ମସିହା ପର୍ଯ୍ୟନ୍ତ ଯେତେବେଳେ ପରିଜା ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ଥାୟୀ କୁଳପତି ଥିଲେ, ସେହି ଦଶବର୍ଷ ଉତ୍କଳ ବିଶ୍ୱବିଦ୍ୟାଳୟ ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ଯୁଗ ଥିଲା । ସେହି ସମୟରେ ୧୯୫୬ ମସିହାରେ ଭାରତର ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ପ୍ରତିଷ୍ଠିତ ହେଲା ଏବଂ ଚିନ୍ତାମଣି ଦେଶମୁଖ ଅନେକ ବର୍ଷ ତାହାର ଅଧ୍ୟକ୍ଷ ରହିଥିଲେ । ସେ କେମ୍ବ୍ରିଜ୍‌ରେ ପାଠ ପଢ଼ିଲାବେଳୁ ପରିଜାଙ୍କର ଅତି ପରିଚିତ ଏବଂ ସହୃଦୟ ବନ୍ଧୁ ଥିଲେ । ୧୯୫୬ ଠାରୁ ୧୯୬୬ ମସିହା ମଧ୍ୟରେ ବିଶ୍ୱବିଦ୍ୟାଳୟର ମୂଳଦୁଆ ସୁଦୃଢ଼ ହେଲା ଏବଂ ଏହା ଭାରତର ବିଶ୍ୱବିଦ୍ୟାଳୟମାନଙ୍କ ମଧ୍ୟରେ ଗୋଟିଏ ସୁପ୍ରତିଷ୍ଠିତ ଉଚ୍ଚମାନର ଶିକ୍ଷାଦାନୀ ବିଶ୍ୱବିଦ୍ୟାଳୟରୂପେ ପ୍ରତିଷ୍ଠା ଲାଭ କଲା । ସେହି ଦଶବର୍ଷ ମଧ୍ୟରେ ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍‌ର ସ୍ଥାନ ଭୁବନେଶ୍ୱରରେ ନିର୍ଦ୍ଧାରିତ ହେଲା ଏବଂ ସେଠାରେ ବିଶ୍ୱବିଦ୍ୟାଳୟର

କାର୍ଯ୍ୟାଳୟ ବିଭିନ୍ନ ସ୍ନାତକୋତ୍ତର ବିଭାଗ, ଛାତ୍ରାବାସ ଓ ବିଭିନ୍ନ କର୍ମଚାରୀ ଓ ଅଧ୍ୟାପକମାନଙ୍କ ବାସଗୃହ ପ୍ରଭୃତି ପାଇଁ କୋଠାବାଡ଼ି ନିର୍ମାଣ କରାଗଲା । କ୍ୟାମ୍ପସ୍‌ର ନାମ ବାଣୀବିହାର ଦିଆଗଲା ଏବଂ ସେଠାରେ ଗୋଟିକ ପରେ ଗୋଟିଏ ସ୍ନାତକୋତ୍ତର ବିଭାଗମାନ ଖୋଲିଲା । ୧୯୬୬ ସୁଦ୍ଧା ୧୧ଟି ସ୍ନାତକୋତ୍ତର ବିଭାଗ ଖୋଲିଥିଲା । କୋଠାବାଡ଼ି ନିର୍ମାଣ, ବିଭିନ୍ନ ବିଭାଗ ପ୍ରତିଷ୍ଠା, କର୍ମଚାରୀ ଏବଂ ଅଧ୍ୟାପକ ନିଯୁକ୍ତି, ଶିକ୍ଷାଦାନ ଏବଂ ପରୀକ୍ଷା ପ୍ରଭୃତି ସମସ୍ତ କାର୍ଯ୍ୟ ପରିଜାଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ କରାଯାଇଥିଲା ।

୧୯୬୨ ମସିହା ଜୁଲାଇ ମାସରେ, ବିଶ୍ୱବିଦ୍ୟାଳୟ ଅଫିସ୍ ଓ ସ୍ନାତକୋତ୍ତର ବିଭାଗମାନ କଟକରୁ ବାଣୀବିହାରକୁ ଆସିଲା । ୧୯୬୩ ମସିହାରେ ଭାରତର ରାଷ୍ଟ୍ରପତି ସାର୍ ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍ ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍ ଉଦ୍‌ଘାଟନ କଲେ । ପରିଜା ନିଜେ ପରିବାର ସହ କ୍ୟାମ୍ପସ୍‌ରେ ରହିଲେ । ଅଧ୍ୟାପକମାନଙ୍କ ପାଇଁ ନିର୍ମିତ ବାସଗୃହମାନଙ୍କର ପ୍ରଥମ ଧାଡ଼ିରେ ପ୍ରଥମ ଘରଟିରେ ରହିବା ପାଇଁ ସ୍ଥିର କଲେ । ଘଟଣାଚକ୍ରରେ ସେହି ଧାଡ଼ିରେ ଦ୍ୱିତୀୟ ଘରଟି ମୋତେ ରହିବାପାଇଁ ଦିଆଯାଇଥିଲା । ସୁତରାଂ ମୋର ପରିବାର ପରିଜାଙ୍କ ନିକଟତମ ପ୍ରତିବେଶୀ ପରିବାର ହେଲା । ଆମେ ଦେଖିଲୁ ଯେ ପରିଜା ବହୁତ କଷ୍ଟ ସହି ବାଣୀବିହାରରେ ରହୁଥିଲେ । ସେତେବେଳେ କାମ୍ପସକୁ ଆସିଥିବା ପାଣି ପାଇପ୍ ଅନେକଥର ଭାଙ୍ଗି ଯାଉଥିଲା, ପାଣି, ବସ୍, ଡାକ୍ତରଖାନା, ସ୍କୁଲ ପ୍ରଭୃତି ବିଷୟରେ ଅନେକ ଅସୁବିଧା ଥିଲା । କୁଳପତି କାମ୍ପସରେ ରହିବାଦ୍ୱାରା ବହୁ ସମସ୍ୟାର ଶୀଘ୍ର ସମାଧାନ ହୋଇ ପାରୁଥିଲା । ବିଶ୍ୱବିଦ୍ୟାଳୟ ହତାରେ ସ୍କୁଲ, ଡାକ୍ତରଖାନା, ପୋଷ୍ଟ ଅଫିସ୍, ବ୍ୟାଙ୍କର ସୁବିଧା କରାଗଲା । ଛାତ୍ରଛାତ୍ରୀଙ୍କର ପଢ଼ାପଢ଼ି, ପରୀକ୍ଷା, ସିନେଟ୍, ସିଣ୍ଡିକେଟ୍, ଏକାଡେମିକ୍ କାଉନ୍‌ସିଲ୍‌ର ସଭା, ବାର୍ଷିକ ସମାବର୍ତ୍ତନ ଉତ୍ସବ ପ୍ରଭୃତି ନିୟମିତ ଭାବରେ ଚାଲିଲା । ଗୋଟିଏ କଥା ସେତେବେଳେ ଆମେ ସମସ୍ତେ ଉପଲବ୍ଧି କରୁଥିଲୁ ଯେ ସମସ୍ତଙ୍କର ପରିଜାଙ୍କ ପ୍ରତି ଅତ୍ୟନ୍ତ ଭୟ ଥିଲା । ସେଥିଯୋଗୁଁ ସେମାନେ କାର୍ଯ୍ୟରେ ଅବହେଳା କରିବାକୁ ସାହସ କରୁ ନ ଥିଲେ । ଅନ୍ୟ ଦିଗରେ ଝାଡୁଦାରଠାରୁ ସ୍ନାତକୋତ୍ତର ବିଭାଗର ମୁଖ୍ୟ ଅଧ୍ୟାପକ ପର୍ଯ୍ୟନ୍ତ ସମସ୍ତେ ସେମାନଙ୍କର ବ୍ୟକ୍ତିଗତ ଅସୁବିଧା ଜଣାଇବା ପାଇଁ ପରିଜାଙ୍କୁ ଅବାଧରେ ଭେଟି ପାରୁଥିଲେ ।

ଶ୍ରୀମତୀ ପରିଜା ଅତି ସ୍ନେହୀ ଲୋକ ଏବଂ ପରିଜା ପରିବାର ଅତି ସରଳ ଭାବରେ ଚଳନ୍ତି । ମୋର ପିଲାମାନେ ସେତେବେଳେ ଖୁବ୍ ସାନ ଥିଲେ । ଶ୍ରୀମତୀ ପରିଜା ସେମାନଙ୍କୁ ଅତି ସ୍ନେହ କରୁଥିଲେ । ଅସୁବିଧା ପଡ଼ିଲେ ଆମେ ପରିଜାଙ୍କଠାରୁ ସାହାଯ୍ୟ ନେବାକୁ କୁଣ୍ଠାବୋଧ କରୁ ନ ଥିଲୁ । ଦିନେ ରାତି ଦଶଟା ପରେ ଷ୍ଟାଟିଷ୍ଟିକ୍ସ୍

ଅଧ୍ୟାପକ ସାଧୁଚରଣଙ୍କ ଦେହ ଅତି ଖରାପ ହେଲା ଏବଂ ତାଙ୍କୁ କଟକ ଡାକ୍ତରଖାନାକୁ ନେବାକୁ ଦରକାର ପଡ଼ିଲା । ସେତେବେଳେ କଟକ ଯିବାପାଇଁ କୌଣସି ଗାଡ଼ିର ସୁବିଧା ନ ଥିଲା । ମୁଁ ସେ ଅସମୟରେ ଯାଇ ପରିଜାଙ୍କ ଘରେ ଡାକିଲି ଏବଂ ତାଙ୍କ ଗାଡ଼ିରେ ସାଧୁବାବୁଙ୍କୁ ଡାକ୍ତରଖାନା ପଠାଇବାକୁ ଅନୁରୋଧ କଲି । ସେ ସଙ୍ଗେ ସଙ୍ଗେ ତାଙ୍କ ଡ୍ରାଇଭରକୁ ଡାକି ତାଙ୍କ ଗାଡ଼ିରେ ଆମ୍ଭମାନଙ୍କୁ କଟକ ବଡ଼ ଡାକ୍ତରଖାନାକୁ ନେଇଯିବାକୁ କହିଲେ ।

ବିଶ୍ୱବିଦ୍ୟାଳୟ ହତାରେ ପ୍ରାୟ ଚାରିବର୍ଷ ରହିଲାପରେ, ୧୯୬୬ ମସିହା ଫେବୃଆରୀ ମାସରେ ପରିଜାଙ୍କର କାର୍ଯ୍ୟକାଳ ଶେଷ ହେଲା । ବିଶ୍ୱବିଦ୍ୟାଳୟରୁ ବିଦାୟ ନେଲାବେଳେ ସେ ଓଡ଼ିଆରେ ଖଣ୍ଡେ ଛୋଟ ଚିଠି ଲେଖି ସାଇକ୍ଲୋଷ୍ଟାଇଲ୍ କରି ସମସ୍ତଙ୍କ ମଧ୍ୟରେ ବଣ୍ଟାଇଥିଲେ । ସେଥିରେ ଲେଖାଥିଲା– ‘‘ମୁଁ ପନ୍ଦର ବର୍ଷ କୁଳପତି ରହିବାପରେ ବିଶ୍ୱବିଦ୍ୟାଳୟରୁ ବିଦାୟ ନେଉଛି । ମୋର କାର୍ଯ୍ୟକାଳ ମଧ୍ୟରେ ମୁଁ ଯଦି କୌଣସି ଭୁଲ୍ ବା ଦୋଷ କରିଥିବି ମୋତେ କ୍ଷମା ଦେବ ।’’

ସେ ବିଶ୍ୱବିଦ୍ୟାଳୟରୁ ବିଦାୟ ନେଲେ । କିନ୍ତୁ ପ୍ରାଥମିକ ଅବସ୍ଥାରେ ବିଶ୍ୱବିଦ୍ୟାଳୟର ଗଠନ ଏବଂ ପ୍ରଗତ ପାଇଁ ତାଙ୍କର ଅବଦାନ, ତାଙ୍କର ବିରାଟ ବ୍ୟକ୍ତିତ୍ୱ, ନୈତିକତା ଚରିତ୍ରବତ୍ତା ଏବଂ ସମସ୍ତଙ୍କ ପ୍ରତି ସହାନୁଭୂତିର ସ୍ମୃତି ଆମ ସମସ୍ତଙ୍କ ମନରେ ରହିଛି । ବିଶ୍ୱବିଦ୍ୟାଳୟରୁ ଅବସର ନେବାପରେ ୧୯୭୮ ମସିହା ଜୁନ୍ ମାସ ପର୍ଯ୍ୟନ୍ତ ବାର ବର୍ଷ ପରିଜା କେତେବର୍ଷ ସେ ରେଭେନ୍ସା କଲେଜ ଉଦ୍ଭିଦବିଜ୍ଞାନ ବିଭାଗରେ ଗବେଷଣା କରୁଥିଲେ । ଥରେ ତାଙ୍କୁ ଅଭିନନ୍ଦନ ଦେବାପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟ ଉଦ୍ଭିଦ ବିଜ୍ଞାନ ବିଭାଗ ଉଦ୍ୟମରେ ବାଣୀବିହାରରେ ଗୋଟିଏ ଉତ୍ସବ ହୋଇଥିଲା ଏବଂ ସେ ଉପଲକ୍ଷେ ଇଂରାଜୀରେ ଗୋଟିଏ ସ୍ମରଣିକା ପ୍ରକାଶ ପାଇଥିଲା । ୧୯୭୮ ମସିହାର ଆରମ୍ଭରେ, ମୁଁ ଯେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଥିଲି, ବିଶ୍ୱବିଦ୍ୟାଳୟର ଲାଇବ୍ରେରି ପରିଜାଙ୍କ ନାମରେ ନାମିତ କରିବା ପାଇଁ ସ୍ଥିର ହେଲା । ପରିଜା ସେତେବେଳେ ବହୁଦୂର ଯିବାଆସିବା କରିବାକୁ ସମର୍ଥ ନ ଥିବାରୁ, ଲାଇବ୍ରେରିର ଗୋଟିଏ ଗୌପ୍ୟ ଚାବି ତାଙ୍କ ହସ୍ତରେ ଅର୍ପଣ କରିବାକୁ ତାଙ୍କଘରେ ବିଶ୍ୱବିଦ୍ୟାଳୟ ତରଫରୁ ଗୋଟିଏ ସଭା ହୋଇଥିଲା ଏବଂ ମୁଁ ତାଙ୍କ ହସ୍ତରେ ସେ ଚାବି ଅର୍ପଣ କରିଥିଲି । ତାର ତିନି ମାସ ପରେ ସେ ମରିଗଲେ । ମରିବାର ପ୍ରାୟ ଏକମାସ ପୂର୍ବରୁ ଶ୍ରୀମତୀ ପରିଜା ମରିଯାଇଥିଲେ । ଶ୍ରୀମତୀ ପରିଜାଙ୍କ ମୃତ୍ୟୁର ଏକାଦଶାହ ଦିନ ଅନ୍ୟମାନଙ୍କ ସହିତ ମୁଁ ତାଙ୍କ ଘରକୁ ଯାଇଥିଲି ଏବଂ ପରିଜାଙ୍କ ପାଖରେ ପ୍ରାୟ ପାଞ୍ଚ ସାତ ମିନିଟ୍ ବସିଥିଲି । ସେ ସେଦିନ ମାତ୍ର ଦୁଇଚାରିପଦ କଥା କହିବା ବ୍ୟତୀତ ବିଶେଷ କିଛି କହି ନ ଥିଲେ । ଅତୀତର

ସବୁ ସ୍ମୃତି ଏବଂ ଦୁଃଖରେ ତାଙ୍କ ହୃଦୟ ପୂର୍ଣ୍ଣଥିଲା । ତାଙ୍କ ଶେଷ ଜୀବନରେ କେତେକ ଅତ୍ୟନ୍ତ ଦୁଃଖମୟ ଘଟଣା ଘଟିଥିଲା । ତାଙ୍କର ବଡ଼ ଝିଅ ଓ ଜୋଇଁ ଏବଂ ସାନ ପୁଅ ଅକାଳରେ ମରି ଯାଇଥିଲେ । ପରିଜା ଏବଂ ଶ୍ରୀମତୀ ପରିଜା ଅତି ଧୈର୍ଯ୍ୟର ସହିତ ସେ ଦୁଃଖ ସହ୍ୟ କରିଥିଲେ । ଶେଷରେ ୧୯୭୮ ମସିହା ଜୁନ୍ ମାସ ଦୁଇ ତାରିଖରେ ତାଙ୍କ ଜୀବନର ଅବସାନ ହେଲା । ସେଦିନ ତାଙ୍କର ମୃତ୍ୟୁଖବର ପାଇ ବିଶ୍ୱବିଦ୍ୟାଳୟର ସମସ୍ତଙ୍କ ମଧ୍ୟରେ ଶୋକର ଛାୟା ଖେଳି ଯାଇଥିଲା । ଆମ୍ଭେମାନେ ତାଙ୍କର ଶେଷଦର୍ଶନ ପାଇଁ ଏବଂ ତାଙ୍କର ମରଶରୀରରେ ପୁଷ୍ପମାଲ୍ୟ ଦେବାପାଇଁ ତାଙ୍କ ଘରକୁ ଯାଇଥିଲୁ । ସେଦିନ ରାତିରେ ଶୋକାକୁଳ ଜନତାର ଆଖି ଆଗରେ ଚିତାଗ୍ନିରେ ତାଙ୍କର ମରଶରୀର ଭସ୍ମରେ ପରିଣତ ହେଲା ।

ତାଙ୍କ ମୃତ୍ୟୁପରେ ବିଶ୍ୱବିଦ୍ୟାଳୟରେ ତାଙ୍କ ସ୍ମୃତିରକ୍ଷାପାଇଁ କେତେକ ପ୍ରସ୍ତାବ ଦେଇ କେତେଜଣ ଅଧ୍ୟାପକଙ୍କ ସହ ମୁଁ ସେତେବେଳର ଓଡ଼ିଶା ମୁଖ୍ୟମନ୍ତ୍ରୀ ନୀଳମଣି ରାଉତରାୟଙ୍କୁ ଭେଟିଥିଲି । ସେ ଆଗ୍ରହର ସହିତ ଆମ ପ୍ରସ୍ତାବରେ ରାଜି ହୋଇଥିଲେ । ସେହି ଅନୁସାରେ ବିଶ୍ୱବିଦ୍ୟାଳୟର ଉଦ୍ଭିଦବିଜ୍ଞାନ ବିଭାଗରେ ପରିଜାଙ୍କ ନାମରେ ଗୋଟିଏ ଅଧ୍ୟାପକ ପଦ ଏବଂ ଗୋଟିଏ ଗବେଷକ ପଦ ପ୍ରତିଷ୍ଠିତ ହୋଇଛି ଏବଂ ପ୍ରତିବର୍ଷ ପରିଜା ସ୍ମାରକୀ ବକ୍ତୃତାମାଳା ଅନୁଷ୍ଠିତ ହେଉଛି ।

ପରିଜା ଦୀର୍ଘ ଅଠାଅଶୀ ବର୍ଷ ବଞ୍ଚିଥିଲେ । ସେ ଦେଶର ଏବଂ ସାଧାରଣ ଲୋକମାନଙ୍କର ବହୁ ଉପକାର କରିଥିଲେ । ତାଙ୍କର ବିଦ୍ୟା, ନିର୍ମଳ ଚରିତ୍ର, ନିୟମାନୁବର୍ତ୍ତିତା, ଓ ନୈତିକତା ପାଇଁ ସର୍ବଜନ ବନ୍ଦିତ ହୋଇଥିଲେ ଏବଂ ସବୁ ବିଷୟରେ ଆମ ସମାଜର ଜଣେ ବଡ଼ଲୋକ ଥିଲେ । କୌଣସି ନିନ୍ଦନୀୟ କାର୍ଯ୍ୟରେ କେବେ ସେ ହାତ ଦେଇ ନ ଥିଲେ । ତାଙ୍କ ସମୟରେ ଭାରତର ସବୁ ବଡ଼ଲୋକ ଏବଂ ବିଦେଶର ବହୁ ବିଦ୍ୱାନ୍ ଲୋକ ତାଙ୍କୁ ଜାଣିଥିଲେ । ସେ ପୌରୁଷରେ ତାଙ୍କର ଯେଉଁ ଆତ୍ମଜୀବନୀ ଲେଖା ଆରମ୍ଭ କରିଥିଲେ ତାହାର ଶିରୋନାମା ଦେଇଥିଲେ– ‘‘ଅକିଞ୍ଚନର ଜୀବନ ସ୍ମୃତି’’ । ମାତ୍ର ପରିଜା ଓଡ଼ିଶାର କିମ୍ବା ଭାରତବର୍ଷର ଜଣେ ଅକିଞ୍ଚନ ନ ଥିଲେ । ସବୁମତେ ସେ ଭାରତବର୍ଷର ଜଣେ ବିଶିଷ୍ଟ ଶିକ୍ଷାବିତ୍ ଓ ବିଖ୍ୟାତ ଲୋକ ଥିଲେ । ଏହି ଶିରୋନାମାରେ ଜୀବନୀ ଲେଖିବା ତାଙ୍କ ବିନୟର ଜ୍ୱଳନ୍ତ ଉଦାହରଣ । ସେ ଆମପାଇଁ ଏବଂ ଆମ ଭବିଷ୍ୟତ ବଂଶଧରମାନଙ୍କ ପାଇଁ ଚିରକାଳ ଆଦର୍ଶ ହୋଇ ରହିବେ ।

# ଓଡ଼ିଆ ସଂସ୍କୃତିର ପ୍ରତିନିଧି

**ବିନୋଦ କାନୁନଗୋ**

ବିଜ୍ଞାନର ଅନ୍ୟ ନାମ ହେଉଛି ସତ୍ୟର ଅନୁସନ୍ଧାନ, ଯେ ପର୍ଯ୍ୟନ୍ତ ତିଳେମାତ୍ର ସନ୍ଦେହ ରହିଯାଉଛି ସେ ପର୍ଯ୍ୟନ୍ତ ବୈଜ୍ଞାନିକ କେବେହେଲେ କହିବ ନାହିଁ ଯେ ଏଇଟି ହେଉଛି ସଂପୂର୍ଣ୍ଣ ସତ୍ୟ ।

ପ୍ରାଣକୃଷ୍ଣ ପରିଜା ଥିଲେ ଜଣେ ବୈଜ୍ଞାନିକ, ତାଙ୍କର ସମଗ୍ର ଜୀବନ, ସମଗ୍ର ଚିନ୍ତାଧାରା ସତ୍ୟକୁ ହିଁ ଆଶ୍ରୟ କରି ଗଢ଼ି ଉଠିଥିଲା, ଯେଉଁଟାକୁ ସେ ଠିକ୍ ବୋଲି ଭାବୁଥିଲେ ତାହା ପ୍ରକାଶ କରିବା ବେଳେ ତିଳେ ସୁଦ୍ଧା ଇତସ୍ତତ ହେଉ ନ ଥିଲେ । ସମସ୍ତଙ୍କର ମତ ପ୍ରତି ତାଙ୍କର ସମ୍ମାନ ଥିଲା । ସମସ୍ତଙ୍କୁ ସେ ଶ୍ରଦ୍ଧା କରୁଥିଲେ, ତେଣୁ କାହାରି ନିକଟରେ ସତ୍ୟ କହିବା ପାଇଁ ତିଳେହେଲେ କୁଣ୍ଠାବୋଧ କରୁ ନ ଥିଲେ । ମତ ପ୍ରକାଶର ଗୋଟାଏ ଚମତ୍କାର ଶୈଳୀ ସେ ଆୟତ୍ତ କରି ସାରିଥିଲେ । ତେଣୁ ଯାହା ସହିତ ସେ ଏକମତ ହେଉ ନ ଥିଲେ ସେ ମଧ୍ୟ ତାଙ୍କପ୍ରତି ପରୋକ୍ଷରେ ବିରକ୍ତ ପ୍ରକାଶ କରୁ ନ ଥିଲେ ।

ସେ ଆଜି ନାହାନ୍ତି । ଏକଥା ବିଶ୍ୱାସ କରିବାକୁ ମଧ୍ୟ ବହୁ ଲୋକଙ୍କର ସାହସ ହେଉ ନାହିଁ, ସେ ବୃଦ୍ଧ ହୋଇଯାଇଥିଲେ । ଆଉ ୧୩ ବର୍ଷ ବଞ୍ଚିଥିଲେ ତାଙ୍କୁ ଶହେ ବର୍ଷ ପୂରିଗଲା ବୋଲି କୁହାଯାଇଥାନ୍ତା । କିନ୍ତୁ ଜଣେ ଅଳ୍ପବୟସର ଉଦୀୟମାନ ଯୁବକର ମୃତ୍ୟୁରେ ଯେଉଁ ଧରଣର ଶୋକଛାୟା ଖେଳିଯାଇଥାନ୍ତା ପରିଜାଙ୍କ ମୃତ୍ୟୁରେ ସେହି ଧରଣର ଶୋକଛାୟା ଖେଳିଯାଇଛି ।

ଏହାର କାରଣ କ'ଣ ? ନାନା ଭାବରେ ଏହି ପ୍ରଶ୍ନର ଉତ୍ତର ଦିଆଯାଇପାରେ । କିନ୍ତୁ ଏହାର ଅସଲ ଉତ୍ତର ହେଉଛି ଓଡ଼ିଆ ସଂସ୍କୃତିର ଯାହା କିଛି ମହତ୍ତ୍ୱ ରହିଛି ତାହାର ପ୍ରତିନିଧିତ୍ୱ କରୁଥିଲେ ଡକ୍ଟର ପ୍ରାଣକୃଷ୍ଣ ପରିଜା । ଥରେ ତାଙ୍କର ଉପସ୍ଥିତିରେ ଜଣେ ଓଡ଼ିଆ ସଂସ୍କୃତି ବିଷୟରେ ଅତିମାତ୍ରାରେ ଉତ୍ସାହିତ ହୋଇ କହି ପକାଇଲେ, "ଏ ଜାତି ଭିତରେ କିଛି ଗୋଟାଏ ଅନ୍ତର୍ନିହିତ ଶକ୍ତି ରହିଛି ଯାହାକି ଜଣେ ତୋରାଣିଶାଗଖିଆ ପିଲାକୁ ଗୋଟାଏ ପ୍ରାଣକୃଷ୍ଣ ପରିଜାରେ ପରିଣତ କରିନେଇ ପାରିଥିଲା ।" ବିନୟର ଅବତାର ପ୍ରାଣକୃଷ୍ଣ ପରିଜାଙ୍କ ଆଖି ଛଳ ଛଳ ହୋଇ ଉଠିଲା ।

ମନୁଷ୍ୟ ନିଜକୁ ନିଜେ କିଭଳି ଗଢ଼ିପାରେ ତାହା ପରିଜା ଦେଖାଇ ଯାଇଛନ୍ତି । ଏହି ଯୋଗଜନ୍ମା ପୁରୁଷ, କୌଣସି ଧନୀ ପରିବାରରେ ଜନ୍ମଗ୍ରହଣ କରିବାର ସୁଯୋଗ ତାଙ୍କୁ ମିଳି ନ ଥିଲା । କୌଣସି ସୁଯୋଗ ନ ଥିବା ପରିବେଶ ଭିତରୁ ସେ ଜଣେ ଉଦୀୟମାନ ମେଧାବୀ ଛାତ୍ର ଭାବରେ ମୁଣ୍ଡ ଟେକିଲେ, ବିଲାତ ଗଲେ ପଢ଼ିବା ପାଇଁ, ଠିକ୍ ସେତିକିବେଳକୁ ପ୍ରଥମ ବିଶ୍ୱଯୁଦ୍ଧ ଆରମ୍ଭ । କେମ୍ବ୍ରିଜ ବିଶ୍ୱବଦ୍ୟାଳୟରୁ ବହୁ ଇଂରେଜ ଛାତ୍ର ଯୁଦ୍ଧକ୍ଷେତ୍ରକୁ ଚାଲି ନ ଯାଇଥିଲେ ପରିଜା ସେଠାରେ ପଢ଼ିବା ପାଇଁ ତୁରନ୍ତ ସୁଯୋଗ ହୁଏତ ପାଇ ନ ଥାନ୍ତେ । ସେ ନିଜେ ମଧ୍ୟ ଯୁଦ୍ଧରେ ଯୋଗ ଦେବା ପାଇଁ ଇଚ୍ଛା ପ୍ରକାଶ କରିଥିଲେ, କିନ୍ତୁ ମିଷ୍ଟର ବେନିୟନ୍‌ସ ସେଥିରୁ ତାଙ୍କୁ ନିବର୍ତ୍ତାଇଲେ । ପରିଜାଙ୍କ ଭାଷାରେ କହିବାକୁ ଗଲେ "କେମ୍ବ୍ରିଜକୁ ଗଲେ ଜଣେ ପୃଥିବୀକୁ ଜାଣିପାରିବ ।" ପ୍ରାୟ ସାତବର୍ଷ ସେ ସେଠାରେ କଟାଇଥିଲେ । ସେତିକିବେଳେ ସେ ସେଠାରେ ଦେଖିଲେ ଶୃଙ୍ଖଳାଜ୍ଞାନ ଗୋଟାଏ ଜାତିକୁ କିଭଳି ବଡ଼ କରି ଦେଇପାରେ । ଦୀର୍ଘ ସାତବର୍ଷ ଧରି କଠୋର ତଥା ସ୍ୱେଚ୍ଛାକୃତ ନିୟନ୍ତ୍ରଣ ମଧ୍ୟରେ ରହିବା ଦ୍ୱାରା ତାଙ୍କ ଜୀବନ ଗୋଟାଏ ଶୃଙ୍ଖଳା ଜ୍ଞାନର ଛାଞ୍ଚ ଭିତରେ ପଡ଼ିଗଲା, ତାହା ହିଁ ପରବର୍ତ୍ତୀ ଜୀବନରେ ତାଙ୍କୁ ସାହାଯ୍ୟ କଲା ।

ଏହାର ପରିଣତି ହେଲା ଯେ କେବଳ ଜଣେ ବିଜ୍ଞାନ ଅଧ୍ୟାପକ ଭାବରେ ଜୀବନଟାକୁ କଟାଇ ଦେଲେ ନାହିଁ । ସେ ହୋଇଗଲେ ଜଣେ ଗବେଷଣାରତ ବୈଜ୍ଞାନିକ । ଅବିରତ ଗବେଷଣାରତ ରହି ସେ ନିଜର ପ୍ରତିଭାର ପରିଚୟ ଦେଲେ ଓ ପୃଥିବୀର ବୈଜ୍ଞାନିକମାନଙ୍କ ଭିତରେ ନିଜ ପାଇଁ ଗୋଟିଏ ଆସନ ବାଛିନେଲେ ।

ଗୀତାର ଗୋଟିଏ ଶ୍ଲୋକର ପ୍ରଭାବ ତାଙ୍କ ଉପରେ ଅତିମାତ୍ରାରେ ପଡ଼ିଥିଲା, ଦୁଃଖରେ ବିଚଳିତ ହୋଇଯିବ ନାହିଁ କି ସୁଖ ଆସିଲା ବୋଲି ଅତିମାତ୍ରାରେ ଉଲ୍ଲସିତ ହୋଇ ଉଠିବ ନାହିଁ । ନିଜର ବଡ଼ ଝିଅ, ଜ୍ୱାଇଁ, ଜଣେ ଅତି ଯୋଗ୍ୟ ପୁଅ ତାଙ୍କରି ଆଖି ଆଗରେ ସଂସାରରୁ ବିଦାୟ ନେଇଗଲେ । କିନ୍ତୁ ଯିଏ ତାଙ୍କୁ ଦେଖିଛି ସେ ବିସ୍ମିତ ହୋଇଛି ଯେ ସେ ଦୁଃଖରେ ଭାଙ୍ଗି ପଡୁ ନ ଥିଲେ ।

ଜୀବନରେ ବହୁ ଉଚ୍ଚପଦର ଅଧିକାରୀ ହୋଇଛନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି, ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ପ୍ରୋ-ଭାଇସ୍‌ଚାନ୍‌ସେଲର, ଭାରତୀୟ ବିଜ୍ଞାନ କଂଗ୍ରେସର ବମ୍ବେ ଅଧିବେଶନର ସଭାପତି ଇତ୍ୟାଦି ସମ୍ମାନର ଅଧିକାରୀ ହେଲାବେଳେ ସେ କେବେହେଲେ ଉଲ୍ଲସିତ ହୋଇ ଉଠି ନାହାନ୍ତି । ଡକ୍ଟରେଟ୍ ଠାରୁ ଆରମ୍ଭ କରି ପଦ୍ମଭୂଷଣ ପର୍ଯ୍ୟନ୍ତ କୌଣସି ଉପାଧି ତାଙ୍କ ମନରେ ଅହଂଭାବ ସୃଷ୍ଟି କରିପାରି ନାହିଁ । ତାଙ୍କ ବିନୟ ଭିତରେ ଟିକେହେଲେ କୃତ୍ରିମତା ନ ଥିଲା ।

ଏଇଟା ଅବଶ୍ୟ ତାଙ୍କ ଜୀବନର ଗୋଟାଏ ବ୍ୟତିକ୍ରମ, ସେ କିଛି କାଳ ପାଇଁ ଲୋକପ୍ରତିନିଧି ହିସାବରେ ଓଡ଼ିଶାର ବିଧାନସଭାର ସଭ୍ୟ ହୋଇଥିଲେ । ସେତିକିବେଳେ ସେ ଦେଖାଇ ଦେଇ ପାରିଥିଲେ ଜଣେ ଆଦର୍ଶ ଲୋକ ପ୍ରତିନିଧି କିଭଳି ହେବା ଉଚିତ ।

ଓଡ଼ିଶାର ଶହ ଶହ, ହଜାର ହଜାର କହିଲେ କିଛି ଅତିରଞ୍ଜନ ହେବ ନାହିଁ, ଛାତ୍ର ତାଙ୍କଠାରୁ ପ୍ରତ୍ୟକ୍ଷ ଉପକାର ପାଇଛନ୍ତି । ଡାହାଣ ହାତ ଦାନ ଦେଲେ ବାମ ହାତ ମଧ୍ୟ ଜାଣିବା ଉଚିତ ନୁହେଁ, ଏହା ଥିଲା ତାଙ୍କର ନୀତି, ତାଙ୍କର ଏତିକି ସନ୍ତୋଷ ଥିଲା ଯେ ବହୁ ଛାତ୍ରଙ୍କୁ ମଣିଷ ହେବାରେ ସେ ସାହାଯ୍ୟ କରି ପାରିଛନ୍ତି ।

ତାଙ୍କର କୃତି, ତାଙ୍କର ଗୁଣ ପ୍ରତ୍ୟେକ ଓଡ଼ିଆଙ୍କୁ ସୁଯୋଗ ଦେଇଥିଲା, ‘‘ପରିଜାସାହେବ ଆମରି’’ ବୋଲି କହିବା ପାଇଁ । ଓଡ଼ିଶାର ଜଣେ ଥିଲେ ଆଚାର୍ଯ୍ୟ ହରିହର ଓ ଆଉ ଜଣେ ଥିଲେ ପ୍ରାଣକୃଷ୍ଣ ପରିଜା, ଯାହାଙ୍କୁ ନିଜର ବୋଲି କହି ଓଡ଼ିଆମାନେ ଗର୍ବିତ ହେଉଥିଲେ, ଗୌରବ ମଣୁଥିଲେ । ଆଜି ତାଙ୍କର ଅତି ନିକଟର ଆତ୍ମୀୟମାନଙ୍କ ଆଖିରେ ଯେତିକି ଲୁହ, ସମଗ୍ର ଓଡ଼ିଆ ଜାତି ଆଖିରେ ସେତିକି ଲୁହ । ପ୍ରତ୍ୟେକ ଶିକ୍ଷିତ ଓଡ଼ିଆ ଭାବୁଛି ମୋର ବ୍ୟକ୍ତିଗତ କ୍ଷତି ହୋଇଗଲା । ଏହାଠାରୁ ବଳି ଶ୍ରେଷ୍ଠ ସମ୍ମାନ ତାଙ୍କ ପ୍ରତି ଆଉ ପ୍ରଦର୍ଶନ କରାଯାଇ ନ ପାରେ । ସମଗ୍ର ଓଡ଼ିଆ ଜାତିର ମସ୍ତକ ତାଙ୍କ ପ୍ରତି ଭକ୍ତିରେ ଅବନତ ହୋଇ ଯାଉଛି । ଆଜି ତାଙ୍କର ଦେହାନ୍ତ ସଙ୍ଗେ ସଙ୍ଗେ ସେ ଓଡ଼ିଆ ଜାତିର ହୃଦୟରେ ନୂତନ ଭାବରେ ଜିଇଁ ଉଠୁଛନ୍ତି, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ତାଙ୍କ ଶବ ଶୋଭାଯାତ୍ରାବେଳେ ମନେ ହେଉଥିଲା ସତେ ଯେପରିକି ଓଡ଼ିଶାର ଗୋଟାଏ ଯୁଗ ଚାଲିଯାଉଛି ।

୧୯୨୨ରୁ ତାଙ୍କୁ ଅତି ନିକଟରୁ ଜାଣିବାର ସୌଭାଗ୍ୟ ମୋର ହୋଇଛି । କୋଟି କୋଟି ଓଡ଼ିଆଙ୍କ ସହିତ ଭକ୍ତିରେ ମସ୍ତକ ଅବନତ କରି ମୁଁ ତାଙ୍କ ପ୍ରତି ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

(ଶ୍ରୀ ବିବେକାନନ୍ଦ ପଟ୍ଟନାୟକଙ୍କ ମୁଖ୍ୟ ସଂପାଦନାରେ ପ୍ରକାଶିତ ‘ଉତ୍କଳ ପ୍ରସଙ୍ଗ’ ସ୍ୱତନ୍ତ୍ର ସଂଖ୍ୟା, ୧୯୭୮ରୁ ଗୃହୀତ)

# ବାଲିକୁଦାର ବ୍ୟାସଦେବ

**ବିଭୂତି ଭୂଷଣ ସ୍ୱାଇଁ**

ପଙ୍କରୁ ପଦ୍ମର ସୃଷ୍ଟି ହୋଇଥାଏ । ସେ ପଦ୍ମ ପୁଣି କବିକୁ ଅମୃତତ୍ୱର ସନ୍ଧାନ ଦେଇଥାଏ । କବି ମଧ ପଦ୍ମଗନ୍ଧରେ ବିଭୋର ହୋଇ ଉଠିଥାଏ । ଭାବୁକ ଭାବନାରେ ବୁଡ଼ିଯାଏ । ସେମିତି ୧୮୯୧ ମସିହା ଏପ୍ରିଲ ମାସ ପହିଲା ଦିନ କଟକ ଜିଲ୍ଲାର ସେତେବେଳକାର ଏକ ଅଗମ୍ୟ ଅଞ୍ଚଳ ବାଲିକୁଦା ନିକଟବର୍ତ୍ତୀ ଇଚ୍ଛାପୁର ଗ୍ରାମରେ ପଦ୍ମର ସୁରଭି ଓ ସୌରଭ ନେଇ ଯେଉଁ ଶିଶୁଟି ପିତା ବିଶ୍ୱନାଥ ପରିଜା ଓ ମାତା ଜୟନ୍ତୀଦେବୀଙ୍କ କୋଳ ମଣ୍ଡନ କରିଥିଲା, ପରବର୍ତ୍ତୀ କାଳରେ ସେ ହେଲେ ବିଶ୍ୱବିଖ୍ୟାତ ବୈଜ୍ଞାନିକ ଡକ୍ଟର ପ୍ରାଣକୃଷ୍ଣ ପରିଜା ବା ସର୍ବସାଧାରଣଙ୍କ ପରିଜାସାହେବ ।

ଏକ ସାଧାରଣ ମଧ୍ୟବିତ୍ତ ବହୁକୁଟୁମ୍ବୀ ଏକାନ୍ନବର୍ତ୍ତୀ ପରିବାରରେ ତାଙ୍କର ଜନ୍ମ । ବାପାଙ୍କର ଦୂରଦୃଷ୍ଟି ସାଧାରଣ ଲୋକଙ୍କ ଅପେକ୍ଷା ନିଶ୍ଚିତ ଭାବେ ଅଧିକ ଥିଲା । ତେଣୁ ଶିଶୁପୁତ୍ରଟିର କ୍ରମୋନ୍ନତି ପ୍ରତି ସେ ମୂଳରୁ ଯତ୍ନଶୀଳ ଥିଲେ । ସାଧାରଣ ଲୋକେ ଅନ୍ଧବିଶ୍ୱାସ ଓ କୁସଂସ୍କାରରେ ବୁଡ଼ି ରହିଥିଲାବେଳେ ପରିଜା ବଂଶ ଅନ୍ୟର ଭଲ କାର୍ଯ୍ୟମାନ ଗ୍ରହଣ କରି ନିଜର ବ୍ୟବହାରରେ ଲଗାଇବାରେ କେବେ କୁଣ୍ଠିତ ନ ଥିଲେ ।

ବାଲିକୁଦାରୁ କଟକ ଚାଳିଶ ମାଇଲ ରାସ୍ତା । ବଳଦଗାଡ଼ି କିମ୍ବା ଜଗତସିଂହପୁର ଠାରୁ ମାଛଗାଁ କେନାଲରେ ନାଆରେ ଯିବା ବ୍ୟତୀତ ଅନ୍ୟ କୌଣସି ବ୍ୟବସ୍ଥା ନ ଥିଲା । ତାହା ମଧ ବ୍ୟୟବହୁଳ । ତେଣୁ ଚାଲିକରି ଯାଇ ଦୁଇଦିନରେ କଟକରେ ପହଞ୍ଚିବା ହିଁ ଏକମାତ୍ର ସରଳ ଉପାୟ । ଏକ କ୍ଷୁଦ୍ର ପରିବେଶରୁ ବାହାରିଯିବା ବା ବାହାରିଯିବା ପାଇଁ ଉଦ୍ୟମ ପ୍ରକୃତ ପକ୍ଷେ ଉନ୍ନତିର ଅନ୍ୟ ଏକ ଉପସର୍ଗ । ପିଲାଟିକୁ ମଣିଷଟିଏ କରିବେ, ଏକାନ୍ନବର୍ତ୍ତୀ ପରିବାରର ଗୁରୁଜନ, ଲଘୁଜନମାନଙ୍କ ପ୍ରତି କର୍ତ୍ତବ୍ୟ, ଏହିଭଳି ଏକ ଅସରନ୍ତି ଭାବନାକୁ ମନରେ ଧରି ପିତା ଶ୍ରୀ ବିଶ୍ୱନାଥ ପରିଜା ରୋଜଗାର ଉଦ୍ଦେଶ୍ୟରେ ମୟୂରଭଞ୍ଜ ପର୍ଯ୍ୟନ୍ତ ଚାଲିଯାଇ ପାରିଥିଲେ । ସେଠାରେ ସେ ଜଙ୍ଗଲ ବିଭାଗରେ ଫରେଷ୍ଟଗାର୍ଡ ଚାକିରି ଖଣ୍ଡିଏ କରି ସ୍ୱପ୍ନର ସାର୍ଥକତା ଆଣିବାର ପ୍ରୟାସ କରିଥିଲେ । କିନ୍ତୁ ବିଧିର ବିଧାନ ବିଚିତ୍ର । ଗ୍ରାମ ଚାଟଶାଳୀରୁ ବାଲିକୁଦା ସ୍କୁଲକୁ ଯିବାର ଗୋଟିଏ ବର୍ଷ ପରେ କିଶୋର ପ୍ରାଣକୃଷ୍ଣଙ୍କ ପିତାଙ୍କର ବାରିପଦା

ଠାରେ ଦେହାନ୍ତ ହୋଇଯାଇଥିଲା । ବାପାଙ୍କ ମୃତ୍ୟୁର ବର୍ଷଟିଏ ପରେ ମାଆ ଜୟନ୍ତୀ ଦେବୀ ମଧ୍ୟ ଆରପୁରକୁ ଚାଲିଗଲେ ।

କିନ୍ତୁ ଯାହା ବିଧି ନିର୍ଦ୍ଦିଷ୍ଟ ଥିଲା ତାହା ବା ଅନ୍ୟଥା ହୁଅନ୍ତା କିପରି ? ଅଗଷ୍ଟ ମାସ ୧୫ ତାରିଖ ଯୋଗୀ ଶ୍ରୀ ଅରବିନ୍ଦଙ୍କ ଜନ୍ମଦିବସରେ ସ୍ୱାଧୀନ ଭାରତର ଜନ୍ମ ଯେପରି ତାତ୍ପର୍ଯ୍ୟପୂର୍ଣ୍ଣ ସେହିଭଳି ପ୍ରାଣକୃଷ୍ଣ ପରିଜାଙ୍କ ଜନ୍ମଦିବସ ଏପ୍ରିଲ ପହିଲା (ନିର୍ବୋଧମାନଙ୍କ ଦିନ)ରେ ସ୍ୱତନ୍ତ୍ର ଉତ୍କଳଦିବସ ମଧ୍ୟ କମ୍ ତାତ୍ପର୍ଯ୍ୟପୂର୍ଣ୍ଣ ନୁହେଁ । ଭାରତବର୍ଷର ସାହିତ୍ୟ, ସଂସ୍କୃତି, ଶିକ୍ଷା ଓ ରାଜନୀତି ଯେଭଳି ଭାବେ ଯୋଗୀ ଶ୍ରୀଅରବିନ୍ଦଙ୍କ ଅନସ୍ୱୀକାର କୃତିତ୍ୱକୁ ବହନ କରି ସମୃଦ୍ଧ ସେହିଭଳି ଓଡ଼ିଶାର ଶିକ୍ଷା, ସଂସ୍କୃତି ଓ ରାଜନୀତି ଏହି ଯଶସ୍ୱୀ ଓଡ଼ିଆ ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କ ଦ୍ୱାରା ସମୃଦ୍ଧ । ତେଣୁ ବାଲ୍ୟକାଳରେ ପ୍ରାଣକୃଷ୍ଣଙ୍କ ପିତୃମାତୃ ବିୟୋଗ ତାଙ୍କ ଉନ୍ନତି ପଥରେ ବାଧକ ବା ହୁଅନ୍ତା କିପରି ?

ସ୍ୱାଧୀନତା ପୂର୍ବରୁ ଓଡ଼ିଶାରେ ଶିକ୍ଷାଦାନ ପ୍ରଣାଳୀ ଆଦୌ ସୁଲଭ ନ ଥିଲା । ଗ୍ରାମ ଚାଟଶାଳୀ, ଗୋବରଲିପା, ଏକ ବର୍ଗଗଜ ସ୍ଥାନ, ଦୁଧୁଖଡ଼ିରେ ଅକ୍ଷର ଶିକ୍ଷା, ପାହି ପଣକିଆ, ଭାଗବତ ପଠନ ଲେଖନୀ ଓ ତାଳପତ୍ରରେ ଲାଖନ୍ତ ଓଝାଙ୍କୁ ଧାନ କିଆରିରୁ ହଳା ମାଗିଆଣି ଦେବାରେ ଶିକ୍ଷାର ପରିସମାପ୍ତି । ସେହି ସମୟରେ ମାଇନର ସ୍କୁଲରେ ଇଂରେଜୀ ପାଠ ପଢ଼ିବା ଏକ ବିଳାସ । କାଁ ଭାଁ କେଉଁଠି ଅଳ୍ପ କେତେକ ସ୍କୁଲ । ତାହା ମଧ୍ୟ ପାଖାପାଖି ନ ଥିଲା । ସମସ୍ତ ପ୍ରକାର ପ୍ରତିକୂଳ ପରିବେଶ ।

ଯାହା ହେଲେ ମଧ୍ୟ ବାଲିକୁଦା ଠାରେ ୧୮୮୫ ମସିହାରୁ ପ୍ରତିଷ୍ଠିତ ମାଇନର ସ୍କୁଲର ହେଡ୍‌ମଣ୍ଡିତ ସ୍ୱର୍ଗତ ନନ୍ଦକିଶୋର ସେନଗୁପ୍ତ ଏହି ଅସାଧାରଣ ପ୍ରତିଭାସମ୍ପନ୍ନ ଛାତ୍ରଟିକୁ ଠିକ୍ ସମୟରେ ଠାବ କରିପାରିଥିଲେ । ୧୯୦୪ ମସିହାରେ ସମଗ୍ର ଓଡ଼ିଶାରେ ପ୍ରଥମ ହୋଇ ବାଲିକୁଦା ମାଇନର ସ୍କୁଲରୁ ବୃତ୍ତି ପାଇ ବାଳକ ପ୍ରାଣକୃଷ୍ଣ ଉତ୍ତୀର୍ଣ୍ଣ ହେଲାପରେ କଟକରେ ରେଭେନ୍ସା କଲେଜିଏଟ୍ ସ୍କୁଲରେ ପାଠପଢ଼ା ଆରମ୍ଭ କଲେ । ପ୍ରବେଶିକା ପରୀକ୍ଷାରେ ସମଗ୍ର ପାଟନା ବିଶ୍ୱବିଦ୍ୟାଳୟରେ ୫ମ ସ୍ଥାନ ଓ ସଂସ୍କୃତ ସାହିତ୍ୟରେ ୧ମ ସ୍ଥାନ ଅଧିକାର କରିଥିଲେ । ।

ଶୁଣାଯାଏ ପାଠପଢ଼ା ସାରି ୭ ବର୍ଷ ପରେ ବିଲାତରୁ ଫେରିବା ସମୟରେ ଯେତେବେଳେ ରେଳଗାଡ଼ି ମହାନଦୀ ପୋଲ ପାରି ହେଉଥିଲା ପରିଜାସାହେବ କାନ୍ଦି ଉଠିଥିଲେ । ଜନ୍ମମାଟି ମାତୃଭୂମି, ପ୍ରିୟ ପରିଜନଙ୍କ ମମତା ତାଙ୍କ ହୃଦୟକୁ ଉଦ୍‌ବେଳିତ କରୁଥିଲା । ଆଉ ମଧ୍ୟ ଶୁଣିବାକୁ ମିଳେ ଯେ ପ୍ରଫେସର ପରିଜା ବିଲାତରୁ ଫେରିବା ପରେ ତାଙ୍କର ଜଣେ ବନ୍ଧୁ ତାଙ୍କୁ ଦେଖାକରିବାକୁ ଯାଇ ରାତିରେ ତାଙ୍କର ଅତିଥି ହୋଇଥିଲେ । କେତେ ସୁଖ ଦୁଃଖର ଅତୀତକୁ ରୋମନ୍ଥନ କଲାପରେ ବନ୍ଧୁ

ଜଣକ ପ୍ରକୃତିର ତାଡ଼ନାରେ ବାହାରକୁ ଯିବା ପାଇଁ ବାହାରିଲାରୁ ପ୍ରଫେସର ପରିଜା କହିଥିଲେ, ''ଶ୍ରୀରାମ, ମୋ ପାଇଖାନା ଟିକେ ଦୂରରେ ।'' ନିଜେ ପାଣି ଡାଳଟି ଧରି ବନ୍ଧୁଙ୍କ ସହ ପାଇଖାନା ପର୍ଯ୍ୟନ୍ତ ଯାଇଥିଲେ । ବିଲାତଫେରନ୍ତା ଉଚ୍ଚପଦବୀର ଅଧିକାରୀ ବନ୍ଧୁଙ୍କ ଠାରୁ ଏତେ ନିଷ୍କପଟ ସରଳ ଆଚରଣ ଏବେ ଦେଖିବାକୁ ମିଳୁଛି ତ ?

ପ୍ରଫେସର ପରିଜା ଥିଲେ ନୀତିର ପୂଜାରୀ । ସତ୍ୟ ଆଚରଣ ଥିଲା ତାଙ୍କ ଜୀବନର ଲକ୍ଷ୍ୟ । କର୍ତ୍ତବ୍ୟ ଆଗରେ ସେ କେବେ କାହାକୁ ବଡ଼ ବୋଲି ଦେଖିପାରୁ ନ ଥିଲେ । ରେଭେନ୍ସା କଲେଜର ପ୍ରିନ୍ସିପାଲ ଭାବେ ବହୁବର୍ଷ ସେ ଅତିବାହିତ କରିଛନ୍ତି । କୁହାଯାଏ ପ୍ରଫେସର ପରିଜାଙ୍କୁ କଲେଜର କରିଡରରେ ଦେଖି ଛାତ୍ରମାନେ ନିଜ ନିଜର ଘଣ୍ଟା ମିଳାଇ ନିଅନ୍ତି । ଏଇ ସାମାନ୍ୟ ଉଦାହରଣଟି ପ୍ରମାଣିତ କରେ ସେ କେତେଦୂର ସମୟାନୁବର୍ତ୍ତୀ ଥିଲେ ।

ଉତ୍କଳ ବିଶ୍ୱବିଦ୍ୟାଳୟରେ ଦୀର୍ଘ ସମୟ ପାଇଁ ସେ କୁଳପତି ଥିଲେ । ବନାରସ ହିନ୍ଦୁ ବଶ୍ୱବିଦ୍ୟାଳୟର ଉପ-କୁଳପତି (ପ୍ରୋ-ଭାଇସ୍‌ଚାନ୍‌ସେଲର), ଭାରତୀୟ ବିଜ୍ଞାନ କଂଗ୍ରେସର ସଭାପତି, ୟୁନିଭରସିଟି ଗ୍ରାଣ୍ଟସ୍ କମିସନର ଶିକ୍ଷାଶାଖାର ଚେୟାରମ୍ୟାନ୍, ପଦ୍ମଭୂଷଣ ଆଦି ସମସ୍ତ ଉଚ୍ଚ ସମ୍ମାନର ସେ ଅଧିକାରୀ ଥିଲେ । ଦେଖାଯାଏ ଜଣେ ବ୍ୟକ୍ତିର ଗୋଟିଏ ଦିଗରେ ଉନ୍ନତି ହେଉଥିବା ବେଳେ ଅନ୍ୟ କେଉଁ ଦିଗରେ ଅବନତି ଘଟିଥାଏ, କିନ୍ତୁ ପରିଜାସାହେବ ଏକ ବ୍ୟତିକ୍ରମ । ତାଙ୍କର ବାହ୍ୟ ଓ ଆଭ୍ୟନ୍ତରୀଣ ବ୍ୟାପାରରେ ସମତା ଥିଲା । ସେ ଥିଲେ ଜଣେ ସଫଳ ଗୃହୀ । ତାଙ୍କର ପ୍ରତ୍ୟେକ ପିଲା ଜଣେ ଜଣେ ଉତ୍ତମ ଗୁଣସମ୍ପନ୍ନ ଉପଯୁକ୍ତ ପିତାଙ୍କର ଉପଯୁକ୍ତ ସନ୍ତାନ ଭାବେ ସମାଜରେ ପ୍ରତିଷ୍ଠା ଲାଭ କରିପାରିଛନ୍ତି ।

ସେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ଉପ-କୁଳପତି ଥିଲାବେଳେ ବାଲିକୁଦାର କେତେଜଣ ସ୍ୱାଧୀନତା ସଂଗ୍ରାମୀ ବନ୍ଧୁ ତାଙ୍କୁ ଅନୁରୋଧ କରିଥିଲେ, ''ଆପଣ ଆସନ୍ତୁ, ବାଲିକୁଦାବାସୀଙ୍କର ଲୋକପ୍ରତିନିଧି ଭାବେ ବିଧାନସଭାକୁ ଆପଣଙ୍କୁ ପଠାଇବା ପାଇଁ ବାଲିକୁଦାବାସୀ ଚାହାନ୍ତି । ସ୍ୱାଧୀନ ପ୍ରାର୍ଥୀଭାବେ 'ଗୋଲାପଫୁଲ' ସଙ୍କେତରେ ସମଗ୍ର ନିର୍ବାଚନ ମଣ୍ଡଳୀରେ ପ୍ରଚାର ନ କରି ମଧ୍ୟ ସେ ନିର୍ବାଚିତ ହୋଇଥିଲେ ।

ବାଲିକୁଦାର କୃତୀସନ୍ତାନ ଗର୍ବ ଓ ଗୌରବ, ଓଡ଼ିଶାର ଶିକ୍ଷା ଆକାଶର ସେ ଧ୍ରୁବତାରା । ସେହି ମହାନ୍ ଶିକ୍ଷାବିତ୍ ପ୍ରଖ୍ୟାତ ବୈଜ୍ଞାନିକ ତଥା ବାଲିକୁଦାର ବ୍ୟାସଦେବ ସ୍ୱର୍ଗତ ଡକ୍ଟର ପରିଜାଙ୍କ ପବିତ୍ର ସ୍ମୃତି ପ୍ରତି ମୁଁ ମୋର ବିନମ୍ର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଅଛି ।

(ଶ୍ରୀ ବସନ୍ତକୁମାର ରାୟଙ୍କ ସୌଜନ୍ୟରୁ ପ୍ରାପ୍ତ)

# ଡକ୍ଟର ପରିଜାଙ୍କୁ ମୁଁ ଯେପରି ଜାଣେ

**ବିଶ୍ୱନାଥ ଦାଶ**

ଭାରତରେ ଶିକ୍ଷା ଓ ଗବେଷଣା କ୍ଷେତ୍ରରେ ସୁଖ୍ୟାତି ଅର୍ଜନ କରିଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ସ୍ୱର୍ଗତ ଡକ୍ଟର ପ୍ରାଣକୃଷ୍ଣ ପରିଜା ଥିଲେ ଅନ୍ୟତମ ଯୋଗ୍ୟସନ୍ତାନ । ଜଣେ ଅଧ୍ୟାପକ ରୂପେ ତାଙ୍କର କେତେଗୁଡ଼ିଏ ଜାଜ୍ୱଲ୍ୟମାନ ଉତ୍କର୍ଷ ଦକ୍ଷତା ଥିଲା ଯାହାକି ଥିଲା ତାଙ୍କର ନିଜସ୍ୱ ଅସାଧାରଣ ବୈଶିଷ୍ଟ୍ୟ । ଆଜିକାଲି ଭାରତର ଦୁର୍ଭାଗ୍ୟ ହେଉଛି ଯେ ଆମର ଗୁରୁକୁଳ ଶିକ୍ଷାଦାନ ପଦ୍ଧତି ଆଉ ପ୍ରଚଳିତ ନାହିଁ ଯେଉଁଥିରେକି ପ୍ରକୃତ ଶିକ୍ଷା ବିକାଶ ଓ କ୍ରମବୃଦ୍ଧିରେ ତାଙ୍କ ଭଳି ଜଣେ ଦକ୍ଷ ପ୍ରବୀଣ କୁଶଳୀ ଲବ୍ଧପ୍ରତିଷ୍ଠ ଜ୍ଞାନୀ ବ୍ୟକ୍ତିଙ୍କର ପରିପକ୍ୱ ଜ୍ଞାନର ପୂର୍ଣ୍ଣ ସଦୁପଯୋଗ କରିହେବ । କିନ୍ତୁ ପ୍ରଚଳିତ ଶିକ୍ଷା ପଦ୍ଧତିରେ ଡକ୍ଟର ପରିଜା ଆଦର୍ଶ ଶିକ୍ଷାଦାନରେ ବହୁ ପରିମାଣରେ ସଫଳତା ହାସଲ କରିବାରେ କ୍ଷମ ହୋଇପାରିଛନ୍ତି । ସେ ଥିଲେ ଜଣେ କଠୋର କର୍ତ୍ତବ୍ୟନିଷ୍ଠ ଶିକ୍ଷାବିତ୍ ଏବଂ ବୃଥାରେ ଗୋଟିଏ ମୁହୂର୍ତ୍ତ ବ୍ୟୟ ହୋଇଯିବାକୁ ସେ ପ୍ରଶ୍ରୟ ଦେଉ ନ ଥିଲେ (ସହ୍ୟ କରିପାରୁ ନ ଥିଲେ) । ତାଙ୍କ ପକ୍ଷରେ ସମୟ ହିଁ ଥିଲା ଜୀବନ ଏବଂ ସେ ମୂଲ୍ୟବାନ୍ ସମୟ ଯଥୋପଯୁକ୍ତ ସଦ୍‌ବ୍ୟବହାର ଉପରେ ଗୁରୁତ୍ୱ ପ୍ରଦାନ କରୁଥିଲେ । ଭାରତୀୟ ଶିକ୍ଷାସେବାରେ ନିଯୁକ୍ତି ପ୍ରାପ୍ତ ହୋଇଥିବା ଯୋଗୁଁ ତାଙ୍କର ବେତନ ବହୁତ ବେଶୀ ଥିଲା ଏବଂ ସରକାରୀ କର୍ମକର୍ତ୍ତାଙ୍କ ମଧ୍ୟରେ ତାଙ୍କର ଆସ୍ଥାନ ସାଧାରଣ ସ୍ତରଠାରୁ ଅତି ଉଚ୍ଚରେ ଥିଲା ।

ମୋର ପ୍ରଥମ ମନ୍ତ୍ରିତ୍ୱ କାଳର ଗୋଟିଏ ଘଟଣା ସ୍ମରଣକୁ ଆସୁଛି । ସେତେବେଳେ କଂଗ୍ରେସ କାର୍ଯ୍ୟକାରୀ କମିଟିର ସିଦ୍ଧାନ୍ତ ଅନୁସାରେ ପ୍ରଦେଶର ମୁଖ୍ୟମନ୍ତ୍ରୀମାନେ ନିଜକୁ "ପ୍ରଧାନମନ୍ତ୍ରୀ" ପଦବାଚ୍ୟ କରୁଥିଲୁ । ଆମ୍ଭେମାନେ ଏକ ପ୍ରବଳ ଛାତ୍ର ଆନ୍ଦୋଳନର ସମ୍ମୁଖୀନ ହୋଇଥିଲୁ । ମୋର ମନେଅଛି ଜଣେ ଅଧ୍ୟକ୍ଷ ରୂପେ ଡକ୍ଟର ପରିଜା ବିଦ୍ୟାର୍ଥୀମାନଙ୍କ ପ୍ରତି ସବୁବେଳେ ସଦୟ ଓ ମହାନୁଭବ ଥିଲେ ଏବଂ ତତ୍ ସଙ୍ଗେ ସଙ୍ଗେ ଜଣେ ଦୃଢ଼ ଶୃଙ୍ଖଳାପ୍ରିୟ ନିୟମାନୁବର୍ତ୍ତୀ ପ୍ରଶାସକ ଥିଲେ । ସେତେବେଳର ରାଜନୈତିକ ଆବହାୱାରେ ପ୍ରରୋଚିତ ହୋଇ ଛାତ୍ରମାନେ କୌଣସି ଯୁକ୍ତିଯୁକ୍ତ କାରଣ ନ ଥାଇ ଏକ ଆନ୍ଦୋଳନ ଆରମ୍ଭ କରିଦେଇଥିଲେ ଓ ଅବାଞ୍ଛିତ ଅଶୋଭନୀୟ ଆଚରଣ ପ୍ରଦର୍ଶନ କରିଥିଲେ । ଡକ୍ଟର ପରିଜାଙ୍କ ଭଳି ଜଣେ ମର୍ଯ୍ୟାଦାବନ୍ତ, ଗୁଣୀ,

ପ୍ରତିଷ୍ଠାବାନ୍ ଓ ସଂସ୍କୃତିସମ୍ପନ୍ନ ବ୍ୟକ୍ତି କଲେଜ ଛାତ୍ରମାନଙ୍କଠାରୁ ଏଭଳି ବ୍ୟବହାର କେବେ ଆଶା କରି ନ ଥିଲେ । ସେତେବେଳେ ଥିଲା ଇଂରେଜ ରାଜତ୍ୱ ଯେତେବେଳେ ଆଇନକାନୁନ୍ ଓ ଶାନ୍ତିଶୃଙ୍ଖଳାକୁ ସବୁଠାରୁ ଅଧିକ ପ୍ରାଧାନ୍ୟ ଦିଆଯାଉଥିଲା । ଶିକ୍ଷା ବିଭାଗର ଓ ସେକ୍ରେଟେରିଏଟ୍‌ର ଇଉରୋପୀୟ ଉଚ୍ଚ ପ୍ରଶାସକବୃନ୍ଦ ଅତିଶୟ ବିଚଳିତ ହୋଇପଡ଼ିଲେ । ଆମ୍ଭମାନଙ୍କ ପକ୍ଷରେ ବେନିୟମ କାର୍ଯ୍ୟ ସହିବାର ଏକ ସୀମା ଥିଲା । ଦୁର୍ଭାଗ୍ୟକୁ ରାଜନୀତିକ ବ୍ୟକ୍ତିବିଶେଷଙ୍କ ଦ୍ୱାରା ପ୍ରଚୋଦିତ ଆନ୍ଦୋଳନର କୌଣସି ସୀମା ରହିଲା ନାହିଁ ଏବଂ ଯେଭଳି ଭାବରେ ଆନ୍ଦୋଳନ ପରିଚାଳିତ ହେବାକୁ ଲାଗିଲା ଓ ଛାତ୍ରମାନେ ବିଶୃଙ୍ଖଳ ଆଚରଣ ପ୍ରଦର୍ଶନ କଲେ ତାହା ଯେ କୌଣସି ବିବେକୀ ଶିକ୍ଷକ ସହ୍ୟ କରିବା ଦୁରୂହ ହୋଇପଡ଼ିଲା । ସରକାର ଦୃଢ଼ ସିଦ୍ଧାନ୍ତ ଗ୍ରହଣ କଲା ଓ ଛାତ୍ରମାନେ ନିଜ ହାତରେ ଆଇନ କାନୁନ୍ ଗ୍ରହଣ ନ କରିବାକୁ ସେମାନଙ୍କୁ ସବୁବେଳେ ପରାମର୍ଶ ଦେଲା । କିନ୍ତୁ ଛାତ୍ରମାନେ ଆନ୍ଦୋଳନ ଜାରି ରଖିଲେ ଓ କାହାରି କଥା ଶୁଣିଲେ ନାହିଁ । ରାଜନୀତିକ ବ୍ୟକ୍ତିମାନେ ଆନ୍ଦୋଳନକୁ ଚାଲୁ ରଖିବା ପାଇଁ ଓ ଅଧିକ ବ୍ୟାପକ କରିବା ପାଇଁ ପ୍ରବର୍ତ୍ତାଉଥାନ୍ତି । ମୋର ମନ୍ତ୍ରିମଣ୍ଡଳ କେତେକ ଆନ୍ଦୋଳନକାରୀ ଛାତ୍ରଙ୍କର ମାତ୍ରାଧିକ୍ୟ ବିଶୃଙ୍ଖଳ କାର୍ଯ୍ୟକୁ କ୍ଷମା ଦେବା ପାଇଁ କେତେକ ସିଦ୍ଧାନ୍ତ ଅଗତ୍ୟା ଗ୍ରହଣ କରିବାକୁ ନିଷ୍ପତ୍ତି ଗ୍ରହଣ କଲେ । ପ୍ରକୃତପକ୍ଷେ ଛାତ୍ରମାନଙ୍କର କେତେକ କାର୍ଯ୍ୟ ଅତି ଅଧିକ ମାତ୍ରା ଲଘନ କରିଯାଇଥିଲା ଓ କ୍ଷମାଦେବାର ବହିର୍ଭୂତ ହୋଇଥିଲା ।

କେତେକ ଘଣ୍ଟା ପରେ ମୋର ବିସ୍ମୟକୁ ଡକ୍ଟର ପରିଜାଙ୍କ ଇସ୍ତଫାପତ୍ର ମୋର ହସ୍ତଗତ ହୋଇଥିଲା । ସେ ତାଙ୍କ ଇସ୍ତଫାପତ୍ରରେ ଉଲ୍ଲେଖ କରିଥିଲେ ଯେ ଏଭଳି ପରିସ୍ଥିତିରେ ସେ ଆବଶ୍ୟକ ଶୃଙ୍ଖଳା ରକ୍ଷା କରି ଶିକ୍ଷାନୁଷ୍ଠାନକୁ ବିଚାରବୁଦ୍ଧିସମ୍ପନ୍ନ ମାର୍ଗରେ ପରିଚାଳନା କରିବାକୁ ସମର୍ଥ ହେବେ ନାହିଁ ।

ମୁଁ ହୃଦୟଙ୍ଗମ କଲି ଯେ ତାଙ୍କର ଇସ୍ତଫାପତ୍ର କେବଳ କାଗଜ କଲମରେ ଏକ ଧମକପୂର୍ଣ୍ଣ ଲେଖା ନୁହେଁ, ଏହା ଥିଲା ତାଙ୍କର ବାସ୍ତବ ଚିନ୍ତାଧାରା । ଦୁଇ ତିନି ଧରି ତାଙ୍କ ସହିତ ଆଲୋଚନା ହେଲା । ଆଲୋଚନା ମାଧ୍ୟମରେ ଡକ୍ଟର ପରିଜା ତାଙ୍କର ପ୍ରକୃତ ଅସୁବିଧାଗୁଡ଼ିକ ଅବତାରଣା କରିଥିଲେ, ତାଙ୍କର ସନ୍ଦେହ ମୋଚନ ହୋଇଥିଲା ଓ ଶେଷରେ ତାଙ୍କର ଇସ୍ତଫାପତ୍ର ଫେରାଇନେବାକୁ ସେ ରାଜି ହୋଇଥିଲେ ।

ଡକ୍ଟର ପରିଜା କାର୍ଯ୍ୟକ୍ଷେତ୍ରରେ ଜଣେ ପ୍ରକୃତ ବନ୍ଧୁ ଥିଲେ ଓ ବିପଦ ଆପଦରେ ଜଣେ ପ୍ରକୃଷ୍ଟ ବନ୍ଧୁ ଥିଲେ । ଥରେ ସେ ଗୋଟିଏ କଥାରେ ସମ୍ମତି ପ୍ରଦାନ କଲେ ସେ ଦୃଢ଼ ରୂପେ ତାକୁ ପାଳନ କରୁଥିଲେ । ସେ ଥିଲେ ହୃଦୟରଜ୍ଜୁରେ ବନ୍ଧା ଜଣେ

ଅନାବିଳ ସ୍ନେହୀ ବନ୍ଧୁ, ଜଣେ ଦାର୍ଶନିକ ଓ ବୈଜ୍ଞାନିକର ବିଜ୍ଞ ପରିପକ୍ୱ ଉର୍ବର ଚିନ୍ତାଧାରାସମ୍ପନ୍ନ ଜଣେ ପଥପ୍ରଦର୍ଶକ ।

ସେ ଆଉ ଇହଜଗତରେ ନାହାନ୍ତି, କିନ୍ତୁ ତାଙ୍କର ଉଜ୍ଜ୍ୱଳ ଆଦର୍ଶ ପ୍ରତିମା ସବୁ କାଳେ ତାଙ୍କର ଅଗଣିତ ଛାତ୍ରମାନଙ୍କର, ସହକର୍ମୀମାନଙ୍କର ଓ ଦେଶବାସୀଙ୍କର ହୃଦୟରେ ପ୍ରତିଷ୍ଠିତ ହୋଇ ରହିଥିବ ।

(ଶ୍ରୀ ବିବେକାନନ୍ଦ ପଟ୍ଟନାୟକଙ୍କ ମୁଖ୍ୟ ସଂପାଦନାରେ ପ୍ରକାଶିତ 'ଉତ୍କଳ ପ୍ରସଙ୍ଗ' ସ୍ୱତନ୍ତ୍ର ସଂଖ୍ୟା, ୧୯୭୮ରେ ସ୍ଥାନିତ ମୂଳ ଇଂରାଜୀ ଲେଖାରୁ ଡକ୍ଟର ଗଦାଧର ମିଶ୍ରଙ୍କ ଦ୍ୱାରା ଓଡ଼ିଆରେ ଅନୂଦିତ ।)

# ଡକ୍ଟର ପରିଜା ଓ କଳାବିକାଶ କେନ୍ଦ୍ର

**ବୈକୁଣ୍ଠନାଥ ମହାନ୍ତି**

ପ୍ରାଣକୃଷ୍ଣ ପରିଜା, ପରିଜାସାହେବ, ଡକ୍ଟର ପରିଜା ଜଣଙ୍କ ନାମ କିନ୍ତୁ ତାର ଭିନ୍ନ ଭଗ୍ନାଂଶ । ତାଙ୍କ ଘର ଆମ ଗାଁ ପାଖରେ । ଆମ ଗାଁକୁ ଗଲେ ତାଙ୍କ ଜନ୍ମସ୍ଥାନ ଇଛାପୁର ଦେଇ ଯିବାକୁ ପଡ଼େ । ଆମର ମହାଭାଗ୍ୟ ଯେ ୧୮୮୫ ମସିହାରେ ତତ୍‌କାଳୀନ ଜମିଦାର ପରୀକ୍ଷିତ ଦାସ ଯେଉଁ ମାଇନର ସ୍କୁଲଟି ସ୍ଥାପନ କରିଥିଲେ, ଡକ୍ଟର ପରିଜା ପ୍ରଥମେ ସେହି ସ୍କୁଲରେ ପଢ଼ି ଶିକ୍ଷାର ପାହାଚ ଉପରେ ପାହାଚ ଚଢ଼ି ବିଲାତ ଯାଇ ଉଦ୍ଭିଦ ବିଜ୍ଞାନରେ ସର୍ବୋଚ୍ଚ ଡିଗ୍ରୀ ପାଇ ଦେଶକୁ ଫେରିଲେ । ଜଣେ କୃତୀ ଶିକ୍ଷକ ହିସାବରେ ବହୁ ଛାତ୍ରଙ୍କୁ ସେ ଶିକ୍ଷା ଦେଲେ, ନାଁ କମାଇଲେ, ସାହେବ ହେଲେ, ଅର୍ଥର ମଧ୍ୟ ଅଭାବ ହେଲା ନାହିଁ ।

ସେବକାର ହେଡ଼ପଣ୍ଡିତ ନନ୍ଦକିଶୋର ସେନଗୁପ୍ତଙ୍କଠାରୁ କେତେ ଯେ ଛେଚା ଖାଇଚୁ ତାର ତୁଳନା ନାହିଁ । ପ୍ରାଣକୃଷ୍ଣ ପରିଜାଙ୍କ କଥାକୁ ଉଲ୍ଲେଖ କରି ପଣ୍ଡିତେ କହନ୍ତି, "ଜାଣିଚରେ ମେଣ୍ଢାମାନେ, ଏଇ ହାତରେ ଏଇ ଖଣ୍ଡିଆ ପେନ୍‌ସିଲରେ ପ୍ରାଣକୃଷ୍ଣକୁ ମଧ୍ୟ କୁଟି ଦେଇଛି ।" ପଣ୍ଡିତେ ଜାଣନ୍ତି ନାହିଁ ଯେ ପ୍ରାଣକୃଷ୍ଣଙ୍କ ପିଲା ଅମଳରୁ ଆମ ପିଲା ଅମଳ ମଧ୍ୟରେ କେତେ ବର୍ଷ ବିତିଗଲାଣି । କେତେ ଷଡ଼ଋତୁ ଚାଲିଗଲାଣି । କେତେ ପେନ୍‌ସିଲ୍ ମୁଣ୍ଡା ହେଲାଣି, କେତେ ଶହ ପେନ୍‌ସିଲ୍ ଭାଙ୍ଗିରୁଜି ଗଲାଣି ।

୧୯୩୦ ମସିହାର ଅସହଯୋଗ ଆନ୍ଦୋଳନ ବେଳେ କଟକ ଗଲା ପରେ ପ୍ରଫେସର ପରିଜାଙ୍କୁ ଥରେ ଦି'ଥର ଦେଖିବାର ସୌଭାଗ୍ୟ ମୋର ହୋଇଛି, କିନ୍ତୁ ତାହା ଦୂରରୁ ପାଖ କେବେ ମାଡ଼ି ନାହିଁ । ୧୯୪୯ କି ୧୯୫୦ ମସିହା ହେବ, ମୋର ସ୍ପଷ୍ଟ ମନେପଡୁ ନାହିଁ, ସ୍ୱର୍ଗୀୟ ସାରଙ୍ଗଧର ଦାସ ଗଙ୍ଗାମନ୍ଦିରସ୍ଥ କୃଷକ ପ୍ରେସ୍‌ରେ ରହୁଥାଆନ୍ତି । ସାରଙ୍ଗବାବୁଙ୍କର ଖଣ୍ଡେ ଚିଠି ନେଇ ମୁଁ ପରିଜାସାହେବଙ୍କ ପାଖକୁ ଗଲି । ସାରଙ୍ଗଧର ବାବୁ ତାଙ୍କର ଘନିଷ୍ଠ ବନ୍ଧୁ । ଦୁଇଜଣଙ୍କ ଭିତରେ ଅଘୋର ପ୍ରୀତି, ସ୍ନେହ ଓ ମମତା ଭରି ରହିଥାଏ । ଅଚ୍ଛେଦ୍ୟ ତାର ବନ୍ଧନ ।

ସାରଙ୍ଗଧରବାବୁ କେବେ କଟକ ଆସିଲେ ପ୍ରାୟ ପରିଜାସାହେବଙ୍କ ଘରେ ରହୁଥିଲେ । କେଉଁ ଢାଙ୍ଗରେ ବେହେରାକୁ ଡାକିବି, କେମିତି ନମସ୍କାର କରିବି,

କେଉଁ ଭାବରେ ଚିଠି ବଢ଼େଇବି ମତେ ସେ ବୁଝେଇଦେଲେ । ଏକରକମ ଗିହରସାଲ କହିଲେ ଚଳେ । ମୁଁ କହିଲି, "ଆଜ୍ଞା ସେସବୁ ମତେ ଭଲଭାବରେ ଜଣା । ମୁଁ ୫ ବର୍ଷ କାଳ ପଦବ୍ରଜରେ ଭାରତ ଭ୍ରମଣ କଲାବେଳେ ବହୁ ଗୋରାସାହେବଙ୍କୁ ଭେଟି ଏସବୁ କାଇଦା କଟକଣା ଜାଣିଯାଇଛି । ଏ ତ କଳାସାହେବ, ପୁଣି ଆମ ଗାଁ ପାଖର । ଆପଣଙ୍କ ଚିଠି ତାଙ୍କ ହାତରେ ସମ୍ମାନରେ ପଡ଼ିଲେ ହେଲା ।"

ସାଇକେଲ ମାରି ପରିଜାସାହେବଙ୍କ କୋଠିରେ ପହଞ୍ଚିଲି । ସେତେବେଳେ ଅନ୍ୟ ପାଖର କୋଠା ଅଳ୍ପ ତିଆରି ହୋଇଥାଏ । ପରିଜା ରହୁଥାନ୍ତି ବଡ଼ ଚାଳଘରେ । ଦେଶୀସାହେବ, କାଳେ କୁକୁର ଥିବ ଭାବି ଦୂରରୁ ବେହେରା, ବେହେରା ବୋଲି ଡାକିଲି । କେହି ନ ଶୁଣିବାରୁ କୁକୁର ନ ଭୁକିବାରୁ ପାଦେ ପାଦେ ଆଗେଇ ଘର ପାହାଚ ପାଖରେ ଜୋରରେ ଡାକିଲି । ହଠାତ୍ ଘରୁ ବାହାରି ପଡ଼ିଲେ ସୁଟ୍ ବୁଟ୍ ପିନ୍ଧା ପରିଜାସାହେବ । ଆଖିରେ ଚଷମା, ବଳିଷ୍ଠ ଗଢ଼ୁ ଚେହେରା, ସିଧାସଳଖ ହୋଇ ଠିଆହୋଇଗଲେ । ଅଣ୍ଟା ଟିକିଏ ହେଲେ ବଙ୍କେଇ ନାହିଁ । କେଉଁଆଡ଼େ ଯିବେ ବୋଲି ବୋଧେ ବାହାରି ଥାଆନ୍ତି, କାରଣ ଘଣ୍ଟାଟିକୁ ବାରମ୍ବାର ଦେଖୁଥାଆନ୍ତି । ମୋତେ ପ୍ରଶ୍ନ କଲେ, "କିଏ ତୁମେ ? କ'ଣ କର ? କେଉଠି ଗୃହ ?" ମୁଁ କହିଲି, "ମୁଁ ଜଣେ ପତ୍ରବାହକ । ଆପଣ ଯଦି ପରିଜାସାହେବ ହୋଇଥାନ୍ତି ତେବେ ସାରଙ୍ଗଧରବାବୁଙ୍କ ଠାରୁ ଖଣ୍ଡେ ଚିଠି ଆଣିଛି । ଆପଣ ଏ ଖଣ୍ଡିକ ଚିଠି ପାଇଲେ ବୋଲି ଦି'ଧାଡ଼ି ଲେଖି ଦିଅନ୍ତୁ ।" ସେ ଭିତରକୁ ଗଲେ । ଇଂରେଜୀରେ ଦି'ପଦ ଲେଖି ମୋ ହାତକୁ ବଢ଼େଇ ଦେଲେ ।

ସେ ଚିଠି ଖଣ୍ଡିକ ନେଇ ନମସ୍କାର କରି ଫେରିଆସୁଛି, କହିଲେ, "ଶୁଣ, ତୁମ ଘର କେଉଁଠି ? ନାଁ କ'ଣ ? ସୋସିଆଲିଷ୍ଟ ପାର୍ଟିରେ ଖାଲି ପତ୍ରବାହକ ରୂପେ ଥାଅ, ନା ଆଉ କିଛି କିଛି କର ?" ମୁଁ କହିଲି, "ମୋ ନାଁ ବୈକୁଣ୍ଠନାଥ ମହାନ୍ତି, ଥାନା-ବାଲିକୁଦା, ଘର କଣିଆ, ମୁଁ ଖାଲି ପତ୍ରବାହକ ନୁହେଁ । ଦେଶାତ୍ମବୋଧକ ଗୀତ ଲେଖେ ଓ ବୋଲେ । ନାଟକ ଲେଖେ, ପୁଣି ତହିଁରେ ଅଭିନୟ କରେ । ବକ୍ତୃତା ଦିଏ, ପୁଣି ବକ୍ତୃତା ଶୁଣେ । ପାର୍ଟିର ପ୍ରଚାରପତ୍ର ବାଣ୍ଟେ, କାନ୍ଥରେ ପୋଷ୍ଟର ଲଗାଏ । ନେତାଙ୍କ ଅଭାବରେ ସଭାରେ ପେଟି ନେତା ହେଇଯାଏ ।" ଆଶ୍ଚର୍ଯ୍ୟ ହୋଇ ସେ ମୋତେ ଚାହିଁଥା'ନ୍ତି । ପାଟିରୁ କଥା ବାହାରୁ ନ ଥାଏ । ଯାହାର ସମୟ ଅତି ମୂଲ୍ୟବାନ୍ ସେ ଏତେ ସମୟ ଦେଇ ମୋ କଥା ଶୁଣିବେ ବୋଲି ମୁଁ ଭାବି ନ ଥିଲି । ସାରଙ୍ଗଧରବାବୁଙ୍କୁ ସେ କହିଲେ ତୁମ ପତ୍ରବାହକ ଯାହା ମତେ ବତେଇ ଦେଇଗଲା, ମୁଁ ଶୁଣି ଅବାକ୍ । ସାରଙ୍ଗଧରବାବୁ କହିଲେ କଥା କଥାକେ ସେ ଲୋକଙ୍କୁ ଭାରି ହସାଏ । ମୁଁ ତା ନାଁ ଦେଇଚି "ବିଦୂଷକ" ।

ପୁଣି ପରିଜାସାହେବଙ୍କ ସହ ଭେଟ ହେଲା ବାଲିକୁଦାର ନିର୍ବାଚନ ରଣାଙ୍ଗନରେ, ୧୯୫୨ ମସିହାରେ । କଂଗ୍ରେସ ତରଫରୁ ପ୍ରାର୍ଥୀ ଥାଆନ୍ତି ସ୍ୱର୍ଗୀୟ ଭାଗୀରଥି ମହାପାତ୍ର । ସୋସିଆଲିଷ୍ଟ ପାର୍ଟି ତରଫରୁ ଠିଆ ହୋଇଥାନ୍ତି ବସନ୍ତ ସାହୁ । ସ୍ୱାଧୀନ ପ୍ରାର୍ଥୀ ଭାବରେ ଲଢୁଥାନ୍ତି ଡକ୍ଟର ପ୍ରାଣକୃଷ୍ଣ ପରିଜା । ବାଲିକୁଦାର ସମସ୍ତ ବୁଦ୍ଧିଜୀବୀ, ସ୍କୁଲ କଲେଜର ଛାତ୍ର, ଏମିତିକି ବାହାରୁ ଅନେକ ଭଦ୍ରବ୍ୟକ୍ତି ଓ ଭଦ୍ରମହିଳା ଆସି ତାଙ୍କୁ ନିର୍ବାଚନରେ ସାହାଯ୍ୟ କରୁଥାନ୍ତି । ପରିଜାସାହେବ ସୁଟ୍‌ବୁଟ୍ ଛାଡ଼ି ଧୋତି ପଞ୍ଜାବି ଓ ଚପଲ ପିନ୍ଧି ଗାଁ ଗାଁରେ ବୁଲିଲେ । କାର୍ ଛଡ଼ା ଯାହାର ପାଦ ତଳେ ପଡ଼େନା ସେ କୋଇଲିଖିଆ କଣ୍ଟା, ପାଣିକାଦୁଅରେ ଚାଲି ତାଙ୍କର ଅବସ୍ଥା ଯାହା ହୋଇଥିବ ସହଜେ ଅନୁମେୟ ।

ପାଉଁରୁଟି, ବଟର, ଜେଲିଜାମ୍, ବିସ୍କୁଟ୍, ଅଣ୍ଡାପୋଚ୍ ଯାହାର ଜଳଖିଆ, ଅନ୍ୟାନ୍ୟ ସାହେବୀଖାନା ଛଡ଼ା ଭାତ ଡାଲି ଯାହାକୁ ରୁଚେନା ସେ ଗାଁ ଲୋକଙ୍କ ହାତତିଆରି ଗୁଆଘିଅର ମଣ୍ଡା, କାକରା, ଚୁଡ଼ାଘସା, ଖିରିପୁଳି ଖାଇବା ଫଳରେ ହିତେ ବିପରୀତ ହେଲା । ତାଙ୍କ ଦେହରେ ଏସବୁ ଗଲା ନାହିଁ । ସେ ଅସୁସ୍ଥ ହୋଇ ପଡ଼ିଲେ । ସେ ଯାହା ହେଉ ପରିଜାସାହେବଙ୍କର ଜିତାପଟ ହେଲା । କଂଗ୍ରେସର ଆଠହଜାର, ପରିଜାସାହେବଙ୍କର ଆଠହଜାର ଦୁଇଶହ, ଆମର କର୍ମୀ ବା ଅର୍ଥ ନ ଥାଇ ଆମେ ପ୍ରାୟ ଛଅହଜାର ଭୋଟରୁ ଅଧିକ ପାଇଲୁ । ଭୋଟ ବେଳେ ଏବଂ ନିର୍ବାଚିତ ହେବା ପରେ ମଝିରେ ମଝିରେ ତାଙ୍କର ମୋର ଭେଟ ହୋଇଯାଉଥାଏ, କିନ୍ତୁ ସେ ମତେ ଭଲଭାବରେ ଚିହ୍ନି ପାରୁ ନ ଥାନ୍ତି ।

ପୁଣି ଭେଟ ହୁଏ ଯେତେବେଳେ ୧୯୫୨ ଅଗଷ୍ଟ ମାସରେ କଳାବିକାଶ କେନ୍ଦ୍ର ଗଢ଼ି ଶ୍ରୀ ଶ୍ୟାମସୁନ୍ଦର ମିଶ୍ର, ଶ୍ରୀ ବାବୁଲାଲ ଦୋଶୀ ଓ ମୁଁ ତାଙ୍କୁ ଆମର ପ୍ରଥମ ସଭାପତି ଭାବରେ ରହିବାକୁ ଅନୁରୋଧ କଲୁ । ପ୍ରଥମ କିନ୍ତୁ ସେ ମନା କରୁଥିଲେ, କିନ୍ତୁ ପରେ ଶ୍ୟାମସୁନ୍ଦରବାବୁଙ୍କ ଏକାନ୍ତ ଅନୁରୋଧ ଏବଂ ଆମର ବିନମ୍ର ନିବେଦନ ଏଡ଼ାଇ ନ ପାରି ରାଜି ହେଲେ । ଡକ୍ଟର ପରିଜାଙ୍କ ନାମରେ କି କୁହୁକ ଥିଲା କେଜାଣି, ସେ ସଭାପତି ହେବା ମାତ୍ରେ ଆମର ଶକ୍ତି, ସାହସ ଓ ସମ୍ବଳ ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଲା । ଓଡ଼ିଆବଜାରର ଗୋଟିଏ ଘରୁ ଗଙ୍ଗାମନ୍ଦିର, ଗଙ୍ଗାମନ୍ଦିରରୁ ବାଙ୍କାବଜାର, ବାଙ୍କାବଜାରରୁ ବର୍ତ୍ତମାନ ଯେଉଁଠି କେନ୍ଦ୍ର ନିଜର ଘର କରି କଳାର କୋଣାର୍କ ଗଢ଼ି ଗର୍ବରେ ମୁଣ୍ଡ ଟେକି ଠିଆ ହେଇଛି । ତାଙ୍କ ନାଁ ନେଇ ଆମେ ବଢ଼ି ଚାଲିଲୁ, ଗଢ଼ିଚାଲିଲୁ ।

ମଣିଷ ହିସାବରେ ସେ ଯେ କେତେ ଟାଣୁଆ ତାର ଗୋଟିଏ ଛୋଟ ଉଦାହରଣ ମୁଁ ଦେଉଛି । ସେତେବେଳେ ଆମର କଳାବିକାଶ କେନ୍ଦ୍ରର ପ୍ରଥମ ମହଲା କୋଠା

ନିର୍ମାଣ ଚାଲିଥାଏ । ଆମେ ଦ୍ୱାର ଦ୍ୱାର ବୁଲି ଭିକ୍ଷା ମାଗି ବୁଲୁଥାଉ । ସେତିକିବେଳେ ଓଡ଼ିଶାର ରାଜ୍ୟପାଳ ସୁକଠନ୍‌କରଙ୍କ ପ୍ରାଇଭେଟ୍ ସେକ୍ରେଟାରୀ ଶ୍ରୀ ହିତ୍‌ପ୍ରକାଶ ଆମକୁ କହିଲେ ଯେ ତମେ କୋରାପୁଟ ଯାଇ ଗୋଟିଏ ଶୋ କର, କିନ୍ତୁ ତୁମକୁ ଯାତାୟାତ କିମ୍ବା ଅନ୍ୟ କୌଣସି ଖର୍ଚ୍ଚ ଦିଆଯିବ ନାହିଁ । କଳାବିକାଶ କେନ୍ଦ୍ର ନିଜ ହାତରୁ ସମସ୍ତ ଖର୍ଚ୍ଚ କରିବ । ତା ପୂର୍ବରୁ ଆମେ ବାର୍ଷିକ ଉତ୍ସବରେ ମୁଖ୍ୟ ଅତିଥି ହେବା ଲାଗି ରାଜ୍ୟପାଳଙ୍କୁ ନିମନ୍ତ୍ରଣ କରି ସାରିଥିଲୁ । ନିମନ୍ତ୍ରଣ କାର୍ଡ଼ ମଧ୍ୟ ବଣ୍ଟା ସରିଥିଲା, କିନ୍ତୁ ଆମର ଆର୍ଥିକ ସ୍ୱଚ୍ଛଳତା ଭଲ ନ ଥିବାରୁ ଆମେ ନିଜ ଖର୍ଚ୍ଚରେ କୋରାପୁଟ ଯିବୁ ନାହିଁ ବୋଲି ମନା କରିଦେବା ଫଳରେ ଶ୍ରୀ ହିତ୍‌ପ୍ରକାଶ ରାଜ୍ୟପାଳ କେନ୍ଦ୍ରର ଯେଉଁ ବାର୍ଷିକ ଉତ୍ସବରେ ମୁଖ୍ୟ ଅତିଥି ହେବାର ଥିଲା ତାକୁ ବନ୍ଦ କରିଦେଲେ ।

ଡକ୍ଟର ପରିଜାଙ୍କୁ ଆମ୍ଭେମାନେ ଅନୁରୋଧ କଲୁ ଯେ ଆପଣ ଏ ବିଷୟରେ ରାଜ୍ୟପାଳମହୋଦୟଙ୍କୁ ଖଣ୍ଡିଏ ଚିଠି ଦିଅନ୍ତୁ, କିନ୍ତୁ ସେ ପରିଷ୍କାର ମନା କରିଦେଲେ । କହିଲେ ଆମର ଯାହା ଅଛି ସେଇଥିରେ କାମ ଚଳେଇନବା । ଏତେ ଖୁସାମଦ୍ କରିବା ଠିକ୍ ନୁହେଁ । ଏଥିରୁ ଜଣାପଡ଼େ ସେ କେତେ ଟାଣୁଆ ଓ ଦାମ୍ଭିକ ଲୋକ ଥିଲେ ।

ଅବଶ୍ୟ ସ୍ୱାସ୍ଥ୍ୟ କାରଣରୁ ସେ କଳାବିକାଶ କେନ୍ଦ୍ରର ସଭାପତି ଦାୟିତ୍ୱରୁ ଅବ୍ୟାହତି ନେଇଥିଲେ, କିନ୍ତୁ ଶେଷପର୍ଯ୍ୟନ୍ତ ତାଙ୍କର ସ୍ନେହ, ଶ୍ରଦ୍ଧା, ସହାନୁଭୂତି କେନ୍ଦ୍ର ପ୍ରତି ବରାବର ଅତୁଟ ରହିଥିଲା । ସେ ଥିଲେ ଆମ ବାଲିକୁଦାର ଗୌରବ । କଳାବିକାଶ କେନ୍ଦ୍ରର ପ୍ରତିଷ୍ଠାତା ସଭାପତି (ଫାଉଣ୍ଡର ପ୍ରେସିଡେଣ୍ଟ), ସମଗ୍ର ବିଶ୍ୱର ଏକ ବିଶିଷ୍ଟ ବୈଜ୍ଞାନିକ ଯୁଗାନ୍ତକାରୀ ପୁରୁଷ ସିଂହ । ସେହି ମହାନ୍ ଆତ୍ମା ପ୍ରତି ଭକ୍ତିପୂତ ପ୍ରଣତି ଜଣାଉଛି । (ଶ୍ରୀ ବସନ୍ତ କୁମାର ରାୟଙ୍କ ସୌଜନ୍ୟରୁ ପ୍ରାପ୍ତ)

# ଡକ୍ଟର ପରିଜାଙ୍କ ବିଶେଷତ୍ୱ

**ବୈଦ୍ୟନାଥ ମିଶ୍ର**

ଡକ୍ଟର ପ୍ରାଣକୃଷ୍ଣ ପରିଜା ଓ ମୋ ଭିତରେ ଏତେ ବ୍ୟବଧାନ'ଥିଲା ଯେ ମୁଁ ତାଙ୍କ ସହିତ ଘନିଷ୍ଠ ସମ୍ପର୍କ ରଖିବାକୁ ସୁଯୋଗ ପାଇ ନ ଥିଲି । ମୁଁ ଯେତେବେଳେ ରେଭେନ୍ସା କଲେଜରେ ନାମ ଲେଖେଇବାକୁ ଆସେ, ସେତେବେଳେ ସେ କଲେଜର ଅଧ୍ୟକ୍ଷ ଥାନ୍ତି । ଅଧ୍ୟକ୍ଷଙ୍କ ସହିତ ଆମର କୌଣସି ସମ୍ପର୍କ ନ ଥାଏ । ମୋର ଏତିକି ମନେଅଛି ଯେ, ସେ ଯେତେବେଳେ କଲେଜ ବାରଣ୍ଡାରେ ଜୋତା ମଚମଚ କରି ଚାଲିଯା'ନ୍ତି, ଆମେ ଯେଉଁମାନେ ସବୁ କଲେଜ ବାରଣ୍ଡାରେ ବୁଲୁଥାଉଁ, ଭୟରେ ତଳକୁ ଓହ୍ଲେଇଯାଉ । ସେ ଅଧ୍ୟକ୍ଷ ଥିଲାବେଳେ ମୁଁ ତାଙ୍କୁ କେବେ ଦେଖା କରି ନାହିଁ । ସେଥିପାଇଁ କାରଣ କ'ଣ, କହିପାରିବି ନାହିଁ । ହୁଏତ କିଛି ଦରକାର ପଡ଼ି ନାହିଁ । ଅଧ୍ୟକ୍ଷଙ୍କ ପାଖକୁ ଯିବାକୁ ଭୟ ଯେ ଟିକିଏ ନ ଥିଲା, ତାହା ନୁହେଁ । ଆମେ ଯେଉଁମାନେ ସବୁ ମଫସଲ ସ୍କୁଲରୁ ଆସି ରେଭେନ୍ସାରେ ନାମ ଲେଖେଇଥାଉ, ସେମାନେ ଅଧ୍ୟକ୍ଷଙ୍କ ଅଫିସ୍‌କୁ ଯିବାକୁ ଯେ ଭୟ ନ କରିବେ, ତାହା ନୁହେଁ । ଅବଶ୍ୟ ରେଭେନ୍ସା କଲେଜର ପାଠପଢ଼ାର ଶେଷବେଳକୁ ମୋର କଲେଜରେ ଅନେକ ପ୍ରତିପତ୍ତି ହୋଇଥିଲା, ଅଧ୍ୟକ୍ଷମାନଙ୍କ ପାଖରେ ଅବାଧ ପ୍ରବେଶର ସୁବିଧା ମିଳିଥିଲା, କିନ୍ତୁ ସେତେବେଳକୁ ଡକ୍ଟର ପରିଜା କଲେଜର ଅଧ୍ୟକ୍ଷ ନ ଥିଲେ ।

ସେ ଯେତେବେଳେ କଲେଜରୁ ବିଦାୟ ନେଇ କୃଷିବିଭାଗର ଡିରେକ୍ଟର ହୋଇଗଲେ, ସେତେବେଳେ ସମ୍ବର୍ଦ୍ଧନା ସଭାରେ ମୁଁ ଏକ ଓଜସ୍ୱିନୀ ଭାଷଣ ଦେଇଥିଲି, କ'ଣ କହିଥିଲି, ମନେ ନାହିଁ, କିନ୍ତୁ ମୋର ଭାଷଣଟି ଖୁବ୍ ଆଦୃତ ହୋଇଥିଲା । ସେହି ଭାଷଣକୁ ଡକ୍ଟର ପରିଜା ଏତେ ମନେ ରଖିଥିଲେ ଯେ ଆଲାହାବାଦର ଜଣେ ମୋର ସହଧ୍ୟାୟୀ ୮/୧୦ ପରେ ଟ୍ରେନ୍‌ରେ ଥରେ ଯେତେବେଳେ ତାଙ୍କୁ ମୋ ବିଷୟରେ ପଚାରିଲେ, ସେତେବେଳେ ଡକ୍ଟର ପରିଜା ମୋର ସେହି ୧୦ ବର୍ଷର ସମୁଦାୟ ଐତିହ୍ୟ ବର୍ଣ୍ଣନା କରି ମୋର ଠିକଣା ମଧ୍ୟ ତାଙ୍କୁ ଦେଇପାରିଲେ । ସେହି ବନ୍ଧୁ ତାଙ୍କଠାରୁ ମୋର ଠିକଣା ଓ କାର୍ଯ୍ୟକଳାପ ଶୁଣି ମୋ ପାଖକୁ ଗୋଟିଏ ଲମ୍ବା ଚଉଡ଼ା ଚିଠି ଲେଖି ପଠାଇଲେ । ଅଥଚ ସେହି ୧୦ ବର୍ଷ ଭିତରେ ଡକ୍ଟର ପରିଜାଙ୍କ ସହିତ ମୋର କୌଣସି ସମ୍ପର୍କ ପ୍ରତିଷ୍ଠିତ ହୋଇ ନ ଥିଲା ।

ଡକ୍ଟର ପରିଜାଙ୍କ ପରି ଜଣେ ବିଶିଷ୍ଟ ବ୍ୟକ୍ତି ମୋ ପରି ଜଣେ ସାଧାରଣ ଲୋକ ବିଷୟରେ ଏତେ ଖବର କିପରି ରଖିପାରିଲେ, ତାହା ଶୁଣି ମୁଁ ଖାଲି ଆଶ୍ଚର୍ଯ୍ୟ ହେଲି ନାହିଁ, ଅଭିଭୂତ ମଧ୍ୟ ହେଲି । ତାଙ୍କ ପ୍ରତି ମୋର ସମ୍ମାନ ବହୁଗୁଣରେ ବଢ଼ିଗଲା ।

ଡକ୍ଟର ପରିଜାଙ୍କର ସମୟାନୁବର୍ତ୍ତିତା କଥା ସମସ୍ତେ ଜାଣନ୍ତି । ଓଡ଼ିଶାରେ ସେ ବୋଧହୁଏ ଏକମାତ୍ର ଲୋକ ଯେ କି କେବେ କୌଣସି ସଭାକୁ ଡେରିରେ ଯା'ନ୍ତି ନାହିଁ । ସେଥିପାଇଁ ତାଙ୍କୁ ଅନେକ ଲୋକଙ୍କର ଭୟ । ଏ ବିଷୟରେ ମୋର ଯେଉଁ ଅନୁଭୂତି ହୋଇଛି ସେ ବିଷୟରେ ୨ଟି ଘଟଣା ଲେଖିବି । ପ୍ରଥମ ଘଟଣା ହେଉଛି ୧୯୫୫ ମସିହାର । ସେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟ ଅଫିସ୍ କଟକରେ ଥାଏ ଏବଂ ମୁଁ ରେଭେନ୍ସା କଲେଜର ଜଣେ ଲେକ୍‌ଚରର୍ ଥାଏ । ସେହି ବର୍ଷ ମିଳିତ ଜାତିସଂଘର ୧୦ ବର୍ଷ ପୂରଣ ହୋଇଥାଏ । ବିଶ୍ୱବିଦ୍ୟାଳୟ ଅଫିସ୍‌ରେ ଉପରବେଳା ୩ଟା ବେଳେ ଗୋଟିଏ ସଭା ହେବ ବୋଲି ଠିକ୍ ହୋଇଥାଏ । ପରିଜାସାହେବ (ସେତେବେଳେ ସେ ସାହେବ ହିସାବରେ ପରିଚିତ ହେଉଥାନ୍ତି) ସଭାପତି, ଡକ୍ଟର ଶ୍ରୀରାମ ଚନ୍ଦ୍ର ଦାଶ ଓ ମୁଁ ବକ୍ତା ହିସାବରେ ନିମନ୍ତ୍ରିତ ହୋଇଥାଉ । ମୁଁ ମଧ୍ୟ ପରିଜାସାହେବଙ୍କଠାରୁ ଶିଖି ପ୍ରତ୍ୟେକ ସଭାରେ ସମୟ ଅନୁସାରେ ଯୋଗଦିଏ । ସେଥିପାଇଁ ଅନେକଥର ହଇରାଣ ହୋଇଛି । ଯେଉଁମାନେ ଆମକୁ ସନ୍ଧ୍ୟା ୬ଟା ବେଳେ ସଭା ହେବ ବୋଲି ଡାକିଥାନ୍ତି, ସେମାନେ ୮ଟା ପୂର୍ବରୁ ସଭା କରନ୍ତି ନାହିଁ । କିନ୍ତୁ ଡକ୍ଟର ପରିଜାଙ୍କ କଥା ସ୍ୱତନ୍ତ୍ର । ୩ଟାରେ ସଭା ହେବ ମାନେ ଠିକ୍ ୩ଟା । ଗୋଟେ ମିନିଟ୍ ଡେରି ହେବ ନାହିଁ । ୩ଟା ବେଳକୁ ସେହି ସଭାରେ ମୋଟେ ୩ ଜଣ ଲୋକ, ଡକ୍ଟର ପରିଜା, ସଭାପତି, ଗୋରାଚାନ୍ଦ ରଥ ରେଜିଷ୍ଟ୍ରାର୍ ଓ ବକ୍ତା ହିସାବରେ ମୁଁ । ସାଧାରଣତଃ ଶ୍ରୀରାମବାବୁ ଟିକିଏ ଡେରିରେ ସଭାକୁ ଆସନ୍ତି । କିନ୍ତୁ ୩ଟା ବେଳେ ଡକ୍ଟର ପରିଜା ବିରକ୍ତ ହୋଇ ମତେ କହିବାକୁ ଡାକିଲେ । କାହାକୁ କହିବି, କ'ଣ କହିବି ମୁଁ କିଛି ଜାଣିପାରିଲି ନାହିଁ । ମୋ ଦେହ ଥରିବାକୁ ଲାଗିଲା, ପାଟି ଖନି ବାଜିଗଲା, ମୋର କୁଳପତିଙ୍କ ପାଖରେ ଏକ ପରୀକ୍ଷା ହେଉଛି ବୋଲି ଭାବିଲି । ସୁଖର କଥା ମୁଁ ୯/୧୦ ମିନିଟ୍ କହିସାରିଲା ବେଳକୁ ଡକ୍ଟର ଦାଶ ଆସି ପହଞ୍ଚିଲେ, ବିଶ୍ୱବିଦ୍ୟାଳୟର କିଛି କର୍ମଚାରୀ ମଧ୍ୟ ସଭାରେ ଯୋଗଦେଲେ । ମୁଁ ତରତରରେ ମୋ ବକ୍ତବ୍ୟ ଶେଷ କରି ଚୌକି ଧରିଲି । ମୋ ଦେହରୁ ଏତେ ଝାଳ ବୋହିଲା ଯେ ମୋ ସାର୍ଟ ପୂରା ଓଦା ହୋଇଗଲା ।

ଦ୍ୱିତୀୟ ଘଟଣାଟି ଶୁଣନ୍ତୁ । ମୁଁ ରେଭେନ୍ସା କଲେଜରେ ଯେତେବେଳେ ଲେକଚରର୍ ଥିଲି, ସେତେବେଳେ ଗୋଟିଏ କସମପୋଲିଟାନ୍ ଅନୁଷ୍ଠାନ ଗଠନ କରିଥିଲି । ସେହି ଅନୁଷ୍ଠାନ ଆନୁକୂଲ୍ୟରେ ଆମେ ପ୍ରତ୍ୟେକ ବର୍ଷ ଭିନ୍ନ ଭିନ୍ନ ଜାଗାରେ ୧୫ ଦିନ ପାଇଁ

ସମର କ୍ୟାମ୍ପ୍ କରୁଥାଉ । ବିଭିନ୍ନ କଲେଜର ସିନିଅର୍ ଛାତ୍ରମାନେ ସେଥିରେ ଯୋଗ ଦେଇଥାନ୍ତି । ପ୍ରାୟ ୫୦ ଜଣ ଛାତ୍ର । ସେହି ଅନୁଷ୍ଠାନରେ ଡକ୍ଟର ସଦାଶିବ ମିଶ୍ର, ଡକ୍ଟର ଶ୍ରୀନିବାସ ସାହୁ ଓ ଡକ୍ଟର ଦେବେନ୍ଦ୍ର ଚନ୍ଦ୍ର ମିଶ୍ର ପ୍ରଭୃତି ପ୍ରତ୍ୟକ୍ଷ ଭାବରେ ଜଡ଼ିତ ହୋଇଥାନ୍ତି । ଗୋଟିଏ ବର୍ଷ ଆମର ସମର କ୍ୟାମ୍ପ୍ ବାଲେଶ୍ୱରର ଚାନ୍ଦିପୁରରେ ହୋଇଥିଲା । ଚାନ୍ଦିପୁରରେ ଛାତ୍ରମାନେ ୧୫ ଦିନ ରହି କିଛି ସେବାମୂଳକ କାମ ସହିତ ବିଭିନ୍ନ ବିଷୟରେ ଆଲୋଚନା ମଧ୍ୟ କରୁଥିଲେ । ପ୍ରତ୍ୟେକଦିନ ଜଣେ କି ଦୁଇ ଜଣ ଅତିଥି ଯାଇ ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେଉଥିଲେ । ଆମେ କାହାକୁ ଗାଡ଼ି ଭଡ଼ା ଦେଉ ନ ଥିଲୁ । କିନ୍ତୁ ସମସ୍ତେ ସ୍ୱେଚ୍ଛାରେ ଯାଇ ଛାତ୍ରମାନଙ୍କୁ ଉତ୍ସାହିତ କରୁଥିଲେ । ଶେଷଦିନ ବାଲେଶ୍ୱରର ଫକୀରମୋହନ କଲେଜରେ ସମାବର୍ତ୍ତନ ଉତ୍ସବ ହେଲା । ୬ଟା ବେଳେ ସଭା । ମୋ ବ୍ୟତୀତ ହଲ୍‌ରେ କେହି ନାହାନ୍ତି । ଛାତ୍ରମାନେ ଚାନ୍ଦିପୁରରୁ ଆସି ବାଲେଶ୍ୱର ସହର ଭିତରକୁ ବୁଲିବାକୁ ଯାଇଥାନ୍ତି । ଡକ୍ଟର ଶ୍ରୀନିବାସ ସାହୁ ସେତେବେଳେ ସେହି କଲେଜର ଅଧ୍ୟକ୍ଷ ଥାନ୍ତି । ମୁଁ ତାଙ୍କୁ ଅନୁରୋଧ କଲି ଯେ କୌଣସିମତେ ଡକ୍ଟର ପରିଜାଙ୍କୁ ୧୦/୧୫ ମିନିଟ୍ ଅଟକେଇ ରଖିବାକୁ ଚେଷ୍ଟା କରନ୍ତୁ । ତାଙ୍କର ସମସ୍ତ ଉଦ୍ୟମ ଅସଫଳ ହେଲା । ଠିକ୍ ୬ଟା ବେଳେ ଡକ୍ଟର ପରିଜା ସଭାଗୃହକୁ ଆସି ମତେ ରିପୋର୍ଟ ପଢ଼ିବାକୁ ଅନୁରୋଧ କଲେ । ଡକ୍ଟର ପରିଜା, ଡକ୍ଟର ଶ୍ରୀନିବାସ ସାହୁ ଓ ମୁଁ ଏହି ତିନିଜଣରେ ସଭାକାର୍ଯ୍ୟ ଆରମ୍ଭ ହେଲା । ଅଧଘଣ୍ଟା ଭିତରେ କେତେକ ଛାତ୍ର ଆସି ସେହି ସଭାରେ ଯୋଗଦେଲେ । ଡକ୍ଟର ପରିଜାଙ୍କର ସମୟାନୁବର୍ତ୍ତିତା ବିଷୟରେ ଆଉ ଅଧିକ କିଛି ଉଦାହରଣ ଦେବା ବୋଧହୁଏ ଆବଶ୍ୟକ ନାହିଁ ।

ଡକ୍ଟର ପରିଜାଙ୍କର ଶୃଙ୍ଖଳିତ ଜୀବନ ବିଷୟରେ ଦୁଇଟି ଘଟଣା ଲେଖୁଛି । ଗୋଟିଏ ହେଉଛି ଅତି ସାମାନ୍ୟ ଘଟଣା । କିନ୍ତୁ ଏଥିରେ କେତେ ଶୃଙ୍ଖଳା ଜଡ଼ିତ ହୋଇ ରହିଛି, ତାହା ଟିକିଏ ଚିନ୍ତା ନ କଲେ ଜାଣି ହେବ ନାହିଁ । ଆମର କେତୋଟି ସମର କ୍ୟାମ୍ପ୍‌ର ଘଟଣାବଳୀକୁ ଆଖି ଆଗରେ ରଖି ମୁଁ ଗୋଟିଏ ବହି ଲେଖିଥିଲି—ସେ ବହିଟି ଇଂରେଜୀରେ, ନାମ 'Summer Camp on Human Relations' । ସେ ବହିଟି ଛପା ହେଲା ପରେ କଟକ ହୋଟେଲ୍‌ରେ ଗୋଟିଏ ବୈଠକ ବସିଲା । ଆମର ସମସ୍ତ ସଭ୍ୟ ସେହି ବୈଠକକୁ ଆସିଲେ । ପରିଜାସାହେବ ମଧ୍ୟ ନିମନ୍ତ୍ରିତ ହୋଇ ଆସିଥିଲେ । ବହିଟି ମୁଁ ଯେତେବେଳେ ଟେବୁଲ୍ ଉପରେ ଥୋଇଦେଲି, ଯେତକ ସଭ୍ୟ ଉପସ୍ଥିତ ଥିଲେ, ସମସ୍ତେ ଖଣ୍ଡିଏ ଖଣ୍ଡିଏ ବହି ନେଇ ପଢ଼ିବାକୁ ଆରମ୍ଭ କଲେ । ପରିଜାସାହେବ କିନ୍ତୁ ସେ ବହି ଉଠେଇଲେ ନାହିଁ । ମୁଁ ତାଙ୍କ ହାତକୁ ଖଣ୍ଡେ ବହି ଦେଲି, ସେ ତାକୁ ଦେଖିଲେ, ଭଲ ହୋଇଛି ବୋଲି କହି

ବହିଟି ପୁଣି ଟେବୁଲ୍ ଉପରେ ଥୋଇଦେଲେ । ବୈଠକ ଶେଷ ହେବା ପରେ ସେ ଯେତେବେଳେ ତାଙ୍କର ଗାଡ଼ିକୁ ଗଲେ, ମୁଁ ସେତେବେଳେ ତାଙ୍କୁ ଖଣ୍ଡିଏ ବହି ଦେଲି ଏବଂ ସେ ଧନ୍ୟବାଦ ଦେଇ ସେହି ବହିଟି ଗ୍ରହଣ କଲେ । ଏହି ସାମାନ୍ୟ କଥାରେ କେତେ ଶୃଙ୍ଖଳା ଜଡ଼ିତ ହୋଇ ରହିଛି, ତାକୁ ବୁଝିବା ପାଇଁ ଅନେକ ଜ୍ଞାନ, ବୁଦ୍ଧି ଦରକାର । ସାଧାରଣ ଲୋକମାନେ ବୋଧହୁଏ ଏହାର ଗୁରୁତ୍ୱ ସହଜରେ ବୁଝିପାରିବେ ନାହିଁ ।

ସେହିପରି ଅନ୍ୟ ଏକ ଘଟଣା ହେଉଛି ଚିନି ଓ ଦୁଧ ବ୍ୟତୀତ ଚା' । ତା'ର ଗୁରୁତ୍ୱ ମୁଁ ପ୍ରଥମ ଅବସ୍ଥାରେ ବୁଝି ନ ଥିଲି । ଡକ୍ଟର ପରିଜା ଯେତେବେଳେ ଚା' ପିଉଥିଲେ, ସେତେବେଳେ ଚା'ରେ ଦୁଧ କି ଚିନି ମିଶାଉ ନ ଥିଲେ । ମୋର କାହିଁକି ଏକ ଭୁଲ ଧାରଣା ହୋଇଥିଲା ଯେ ତାଙ୍କର ବୋଧହୁଏ ଡାଇବେଟିସ୍ ଅଛି, ଯେଉଁଥିପାଇଁ ସେ ଚିନି ଖାଉ ନାହାନ୍ତି । ଦିନେ ତାଙ୍କ ଘରକୁ ଯାଇଛି, ସେ ମତେ କିଛି ଜଳଖିଆ ଦେଲେ, ସେଥିରେ ମିଠା ଥିଲା ଏବଂ ସେ ମଧ୍ୟ ମିଠା ଖାଇଲେ । ମୁଁ ଆଶ୍ଚର୍ଯ୍ୟ ହୋଇ ତାଙ୍କୁ ପଚାରିଲି, ସାର୍ ଆପଣ ତ ଚା'ରେ ଚିନି ଖାଉ ନାହାନ୍ତି, ମିଠା କିପରି ଖାଉଛନ୍ତି ? ତା'ର ଉତ୍ତରରେ ସେ କହିଲେ ଯେ ପ୍ରଥମ ମହାଯୁଦ୍ଧବେଳେ ସେ କେମ୍ବ୍ରିଜ୍‌ରେ ଯେତେବେଳେ ଅଧ୍ୟୟନ କରୁଥିଲେ, ସେତେବେଳେ ଚିନି ଓ ଦୁଧର ବହୁତ ଅଭାବ ପଡ଼ିଲା । ତେଣୁ ସେମାନେ କେତେଜଣ ଛାତ୍ର ନିଷ୍ପତ୍ତି ନେଲେ ଯେ ଚା' ବିନା ଦୁଧ ଓ ଚିନିରେ ଖାଇବେ । ୧୯୧୪/୧୫ ମସିହାରେ ଯେଉଁ ନିଷ୍ପତ୍ତି ନେଇଥିଲେ, ସେହି ନିଷ୍ପତ୍ତି ଶେଷ ପର୍ଯ୍ୟନ୍ତ ପାଳନ କରିଥିଲେ । ଏହି ହେଉଛି ଡକ୍ଟର ପରିଜାଙ୍କର ବିଶେଷତ୍ୱ ।

ସମସ୍ତେ ଜାଣନ୍ତି ଯେ ଡକ୍ଟର ପରିଜା ଯେତେ ଶୀଘ୍ର କୌଣସି ବିଷୟରେ ସିଦ୍ଧାନ୍ତ ଗ୍ରହଣ କରିପାରନ୍ତି, ତାହା ଖୁବ୍ କମ୍ ପ୍ରଶାସକ କରିପାରନ୍ତି । ତାଙ୍କ ସହିତ ପ୍ରତିଯୋଗିତା କରିବାକୁ ଓଡ଼ିଶାରେ ବୋଧହୁଏ କେହି ନ ଥିଲେ । ଏ ବିଷୟରେ ମଧ୍ୟ ଦୁଇଟି ଘଟଣା ଲେଖିବି । ମୁଁ ଯେତେବେଳେ କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟରେ ପ୍ରଫେସର ଥିଲି, ସେତେବେଳେ ଯୁବମଙ୍ଗଳ ବୋର୍ଡ଼ର ସମ୍ପାଦକ ମଧ୍ୟ ଥିଲି । ଯୁବମଙ୍ଗଳ ବୋର୍ଡ଼ ତରଫରୁ ଭିନ୍ନ ଭିନ୍ନ କଲେଜ, ବିଶ୍ୱବିଦ୍ୟାଳୟ ଓ ହାଇସ୍କୁଲକୁ ଅନେକ ଗ୍ରାଣ୍ଟ୍ ଦିଆଯାଉଥାଏ । ଉତ୍କଳ ବିଶ୍ୱବିଦ୍ୟାଳୟକୁ ଯେଉଁ ଗ୍ରାଣ୍ଟ ଦିଆଯାଉଥାଏ, ତାହା ଖର୍ଚ୍ଚ ନ ହୋଇ ଫେରିଯାଉଥାଏ । ସେଥିପାଇଁ କୁଳପତି ଡକ୍ଟର ପରିଜାଙ୍କୁ ଜଣେ ଯୁବମଙ୍ଗଳ ଅଫିସର୍ ନିଯୁକ୍ତି କରିବା ପାଇଁ ଚିଠି ଲେଖିଲି । ମୋ ଚିଠି ପାଇ ମୋତେ ଡକେଇଲେ—ମୁଁ ତାଙ୍କୁ ସବୁ କଥା କହିଲା ପରେ ସିଣ୍ଡିକେଟ୍‌ରେ ପକେଇ ଗୋଟିଏ ଯୁବମଙ୍ଗଳ ଅଫିସର୍ ପୋଷ୍ଟ ମଞ୍ଜୁର କରେଇଲେ । ସାକ୍ଷାତ ବୋର୍ଡ଼ରେ ମୋତେ

ଜଣେ ସଭ୍ୟ କରି ମଧ୍ୟ ରଖିଲେ । ଆମେ ସେହି ସାକ୍ଷାତରେ ଡକ୍ଟର ଜମନ୍ଦୋରୁ ମହାନ୍ତିଙ୍କ ନାମ ସୁପାରିସ କଲୁ । ସେ ସେହି ପୋଷ୍ଟରେ ଯୋଗଦେଲେ । ଏସବୁ କାମ ପ୍ରାୟ ୧୫ ଦିନ ଭିତରେ ସମାପ୍ତ ହୋଇପାରିଲା । ଏତେ ଶୀଘ୍ର ଗୋଟିଏ ପୋଷ୍ଟ ଖୋଲାଯାଇ ଜଣେ ଲୋକ ନିଯୁକ୍ତ ହୋଇପାରିବ ବୋଲି କେହି ବୋଧହୁଏ ଆଶା କରିପାରିବେ ନାହିଁ ।

ମୋର ଏକ ବ୍ୟକ୍ତିଗତ କଥାରେ ପରିଜାସାହେବ ଯେପରି ସାହାଯ୍ୟ କରିଥିଲେ, ତାହା ମୁଁ ଜୀବନରେ କେବେ ଭୁଲିପାରିବି ନାହିଁ । ୧୯୬୩ ମସିହା କଥା । ସେହି ବର୍ଷ ଡିସେମ୍ବର ୧୪ ତାରିଖରେ କନ୍‌ଭୋକେସନ୍ ହେବାର ଥାଏ । ମୋର ପିଏଚ୍.ଡି. ଥିସିସ୍‌ର ଗୋଟିଏ ରିପୋର୍ଟ ଆସିଥାଏ । ଆଉ ଗୋଟିଏ ରିପୋର୍ଟକୁ ଆମେ ଅପେକ୍ଷା କରି ରହିଥାଉ । ମୋର ଇଚ୍ଛା ଥାଏ, ସେହି ବର୍ଷ ମୁଁ କିପରି ପିଏଚ୍.ଡି. ଡିଗ୍ରୀ ପାଇବି । ଯେଉଁ ଭଦ୍ରଲୋକ ରିପୋର୍ଟ ପଠେଇଥାନ୍ତି, ସେ ଲେଖିଥାନ୍ତି ଯେ ମୌଖିକ ପରୀକ୍ଷା ଦରକାର ନାହିଁ, ତେବେ ଯଦି ମୌଖିକ ପରୀକ୍ଷା କରିବା ଦରକାର, ତାହାହେଲେ ମାନ୍ଦ୍ରାଜରେ ହେଲେ ସେ ଯୋଗ ଦେଇପାରିବେ । କାରଣ ତାଙ୍କର ଆମେରିକା ଯିବାର ଥାଏ । ଦ୍ୱିତୀୟ ପରୀକ୍ଷକଙ୍କ ରିପୋର୍ଟକୁ ଆମେ ଅପେକ୍ଷା କରିଛୁ– ବୋଧହୁଏ ଡିସେମ୍ବର ୧ କି ୨ ତାରିଖରେ ତାଙ୍କ ରିପୋର୍ଟ ଆସିଲା । ଡେପୁଟି ରେଜିଷ୍ଟ୍ରାର୍ ଦୁର୍ଗାପ୍ରସାଦ ବରେଇ ମତେ ଧନ୍ୟବାଦ ଦେଇ କହିଲେ ଯେ ସମୟ ଖୁବ୍ କମ୍, କେବଳ କୁଳପତି ଚାହିଁଲେ ମୁଁ ୧୪ ତାରିଖରେ ଡିଗ୍ରୀ ପାଇପାରିବି । କୁଳପତିଙ୍କ ପାଖକୁ ଗଲି, ସେ ବରେଇଙ୍କୁ ଡାକି ପଚାରିଲେ । ସେଦିନ କଟକରେ ସିଣ୍ଡିକେଟ୍ ବୈଠକ ଥାଏ । ତେଣୁ ବରେଇଙ୍କୁ ସେ ଏହି କଥା ସେହିଦିନ ସିଣ୍ଡିକେଟ୍‌ରେ ପକେଇବାକୁ ନିର୍ଦ୍ଦେଶ ଦେଲେ । ସେଦିନ ସନ୍ଧ୍ୟାରେ ସିଣ୍ଡିକେଟ୍ ବୈଠକରେ ପଡ଼ିଲା । ସିଣ୍ଡିକେଟ୍ ନିଷ୍ପତ୍ତି ନେଲେ ଯେ ପ୍ରଥମେ କଲିକତାରେ ମୌଖିକ ପରୀକ୍ଷା ହେବ ଏବଂ ତା'ପରେ ମୁଁ ମାନ୍ଦ୍ରାଜ ଯାଇ ସେଠାରେ ଏକ ମୌଖିକ ପରୀକ୍ଷା ଦେବି ।

ଏହି ନିଷ୍ପତ୍ତି ଯେ ଭୁଲ, ତାହା କେହି ବୁଝିପାରିଲେ ନାହିଁ । ତେଣୁ ମୁଁ ତା' ପରଦିନ ଡକ୍ଟର ପରିଜାଙ୍କୁ ଦେଖା କରି କହିଲି ଯେ ମୌଖିକ ପରୀକ୍ଷାରେ ସମସ୍ତ ପରୀକ୍ଷକ ଏକାଠି ରହିବାର କଥା । ଥରେ କଲିକତାରେ ଓ ଥରେ ମାନ୍ଦ୍ରାଜରେ ମୌଖିକ ପରୀକ୍ଷା ହେଲେ ସମସ୍ତ ପରୀକ୍ଷକ ଏକାଠି ହୋଇପାରିବେ ନାହିଁ । କୁଳପତି ରେଜିଷ୍ଟ୍ରାର୍ ଗୋରାଚାନ୍ଦବାବୁଙ୍କୁ ଡାକି ଭୀଷଣ ଗାଳିଦେଲେ, କାହିଁକି ସେ ଏହି ନିୟମ ସେହି ବୈଠକରେ ଉପସ୍ଥାପିତ କଲେ ନାହିଁ । ସେତେବେଳେ ଏକକାଳୀନ ଦୁଇ ଦିନ ସିଣ୍ଡିକେଟ୍ ବୈଠକ କଟକରେ ହେଉଥିଲା । ତେଣୁ ସେଦିନ ଆଉ ଥରେ ସେ ବିଷୟ

ପକେଇ କୁଳପତିଙ୍କୁ ଦାୟିତ୍ୱ ଦିଆଗଲା ଯେ ସେ କଲିକତାରୁ ପ୍ରେସିଡେନ୍ସି କଲେଜରେ ପ୍ରଫେସରଙ୍କ ସହିତ କଥାବାର୍ତ୍ତା କରି ତାଙ୍କୁ ଏକ ପରୀକ୍ଷକ ହିସାବରେ ନିଯୁକ୍ତ କରିବେ । ସେ ପ୍ରଫେସର ମହୋଦୟ ରାଜି ହେଲେ । ଜଣେ ସ୍ୱତନ୍ତ୍ର କର୍ମଚାରୀ ମୋ ଥିସିସ୍ ନେଇ ତାଙ୍କୁ ଦେଲେ । ୬ ତାରିଖରେ କଲିକତାରେ ମୌଖିକ ପରୀକ୍ଷା ହେଲା ଏବଂ ମୁଁ ୧୪ ତାରିଖରେ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଡିଗ୍ରୀ ପାଇବାକୁ ସମର୍ଥ ହେଲି ।

ଏହି ହେଉଛି ଡକ୍ଟର ପରିଜାଙ୍କର ଉଦାରତା । ନିୟମ ଭିତରେ ରହି ଜଣକୁ ଯେତେ ପ୍ରକାର ସାହାଯ୍ୟ କରାଯାଇପାରେ, ତାହା ସେ କରିବାକୁ ହେଲେ କୁଣ୍ଠିତ ହେଉ ନ ଥିଲେ । ଦୁଃଖର କଥା ଯେ ସେହି ଉଦାରତା, ତୁରନ୍ତ ନିଷ୍ପତ୍ତି ନେବାର ସାମର୍ଥ୍ୟ ଆଜି ଆମେ ଖୁବ୍ କମ୍ ଲୋକଙ୍କ ପାଖରେ ଦେଖିବାର ସୁଯୋଗ ପାଉଛୁ । ଡକ୍ଟର ପରିଜାଙ୍କର ଏହି ଗୁଣ ଯୋଗୁଁ ସେ ଚିରଦିନ ଆମର ନମସ୍ୟ ହୋଇ ରହିବେ ।

# କୁଳପତି ଡାକ୍ତର ପରିଜା

**ବ୍ରଜବନ୍ଧୁ ମହାପାତ୍ର**

ପୂଜ୍ୟ ଡାକ୍ତର ପ୍ରାଣକୃଷ୍ଣ ପରିଜାଙ୍କ ସହିତ ମୋର ପରିଚୟ ହୁଏ ୧୯୫୮ ମସିହାରେ, ଯେତେବେଳେ ମୁଁ ବୁର୍ଲା ଇଞ୍ଜିନିଅରିଂ କଲେଜରେ ପ୍ରଫେସର ପଦବୀ ପାଇଁ ଇଣ୍ଟରଭ୍ୟୁ ଦିଏ । ସେ ଥିଲେ ସିଲେକ୍‌ସନ ବୋର୍ଡ଼ର ଅଧ୍ୟକ୍ଷ । ସେ ମୋତେ ଖୁବ୍ କମ୍ ପ୍ରଶ୍ନ ପଚାରିଥିଲେ କିନ୍ତୁ ତନ୍ନ ତନ୍ନ କରି ମୋର ଉତ୍ତରଗୁଡ଼ିକ ଶୁଣୁଥାନ୍ତି । ଇଣ୍ଟରଭ୍ୟୁରେ ମୁଁ ବଛାଗଲି, ଯଦିଓ ରିଡର ପଦରେ, ଯେହେତୁ ଶିକ୍ଷକତା କ୍ଷେତ୍ରରେ ମୋର ଆବଶ୍ୟକ ଅଭିଜ୍ଞତା ନ ଥିଲା ।

ସେ ଯାହାହେଉ, ସରକାରୀ ଚାକିରି ଛାଡ଼ି ବୁର୍ଲାରେ ମୁଁ ଯୋଗ ଦେଲି ଏବଂ ୧୯୬୨ ମସିହାରେ ସେହି କଲେଜର ଅଧ୍ୟକ୍ଷ ହେଲି । ଅଧ୍ୟକ୍ଷ ହେଲା ପରେ ତାଙ୍କ ସହିତ ମୋର ଘନିଷ୍ଠତା ଆହୁରି ବଢ଼ିଗଲା । ସେ ଥିଲେ ଆମର ଗଭର୍ଣ୍ଣିଂ ବଡିର ଚେୟାରମ୍ୟାନ୍ । ତେଣୁ କଲେଜର ସୁବିଧା ଅସୁବିଧା, ଅଗ୍ରଗତି, ଯୋଜନା ଇତ୍ୟାଦି ସମସ୍ତ ବିଷୟରେ ସେ ଅବଗତ ଥିଲେ । ଖୁବ୍ ଅଳ୍ପ ସମୟରେ, ଅଳ୍ପ କଥାରେ, ସେ ପ୍ରତ୍ୟେକ ସମସ୍ୟାର ମୂଳ କାରଣ ବୁଝି, ସମାଧାନ ଦିଗରେ ଦିଗ୍‌ଦର୍ଶନ ଦେଉଥିଲେ । ତେଣୁ ଜଣେ ବିଚାରବନ୍ତ, ସମ୍ବେଦନଶୀଳ ବ୍ୟକ୍ତିଙ୍କୁ ଦିଗ୍‌ଦର୍ଶକ ରୂପେ ପାଇ ମୁଁ ଖୁବ୍ ଆନନ୍ଦ ଓ ଉତ୍ସାହରେ କାମ କରି ଯାଉଥିଲି । ଯଦି କେତେବେଳେ କୌଣସି ଜଟିଳ ପରିସ୍ଥିତି ଉପୁଜୁଥିଲା ସେ କୁଣ୍ଠା ନ କରି ମୋତେ ସାହାଯ୍ୟ କରିବାକୁ ଆଗେଇ ଆସୁଥିଲେ ।

ତାଙ୍କ ସହିତ ସିଣ୍ଡିକେଟ୍, ସିନେଟ୍ ଓ ଏକାଡେମିକ୍ କାଉନ୍‌ସିଲରେ ବି ମୁଁ କାମ କରିଛି । ତାଙ୍କର ସମୟାନୁବର୍ତ୍ତିତା ଅତି ଉଚ୍ଚକୋଟୀର । ଯେ କୌଣସି ମିଟିଂ ହେଉ, ଘଣ୍ଟା ଠନ୍ ଠନ୍ ବାଜିଲା ବେଳକୁ ପରିଜାସାହେବ ତାଙ୍କ ଆସନରେ ବସି ଏଜେଣ୍ଡାକାଗଜ ଖୋଲିଦିଅନ୍ତି ଏବଂ ସଭା କାର୍ଯ୍ୟ ଆରମ୍ଭ ହୁଏ । ତାଙ୍କ ଉପସ୍ଥିତିରେ ଅଯଥା ଏଣୁ ତେଣୁ ଚର୍ଚ୍ଚା ହୁଏନି । ମୋର ଯଦି କିଛି ଜଟିଳ ସମସ୍ୟା ଥାଏ, ସାଧାରଣତଃ ମିଟିଂ ଆଗରୁ ତାଙ୍କ ଚାମ୍ବରକୁ ଯାଇ ମୁଁ ବିଷୟବସ୍ତୁଟି ବୁଝାଇଦିଏ । ସେ ଯଦି ବୁଝିଗଲେ, ସିଣ୍ଡିକେଟ୍‌ରେ ଗୃହୀତ ହେବା ପାଇଁ କିଛି ଅସୁବିଧା ହୁଏନି । କିନ୍ତୁ ଯଦି ମୋ ବୁଝାଇବାରେ କିଛି ଦୋଷତ୍ରୁଟି ରହିଯାଏ ଏବଂ ସେ ତାକୁ ଗ୍ରହଣ ନ କରନ୍ତି, ତେବେ ମୁଁ ଜାଣିନିଏ ଯେ ମୋର ଏ ପ୍ରସ୍ତାବଟି କାଟ ଖାଇଯିବ । ଅବଶ୍ୟ ଏପରି ଘଟଣା ଖୁବ୍ କମ୍ ।

ଗୋଟିଏ ଘଟଣା ଏଠି ଅବତାରଣା କରିବି, ଯାହାକି ତାଙ୍କର ମହନୀୟତାର ନିଦର୍ଶନ । ଆମ କଲେଜରେ ସ୍ପଟ୍ ଆଡ୍‌ମିସନ ପାଇଁ ଗୋଟିଏ ଦିନ ଧାର୍ଯ୍ୟ ଥାଏ । ଯେଉଁ ସିଟ୍‌ଗୁଡ଼ିକ ଖାଲି ରହିଯିବ, ସେହିଦିନ ଉପସ୍ଥିତ ଥିବା ପ୍ରାର୍ଥୀମାନଙ୍କ ଭିତରୁ ମେରିଟ୍ ଅନୁସାରେ ଆଡମିସନ୍ ଦିଆହୁଏ । ଗୋଟିଏ ବର୍ଷର କଥା । ଅପରାହ୍ଣ ଚାରିଟାରେ ସ୍ପଟ୍ ଅଡିମିସନ କାମ ସରିଗଲା । ଯେଉଁମାନେ ବିଫଳ ହେଲେ ସେମାନେ ଚାଲିଗଲେ ଏବଂ ଯେଉଁମାନେ ପାଇଲେ, ସେମାନେ ଆଡମିସନ ନେଲେ । ଠିକ୍ ଅପରାହ୍ଣ ୪.୧୫ ମିନିଟ୍‌ରେ ଜଣେ ପିଲା ଆସି ଟି.ସି. ନେବା ପାଇଁ ଦରଖାସ୍ତ ଦେଲା । ତାର ଅନ୍ୟ କୌଣସି କଲେଜରେ ପଢ଼ିବାର କଥା । ଠିକ୍ ସେତିକିବେଳେ ଆଉ ଜଣେ ପିଲା ଆସି ଏ ଖାଲି ସ୍ଥାନରେ ତାକୁ ନେବା ପାଇଁ ମୋ ପାଖେ ଆବେଦନ କଲା । ସେ ବି ପରୋକ୍ଷରେ ମୋତେ ଶୁଣାଇ ଦେଲା ଯେ ସେ ପରିଜାସାହେବଙ୍କର ଜଣେ ସଂମ୍ପର୍କୀୟ । ମୁଁ ଦେଖିଲି, ମେରିଟ୍ ଲିଷ୍ଟରେ ତା ସ୍ଥାନ ବହୁତ ତଳେ ଅଛି । ମୋର ବିବେକ କହିଲା, ଏଇଟା ଅନୁଚିତ ହେବ । ମୁଁ ସେଇଆ କଲି । କିଛିଦିନ ପରେ ଯେତେବେଳେ ପରିଜାସାହେବଙ୍କ ସଙ୍ଗେ ଦେଖା ହେଲା ମୁଁ ଅନୁଭବ କଲି, ମୋ ଉପରେ କିଛିଟା ବିରକ୍ତ ଥିବାପରି, ସେ ପିଲାଟିକୁ କାହିଁକି ଆଡମିସନ ଦେଲି ନାହିଁ ବୋଲି ପଚାରିଲେ । ମୁଁ ସମସ୍ତ କଥା ବୁଝାଇ ତାଙ୍କୁ କହିଲି । ସେ ମୋ କଥାର ଔଚିତ୍ୟ ଉପଲବ୍ଧି କରି ମୋତେ "ଠିକ୍ କରିଛି" ବୋଲି କହିଲେ । ସେହି ହେଲା ତାଙ୍କ ଠାରୁ ମୋର ସାର୍ଟିଫିକେଟ୍ ।

ଆଜି ସେ ନାହାନ୍ତି । ସେହି ସ୍ତରର ଲୋକଙ୍କ ସଂଖ୍ୟା ବି ବହୁତ କମିଗଲାଣି । ଜ୍ଞାନର ବଡ଼ିମା କିମ୍ବା ଗର୍ବ ଅହଂକାର ତାଙ୍କର ନ ଥିଲା । ସରଳ, ସ୍ନେହୀ, ଛାତ୍ରବତ୍ସଳ, ଦକ୍ଷ ଶିକ୍ଷକ ଓ ପ୍ରଶାସକ ଭାବେ ସେ ସମଗ୍ର ଦେଶରେ ସୁପରିଚିତ ଥିଲେ । ଆଜିର ପତନୋନ୍ମୁଖୀ ସମାଜ ସେହି ଗୁରୁଙ୍କୁ ଖୋଜୁଛି ।

# ଉଭିଦବିଜ୍ଞାନୀ ଓ ଶିକ୍ଷାବିତ୍ ଡକ୍ଟର ପରିଜା

**ଭୁବନେଶ୍ୱର ବେହେରା**

କାହିଁ ଷାଠିଏ ବର୍ଷ ତଳର କଥା । ୧୯୩୫ ସାଲ– ମୁଁ ସେ ବର୍ଷ ଆମ ଗଡ଼ଜାତ ରାଜ୍ୟ କଳାହାଣ୍ଡିରୁ ମେଟ୍ରିକ୍ୟୁଲେସନ୍ ପାସ୍ କରିଥାଏ । କଲେଜରେ ପଢ଼ିବାକୁ ଭାରି ମନ କିନ୍ତୁ ଆଖପାଖରେ କଲେଜ ନାହିଁ । ସେ ଦିନର କଳାହାଣ୍ଡି ବଲାଙ୍ଗୀର ପରି ବଡ଼ ବଡ଼ ଗଡ଼ଜାତମାନଙ୍କରେ ଗୋଟାଏ ଲେଖା ହାଇସ୍କୁଲ– ସାନ ଗଡ଼ଜାତମାନଙ୍କରେ ତ ହାଇସ୍କୁଲ ବି ନାହିଁ– କଲେଜ ଆସିବ କେଉଁଠୁ !– କଲେଜ ଥିବା ପାଖ ସହର କହିଲେ ରାୟପୁର, ବିଜୟନଗର, ବରହମପୁର ଏବଂ କଟକ ହିଁ ବୁଝାଏ । ରାୟପୁର, ହିନ୍ଦୀଭାଷାଭାଷୀ ଅଞ୍ଚଳ ଭିତରେ, ବିଜୟନଗରମ ତେଲଗୁ ଭାଷାଭାଷୀ, ବରହମପୁର ଖଲିକୋଟ କଲେଜ ଉଭୟ ତେଲୁଗୁ ଏବଂ ଓଡ଼ିଆ ଭାଷାଭାଷୀ ହେଲେ ମଧ୍ୟ ସେ ସହର ମାଡ୍ରାସ ପ୍ରେସିଡେନ୍ସିରେ ଏବଂ କଲେଜ ମାଡ୍ରାସ ବିଶ୍ୱବିଦ୍ୟାଳୟ ଅଧୀନରେ– ରହିବା ତଥା ଖାଇବା ପିଇବାର ସୁବିଧା ମଧ୍ୟ ଆମ ପରି ବାହାରୁ ଯାଇଥିବା ଛାତ୍ରଙ୍କ ପାଇଁ ନାହିଁ– ତେଣୁ ଓଡ଼ିଶା ବୋଲି କୌଣସି ପ୍ରଦେଶ ନ ଥିଲେ ମଧ୍ୟ ଓଡ଼ିଆ ପିଲାଙ୍କ ପାଇଁ ରେଭେନ୍ସା କଲେଜ ହିଁ ଏକମାତ୍ର କଲେଜ– ମୁଁ ସେହି ରେଭେନ୍ସା କଲେଜରେ ଫିଜିକ୍ସ, କେମିଷ୍ଟ୍ରି ଏବଂ ଗଣିତ ନେଇ ବିଜ୍ଞାନର ଛାତ୍ର ଭାବରେ ଯୋଗ ଦେଲି । ଅଧିକା ବୋଟାନୀ ଅପ୍ସନାଲ ନେଲେ କେମିତି ଭଲ ଜିବିକା ପାଇବାର ସୁବିଧା ହୁଏ ସେ କଥା ମୋତେ କେହି କହି ନ ଥିଲେ । ବଣପାହାଡ଼ରେ ଘେରା ଏକ ଦୁର୍ଗମ ଅଞ୍ଚଳର ଜଣେ କୂପମଣ୍ଡୁକ ମୁଁ ମୋର ପାଠ୍ୟକ୍ରମରେ ବିଜ୍ଞାନର ନାମ ଗନ୍ଧ ନାହିଁ, କ'ଣ ପଢ଼ିଲେ ଭଲ ହେବ ସେ ପରାମର୍ଶ ଦେବା ପାଇଁ ମଧ୍ୟ ପାଖରେ କେହି ନାହାନ୍ତି । କଳା ପାଠୁଆ ମୋର ଛାତ୍ର ବନ୍ଧୁମାନଙ୍କ ମତ ଯେ ଡାକ୍ତରୀ ହେବା ଅଭିପ୍ରାୟ ନ ଥିଲେ ବୋଟାନୀ ନେଇ ବହିପତ୍ର କିଣାକିଣିରେ ଆଉ ଅଧିକା ମାସିକ କଲେଜ ଫିଜ୍ ଦେଇ ଲାଭ ଅବା କଅଣ– ଗୃହକର୍ତ୍ତାଙ୍କୁ ଅଧିକା ଖର୍ଚ୍ଚ ବୋଝ ଲଦିବା କଥା ସିନା– ସେମାନଙ୍କ କଥା ମାନି ନେଇଥିଲି । ବୋଟାନୀ ନେଲେ ସତରେ କି ଲାଭ ସେ କଥା ଜାଣିଲା ବେଳକୁ ନେଡ଼ିଗୁଡ଼ କହୁଣିକୁ ବୋହି ଯାଇ ସାରିଥିଲା– କଲେଜ ଅଫିସ୍‌ବାଲେ କହିଲେ ନେବାର ସମୟ ଆଉ ନାହିଁ । ଆଉ ମୁଁ ମୋ ମନକୁ ବୁଝାଇବା ପାଇଁ ଭାବିଲି 'ହେଲା ହେଲା । କ'ଣଟା ଭାସିଗଲା ଯେ । କିନ୍ତୁ ଯେଉଁଦିନ ମୋର ସହପାଠୀ ଗୋପାଳ, ପଦ୍ମନାଭ, ପ୍ୟାରୀମୋହନ ଆଦି କହି ବସିଲେ ଯେ ଗଛମାନେ ବି ଖାଦ୍ୟ

ଖାଆନ୍ତି, ଖରା ପୋଉବାକୁ ପ୍ରତିଯୋଗିତା କରି ଆକାଶ ଆଡ଼କୁ ମୁଣ୍ଡ ଟେକନ୍ତି ଆଉ କେହି ଛୁଇଁଦେଲେ ଲତାଟିଏ ଲାଜେଇଯାଇ ମୁହଁ ପୋତିଦିଏ ମୁଁ ପ୍ରଥମେ ସେସବୁ ସହପାଠୀଙ୍କ ଟପ ବୋଲି ଧରିନେଇଥିଲି ଏବଂ ପରେ ଯେତେବେଳେ ଜାଣିଲି ଯେ ଶରୀରକୁ ଏସବୁ ଜ୍ଞାନ ଦବାରେ ଯେଉଁ ବୈଜ୍ଞାନିକମାନେ ଅନ୍ୟତମ ସେମାନଙ୍କ ଭିତରେ ସାର୍ ଜଗଦୀଶ ଚନ୍ଦ୍ର ବୋଷ ଯେମିତି ଆମ ପ୍ରାଣକୃଷ୍ଣ ପରିଜା ବି ସେମିତି, ଭକୁଆ ପାଲଟି ପାଟି ମେଲା କରି ଦେଉଥିଲି ଏବଂ ବୋଟାନୀ ନ ନେଇ ଯେଉଁ ଭୁଲ୍ କରି ସେଥିପାଇଁ ନିଜକୁ କ୍ଷମା ଦେଇ ପାରି ନ ଥିଲି ।

ତା ପରେ ହିଁ ପ୍ରାଣକୃଷ୍ଣ ପରିଜା ହୋଇ ଉଠିଥିଲେ ମୋ ପାଇଁ ଜଣେ ଆଶ୍ଚର୍ଯ୍ୟ । ତାଙ୍କ ପାଖରେ ତ ପଢ଼ି ପାରିଲିନି, ତେବେ ସେ ଯେ ଆମ ହଷ୍ଟେଲ ଓ୍ୱାର୍ଡେନ୍ ସେଥିରେ ହିଁ ମୁଁ ଗର୍ବିତ ହୋଇ ତାଙ୍କ କାମଧାମକୁ ଲକ୍ଷ୍ୟ କରି ବସିଛି । କି ଗମ୍ଭୀର ପ୍ରକୃତିର ଲୋକ ଏ ପରିଜାସାହେବ । ହସନ୍ତି ନା ନାହିଁ କେଜାଣି !– ରାଗନ୍ତି ସିଧାସଳଖ ଗୋଟାଏ ଯନ୍ତ୍ର ପରି– ଭୂଇଁ ମାପି ମାପି ଚାଲନ୍ତି ନା କ'ଣ ! ସବୁ ପାହୁଣ୍ଡ ସମାନ ହୁଏତ ହାତେ ମାପି ଚାଖଣ୍ଡେ ଚାଲନ୍ତି ଆଉ ରାତି ଅଧଯାଏ ଆମ ହଷ୍ଟେଲ ପାଖ ଲାବୋରେଟୋରିରେ କ'ଣ ବୁଲୁଥାନ୍ତି କେଜାଣି । କୌଣସି ସଭାସମିତିରେ ସେ ସଭାପତି ଥିଲେ ମିନିଟ୍ ଦେଖି ପହଞ୍ଚି ଯାଆନ୍ତି– କଥା କହନ୍ତି ଖୁବ୍ କମ୍– କେବଳ ଦରକାର ମୁତାବକ– ରୋକ୍ ଠୋକ୍ ସତେ ଯେମିତି ଦୁଇ ଯୁକ୍ତ ଦୁଇ ମିଶି ଚାରି ବୋଲି ଘୋଷଣା କରୁଛନ୍ତି– ହାସ୍ୟ ନାହିଁ, ବ୍ୟଙ୍ଗ ନାହିଁ– ଏ ପାଖ ଧାଡ଼ିଏ କି ସେ ପାଖ ବଳକା ଧାଡ଼ିଏ ନାହିଁ, ପାଣ୍ଡିତ୍ୟ ପ୍ରଦର୍ଶନର କୌଣସି ଉଦ୍ୟମ ନାହିଁ । ଭୟଙ୍କର ବାସ୍ତବବାଦୀ ଆଉ ଅସାଧାରଣ ଥିଲେ ଏ ପରିଜାସାହେବ । କାହିଁକି କେଜାଣି ? କେବେ କେବେ ତାଙ୍କୁ ଆମ କପିଳ ମୁନି, ଚରଣ ଋଷି, ରାମକୃଷ୍ଣ, ବିବେକାନନ୍ଦଙ୍କ ସଙ୍ଗରେ ତୁଳନା କରିବଇଁ, ଜଟା ଦାଢ଼ି ଅଥବା ଗେରୁଆ ଧୋତି ପଗଡ଼ିବିହୀନ ଜଣେ ଜ୍ଞାନୀ ଯାହାଙ୍କୁ ଏ ଯୁଗରେ କହନ୍ତି ବିଜ୍ଞାନୀ ।

ରେଭେନ୍ସା କଲେଜ ଛାଡ଼ିବା ପରେ ମୋ ଜୀବନର ଗତି ବଦଳିଗଲା ଆଉ ମୁଁ ହେଲି ଜଣେ ପ୍ରୟୋଗବିଦ୍ୟାବାଦୀ ଭିତ୍ତିର ଇଞ୍ଜିନିୟର । ଡକ୍ଟର ପରିଜାଙ୍କ ପ୍ରତ୍ୟକ୍ଷ ଅବା ପରୋକ୍ଷ ସଂପର୍କକୁ ହରେଇ ଥିଲି । ତଥାପି ଯୁକ୍ତରାଷ୍ଟ୍ର ଆମେରିକାରେ ଜଡ଼ ବିଜ୍ଞାନ ବିଶାରଦ ପ୍ରଫେସର ଲେନ୍, ପ୍ରଫେସର ହଣ୍ଟର ରାଉଳଙ୍କ ପାଖରେ ପଢ଼ିଲାବେଳେ ଡକ୍ଟର ପରିଜାଙ୍କ ଛବି ବେଳେବେଳେ ମୋ ମନ ଭିତରେ ଉଙ୍କି ମାରେ । ସେହି ଆମେରିକାରେ ଥିଲା ବେଳେ ହିଁ ମୁଁ ଇଉରୋପ ଏବଂ ଆମେରିକାରେ ଗବେଷକଙ୍କ ଖ୍ୟାତି ଏବଂ ସମ୍ମାନ କଥା ଜାଣିଥିଲି । ଆମେରିକାରେ ପଢ଼ିଲା ବେଳେ ମୁଁ ବୁଝି ପାରିଥିଲି ଋଷି-ମୁନି ଆଉ ଗବେଷକ, ଜ୍ଞାନୀ ଓ ବିଜ୍ଞାନୀ ଏକ ଜାତୀୟ ମଣିଷ । ବେଶଭୂଷା ଅଲଗା ହେଲେ ମଧ୍ୟ ଗନ୍ତବ୍ୟ ପଥ ଏକ, ଲକ୍ଷ୍ୟସ୍ଥଳୀ ଏକ ।

ଅଜଣାର ଅନୁସନ୍ଧାନରେ ନିଜକୁ ହଜାଇ ଦେଇଥାଆନ୍ତି ସେମାନେ । ଡକ୍ଟର ପରିଜାଙ୍କ ପ୍ରତି ମୋ ସମ୍ମାନ ତା ପରେ ବହୁତ ବଢ଼ି ଯାଇଥିଲା ।

୧୯୫୬ ବେଳକୁ ମୋ ଜୀବନର ଗତି ଆଉ ଏକ ମୋଡ଼ ନେଲା । ଭାରତ ସ୍ୱାଧୀନ ହେବା ପରେ ଏବଂ ଗଡ଼ଜାତ ମିଶ୍ରଣ ପରେ ମୁଁ କଳାହାଣ୍ଡିରୁ ଆସି ହୀରାକୁଦ ବନ୍ଧ ଯୋଜନାରେ ଏକଜିକ୍ୟୁଟିଭ ଇଞ୍ଜିନିୟର ଥାଏ । ଦିନେ ହଠାତ୍ ଡାକ୍ତର ସୁବଳ ଦାସଙ୍କ ଠାରୁ ଚିଠି ଖଣ୍ଡିଏ ପାଇଲି । ଲେଖା ଅଛି ଡକ୍ଟର ପରିଜା ବୁର୍ଲା ଆସି ଗେଷ୍ଟ ହାଉସ୍‌ରେ ଅଛନ୍ତି, ସେ ଆପଣଙ୍କ ସଙ୍ଗରେ କଥାବାର୍ତ୍ତା ହେବାକୁ ଚାହାନ୍ତି । ତାଙ୍କୁ ଶୀଘ୍ର ଦେଖା କରନ୍ତୁ । ଡକ୍ଟର ପ୍ରାଣକୃଷ୍ଣ ପରିଜା । ମୋର ଜଣେ ଆଦର୍ଶ ପୁରୁଷ, ସେ ମୋତେ ଦେଖିବାକୁ ଚାହିଁଛନ୍ତି । ଆଶ୍ଚର୍ଯ୍ୟ ହୋଇ ଦେଖା କରିବାକୁ ଗଲି ।

ଗେଷ୍ଟ ହାଉସ୍‌ରେ ଥିବା ଅତିଥି ଭବନରୁ ତାଙ୍କ କୋଠରି ଜାଣିନେଇ ସେ ପାଖକୁ ଗଲି । କୋଠରି ସାମ୍ନାରେ କେହି ନାହାନ୍ତି– କାହା ଜରିଆରେ ମୁଁ ଆସିଥିବା ଖବର ଦେବି ! ଅଗତ୍ୟା କବାଟରେ ଅତି ସନ୍ତର୍ପଣରେ ଠକ୍ ଠକ୍ କଲି । ଭିତରୁ ଜବାବ୍ ଆସିଲା– ଭିତରକୁ ଆସ । ସେ ନିର୍ଦ୍ଦେଶରେ ମୁଁ ଭିତରକୁ ପଶିଲି ଏବଂ ପରିଜାସାହେବ ମୋତେ ନିରେଖି ଚାହୁଁଥିବା ଦେଖି ମୋର ପରିଚୟ ଦେଇ ଜଣାଇଦେଲି ଯେ ଡାକ୍ତର ସୁବଳ ଦାସ ମୋତେ ପଠାଇଛନ୍ତି । ମୁହଁରେ ହସର ସାମାନ୍ୟ ଝଲକ ଖେଳାଇ ପରିଜାସାହେବ କହିଲେ ତମେ ଓ୍ୱେଷ୍ଟ ହଷ୍ଟେଲର ଛାତ୍ର ଥିଲ ନା ? ମନେ ପଡୁଛି ? କଥା କ'ଣକି ଓଡ଼ିଶାରେ ଇଂଜିନିୟରିଂ କଲେଜଟିଏ ପ୍ରତିଷ୍ଠିତ ହେବାକୁ ଯାଉଛି । ଆମ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଚାହାନ୍ତି ଯେ କଲେଜଟି ଉତ୍କଳ ବିଶ୍ୱବିଦ୍ୟାଳୟର ପରିଚାଳନାରେ ରହୁ । ସରକାର ନିଷ୍ପତ୍ତି କରିଛନ୍ତି ଯେ କଲେଜଟି ବୁର୍ଲାଠାରେ ହେବ । ଏଇଠିତ ମେଡ଼ିକଲ କଲେଜଟିଏ ବି ହୋଇଛି । ବୁର୍ଲା ଗୋଟାଏ ଶିକ୍ଷାକେନ୍ଦ୍ର ହୋଇ ଗଢ଼ି ଉଠିବ । ଆମେ ଏଇ ଇଞ୍ଜିନିୟରିଂ କଲେଜ ପାଇଁ ୫୦ ଜଣ ଛାତ୍ର ନେଇ ସାରିଛୁ । ସେ ଛାତ୍ରମାନେ ରହିବା ପାଇଁ ଚିଫ୍ ଇଞ୍ଜିନିୟର୍ସ ଆୟେଙ୍ଗାର ସାହେବ ଦି'ଧାଡ଼ି ଏଜବେଷ୍ଟସ ଛାତ ଦିଆ ଏପ୍ ଟାଇପ୍ ଘର ଦେଇଛନ୍ତି । କଟକ ଇଞ୍ଜିନିୟର ସ୍କୁଲର ଜଣେ ରିଟାୟାର୍ଡ ଓ୍ୱାର୍କସପ୍ ସୁପରିଣ୍ଟେଣ୍ଡେଣ୍ଟଙ୍କୁ ଆମେ ଏ ପିଲାଙ୍କ ନାମ ଲେଖା ପାଇଁ ପଠାଇ ସାରିଛୁ । ଜଣେ ହେଡ୍‌କ୍ଲାର୍କ, ଜଣେ ଟାଇପିଷ୍ଟ ଏବଂ ଜଣେ ପିଅନ ବି ୟୁନିଭରସିଟିରୁ ଡେପୁଟେସନ୍‌ରେ ଆସିଛନ୍ତି ।

ପ୍ରଧାନ କଥା ହେଲା କିଏ କଲେଜ ଗଢ଼ିବାର ଭାର ନେବ । ଆମେ ଜଣେ ସ୍ପେସିଆଲ୍ ଅଫିସର ଚାହୁଁଛୁ । ସେଥିପାଇଁ ବିଜ୍ଞାପନ ବି ଜାରି ହୋଇସାରିଛି କିନ୍ତୁ ଆମ ଓଡ଼ିଶାର କୌଣସି ଇଂଜିନିୟର ସେଥିପାଇଁ ଆଗେଇ ଆସୁନାହାନ୍ତି । ଆମେ ଏବେ ଭାବୁଛୁ ଯିଏ ସ୍ପେସିଆଲ୍ ଅଫିସର୍ ହେବ ସେ ଶେଷରେ କଲେଜର ଜଣେ ପ୍ରଫେସର ବି ହେବ । ସମ୍ବଲପୁରର ଏଇ ଡାକ୍ତର ସୁବଳ ଦାସ, ଡକ୍ଟର ମାୟାଧର ମାନ୍‌ସିଂହ,

ଶ୍ରୀ ବ୍ରଜମୋହନ ପଣ୍ଡା ପରି ଶୁଭେଚ୍ଛୁମାନଙ୍କ ଧାରଣା ଯେ ତମେ ଏ ଭାର ନେଲେ ଭଲ ହୁଅନ୍ତା – Will you be interested ?(ତୁମେ କ'ଣ ଆଗ୍ରହୀ ?)

ଏମିତି ସିଧାସଳଖ ପ୍ରଶ୍ନ – ମୁଁ ଟିକିଏ ଭାବିଲି । ଏମିତି ତ ହୀରାକୁଦ ବନ୍ଧ ତିଆରି ସରିଗଲା ପରେ ମୁଁ ଖଡ଼୍ଗପୁର ଆଇ. ଆଇ. ଟି.କୁ ଚାଲିଯିବି, ସେହି ନିଷ୍ପତ୍ତି ନେଇଥିଲି – ଏବେ ହୀରାକୁଦ ବନ୍ଧ କାମ ସରିବା ଉପରେ – ପରିଜାସାହେବଙ୍କ ଅଧୀନରେ କାମ କଲେ ନିଶ୍ଚୟ ଗବେଷଣା ପାଇଁ ଉତ୍ସାହ ମିଳିବ – ଖୁସିରେ ସହମତି ଜଣାଇ ଦେଲି । ଡକ୍ଟର ପରିଜା ସଙ୍ଗେ ସଙ୍ଗେ ନିଜ ବାକ୍ସ ଖୋଲି ମୋତେ ଗୋଟାଏ ଛପା ଫର୍ମ ଦେଇ ତାକୁ ପୂରଣ କରିବା ପାଇଁ କହିଲେ ଏବଂ ମୁଁ ଯେତେବେଳେ ତାଙ୍କ ସାମ୍ନାରେ ଫର୍ମ ଭର୍ତ୍ତି କରି ତାଙ୍କ ହାତକୁ ବଢ଼ାଇ ଦେଲି ସେ ତାକୁ ତନଖି ନେଲେ । ଗୁଣୁଗୁଣେଇଲେ ଫିଜିକ୍ସ ଅନର୍ସ, ଇଂଜିନିୟରିଂ ଡିଗ୍ରୀ, ପୋଷ୍ଟ ଗ୍ରେଜୁଏଟ୍ କ୍ୱାଲିଫିକେସନ୍, ପବ୍ଲିସ୍ଡ୍ ରିସାର୍ଚ୍ଚ ପେପରସ୍ । ମୋତେ ଅନାଇ କହିଲେ 'ହଁ' ଆମେ ତମ ପରି ଜଣେ ଚାହୁଁ – ଏ ଫର୍ମ ଟାଇପ୍ କରାଇ ନେଇ ୬ କିତା ତମ ଚିଫ୍ଇଞ୍ଜିନିୟରଙ୍କ ଜରିଆରେ ଆମ ୟୁନିଭରସିଟିକୁ ପଠାଇ ଦେବ – ଆଉ ମୋତେ ଯଦି ଏଇଠି ଦେବ ତେବେ ମୁଁ କାଲି ସକାଳଯାଏ ଅଛି ।

ମୁଁ ସେହି ଦିନହିଁ ଫର୍ମ ୬ କିତା ଟାଇପ୍ କରାଇ ନେଇ ଯଥାରୀତି ସେସବୁ ପୂରଣ କରି ମୋ ବନ୍ଧୁ ଚିଫ୍ ଇଞ୍ଜିନିୟରଙ୍କ ଟେକ୍ନିକାଲ୍ ପି. ଏ. ଜରିଆରେ ଯେତେବେଳେ ଚିଫ୍ ଇଞ୍ଜିନିୟରଙ୍କ ପାଖକୁ ପଠାଇଲି, ସେ ସିଧାସଳଖ ମୋ ଦରଖାସ୍ତ ପଠାଇବା ପାଇଁ ମନା କରିଦେଲେ । ମୁଁ ସନ୍ଧ୍ୟାବେଳେ ସେକଥା ଯେତେବେଳେ ଡକ୍ଟର ପରିଜାଙ୍କୁ ଜଣାଇଲି, ସେ ରୋକ୍‌ଠୋକ୍ କହିଲେ ଦରଖାସ୍ତ ଠିକ୍ ବାଟ ଦେଇ ନ ଆସିଲେ ମୁଁ କିଛି କରିପାରିବିନି । ନିର୍ମାଣ ବିଭାଗରେ ଜୀବନ ନ କଟାଇ ଶିକ୍ଷା ଏବଂ ଗବେଷଣା କ୍ଷେତ୍ରକୁ ଯିବା ମୋ ସ୍ୱପ୍ନ ମୃଗମାଚ ହେଇଗଲା ପରି ମନେ ହେଲା । ଶୃଙ୍ଖଳା ସ୍ଥାନରେ ବନ୍ଧା ଡକ୍ଟର ପରିଜା ତ ଏଉଡ଼ାବ୍ଧ କପିରେ ମୋ ଦରଖାସ୍ତ ବିଚାରକୁ ନେବେନି – ମୁଁ ତା ଆରଦିନ ପୁଣି ଥରେ ଧାଇଁଲି ଚିଫ୍ ଇଞ୍ଜିନିୟରଙ୍କ ପାଖକୁ । ଦେଖା କରିବା ପାଇଁ ଅନୁମତି ମାଗି ଯେତେବେଳେ ମୋ ମନ କଥା କହିଲି – ଗବେଷଣା ପ୍ରତି ମୋ ଆଗ୍ରହ କଥା ବୁଝାଇ ସେ ଦରଖାସ୍ତ ସୁପାରିସ ନ କଲେ ମୁଁ ଗୋଟାଏ ଅପୂର୍ବ ସୁଯୋଗ ହରାଇବି ବୋଲି ବୁଝାଇ ଦେଲି ସେ ହୀରାକୁଦ ବନ୍ଧର ରକ୍ଷଣାବେକ୍ଷଣ କଥା କହି ଶେଷରେ ଦରଖାସ୍ତ ପଠାଇଦେବେ ବୋଲି ରାଜି ହୋଇଗଲେ । ମୁଁ ଯଥାସମୟରେ ସ୍ପେସିଆଲ ଅଫିସର ଏବଂ ପ୍ରଫେସର ହେଲି । ସେଦିନ କଲେଜ ପାଇଁ ନିର୍ଦ୍ଦିଷ୍ଟ ସ୍ଥାନ ବଦଳାଇ ଆର୍କିଟେକ୍ଟ ପାଖରେ ବସି କଲେଜ ଏବଂ ହଷ୍ଟେଲମାନଙ୍କ ଡିଜାଇନ୍ ତ୍ୱରାନ୍ୱିତ କରିବାରେ ଚିଫ୍ ଇଞ୍ଜିନିୟରଙ୍କ ମାଧ୍ୟମରେ ସେସବୁ ନିର୍ମାଣ କରିବା ଦାୟିତ୍ୱ ଦେବାର

ପରିଜାସାହେବ ମୋର ପ୍ରସ୍ତାବମାନଙ୍କୁ ଯେପରି ମଞ୍ଜୁରି ଦେଇଥିଲେ ସେପରି କ୍ଷିପ୍ର ପରିଚାଳନାକ୍ଷମ ବ୍ୟକ୍ତିକୁ ଜୀବନରେ ଖୁବ୍ କମ୍ ଦେଖିଛି । ଯେକୌଣସି ବାଧା ବିଘ୍ନ ବୁଝିବାରେ, ଆଗ ପଛ ବିଚାର କରିବାରେ ବିଷୟଟିର ଭିତର ବାହାର ଚଟ୍ କରି ଧରି ପାରିବାରେ ସେ ଥିଲେ ଅସାଧାରଣ ଭାବେ ଦକ୍ଷ । କେତୋଟି ଘଟଣା ମୋର ମନେ ଅଛି । କଲେଜ ତିଆରି ସରିଯାଇଥାଏ । ଠିକାଦାରଙ୍କୁ ଟଙ୍କା ଦେବା କଥା, କେନ୍ଦ୍ର ୟୁନିଭରସିଟି ଗ୍ରେଣ୍ଟସ୍ କମିଶନ୍ କହିଲେ ଯେ ଆମେ ତାଙ୍କ ନିର୍ଦ୍ଦେଶ ଠାରୁ କଲେଜର ବିଲ୍ଡିଂ ଯଥେଷ୍ଟ ବଡ଼ କରି ଦେବାରୁ ଏବଂ ସେଥିପାଇଁ ସେମାନେ ବଳକା ଚଉହଦି ପାଇଁ ଟଙ୍କା ଦେବେନି । ସିଣ୍ଡିକେଟ୍ ସେଥିପାଇଁ ମୋତେ ଦୋଷୀ କଲାରୁ ମୁଁ ଯେତେବେଳେ କହିଲି ଯେ ଆମର ଭୁଲ୍ ନୁହେଁ ସେମାନଙ୍କ ହିସାବ ଭୁଲ୍, ମୋତେ କେନ୍ଦ୍ର ଇଞ୍ଜିନିୟରସ୍‌ଙ୍କ ଭୁଲ୍ ଦେଖାଉଛି କହି ସେମାନେ ହସି ଦେଇଥିଲେ । ଡକ୍ଟର ପରିଜା କିନ୍ତୁ ମୋ ମତକୁ ଖାତିର କରି ମୋର ଉତ୍ତର ହିଁ ୟୁନିଭରସିଟିର ଉତ୍ତର ବୋଲି କେନ୍ଦ୍ରକୁ ପଠାଇ ଦେଇଥିଲେ । କେନ୍ଦ୍ର ଯେ କେବଳ ମୋ ମତକୁ ଗ୍ରହଣ କରିଥିଲା ତା ନୁହେଁ, ତାଙ୍କ ଭୁଲ୍ ତ୍ରୁଟିକୁ ଦେଖାଇ ଦେଇଥିବା ଯୋଗୁଁ ଉତ୍କଳ ୟୁନିଭରସିଟିକୁ ପ୍ରଶଂସା କରିଥିଲା । ଗୁଣ ଚିହ୍ନେ ଗୁଣିଆ ପରି କାଳେ କଲେଜ ଗଢ଼ିବାରେ ମୋର ଉତ୍ସାହ ଏବଂ ଅବଦାନ କମିଯିବ ସେ ଭାବନାରେ ପ୍ରିନ୍ସିପାଲ ନିଯୁକ୍ତି ବେଳେ ମଧ ପରିଜାସାହେବ ମୋର କୌଣସି ଆପତ୍ତି ଅଛି କି ବୋଲି ପଚାରିଥିଲେ । ଏ ସମ୍ବନ୍ଧରେ ମତ ଦେବାରେ ମୁଁ ଅବା କିଏ ! ତଥାପି ଯେତେବେଳେ ମୁଁ ବୁଝିଛି ମୋର ପୂର୍ବ ପାଟନା ଇଂଜିନିୟରିଂ କଲେଜ ଗୁରୁ ଭାଗବତ ପ୍ରସାଦଙ୍କୁ ସେ ପ୍ରିନ୍ସିପାଲ କରି ଆଣିବାକୁ ଚାହୁଁଛନ୍ତି ମୋର ଉତ୍ସାହ ଦ୍ୱିଗୁଣିତ ହୋଇ ଯାଇଥିଲା । ଜି. ଏମ୍. କଲେଜର କେମିଷ୍ଟ୍ରି ଡିପାର୍ଟମେଣ୍ଟ ତ ଏଡ଼େ ବି ନୁହେଁ ଇଂଜିନିୟରିଂ କଲେଜର କେମିଷ୍ଟ୍ରି ଡିପାର୍ଟମେଣ୍ଟ କାହିଁକି ଏତେ ବଡ଼ ହେବ, ଓଡ଼ିଶା ପରି ଗରିବ ପ୍ରଦେଶରେ କଲେଜ ପଡ଼ିଆରେ ଘାସ କାହିଁକି ଲାଗିବ ପରି ସିଣ୍ଡିକେଟ୍‌ର ଆପତ୍ତିମାନଙ୍କୁ ସେ ସିଧାସଳଖ ଗ୍ରହଣ ନ କରି ଆମମାନଙ୍କୁ ଉତ୍ତର ଦେବାରେ ଉତ୍ସାହ ଦେଉଥିଲେ – ଗୋଟାଏ ଭୁଲ୍‌କୁ ଆଉ ଗୋଟାଏ ଭୁଲ୍ ଦ୍ୱାରା ସୁଧାରିବା ଅଯୌକ୍ତିକତା ଅଥବା ସେଦିନର ଉଚ୍ଚମନା ଶିକ୍ଷାବିତ୍‌ମାନେ କିପରି ରେଭେନ୍ସା କଲେଜ ପ୍ରାଙ୍ଗଣରେ ଘାସ ଲଗାଇଥିଲେ ସେପରି ଉତ୍ତରକୁ ସମ୍ମାନ ସହ ଗ୍ରହଣ କରିଥିଲେ ।

ଆଉ ଗୋଟାଏ ବଡ଼ ଘଟଣା – ଇଂଜିନିୟରିଂ କଲେଜର ଗୋଟାଏ ଗଣିତ ପେପରର ପ୍ରଶ୍ନ ସବୁ ଅତି କଠିନ ହୋଇ ଯାଇଥିବା ଯୋଗୁଁ ସବୁ ଛାତ୍ର ଫେଲ୍ ହୋଇ ଯାଇଥାନ୍ତି । ଇଂଜିନିୟରିଂରେ ସପ୍ଲିମେଣ୍ଟାରୀ ପରୀକ୍ଷା ନାହିଁ – ତେଣୁ ସମସ୍ତେ ବର୍ଷକ ପାଇଁ ଫେଲ୍ । ଦୁଇ ବେଞ୍ଚର ପିଲାଙ୍କୁ ଏକାଠି ପଢ଼ାଇବା ପାଇଁ କଲେଜରେ ସ୍ଥାନ ନାହିଁ । ଡକ୍ଟର ପରିଜା ତ ବଡ଼ ଶୃଙ୍ଖଳାବିତ୍, ସପ୍ଲିମେଣ୍ଟାରୀ ପରୀକ୍ଷା ପାଇଁ ଆମର

ସବୁ ଅନୁରୋଧ ପ୍ରତ୍ୟାଖ୍ୟାନ କରିଦେଲେ । ମୁଁ ଆଉ ପ୍ରିନ୍ସିପାଲ ପ୍ରସାଦ ଶେଷରେ ତାଙ୍କ ପାଖକୁ ଯାଇ ବୁଝାଇ ବସିଲୁ ଯେ ଉତ୍କଳ ବିଶ୍ୱବିଦ୍ୟାଳୟର ସବୁଠେଇଁ ତ ସପ୍ଲିମେଣ୍ଟାରୀ ପରୀକ୍ଷା ଅଛି ଆମେ କାହିଁକି ବନାରସ ବିଶ୍ୱବିଦ୍ୟାଳୟର ଅପରିବର୍ତ୍ତିତ ପାଠ୍ୟକ୍ରମ ମାନି ତାଙ୍କ ନିୟମ ଅନୁସାରେ ସପ୍ଲିମେଣ୍ଟାରୀ ପରୀକ୍ଷାରୁ ବଞ୍ଚିତ ହେବୁ । ବନାରସ ଇଂଜିନିୟରିଂ କଲେଜରେ ନିଜ କଲେଜ ଶିକ୍ଷକ ପ୍ରଶ୍ନ ତିଆରି କରିବା ଅଧିକାର ଅଛି– ଆମର କିନ୍ତୁ ତାହା ମନା । ଫଳରେ ପାଠ୍ୟକ୍ରମ ବାହାରିଆ ପ୍ରଶ୍ନ ସବୁ ଆସିଯାଇଛି ଆଉ ସେଥିରେ ପିଲାମାନେ ଦଣ୍ଡିତ ହେବେ କାହିଁକି ? ନିୟମରୁ ଟିକିଏ ବି ନ ଘୁଞ୍ଚିବା ଡକ୍ଟର ପରିଜା ସବୁ ପାଠ୍ୟକ୍ରମ ତନଖି ଦେଖି ଆମ ଯୁକ୍ତିକୁ ମାନିନେଲେ ଏବଂ ନିୟମ ବଦଳାଇ ଦେଇ ସପ୍ଲିମେଣ୍ଟାରୀ ପରୀକ୍ଷା ପାଇଁ ରାଜି ହୋଇଗଲେ– ବୈଜ୍ଞାନିକର ଖୋଲା ମନ ପ୍ରମାଣିତ କରି ଦେଇ ।

ଥରେ ସେ ପ୍ରିନ୍ସିପାଲ ପ୍ରସାଦ ଓ ମୋତେ ତାଙ୍କ ଘରେ ଖାଇବାକୁ ଡାକିଥିଲେ । ଆମ ପାଇଁ ଥିଲା ପଲାଉ, ଲୁଚି, ମାଂସ । ସେ କିନ୍ତୁ ବସିଥିଲେ ଦୁଇଖଣ୍ଡ ପାଉଁରୁଟି ନେଇ । ଆମ ମନ୍ତବ୍ୟ ଶୁଣି କହିଥିଲେ– ସେ ରାତିରେ ଦି'ଖଣ୍ଡ ପାଉଁରୁଟି ହିଁ ଖାଆନ୍ତି । କି କଠୋର ନିୟମ ! ସେତକ ଖାଇ ମଧ୍ୟ ଖାଟେଣି ଖଟିବା ପାଇଁ ତାଙ୍କର କି ଅଦମ୍ୟ ଶକ୍ତି ! ଯେବେ କଟକରୁ ସମ୍ବଲପୁର ଆସନ୍ତି, ଆସନ୍ତି ରାତି ସାରା ତାଙ୍କ ମଟର ଗାଡ଼ିରେ । ସକାଳେ ବିଶ୍ରାମର ପ୍ରଶ୍ନ ନାହିଁ ଯେଉଁ କର୍ମଠକୁ ସେଇ କର୍ମଠ । ସମୟ ଅପଚୟର ପ୍ରଶ୍ନ ନାହିଁ ।

ବୁର୍ଲା ଇଂଜିନିୟରିଂ କଲେଜରେ ପାଞ୍ଚବର୍ଷରୁ ଊର୍ଦ୍ଧ୍ୱ ରହି ମୁଁ କଲେଜ ଅଧ୍ୟକ୍ଷ ହୋଇଥାଏ । ରାଉରକେଲା ଆଞ୍ଚଳିକ ଇଂଜିନିୟରିଂ କଲେଜର ଅଧ୍ୟକ୍ଷ ରୂପରେ ସାରଭିସ୍ କମିଶନ୍ ଦ୍ୱାରା ମନୋନୀତ ହେଲି । ବୁର୍ଲା କଲେଜରୁ ଅବ୍ୟାହତି ପାଇ ମୁଁ ଯେତେବେଳେ ବିଶ୍ୱବିଦ୍ୟାଳୟକୁ ଅନୁରୋଧ କଲି ସିଣ୍ଡିକେଟ୍ ସଦସ୍ୟମାନଙ୍କ ସହ ସ୍ୱୟଂ ଡକ୍ଟର ପରିଜା କହିଲେ ଆମେ ତମକୁ ସେଇ ବେତନ ଦେବୁ, ତମେ ଏଇଠି ରହିଯାଅ । ସ୍ନେହର କି ଅପୂର୍ବ ପରିପ୍ରକାଶ ମୁଁ ଯେତେବେଳେ କହିଲି ବୁର୍ଲା ଇଂଜିନିୟରିଂ କଲେଜରୁ ମୋ ସମେତ ଅନ୍ୟ ପ୍ରବୀଣ ଓଡ଼ିଆ ଅଧ୍ୟାପକ ଅଛନ୍ତି, ଯିଏ ସେ ସ୍ଥାନ ପୂରଣ କରିପାରିବେ କିନ୍ତୁ ମୁଁ ରାଉରକେଲା ଇଂଜିନିୟରିଂ କଲେଜକୁ ନ ଗଲେ ସେଠାରେ ଅଧ୍ୟକ୍ଷ ହେବା ପାଇଁ ବାହାରୁ ଜଣେ ଆସିବେ ଓ ଡକ୍ଟର ପରିଜା ସଙ୍ଗେ ସଙ୍ଗେ କହିଥିଲେ ଯାଅ, ଆମ ସମସ୍ତଙ୍କ ଆଶୀର୍ବାଦ ନେଇ ଯାଅ ।

ଆମ ସମସ୍ତଙ୍କ ପ୍ରକୃତ ଗୁରୁ ପଦବାଚ୍ୟ ଥିଲେ ଡକ୍ଟର ପରିଜା– ଉତ୍କଳମାତାର ଜଣେ ମହାନ୍ ସନ୍ତାନ । ଋଷିପ୍ରାଣ ଡକ୍ଟର ପ୍ରାଣକୃଷ୍ଣ ପରିଜା ଯେପରି ଜଣେ ବୈଜ୍ଞାନିକ ସେପରି ଜଣେ ଶିକ୍ଷାବିତ୍ । ଆମ ସମସ୍ତଙ୍କର ନମସ୍ୟ ।

# ଡକ୍ଟର ପରିଜା : ଜଣେ ବଡ଼ ମଣିଷ

**ଭୈରବନାଥ ରୋହାଟଗୀ**

ଜୀବନ ଗଢ଼ାହେବାର ସବୁଠାରୁ ମୂଲ୍ୟବାନ୍ ସମୟ ୧୯୩୨ରୁ ୧୯୪୯ ମସିହା ମୁଁ ଓଡ଼ିଶାରେ କଟାଇଛି । ମତେ ଯେତେବେଳେ ୨୫ ବର୍ଷ ବୟସ ସେତେବେଳେ ମୁଁ କଟକସ୍ଥିତ ରେଭେନ୍ସା କଲେଜରେ ଅଧ୍ୟାପକ ରୂପେ ଯୋଗଦେଲି । ମୁଁ ଓଡ଼ିଶା ଓ ଓଡ଼ିଶାବାସୀଙ୍କ ନିକଟରେ ଗଭୀର କୃତଜ୍ଞ—ସେ ସମୟର ପ୍ରଖ୍ୟାତ ବ୍ୟକ୍ତିମାନଙ୍କ ମଧ୍ୟରେ ପ୍ରଫେସର ପ୍ରାଣକୃଷ୍ଣ ପରିଜା ଥିଲେ ଅଗ୍ରଗଣ୍ୟ ।

ଏହି ୧୭ ବର୍ଷ ମଧ୍ୟରେ ମୁଁ ବିଭିନ୍ନ କ୍ଷେତ୍ରରେ ପ୍ରଫେସର ପରିଜାଙ୍କ ଘନିଷ୍ଠ ସଂସ୍ପର୍ଶରେ ଆସିଛି । ଆମେ ସମସ୍ତେ ଜାଣୁ ଯେ ସେ ହେଉଛନ୍ତି ଜଣେ ଅନ୍ତର୍ଜାତୀୟ ଖ୍ୟାତିସମ୍ପନ୍ନ ବୈଜ୍ଞାନିକ ଓ ଜଣେ ମହାନ୍ ବୁଦ୍ଧିଜୀବୀ ପଣ୍ଡିତ । ତାଙ୍କର ଛାତ୍ରମାନଙ୍କ ପ୍ରତି ଗଭୀର ଶ୍ରଦ୍ଧା ଥିଲା ଓ ସେ ସେମାନଙ୍କର କଲ୍ୟାଣ ପାଇଁ ବିଶେଷ ଯତ୍ନ ନେଉଥିଲେ । ଆର୍ଥିକ ସାହାଯ୍ୟ ଲୋଡୁଥିବା କୌଣସି ଯୋଗ୍ୟ ଓ ଗରିବ ଛାତ୍ର କେବେ ରିକ୍ତ ହସ୍ତରେ ତାଙ୍କ ଦୁଆରୁ ଫେରିବାର ଦେଖାଯାଇ ନାହିଁ । ସେ ସେମାନଙ୍କ ପ୍ରତି ଦୟାଳୁ ଓ ମୁକ୍ତହସ୍ତ ଥିଲେ । ଓଡ଼ିଶାର କେତେ ପୁରୁଷ ଧରି ଛାତ୍ରସମାଜ ଜଣେ ଉଚ୍ଚକୋଟୀର ଶିକ୍ଷକ ରୂପେ ତାଙ୍କ ଗଭୀର ପାଣ୍ଡିତ୍ୟ ଓ ବୌଦ୍ଧିକ ଜ୍ଞାନରାଜି ସହିତ ସଂପୂର୍ଣ୍ଣ ପରିଚିତ ।

ଜଣେ ଭଲ ମଣିଷ ରୂପେ ପ୍ରଫେସର ପରିଜାଙ୍କ ଗୁଣ ମୋ ମନରେ ସବୁଠାରୁ ଗଭୀର ରେଖାପାତ କରିଥିଲା । ତାଙ୍କର ଉତ୍କୃଷ୍ଟ ଗୁଣାବଳୀ ମଧ୍ୟରେ ତାଙ୍କର ସଂଯମତା ଓ ସରଳତା, ସତ୍ୟବାଦିତା ଓ ସ୍ପଷ୍ଟବାଦିତା, ସମ୍ବେଦନଶୀଳତା, ଶାନ୍ତ ପ୍ରକୃତି, ଭଦ୍ରତା, ବିନମ୍ରତା ଓ କ୍ଷମାଶିଳତା ଉଲ୍ଲେଖଯୋଗ୍ୟ । ସେ ତାଙ୍କର କନିଷ୍ଠ ସହକର୍ମୀମାନଙ୍କ ପ୍ରତି ସର୍ବଦା ସହାନୁଭୂତି ସମ୍ପନ୍ନ, ସାହାଯ୍ୟପ୍ରଦାନକାରୀ ଓ ସୌଜନ୍ୟପୂର୍ଣ୍ଣ ଥିଲେ ।

କୌଣସି ସଭାସମିତି ବା ଉତ୍ସବ-ମହୋତ୍ସବରେ ଡକ୍ଟର ପରିଜାଙ୍କ ଭାଷଣ ଶୁଣିବା ସବୁବେଳେ ଅତ୍ୟନ୍ତ ପ୍ରୀତିକର ଥିଲା । ତାଙ୍କର ବକ୍ତୃତା, ଚତୁରତା, ହାସ୍ୟରସ ଓ କୌତୁକରେ ଭରପୂର ରହୁଥିଲା । କୌତୁକପ୍ରଦ କାହାଣୀ ଓ ଚିତ୍ତାକର୍ଷକ ଗଳ୍ପର ସେ ଏକ ଗନ୍ତାଘର ଥିଲେ ।

ଓଡ଼ିଶା ଓ ତାର ସମ୍ଭ୍ରାନ୍ତ ଗୁଣୀ ଜ୍ଞାନୀ ବରପୁତ୍ରମାନଙ୍କର ବିଶେଷତଃ ପ୍ରଫେସର ପରିଜାଙ୍କର ସୁଖମୟ ଓ ମଧୁର ସ୍ମୃତି ମୋର ମାନସପଟ୍ଟରେ ଚିରଜାଗ୍ରତ ହୋଇ ରହିଥିବ ।

(ରଚନାକାଳ ୧୯୭୭ ମସିହା । ମୂଳ ଇଂରାଜୀ ଲେଖାରୁ ଡକ୍ଟର ଗଦାଧର ମିଶ୍ରଙ୍କ ଦ୍ୱାରା ଓଡ଼ିଆରେ ଅନୂଦିତ ।)

# ସଂସ୍କାରକ, ଅନୁଶାସନପ୍ରିୟ, ଦୟାମୂର୍ତ୍ତି ଡକ୍ଟର ପରିଜା

ଭ୍ରମରବର ଜେନା

ଡକ୍ଟର ପ୍ରାଣକୃଷ୍ଣ ପରିଜା ଓଡ଼ିଶାର ବିଜ୍ଞାନ ଆକାଶର ଧ୍ରୁବତାରା । ଗବେଷଣା ଓ ସିଦ୍ଧାନ୍ତ ନିରୂପଣ କରି ନିଜେ ସୁନାମ ଅର୍ଜନ କରିଛନ୍ତି ଏବଂ ସେହି ସିଦ୍ଧାନ୍ତଦ୍ୱାରା ଓଡ଼ିଆଙ୍କୁ ଦେଶବିଦେଶର ବୁଦ୍ଧିଜୀବୀଙ୍କ ନିକଟରେ ପରିଚୟ କରାଇବାରେ ସେ ପ୍ରଥମ । ୧୯୫୮ ମସିହାର ଏକ ଘଟଣା । ଆଲିଗଡ଼ଠାରେ ଏକ ଆନ୍ତର୍ଜାତିକ ବିଶ୍ୱ ଯୁବସେବା ସମ୍ମିଳନୀରେ ଡକ୍ଟର ଜାକୀରହୁସେନ ସଭାପତିତ୍ୱ କରୁଥାନ୍ତି । ଆମେରିକା ଓ ଇଂଲଣ୍ଡର ଦୁଇଜଣ ବିଖ୍ୟାତ ବିଜ୍ଞାନୀଙ୍କ ସହିତ ସବୁରାଜ୍ୟର ଯୁବଅଧ୍ୟାପକ ପ୍ରତିନିଧିଙ୍କୁ ପରିଚିତ କରାଇବା ସମୟରେ ଜାକୀରସାହେବ ଆମ୍ଭମାନଙ୍କୁ ଦେଖାଇ କହିଲେ ଯେ ''ଏମାନେ ବିଶ୍ୱବିଖ୍ୟାତ କୋଣାର୍କ ରାଜ୍ୟରୁ ଆସିଛନ୍ତି ।'' ସଙ୍ଗେ ସଙ୍ଗେ ବ୍ରିଟିଶ ବୈଜ୍ଞାନିକ କହିଲେ ''ଓ ! ପ୍ରଫେସର ପରିଜାଙ୍କ ପ୍ରତିନିଧି । ପ୍ରଫେସର ପରିଜା କିପରି ଅଛନ୍ତି ?'' ଏହି ଥିଲା ଓଡ଼ିଆଙ୍କ ପରିଚୟ ।

## ଗବେଷଣା ପାଇଁ ପ୍ରେରଣାଦାତା

ଗବେଷଣା କ୍ଷେତ୍ରରେ ସବୁ ଅନିସନ୍ଧିତ୍ସୁଙ୍କୁ ପ୍ରେରଣା ଦେବାରେ ସେ ଥିଲେ ଅଦ୍ୱିତୀୟ । ବହୁ ଗବେଷକ ଏହା ଅଙ୍ଗେ ନିଭାଇଛନ୍ତି । ଥରେ ଜଣେ ଅଧ୍ୟାପକ ଜର୍ମାନୀ ଫେଲୋସିପ୍ ପାଇ ସେଠାରେ ଗବେଷଣା କରିବାକୁ ଯିବାର ଥାଏ । ସେ ଉତ୍କଳ ବିଶ୍ୱବିଦ୍ୟାଳୟର ପି.ଜି. ବିଭାଗର ଅଧ୍ୟାପକ । ତାଙ୍କୁ ବିଶ୍ୱବିଦ୍ୟାଳୟ ପ୍ରଶାସନ ଛୁଟି ଦେବାରେ ବିଳମ୍ବ କରୁଥାନ୍ତି, ଏପରିକି ଇଉ.ଜି.ସି.ର ନିୟମାନୁସାରେ ନିର୍ଦ୍ଧାରିତ ଟିକଟ ବାବଦକୁ ଆଡ଼ଭାନ୍ସ ଟଙ୍କା ଦେବାରେ ଟାଳଟୁଳ କରୁଥାନ୍ତି । ଜର୍ମାନୀରେ ନିର୍ଦ୍ଦିଷ୍ଟ ଦିନ ପହଞ୍ଚି ଗବେଷଣା କାର୍ଯ୍ୟ ଆରମ୍ଭ ନ କଲେ ଫେଲୋସିପ୍ ଅକାମୀ ହୋଇଯିବ । ତେଣୁ ସେ ବହୁକଷ୍ଟରେ କରଜ କରି ବିମାନ ଟିକଟ କରିଦେଇଥାନ୍ତି । ଯିବାକୁ ଦିନେ ଥାଏ । ବିଶ୍ୱବିଦ୍ୟାଳୟ ଅଫିସ୍‌କୁ ଦୌଡ଼ି ଦୌଡ଼ି କରି ଥକି ଯାଇଥାଆନ୍ତି । କୁଳପତି ଡକ୍ଟର ପରିଜା ଅସୁସ୍ଥ ଥିବାରୁ ଅଫିସ୍‌କୁ ଆସିପାରୁ ନ ଥାନ୍ତି । କି ଉପାୟ କରିବାକୁ ହେବ ତାହା ଅଧ୍ୟାପକଙ୍କ ଚିନ୍ତାର ବିଷୟବସ୍ତୁ ହୋଇଥାଏ । ସେ ସ୍ଥିରକଲେ ଡକ୍ଟର ପରିଜାଙ୍କୁ ଯାଇ ଭେଟିବେ । ସକାଳ ନଅଟା । କଟକ ବାସଭବନରେ ଡକ୍ଟର ପରିଜାଙ୍କୁ ନିଜର ସାକ୍ଷାତ ଚିରୁକୁଟି ଦେବାପାଇଁ ପିଅନକୁ ଦେଲେ । କୁଳପତି ସଙ୍ଗେ ସଙ୍ଗେ ଅସୁସ୍ଥ ଅବସ୍ଥାରେ ବାହାରକୁ ଆସି ଅଧ୍ୟାପକଙ୍କ ସାମନାରେ ଠିଆହେଲେ । ଅଧ୍ୟାପକ ପ୍ରଣାମ ଜଣାଇ ନିଜ ଦୁଃଖ ବୟାନ କଲେ । ପରିଜାସାହେବ ଦୁର୍ବଳ ହୋଇ ପଡ଼ିଥାଆନ୍ତି । ସବୁ ଶୁଣି

କହିଲେ "ଦିନ ଦୁଇଟା ବେଳେ ଅଫିସ୍‌କୁ ଆସ । ମୋତେ ଦେଖାକର ।" ଏହା ଶୁଣି ଅଧ୍ୟାପକ ଆଶ୍ଚର୍ଯ୍ୟ । ବୃଦ୍ଧାବସ୍ଥା, ପୁଣି ରୁଗ୍ଣ । ଦୁର୍ବଳ ଶରୀର । ସତରେ କଅଣ ଦୁଇଟାବେଳେ ଏ ଅଫିସ୍‌କୁ ଯିବେ ? ଏହିପରି କେତେ ପ୍ରଶ୍ନ ତାଙ୍କ ମନକୁ ଆସିଗଲା । ସନ୍ଦେହ ଲାଗିବାର କଥା । ଅଧ୍ୟାପକ ଦିନ ଦୁଇଟା ବେଳେ କୁଳପତିଙ୍କ ଅଫିସ୍‌ରେ ପହଞ୍ଚିଲେ । କୁଳପତିଙ୍କ ପି. ଏ. ଅଧ୍ୟାପକଙ୍କୁ ଦେଖି ସଙ୍ଗେ ସଙ୍ଗେ ତାଙ୍କ ଦପ୍ତରରେ ନେଇ ବସାଇଲେ ଏବଂ ବିନା ବାକ୍ୟବ୍ୟୟରେ ତାଙ୍କର ଆଡ୍‌ଭାନ୍ସ ଚେକ୍ ଏବଂ ଛୁଟି ମଞ୍ଜୁର ଚିଠି ଥିବା ଦୁଇଟି ଲଫାପା ଅଧ୍ୟାପକଙ୍କ ହାତକୁ ବଢ଼ାଇଦେଲେ । ଅଧ୍ୟାପକ ସ୍ତମ୍ଭୀଭୂତ । ସେ ଭାବିଲେ ସତରେ କଅଣ ସେ ବାଣୀବିହାରରେ ଅଛନ୍ତି । ନା, ଏହା ଜର୍ମାନ ଦେଶର କୁଳପତିଙ୍କ ଅଫିସ୍ ? ଏହି ଅବସ୍ଥାରେ ସେ କୁଳପତିଙ୍କୁ କୃତଜ୍ଞତା ଜ୍ଞାପନ କରିବାକୁ ସାକ୍ଷାତ ଚିଠା ପଠାଇଲେ । କୁଳପତି ସଙ୍ଗେ ସଙ୍ଗେ ଡକାଇଲେ । ଅଧ୍ୟାପକ ପ୍ରବେଶ କଲାମାତ୍ରେ କୁଳପତି ଉଠିପଡ଼ି କହିଲେ । "ମୁଁ ଦୁଃଖିତ ଯେ ତୁମକୁ ଏତେ ମାନସିକ କଷ୍ଟରେ ପଡ଼ିବାକୁ ହୋଇଛି । ଗୁଡ୍ ଲକ୍ ।" ଏ ପଦକ ଶୁଣି ଅଧ୍ୟାପକ ଆଉ କଥା କହିବେ କଅଣ ? କୃତଜ୍ଞତା ଜ୍ଞାପନ କରି ଆଶୀର୍ବାଦ ଭିକ୍ଷା କଲେ । କୁଳପତି ହସିହସି ବିଦାୟ ଦେଲେ । ଏହି ଘଟଣା ପରିଜାସାହେବଙ୍କର ଅନୁଶାସନ, ପ୍ରଶାସନ ଓ ଗବେଷଣା ପ୍ରତି ପ୍ରେରଣାର ଏକ ନମୂନା ।

## ପିଏଚ୍. ଡି. ଭାଇଭା-ପରୀକ୍ଷା

୧୯୬୨ ମସିହାର ଏକ ନିଜସ୍ୱ ଅନୁଭୂତି । ମୋ ପିଏଚ୍. ଡି. ପରୀକ୍ଷାର ଭାଇଭା ଦିନ ନିର୍ଦ୍ଧାରଣ ସମ୍ବନ୍ଧରେ ଏ ଅଲିଭା ସ୍ମୃତି । ମୌଖିକ ପରୀକ୍ଷା ଦିନ ଗଡ଼ି ଗଡ଼ି ଯାଉଥାଏ । ବିଦେଶୀ ପରୀକ୍ଷକଙ୍କ ସ୍ଥାନରେ ଅନ୍ୟଜଣେ ବିଦେଶୀକୁ ମୌଖିକ ପରୀକ୍ଷା ପାଇଁ ନିଯୁକ୍ତି ଦିଆ ଯାଇଥାଏ । ଏହା କିପରି ହେଲା ତାହା ଅନ୍ୟ ଏକ ଘଟଣା । କିନ୍ତୁ ସେ ପରୀକ୍ଷକ ନ ଆସିଲେ ଭାଇଭା-ପରୀକ୍ଷା ହୋଇପାରିବନି ବୋଲି ଅଫିସ କର୍ମଚାରୀମାନେ କହୁଥାଆନ୍ତି । ମୋର ଗାଇଡ୍ ଡକ୍ଟର କେ.ଭି. ରାଓଙ୍କୁ ସାକ୍ଷାତ କଲି । ତାଙ୍କ ପରାମର୍ଶ ଅନୁସାରେ କୁଳପତିଙ୍କୁ ଦେଖାକଲି । ଅଫିସ୍‌ରେ ବସିଥାନ୍ତି । ସାକ୍ଷାତ ଚିରୁକୁଟି ଫର୍ମ ପାଇ ସଙ୍ଗେ ସଙ୍ଗେ ଡକାଇଲେ । ମୋତେ ବସିବାକୁ ଆସନ ଦେଖାଇଦେଲେ । ତାଙ୍କ ପି.ଏ.ଙ୍କୁ ଡକାଇ ପିଏଚ୍.ଡି. ସେକ୍ସନ୍‌ର ଆସିଷ୍ଟାଣ୍ଟଙ୍କୁ ଶୀଘ୍ର ଏହାଙ୍କ ପରୀକ୍ଷା ସମ୍ବନ୍ଧୀୟ ଫାଇଲ୍ ଧରି ଆସିବାକୁ ଆଦେଶ ଦେଲେ । ମୁଁ ବସିଥାଏ । ଉକ୍ତ ଆସିଷ୍ଟାଣ୍ଟ ଏବଂ ଆସିଷ୍ଟାଣ୍ଟ ରେଜିଷ୍ଟ୍ରାର ଦୁହେଁ କୁଳପତିଙ୍କ କକ୍ଷକୁ ପ୍ରବେଶ କଲେ । କର୍ମଚାରୀଙ୍କୁ ପଚାରି ବୁଝିଲେ ଯେ ଆମେରିକାର ଜର୍ଜିଆ ଇଉନିଭରସିଟି ପ୍ରଫେସର ମୌଖିକ ପରୀକ୍ଷା ପାଇଁ ନିଯୁକ୍ତି ପାଇଛନ୍ତି ଓ ସେ ନିଯୁକ୍ତି ସ୍ୱୀକାର କରି ପତ୍ର ପଠାଇଛନ୍ତି । ସେତେବେଳେ ସେ ହଂକଂରେ ଅଛନ୍ତି ଏବଂ ଦିଲ୍ଲୀ ଆସି ଭାଇଭା ପାଇଁ ଦିନ ସ୍ଥିର କରିବେ ବୋଲି ଚିଠି ଲେଖିଛନ୍ତି । ଡେରି ନିଶ୍ଚୟ ହେବ । କୁଳପତି ସବୁ ଶୁଣି କହିଲେ, "ଏବର୍ଷ ଡକ୍ଟର ରାଧାକୃଷ୍ଣନ୍ ସମାବର୍ତ୍ତନ ଉତ୍ସବରେ ମୁଖ୍ୟ ଅତିଥି ହେବେ ।

ଆଉ ୧୫ ଦିନ ବାକି ଅଛି । ଟେଲେକ୍ସ କରିଆରେ ଉକ୍ତ ଆମେରିକାନ୍‌ଙ୍କୁ ଅନୁରୋଧ କର ଯେ ଦିଲ୍ଲି ନ ଯାଇ ସିଧା ଭୁବନେଶ୍ୱର ବିମାନ ବନ୍ଦରରେ ପହଞ୍ଚିବେ । ସେଠାରୁ ଆମ ଗାଡ଼ି ବିଶ୍ୱବିଦ୍ୟାଳୟ ଅଫିସକୁ ଆଣିବ । ଷ୍ଟେଟ୍ ଗେଷ୍ଟହାଉସ୍‌ରେ ତାଙ୍କ ପାଇଁ ରହିବାର ବ୍ୟବସ୍ଥା କର ।'' ପରୀକ୍ଷା ପରିଚାଳକ ଆଜ୍ଞା ହଁ ମାରି ଗଲେ । ମୁଁ କୃତଜ୍ଞତା ଜଣାଇ ଫେରିଲି । ସାତଦିନ ପରେ ମୋର ପରୀକ୍ଷା ହେଲା । ପୁନା ପ୍ରଫେସର ମଧ୍ୟ ଉପସ୍ଥିତ ହେଲେ । ହଂକଂରୁ ସିଧା ଭୁବନେଶ୍ୱର ଆସି ଆମେରିକା ପ୍ରଫେସର ପରୀକ୍ଷା ପରିଚାଳନା କଲେ । ପରୀକ୍ଷା ପରେ ସେ ମୋତେ ତାଙ୍କ ଆମେରିକା ଷ୍ଟାଇଲରେ ''କଂଗ୍ରାଚୁଲେସନ୍'' ଜଣାଇ ଉତ୍ତରୋତ୍ତର ଉନ୍ନତି କାମନା କଲେ । ମୋ ଗାଇଡ ଓ ପୁନା ପ୍ରଫେସର ହସି ହସି ଆଶୀର୍ବାଦ ଜଣାଇବା ବେଳେ ଡକ୍ଟର ପରିଜାଙ୍କ ପ୍ରେରଣା ଓ ଅନୁଶାସନ ପାଇଁ ଏହା ସମ୍ଭବ ହେଲା ବୋଲି ମୁଁ ଦୂରରୁ ପ୍ରଣାମ ଜଣାଇଲି । ପରେ ଅବଶ୍ୟ କୃତଜ୍ଞତା ଜଣାଇବାକୁ ଯାଇଥିବାବେଳେ ମୋତେ 'କଂଗ୍ରାଚୁଲେସନ' କହି ସମ୍ବର୍ଦ୍ଧନା ଦେଲେ । ମିଠାଇ ମଗାଇ ଖାଇବାକୁ ଦେଲେ । ଗବେଷଣା ପାଇଁ ଯିଏ ଯେତେବେଳେ ସହାୟତା ମାଗିଛି, ସେ କେଭେ ଖାଲି ହାତରେ ଫେରି ନାହିଁ ।

### ବିଶାଳ ହୃଦୟ ଶାସନ

ଜଣେ ବ୍ୟକ୍ତି ଡକ୍ଟର ପରିଜାଙ୍କ କଟୁ ସମାଲୋଚକ ଥିଲେ । ଥରେ ସେ ବ୍ୟକ୍ତି ତାଙ୍କର ଜଣେ ଅନୁଗତ ବନ୍ଧୁଙ୍କୁ ଧରି କୁଳପତି ପରିଜାସାହେବଙ୍କୁ ଦେଖା କଲେ । କାକୁତି ମିନତି ହୋଇ ନିଜ ଗୁହାରି ଜଣାଇଲେ । ଡକ୍ଟର ପରିଜା ସେତେବେଳେ ତାଙ୍କ ବିଶାଳ ହୃଦୟର ପରିଚୟ ଦେଲେ । ସମସ୍ତ ସାହାଯ୍ୟ କରିବାର ପ୍ରତିଶ୍ରୁତି ଦେଲେ ଓ କାର୍ଯ୍ୟାନୁଷ୍ଠାନ ଗ୍ରହଣ କଲେ । ତାଙ୍କୁ ସାହାଯ୍ୟ କରି ତାଙ୍କ ବିଶାଳ ବ୍ୟକ୍ତିତ୍ୱର ପରିଚୟ ଦେଇଥିଲେ । ପରିଜାସାହେବ ପ୍ରତିହିଂସାପରାୟଣ ନ ଥିଲେ ।

ଗରିବ ଛାତ୍ରମାନଙ୍କୁ ପଢ଼ାପାଇଁ ସାହାଯ୍ୟ କରିବାରେ ଡକ୍ଟର ପରିଜା ଆନନ୍ଦ ଉପଭୋଗ କରୁଥିଲେ । କେତେ ଯେ ଯୁବକ ତାଙ୍କର ବ୍ୟକ୍ତିଗତ ଅନୁଦାନ ଦ୍ୱାରା ଜୀବନରେ ସାଫଲ୍ୟ ଅର୍ଜନ କରିଛନ୍ତି ତାହା ଗଣନା କରିବା ସମ୍ଭବ ନୁହେଁ । ଶିକ୍ଷା ପ୍ରାପ୍ତି ପାଇଁ ସେ ଏକ ସମ୍ବେଦନଶୀଳ ଉତ୍ସ ଥିଲେ । ଯୁବଶକ୍ତିର ଉନ୍ନତି ପାଇଁ ସେ କେତେକ ପରିମାଣର ପୁଞ୍ଜି ବିନିଯୋଗ କରି ଖୁସି ହେଉଥିଲେ । ପ୍ରଚାର କରୁ ନ ଥିଲେ ।

### ଓଡ଼ିଆ ଜାତୀୟତାବାଦର ପ୍ରତୀକ

ଡକ୍ଟର ପରିଜା ଦିଲ୍ଲୀ ଯାଇଥାନ୍ତି । ସେତେବେଳେ ରାଜ୍ୟ ପୁନର୍ଗଠନ କମିଶନ ରିପୋର୍ଟ ଓଡ଼ିଶାର ନ୍ୟାଯ୍ୟ ଦାବିକୁ ଉପେକ୍ଷା କରିବାରୁ ଓଡ଼ିଆମାନଙ୍କ ମନରେ ଆଘାତ ଲାଗିଥାଏ । ସୀମା ଆନ୍ଦୋଳନ ତୀବ୍ରରୂପ ଧାରଣ କରିଥାଏ । ଡକ୍ଟର ପରିଜା ଫେରି ପ୍ରଥମେ ସମ୍ବାଦପତ୍ରକୁ ବିବୃତି ଦେଇଥିଲେ, **''ସାବାସ ଛାତ୍ରସମାଜ''** । ଏହାର ପ୍ରଭାବ ଏତେ ପ୍ରବଳ ହୋଇଥିଲା ଯେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଡକ୍ଟର ପରିଜାଙ୍କୁ ଏପରି ଆଉ ବିବୃତ୍ତି ନ ଦେବାକୁ ଅନୁରୋଧ କରିଥିଲେ । କିନ୍ତୁ ଡକ୍ଟର ପରିଜା କହିଥିଲେ —

''ଓଡ଼ିଶାର ଅଙ୍ଗ ଛେଦନ ବିରୋଧରେ ବିପ୍ଲବ ହିଁ ସ୍ୱାଗତଯୋଗ୍ୟ ।'' ମୁଖ୍ୟମନ୍ତ୍ରୀ ନୀରବ ରହିଲେ ।

ସେହିପରି ଓଡ଼ିଆ ଭାଷାକୋଷ ପ୍ରଣୟନ ପାଇଁ ଡକ୍ଟର ମାୟାଧର ମାନସିଂହଙ୍କୁ ମୁଖ୍ୟ ସଂକଳକ ରୂପେ ନିଯୁକ୍ତ ଦେଇ ଓଡ଼ିଆ ଭାଷାର ଶୁଦ୍ଧ, ନିର୍ଭୁଲ ଓ ଆଧୁନିକ ଭାଷାକୋଷ ପ୍ରତିଷ୍ଠାର ପ୍ରଥମ ପଦକ୍ଷେପ ନେଇଥିଲେ । ଅଫିସକୁ ଆସିବାମାତ୍ରେ ପ୍ରଥମେ ଭାଷାକୋଷର ଅଗ୍ରଗତି କଥା ବୁଝୁଥିଲେ ।

ସିଦ୍ଧାନ୍ତ ଦର୍ପଣର ନୂତନ ସଂଶୋଧିତ ସଂସ୍କରଣ ପାଇଁ ଡକ୍ଟର ପରିଜା ଯେଉଁ କମିଟି ଗଠନ କରିଥିଲେ, ସେମାନଙ୍କୁ ବ୍ୟକ୍ତିଗତ ଭାବରେ ଡାକି କାର୍ଯ୍ୟ ତଦାରଖ କରୁଥିଲେ । ସେଥିପାଇଁ ସେ ସମୟ ଦେଉଥିଲେ ।

ସମାବର୍ତ୍ତନ ଉତ୍ସବରେ ପିପିଲି ଛତି ତଳେ ମୁଖ୍ୟ ଅତିଥି ଡକ୍ଟର ରାଧାକୃଷ୍ଣନ, ରାଜ୍ୟପାଳ, କୁଳପତିଙ୍କ ଆସନ ପକାଇବାର ବ୍ୟବସ୍ଥା କରିଥାଆନ୍ତି । ଆମେ କେତେଜଣ ଯୁବକ ଅଧ୍ୟାପକ ଏହାର କାରଣ ପଚାରିବାରୁ ସେ କହିଲେ ''ଓଡ଼ିଆଙ୍କ ଛତିତଳେ ରଥରେ ଜଗନ୍ନାଥ ବସିଛନ୍ତି ।'' ଏହି ଅଳ୍ପ ବାକ୍ୟରେ ଓଡ଼ିଆ ଜାତୀୟତାବାଦର ନିଖୁଣ ଚିତ୍ର ସେ ଆଙ୍କି ପାରିଥିଲେ । ଏହିସବୁ ଘଟଣା ତାଙ୍କ ଜାତୀୟତାବାଦ ମନୋଭାବ ପ୍ରକଟିତ କରିଥାଏ ।

## ସଂସ୍କାରକ ସାହେବ

ନିଜ ଜୀବନରେ ଅନେକ କୁସଂସ୍କାରକୁ ମୂଳପୋଛ କରି ସେ ସଂସ୍କାରକ ରୂପେ ଅଗ୍ରଗଣ୍ୟ ହୋଇ ପାରିଛନ୍ତି । ବିବାହ, ଶୁଦ୍ଧିକ୍ରିୟା, ଭୋଜିର 'ରାଇଟୁଆଲ୍' ପଦ୍ଧତି ଓ ତତ୍‌ସହିତ ଜଡ଼ିତ କୁସଂସ୍କାରକୁ ଦୂରକରି ସମସ୍ତଙ୍କ ପାଇଁ ଆଦର୍ଶ ଦେଖାଇ ଯାଇଛନ୍ତି । ଛୁଆଁ ଛୁଇଁ ଅସଭ୍ୟ ଭେଦଭାବକୁ ସେ ତ୍ୟାଗ କରିଥିଲେ । ଧର୍ମାନ୍ଧତାକୁ ଉତ୍ସାହିତ ନ କରି ମୁସଲିମ ଖାନସାମା, ହରିଜନ ପୂଜାରୀଙ୍କୁ ନିଯୁକ୍ତି ଦେଇ ସେମାନଙ୍କ ହସ୍ତରୁ ଭୋଜନ କରିବା ଓ କରାଇବା ବ୍ୟବସ୍ଥା ଦ୍ୱାରା ସେ ଏକ ବୈପ୍ଳବିକ ସଂସ୍କାରକ ରୂପେ କାର୍ଯ୍ୟ କରିଯାଇଛନ୍ତି ।

## ସମୟାନୁବର୍ତ୍ତିତାର ମୂର୍ତ୍ତିମନ୍ତ ପ୍ରତୀକ

ଅଫିସ କାର୍ଯ୍ୟ, ସଭାସମିତି, ବୈଠକ ଓ ନିଜର ଦୈନନ୍ଦିନ କାର୍ଯରେ ଡକ୍ଟର ପରିଜା ସର୍ବଦା ସମୟାନୁବର୍ତ୍ତିତା ଅବଲମ୍ବନ କରନ୍ତି । ଭୋଜିଭାତରେ ମଧ୍ୟ ସେହି ଘଣ୍ଟାକଣ୍ଟା ଧରା ଅଭ୍ୟାସ । ଥରେ ରେଭେନ୍ସା କଲେଜର ଗଭର୍ଣ୍ଣିଂବଡିର ମିଟିଂ ହେବାର ସ୍ଥିର ହୋଇଥାଏ । ସରକାର ତାଙ୍କୁ ସଭାପତି ରୂପେ ନିଯୁକ୍ତି ଦେଇ ଥାଆନ୍ତି । ସକାଳ ୯ଟାରେ ମିଟିଂ ଆରମ୍ଭ ହେବାର କଥା । ଠିକ୍ ୯ଟା ସମୟରେ ଡକ୍ଟର ପରିଜା ଅଧ୍ୟକ୍ଷଙ୍କ ଅଫିସ୍ କୋଠରି ଆଗରେ ଠିଆ । ସଭାର ଆୟୋଜନ ପାଇଁ ଆମେ ଦୁଇଜଣ ଅଧ୍ୟାପକ ଓ ଶିକ୍ଷକ ପ୍ରତିନିଧି ଉପସ୍ଥିତ ଥାଉ । ଅଫିସ୍ କର୍ମଚାରୀମାନେ ଆସିବାରେ ବିଳମ୍ବ ହୋଇଥାଏ । ଅଧ୍ୟକ୍ଷ ପହଞ୍ଚି ନ ଥାନ୍ତି । ଅଧ୍ୟକ୍ଷଙ୍କ କୋଠରି ଖୋଲି ଆମେ

ଡକ୍ଟର ପରିଜାଙ୍କୁ ପାଛୋଟି ନେଲୁ । ସେ ଚୌକିରେ ବସି ସଙ୍ଗେ ସଙ୍ଗେ ସଭା ଆରମ୍ଭ ହେଲା ବୋଲି ଘୋଷଣା କଲେ ଓ ଏଜେଣ୍ଡା ମାଗିଲେ । ସଭା କାଗଜ ଓ ଫାଇଲ ଟେବୁଲ ଉପରେ ଥାଏ । ତାଙ୍କୁ ବଢ଼ାଇଦେଲୁ । ସେ ପ୍ରଥମେ ଆଇଟମ୍ (ବିଷୟକୁ) ପଢ଼ିଲେ ଓ ଏହା ଗୃହୀତ ହେବ କି ନାହିଁ ଶିକ୍ଷକ ପ୍ରତିନିଧିଙ୍କୁ ଚାହିଁ ପଚାରିଲେ । ସେ ବିଚାରା ଉତ୍ତର ଦେବା ପୂର୍ବରୁ ଅଧ୍ୟକ୍ଷ ପହଞ୍ଚିଗଲେ । ଅଧ୍ୟକ୍ଷଙ୍କୁ ଦେଖି ଡକ୍ଟର ପରିଜା କହିଲେ, ''ତୁମ କାମ ଆରମ୍ଭ କରିଦେଇଛୁ ।'' କ୍ଷମା ମାଗି ଅଧ୍ୟକ୍ଷ ନିଜ ଆସନରେ ବସିଲେ । ସଭାକାର୍ଯ୍ୟ ସୁରୁଖୁରୁରେ ଚାଲିଲା ଓ ଶେଷ ହେଲା । ଏହା ସମୟାନୁବର୍ତ୍ତିତାର ଏକ ଦୃଷ୍ଟାନ୍ତ ମାତ୍ର ।

ଆଉ ଏକ ଘଟଣା । ଡକ୍ଟର ପରିଜା ସେତେବେଳେ ଏମ୍. ଏଲ୍. ଏ. ଥାଆନ୍ତି । ବିଧାନସଭାର ବୈଠକ ଦିନ ୧୧ଟା ସମୟରେ ଆରମ୍ଭ ହେଉଥାଏ । ଡକ୍ଟର ପରିଜା ଠିକ୍ ସମୟରେ ଆସି ପହଞ୍ଚିଲେ । ଦେଖିଲେ ମାତ୍ର ୪ ଜଣ ବିଧାୟକ ଉପସ୍ଥିତ । ନିଜ ସ୍ଥାନରେ ବସିଲେ । ବାଚସ୍ପତି ଆସି ନ ଥାନ୍ତି କି ଉପବାଚସ୍ପତି ଆସି ନ ଥାନ୍ତି । ସେ ବ୍ୟସ୍ତ ହୋଇପଡ଼ିଲେ । ସେକ୍ରେଟେରୀଙ୍କ ପାଖକୁ ଯାଇ ପାନେଲ ଚେୟାରମ୍ୟାନଙ୍କ ନାମ ପଚାରିଲେ । ଭାଗ୍ୟକୁ ସେ ସମୟର ପ୍ରଥମ ନମ୍ବର ପାନେଲ ଚେୟାରମ୍ୟାନ ତାଙ୍କ ପାଖରେ ବସିଥିଲେ । ସେ ତାଙ୍କୁ ବାଚସ୍ପତି ଆସନ ଅଳଙ୍କୃତ କରିବାକୁ କହିଲେ ଓ ''ଗଣତନ୍ତ୍ରକୁ ବଞ୍ଚାନ୍ତୁ'' ବୋଲି ପରାମର୍ଶ ଦେଲେ । ଏ ଭିତରେ ଆଉ କେତେକ ବିଧାୟକ ଆସି ପହଞ୍ଚିଲେ । ସଭା କାର୍ଯ୍ୟ ଆରମ୍ଭ ହେଲା । ଏହାର ସୂଚନା ସମୟାନୁବର୍ତ୍ତିତାର ମୂର୍ତ୍ତିମନ୍ତ ପ୍ରତୀକ ହେଉଛନ୍ତି ଡକ୍ଟର ପରିଜା ।

## ମିନି କାହାଣୀର ଭଣ୍ଡାର

ଡକ୍ଟର ପରିଜାଙ୍କର ବ୍ୟଙ୍ଗ ଓ ହାସ୍ୟାତ୍ମକ କାହାଣୀ ପ୍ରତ୍ୟେକ ବୈଠକକୁ ସରସ କରିଥାଏ । କେତେ ଯେ କାହାଣୀ ସେ ମନେ ରଖିଥାଆନ୍ତି ତାହା ଅତୁଳନୀୟ । କୌଣସିଠାରେ ଆତ୍ମକାହାଣୀ କହିବାର ଶୁଣାଯାଏ ନାହିଁ । ଏକ ବୈଠକରେ ଗରମାଗରମ ଆଲୋଚନା ଚାଲିଥାଏ । ଜଣେ ବରିଷ୍ଠ କର୍ମଚାରୀଙ୍କ ପ୍ରମୋସନ ସମ୍ବନ୍ଧୀୟ ତର୍କ । ସେ ନିଜସ୍ୱ ଜ୍ଞାନ ବର୍ଦ୍ଧନ ପାଇଁ ଇଚ୍ଛାଧୀନ ତାଲିମ ନେଇ ନ ଥାନ୍ତି । ଆବଶ୍ୟକୀୟ ତାଲିମ ଓ ଯୋଗ୍ୟତା ଥିଲେ ମଧ୍ୟ ଅଧିକା ତାଲିମ ନେବା ପାଇଁ ସୁଯୋଗ ଗ୍ରହଣ କରି ନ ଥାଆନ୍ତି । କାରଣ ଅତିରିକ୍ତ ତାଲିମ ଇଚ୍ଛାଧୀନ ଓ ଆବଶ୍ୟକ ଯୋଗ୍ୟତା ସହିତ ସଂପୃକ୍ତ ନୁହେଁ । ତାଙ୍କୁ ''ସୁପରସିଡ୍'' କରିବା ପାଇଁ ଅନ୍ୟଜଣଙ୍କ ସପକ୍ଷରେ ସିଣ୍ଡିକେଟରେ ଯୁକ୍ତି କରାଯାଉଥାଏ । ଯୁକ୍ତିର ସାରମର୍ମ ହେଲା ଯେ ଦ୍ୱିତୀୟ ବ୍ୟକ୍ତିଙ୍କର ଅତିରିକ୍ତ ତାଲିମ ରହିଛି । ଏହିପରି ତର୍କ ଚାଲିଥିବା ସମୟରେ ଡକ୍ଟର ପରିଜା କହିଲେ ''ଘରେ ବାସନ କୁସନ ସବୁ ମଜାଯାଏ, କିନ୍ତୁ ମାଜିବା କାମ ପାଇଁ ପାଣି ଦେଉଥିବା ବାଲ୍ଟିକୁ ମଜାଯାଏ ନାହିଁ । ''ଏହି ଛୋଟ ଉଦାହରଣ ଦ୍ୱାରା ସମସ୍ତ ତର୍କର ଅବସାନ ହେଲା । ''ବାଲ୍ଟି'' ପ୍ରମୋସନ ପାଇଲେ ।

ଆଉ ଏକ ''ଆନେକଡୋଟ'' ସିଣ୍ଡିକେଟ ମିଟିଂ ଚାଲିଥାଏ । ଜଣେ ବରିଷ୍ଠ କର୍ମକର୍ତ୍ତାଙ୍କ ଉପସ୍ଥିତିରେ କୌଣସି ଏକ କମିଟି ଯେଉଁ ନିଷ୍ପତ୍ତି ନେଇଥିଲେ ସେ ନିଷ୍ପତ୍ତି ବେଆଇନ ଓ କ୍ଷତିକାରକ । ସେହି ବରିଷ୍ଠ ସଦସ୍ୟଙ୍କ ବିରୋଧରେ ଅଭିଯୋଗ ହେଲା ଯେ ସେ ଅଫିସର ଉକ୍ତ କମିଟିରେ ଉପସ୍ଥିତ ଥିଲେ ଏବଂ ଏହାକୁ ବେଆଇନ ବୋଲି ମତ ଦେଇ ନ ଥିଲେ ବର୍ତ୍ତମାନ ତାଙ୍କୁ ପରାମର୍ଶ ମାଗିବାରୁ ସେ ଉକ୍ତ ନିଷ୍ପତ୍ତିକୁ ବେଆଇନ ବୋଲି ମତ ଦେଉଛନ୍ତି । ତେଣୁ ତାଙ୍କ କର୍ତ୍ତବ୍ୟ ତ୍ରୁଟି ସକାଶେ ଦଣ୍ଡ ଦିଆଯାଉ ଓ କମିଟିର ନିଷ୍ପତ୍ତି ଗୃହୀତ ହେଉ । ଏହି ସମୟରେ କୁଳପତି ପରିଜା କହିଲେ—''ମହାଭାରତରେ ଜଉଘରେ ରହିବାକୁ ନିମନ୍ତ୍ରଣ ରକ୍ଷାକରି ପଞ୍ଚପାଣ୍ଡବ ଜଉଘରେ ପହଞ୍ଚିଲେ । ଜଉଘର ପୋଡ଼ାଗଲା । ଅବଶ୍ୟ ପାଣ୍ଡବମାନେ ରକ୍ଷା ପାଇଲେ ଗୁପ୍ତସୁଡ଼ଙ୍ଗ ବ୍ୟବହାର କରି । ପରେ ଯେତେବେଳେ ଶ୍ରୀକୃଷ୍ଣଙ୍କୁ ବିଦୁର ପ୍ରଶ୍ନ କଲେ ଯେ ଜଉଘରେ ପାଣ୍ଡବଙ୍କୁ ପୋଡ଼ିଦେବାର ଗୁପ୍ତ ଯୋଜନା ହୋଇଥିଲା । ସହଦେବ ସବୁ ଭବିଷ୍ୟତ କଥା ଜାଣିପାରୁଥିଲେ । ସେ କିପରି ଆଗରୁ ସାବଧାନ ନ କରାଇ ଯୁଧିଷ୍ଠିରଙ୍କ ସହିତ ସେଠାରେ ପୋଡ଼ିହେବାକୁ ଯାଇଥିଲେ । ଶ୍ରୀକୃଷ୍ଣ ହସି ହସି ଉତ୍ତର ଦେଇଥିଲେ ଯେ, ''ସହଦେବଙ୍କୁ ନ ପଚାରିଲେ ସେ ପରାମର୍ଶ ଦିଅନ୍ତି ନାହିଁ କି ତାଙ୍କର ଦୂରଦୃଷ୍ଟି ଶକ୍ତି କାର୍ଯ୍ୟ କରେ ନାହିଁ ।'' ଏହି କାହାଣୀ ପରେ ''ସହଦେବ''ଙ୍କର ପରାମର୍ଶ ଅନୁସାରେ କମିଟିର ନିଷ୍ପତ୍ତି ଅଗ୍ରାହ୍ୟ ହୋଇଥିଲା ।

ରାମାୟଣ, ମହାଭାରତ, ଭାଗବତ, କେଶବ କୋଇଲି, ଗୋପୀଭାଷା ଠାରୁ ଆରମ୍ଭ କରି ଗ୍ରୀକ୍, ଇଂରାଜୀ, ଫରାସୀ ଭାଷାର ଅନେକ ଶାସ୍ତ୍ରରୁ ଉଦାହରଣ, ଗଳ୍ପ ଓ କାହାଣୀ କହି ସେ ବୈଠକକୁ ସରସ କରି ରଖିପାରୁଥିଲେ । ତାଙ୍କ ପାଖରେ ବସି ସଭାରେ ଯୋଗଦାନ କରିଥିବାର ସୌଭାଗ୍ୟ ଯେଉଁମାନଙ୍କର ଅଛି ସେମାନେ ଡକ୍ଟର ପରିଜାଙ୍କର ମିନି କାହାଣୀର ରସ ନିଶ୍ଚୟ ପାନ କରିଥିବେ ।

## ପ୍ରତିଭା ମାର୍ତ୍ତଣ୍ଡ

ଡକ୍ଟର ପରିଜାଙ୍କ ବହୁବିଧ ପ୍ରତିଭାର ବର୍ଣ୍ଣନା କରିବା କ୍ଷୁଦ୍ର ପ୍ରବନ୍ଧରେ ସମ୍ଭବ ନୁହେଁ । ତେବେ ଏତିକି କହିହେବ ଯେ ସେ ଏକ ''ପ୍ରତିଭା ମାର୍ତ୍ତଣ୍ଡ'' ଥିଲେ । ତାଙ୍କର ଉତ୍ସର୍ଗୀକୃତ ଜୀବନ ଓଡ଼ିଶାର ଶିକ୍ଷା, ସମାଜ, ସଂସ୍କୃତିକୁ ଯେ ବହୁଦିଗରେ ପ୍ରଭାବିତ କରିଛି ଏହା ସର୍ବଜନବିଦିତ । ତାଙ୍କ ପ୍ରତିଭା ନିକଟରେ ସ୍ୱତଃ ମୁଣ୍ଡ ନୋଇଁଯାଏ ।

# ଆଦର୍ଶଗୁରୁ ଡକ୍ଟର ପରିଜା

**ମନମୋହନ ମିଶ୍ର**

ସମୁଦାୟ ମହାକାଶକୁ ଗୋଟିଏ ଗୋଲାକାର ଦର୍ପଣରେ ପ୍ରତିଫଳିତ କରିବା ଯେପରି ଅସମ୍ଭବ, ଠିକ୍ ସେପରି ଡକ୍ଟର, ପ୍ରଫେସର, ସାହିତ୍ୟିକ, ସମାଜସେବୀ, ବିଜ୍ଞାନବେତ୍ତା ଗବେଷକ.... ପରିଜାସାହେବଙ୍କ ବିଷୟରେ ଗୋଟିଏ ଛୋଟ ପ୍ରବନ୍ଧରେ ଲେଖିବା ଅସମ୍ଭବ । ଏହି ସଂକଳନର ଉଦ୍ୟୋକ୍ତା ଡକ୍ଟର ଗଦାଧର ମିଶ୍ରଙ୍କର ଅଜସ୍ର ବରାଦକୁ ମୁଁ ଯେ ଏପର୍ଯ୍ୟନ୍ତ ଏଡ଼ାଇ ଦେଇଆସି ଶେଷରେ ଏହି କ୍ଷୁଦ୍ରାତିକ୍ଷୁଦ୍ର ଲେଖାରେ ତାଙ୍କର ସ୍ମୃତି ତର୍ପଣ କରିଛି, ସେଥିପାଇଁ ମୁଁ ବିମୂଢ଼, ଲଜ୍ଜିତ ଓ ନାଚାର । ତଥାପି ଏହି ଅତୃପ୍ତ ମାନସରୁ ଯେତିକି ଗୋଟିଏ କ୍ଷୁଦ୍ର ପ୍ରବନ୍ଧରେ ମୁଁ ଲେଖିଛି ତାହା ଏଠାରେ ନିବେଦନ କରିଛି । ଏହା ସେହି ସ୍ମରଣୀୟ ବରେଣ୍ୟ ପ୍ରତିଭାଙ୍କ ପ୍ରତି ଏକ ଅକିଞ୍ଚନ ଭେଟି । ସମୁଦ୍ର ତରଙ୍ଗକୁ ଆଞ୍ଜୁଳାଏ ଜଳରେ ଅଭିଷେକ ପରି ଏହା କେବଳ ଏକ କ୍ଷୀଣ ପ୍ରୟାସ ।

ଜ୍ୟୋତିର୍ବିଦ୍‌ମାନେ ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ତାରା ଇତ୍ୟାଦିଙ୍କର ମୃତ୍ୟୁର କାଳ କଳନା କରିଛନ୍ତି । ସେମାନଙ୍କର ବିଲୟର ବର୍ଷ, ଦଣ୍ଡ, ଠିକ୍ କରିଛନ୍ତି, କିନ୍ତୁ ସେମାନଙ୍କର ଜନ୍ମ ତାରିଖ ବିଷୟରେ ସେମାନେ ନୀରବ, ଅନାଚାର । ଅଥଚ ମହାମନୀଷୀମାନଙ୍କର ଜନ୍ମ ତାରିଖ ନିର୍ଦ୍ଦିଷ୍ଟ ଅଛି । କିନ୍ତୁ ସେମାନଙ୍କର ମୃତ୍ୟୁ ନାହିଁ । ସେପରି ଜଣେ ଅମୃତ ଚିରଉଜ୍ଜ୍ୱଳ ବ୍ୟକ୍ତିତ୍ୱ ହେଉଛନ୍ତି ଆଦର୍ଶଗୁରୁ ପୂଜ୍ୟତମ ପ୍ରାଣକୃଷ୍ଣ ପରିଜା ।

ସ୍ୱର୍ଗୀୟ ପରିଜାସାହେବଙ୍କ ବିଷୟରେ ମୋର ବ୍ୟକ୍ତିଗତ ସଂପର୍କରେ ଏକଥା କହିବାରେ ଏକ ପ୍ରାସଙ୍ଗିକତା ରହିଛି । ୧୯୩୪ ମସିହାରେ, ଯେଉଁ ବର୍ଷ ବିହାରରେ ଭୂମିକମ୍ପ ହୋଇଥିଲା ସେହି ବର୍ଷ ମୁଁ ମ୍ୟାଟ୍ରିକ୍ୟୁଲେସନ ପାସ୍ କରି ରେଭେନ୍ସା କଲେଜରେ ନାମ ଲେଖାଇଥିଲି । ମୁଁ ଉକ୍ତ ପରୀକ୍ଷାରେ ସେତେବେଳର ଓଡ଼ିଶା ଡିଭିଜନ ତିନୋଟି ସ୍କଲାରଶିପ୍ ବୃତ୍ତିରୁ ଗୋଟିଏ ବୃତ୍ତି ମାସିକ ପନ୍ଦର ଟଙ୍କା ପାଇଥିଲି । ତାହା ନୋହିଥିଲେ ମୋର ପାଠପଢ଼ାରେ ଡୋରି ଲାଗିଥାଆନ୍ତା । ମୋର ଜୀବନର ଗତି ମଧ୍ୟ ଅନ୍ୟପ୍ରକାର ହୋଇଥାଆନ୍ତା । କାରଣ ଠିକ୍ ସେହି ସମୟରେ ମୋର ପିତା ସେତେବେଳର ବଉଦ ଷ୍ଟେଟ (ଏବର ବଉଦ ଜିଲ୍ଲା)ରେ ସର୍ବୋଚ୍ଚ ପୋଲିସ ଅଫିସର

ଚାକିରିରୁ ବାଧ୍ୟତାମୂଳକ ଛୁଟି ପାଇ ବାହାରି ଆସିଥିଲେ । ତାଙ୍କର ଅପରାଧ ଥିଲା ଯେ ପର୍ବତ ମାଳଅଞ୍ଚଳର କନ୍ଧମାନଙ୍କଠାରୁ ବିନା ବନ୍ଦୋବସ୍ତରେ ରାଜସ୍ୱ ଆଦାୟ କରିବା ପାଇଁ ଶାନ୍ତିଶୃଙ୍ଖଳା ରକ୍ଷାକାରୀ ପୋଲିସକୁ ନିଯୁକ୍ତି କରିବା ଅର୍ଥାତ୍ ଜୋର ଜୁଲମ କରିବାକୁ ସେ ପୋଲିସର କର୍ତ୍ତବ୍ୟ ନୁହେଁ ବୋଲି ମନା କରି ଦେଇଥିଲେ । ଏହି ଘଟଣା ସ୍ୱର୍ଗୀୟ ସାରଙ୍ଗଧର ଦାସ ଓ ବଳବନ୍ତ ରାୟ ମେହେଟ୍ଟାଙ୍କର ଅନୁସନ୍ଧାନୀ ରିପୋର୍ଟର ଓଡ଼ିଶା ଗଡ଼ଜାତ ଆନ୍ଦୋଳନର ଇତିହାସରେ ଅଛି ।

ରେଭେନ୍ସା କଲେଜରେ ସେତେବେଳେ ମୁଁ ଉଦ୍ଭିଦବିଜ୍ଞାନର ଆଡିସ୍‌ନାଲ ଅର୍ଥାତ୍ ଅତିରିକ୍ତ ଛାତ୍ର । ପରିଜାସାହେବ କ୍ଲାସ୍ ନେଉଥାଆନ୍ତି । ଅତିରିକ୍ତ ପାଠ୍ୟର ଛାତ୍ରମାନେ ଯେହେତୁ ସେହି କ୍ଲାସ୍‌ରେ ଅତିରିକ୍ତ ତେଣୁ ଆମ୍ଭେମାନେ ଉଦ୍ଭିଦବିଜ୍ଞାନ ବିଷୟରେ ବେଶି ମନୋଯୋଗ ଦେବା ସ୍ୱାଭାବିକ ନୁହେଁ । ପରିଜାସାହେବ ରଙ୍ଗଣୀ ଫୁଲ ଗଛରେ ଏକାଧିକ ବର୍ଣ୍ଣର ଫୁଲ ଫୁଟିବାର କାରଣ ଏବଂ ଫୁଲ ଜିନ୍ ବା ପ୍ରାଣକୋଷ ବିଷୟରେ ବୁଝାଉଥାଆନ୍ତି । କ୍ଲାସ୍‌ର ଚତୁର୍ଥ ଧାଡ଼ିରେ ବସିଥିବା ଏହି ଲେଖକ ତାଙ୍କର ବିଶ୍ଳେଷଣ ଶୁଣୁଥାଏ । ହଠାତ୍ ପରିଜାସାହେବ ମୋତେ ଚାହିଁ କହିଲେ, ମୋର ମନେହେଉଛି "ତୁମେ ମୋର ବକ୍ତୃତାର କଥା ବୁଝିପାରୁ ନାହଁ ।" ମୁଁ ତାହା ଶୁଣି ତାଙ୍କ ମୁହଁକୁ ଚକିତ ଓ ଲଜ୍ଜିତ ଭାବରେ ଚାହିଁରହିଥିଲି । ପ୍ରାୟ ପଚାଶଜଣ ଛାତ୍ରଙ୍କ କ୍ଲାସ୍‌ରେ ଚତୁର୍ଥ ଧାଡ଼ିର ଜଣେ ବିଦ୍ୟାର୍ଥୀ ତାଙ୍କର ପ୍ରାଞ୍ଜଳ ବୟାନ ବୁଝିପାରୁ ନାହିଁ ଏହା ମୋତେ ଲଜ୍ଜିତ କରିଥିଲା । ସେ କହିଲେ, "ତୁମେ ଯେଉଁ ଷ୍ଟେପ୍‌ରେ ବୁଝିପାରିଲ ନାହିଁ ତାହା ଏହି । ଏହା କହି ସେ 'ଜିନ୍'ର ତତ୍ତ୍ୱ ବୁଝାଇଥିଲେ । ବାସ୍ତବିକ ତାଙ୍କର ତେଜୀୟାନ ଦୂରଦୃଷ୍ଟିର ପ୍ରମାଣ ଥିଲା ।

୧୯୩୪ ସାଲର ଶେଷ ପକ୍ଷକରେ ପ୍ରଫେସର ପରିଜା ଗୋଟିଏ ଅତିରିକ୍ତ ପାଠ୍ୟ ବକ୍ତୃତା (Extra-murral Lecture) ଦେଇଥିଲେ । ସେତେବେଳେ ସେ ରେଭେନ୍ସା କଲେଜର କାର୍ଯ୍ୟକାରୀ ପ୍ରିନ୍ସପାଲ । ସେହି ବକ୍ତୃତା ତ ସାଧାରଣ ବକ୍ତୃତା ନ ଥିଲା; ତାହା ଥିଲା ଏକ ଅସାଧାରଣ ଦିଗ୍‌ଦର୍ଶନ । ତାଙ୍କର ଥିସିସ୍‌ର ଶୀର୍ଷକ ଥିଲା, "The Meaning of Life" (ଜୀବନର ଚରମ ଭାବାର୍ଥ) । ଏହି ବକ୍ତୃତାସଭାରେ ବଙ୍ଗଳାର ବିଖ୍ୟାତ ପଦାର୍ଥବିତ୍ ଡକ୍ଟର ମେଘନାଦ ଶାହା ଓ ତାଙ୍କର କେତେକ ବରିଷ୍ଠ ସହକର୍ମୀ ଉପସ୍ଥିତ ଥିଲେ । ରେଭେନ୍ସା କଲେଜରେ ପଦାର୍ଥବିଜ୍ଞାନ ଲେକ୍‌ଚର ଥିଏଟର ସେଦିନ ବହୁ ବରିଷ୍ଠ ବୈଜ୍ଞାନିକଙ୍କର ସମାବେଶରେ ମଣ୍ଡିତ ହୋଇଥିଲା । ଲେକ୍‌ଚର ଥିଏଟରର ପ୍ରଶସ୍ତ ବିଶାଳ ବ୍ଲାକ୍‌ବୋର୍ଡରେ ଶହ ଶହ ଚାର୍ଟର ଆବଶ୍ୟକୀୟ ପ୍ରମାଣପତ୍ର ଗୁମ୍ଫିତ କରାଯାଇଥିଲା ।

## ବୈଜ୍ଞାନିକ ଦୂରଦ୍ରଷ୍ଟା

ପରିଜାସାହେବ ବକ୍ତୃତା ଆରମ୍ଭ କଲାପୂର୍ବରୁ କହିଲେ ଏହି ବୈଜ୍ଞାନିକ ବିଦ୍ୱଜ୍ଜନମଣ୍ଡଳୀରେ ମୋର ଆଜିର ସଂଦର୍ଭ ପାଇଁ ମୁଁ ଏହି ଚାର୍ଟଗୁଡ଼ିକୁ ମୋର ସାକ୍ଷୀ ଭାବରେ ରଖିଛି । କାରଣ ମୁଁ ଆଜି ଯାହା କହିବାକୁ ଯାଉଛି ତାହା ବିଜ୍ଞାନ ବିଦ୍ୟା ନୁହେଁ । Science ର ଗଣ୍ଡି ଭିତରୁ Para-Science (ପରା-ବିଜ୍ଞାନ) ପର୍ଯ୍ୟାୟକୁ ବାହାରି ଯାଇପାରେ । ସେଥିପାଇଁ ସାକ୍ଷୀ ହେଉଛନ୍ତି ଏହି ଚାର୍ଟ ଓ ବିଭିନ୍ନ ଫର୍ମୁଲାଗୁଡ଼ିକ ।

ସେତେବେଳେ ଭାରତରେ 'ଆକାଶବାଣୀ ନା ଦୂରଦର୍ଶନର ଚିହ୍ନବର୍ଣ୍ଣ ଥିଲା । ସେତେବେଳେ ଗ୍ରାମୋଫୋନ୍‌ର ଡିସ୍କରେ ସଙ୍ଗୀତ, ବକ୍ତୃତା ଇତ୍ୟାଦି ରେକର୍ଡ ହେଉଥିଲା । ପରିଜାସାହେବଙ୍କର ବୟାନ ଥିଲା ମନୁଷ୍ୟ ଶରୀର ମୃତ୍ୟୁ ପରେ ଶ୍ମଶାନରେ ମିଶିବା ପରେ ତାଙ୍କର ଆଉ କିଛି ଅବଶୋଷ ରହେ କି ନାହିଁ । ସେ ତାଙ୍କର ଥିସିସ୍‌ରେ ପ୍ରତିପାଦନ କଲାବେଳେ ଆପେ ଆପଣାକୁ ପ୍ରଶ୍ନ କରିଥିଲେ । ମର ଶରୀରର ଅବସାନ କ'ଣ ଜୀବନର ଶେଷ ?

## ମନର ସ୍ଥିତି ଓ ଗତି

ପରିଜାସାହେବ ସେହି ବିଖ୍ୟାତ ପାଠଚକ୍ରରେ ପଚାରିଥିଲେ ଯେ ବସ୍ତୁ ଜଗତରୁ ଉତ୍ପନ୍ନ ଉର୍ଜ୍ଜା ଅଥବା ମନୁଷ୍ୟର କଣ୍ଠସ୍ୱର ଯେପରି ସେପରି ହେଉଛି ମନୁଷ୍ୟର ମନ । ଯଦି ବିଜ୍ଞାନ ଆଜି ଦୂର ଗ୍ରହର ନକ୍ଷତ୍ରର ଆଲୋକକୁ କିମ୍ୱା ମନୁଷ୍ୟ ମୁଖନିଃସୃତ ଶବ୍ଦାବଳି ରେକର୍ଡ କରିପାରୁଛି ଠିକ୍ ସେହିପରି ମନୁଷ୍ୟର ଶରୀର ଅବସାନ ପରେ ତାହାର ମନ ଅର୍ଥାତ୍ Mind ଯାହା ହେଉଛି ଏବେ ବି (ଉର୍ଜା) ତାହା ନିଶ୍ଚିତ ଭାବରେ ମହାଶୂନ୍ୟରେ ଚାଲିଛି । ମୃତ ମଣିଷର କଣ୍ଠସ୍ୱର କିମ୍ୱା ମୃତ ଗ୍ରହର ଆଲୋକ ଯେପରି ପାର୍ଥିବ ଦେହରେ ଅବସାନ ପରେ ମଧ୍ୟ ରେକର୍ଡ ହୋଇପାରୁଛି ସେପରି ଏକ ଯନ୍ତ୍ର ନିଶ୍ଚିତ ଭାବରେ ଭବିଷ୍ୟତରେ ବାହାରିବ, ଯାହା ମନକୁ ଅର୍ଥାତ୍ ଚିନ୍ତାଧାରାକୁ ରେକର୍ଡ କରି ରଖିପାରିବ । ଏଇଠି ଭକ୍ତକବି ମଧୁସୂଦନଙ୍କର କବିତାର ପଂକ୍ତିକୁ ପରିଜାସାହେବ ଉଦ୍ଧାର କରିଥିଲେ ଓ ଇଂରାଜୀରେ ଏହାର ତାତ୍ପର୍ଯ୍ୟ ବୁଝାଇଥିଲେ ।

ଆହା କିବା ଅଦ୍ଭୁତ ମନର ଗତି
ଅଚିନ୍ତନୀୟ ଅଟେ ତା'ର ଶକତି
କ୍ଷଣମାତ୍ରକେ ମନ କରେ ଦର୍ଶନ
ଏହି ଅପରିସୀମ ବିଶ୍ୱଭୂବନ
ଜିଣଇ ସହଜରେ ମନୁଷ୍ୟ ମତି
ପ୍ରଭଞ୍ଜନର ବେଗ ଆଲୋକ ଗତି ।

## ଅସାଧାରଣ ଛାତ୍ରବତ୍ସଳତା

ଏହି ଘଟଣା ପରେ ପରିଜାସାହେବ ରେଭେନ୍ସା କଲେଜର ସ୍ଥାୟୀ ପ୍ରିନ୍ସିପାଲ ହେବା ପର୍ଯ୍ୟନ୍ତ ତାଙ୍କର ଲାବରେଟରୀରେ ଗବେଷଣାରେ ବ୍ୟାପୃତ ଥିଲେ ।

ଡକ୍ଟର ପରିଜାଙ୍କର ଛାତ୍ରବତ୍ସଳତା ଅସାଧାରଣ । ବିଶେଷତଃ ଯେଉଁମାନେ ନିର୍ଦ୍ଧନ ଘର ପିଲା କିନ୍ତୁ ସେମାନଙ୍କର ଭବିଷ୍ୟତର ସମ୍ଭାବନା ଉଜ୍ଜ୍ୱଳ ବୋଲି ତାଙ୍କର ହୃଦ୍‌ବୋଧ ହୁଏ ସେମାନଙ୍କ ପାଇଁ ଡକ୍ଟର ପରିଜା ଆପଣାର ଅଜ୍ଞାତ କଥା ସ୍ମରଣ କରି ଯଥାସମ୍ଭବ ସାହାଯ୍ୟ କରିଥାଆନ୍ତି । ବହୁ ଜ୍ଞାନୀ, ଗୁଣୀ, ଲବ୍ଧପ୍ରତିଷ୍ଠ ବ୍ୟକ୍ତି ପରିଜାସାହେବଙ୍କର ପ୍ରତ୍ୟକ୍ଷ ସାହାଯ୍ୟରେ ହିଁ ତାଙ୍କର ଛାତ୍ରଜୀବନ ଅତିବାହିତ କରିଛନ୍ତି । ସେମାନଙ୍କ ଭିତରୁ ଜଣେ ଏହି ଲେଖକ । ସେହି ବିଷୟରେ ମୋର ଅଙ୍ଗେ ନିଭେଇବା କଥା ଏଠାରେ ଲେଖୁଛି ।

୧୯୩୬ ମସିହାରେ ମୁଁ ରେଭେନ୍ସା କଲେଜର ଇଣ୍ଟରମେଡିଏଟ୍ ସାଇନ୍ସ ପରୀକ୍ଷାରେ କେମିଷ୍ଟ୍ରି ପ୍ରାକ୍ଟିକାଲରେ ଦୁଇ ନମ୍ବର ପାଇଁ ଫେଲ୍ ହୋଇଯାଇଥିଲି । ତାହା ମୁଁ ପରୀକ୍ଷା ଦିନ ହିଁ ଜାଣିପାରିଥିଲି । କିନ୍ତୁ ସେ ବିଷୟରେ କେବଳ ମୋର ପୂର୍ବତନ ଅଧ୍ୟାପକ ପ୍ରଫେସର ଲୋକନାଥ ମିଶ୍ରଙ୍କ ଛଡ଼ା ଅନ୍ୟ କେହି ଜାଣି ନ ଥିଲେ । ଏହି ନିଷ୍ଫଳତା ପରେ ମୋର ଏକ ମାନସିକ ଅବକ୍ଷୟ ଆରମ୍ଭ ହେଲା । ମୁଁ ଜାଣିଲି ଯେ ମୁଁ ଛାତ୍ରବୃତ୍ତି ପାଇବି ନାହିଁ । ତେଣୁ ମୋର ପାଠପୋଥିରେ ଡୋରି ବନ୍ଧା ହୋଇଯିବ । ଏହି ପରୀକ୍ଷା ପରେ ମୁଁ ପୁରୀ ସହରରେ କୌଣସି ପ୍ରାଇଭେଟ ଟ୍ୟୁସନ କରି କିଛି ସମ୍ବଳ ଯୋଗାଡ଼ କଲେ ହୁଏତ ପୁଣି କଲେଜରେ ପଢ଼ିପାରିବି, ନଚେତ୍ ନାହିଁ ।

ଏହି ସମୟରେ ଡକ୍ଟର ପରିଜା ପୁରୀ ସହରରେ 'ଶୈଳ ନିବାସ'ରେ ଗ୍ରୀଷ୍ମଛୁଟି କଟାଉଥାଆନ୍ତି । ମୋର ଦୟନୀୟ ଅବସ୍ଥା ବିଷୟରେ ମୋର ପିତା ମୋତେ ସାଙ୍ଗରେ ନେଇ ପରିଜାସାହେବଙ୍କ ପାଖରେ ପହଞ୍ଚିଲେ । ପରିଜାସାହେବ ସେତେବେଳେ ଜାଣିପାରିଲେ ଯେ ମୋର ପରୀକ୍ଷାର ପରିଣାମ ଅନୁସାରେ ମୋର ଛାତ୍ରବୃତ୍ତି ଆଶା ନାହିଁ । ତଥାପି ସେ ମୋର ପିତାଙ୍କୁ ପ୍ରତିଶ୍ରୁତି ଦେଲେ ଯେ ମୁଁ ମୋର ପାଠପଢ଼ା ଯେପରି ଗ୍ରାଜୁଏସନ ଯାଏ ଚାଲିପାରିବ, ସେଥିପାଇଁ ସେ ସାହାଯ୍ୟ କରିବେ । ସେଥିପାଇଁ ସେ ପୁରୀରେ ଗ୍ରୀଷ୍ମାବକାଶ କଟାଉଥିବା ଦୁଇଜଣ ପ୍ରତିଷ୍ଠିତ ବ୍ୟକ୍ତିଙ୍କର ପିଲାଙ୍କ ସପ୍ଲିମେଣ୍ଟାରୀ ପରୀକ୍ଷା ପାଇଁ ପ୍ରସ୍ତୁତିରେ ସାହାଯ୍ୟ କରିବାକୁ ମୋତେ ନିଯୁକ୍ତ କରାଇଥିଲେ, ଯେପରିକି ମୁଁ କଲେଜର ନାଁଲେଖା ଫିସ୍ ଅନ୍ତତଃ ସଂଗ୍ରହ କରିପାରିବି, ପରେ ପରିଜାସାହେବ ପାଟଣା ବିଶ୍ୱବିଦ୍ୟାଳୟର ମଡରେସନ ବୋର୍ଡରୁ ଫେରି ପୁରୀରେ ପହଞ୍ଚିଲେ । ମୁଁ ଯାଇ ତାଙ୍କୁ ଦେଖାକଲି । ସାକ୍ଷାତ ମାତ୍ରେ ସେ ମୋତେ କହିଲେ, "ତୁମେ ଜଣେ ବୁଦ୍ଧିମାନ ପିଲା । ତୁମେ ଏପରି କ'ଣ କଲ ?" ମୁଁ କହିଲି,

''ସାର୍, ମୁଁ କ'ଣ ଫେଲ୍ ହୋଇଗଲି ?'' ସେ କହିଲେ, ''ନା, ତୁମେ ଦୁଇ ନମ୍ବର ପାଇଁ କେମିଷ୍ଟ୍ରି ପ୍ରାକ୍ଟିକାଲରେ ଫେଲ୍ ହୋଇଥିଲ । ତେଣୁ ତୁମର ଏଗ୍ରିଗେଟ ଠାରୁ ଦଶଗୁଣ ଅର୍ଥାତ୍ କୋଡ଼ିଏ ମାର୍କ କାଟିଦିଆଯାଇ ତୁମକୁ ପାସ୍ କରାଇ ଦିଆଗଲା । ତୁମର ସେକେଣ୍ଡ ଡିଭିଜନ ହୋଇଗଲା ।''

ସେତେବେଳେ ମୋତେ ଦିନେ ଛଡ଼ା ଦିନେ ମେଲେରିଆ ପାଳିଜ୍ୱର ହେଉଥାଏ । ମୁଁ ତାଙ୍କର କଥା ଶୁଣିଲା ପରେ ମୋ ଦେହରୁ ଅଜସ୍ର ଝାଳ ବୋହୁଥାଏ । ପରିଜାସାହେବଙ୍କର ସହଧର୍ମିଣୀ ମୋତେ ପାଉଁରୁଟି ଓ ଦୁଧ ଖାଇବାକୁ ଦେଲେ । ସେତେବେଳେ ପରିଜାସାହେବ ''କିଛି ମନସ୍ତାପ କର ନାହିଁ । ବେଳେ ବେଳେ ଭଲ ପିଲାଙ୍କର ମଧ୍ୟ ଏପରି ମନ୍ଦଦଶା ଘଟେ । ତେବେ ମୁଁ ଗୋଟିଏ କଥା ସ୍ଥିର କରିଛି । ତୁମେ ପଶ୍ଚିମ ଛାତ୍ରାବାସରେ ୱାର୍ଡେନ ଆଉଟ ହାଉସ୍‌ରେ ରହିବ । ସେଠାରେ ତ ଗାଧୋଇବାର ଲାଇନ୍ ଅଛି, ଓୟେଷ୍ଟ ହଷ୍ଟେଲର ମେସ୍‌ରେ ତୁମକୁ ଫ୍ରି ଖାଇବାର ବନ୍ଦୋବସ୍ତ କରିଦିଆଯିବ । ମୁଁ ତ ପ୍ରିନ୍ସିପାଲ ହୋଇ ଯାଉଛି । ମୁଁ ୱାର୍ଡେନଙ୍କୁ ସବୁ କହିଦେବି । ତୁମେ ମେୟୋ (Mayo)ସ୍କଲରଶିପ୍ ପାଇଁ ଦରଖାସ୍ତ କରିବ ଓ ତୁମର କଲେଜରେ ମୁଁ ଫ୍ରି ଷ୍ଟୁଡେଣ୍ଟଶିପ୍ କରାଇଦେବି ।'' ତାଙ୍କର ଏ ପ୍ରସ୍ତାବ ଶୁଣି ମୁଁ କାନ୍ଦି ପକାଇଲି । ମୁଁ କହିଲି, ''ସାର୍, ମୁଁ ଏଭଳି ଭାବରେ ପାଠ ପଢ଼ିବି ନାହିଁ । ସବୁଠାରୁ ମାଗଣା ଖାଇ ପାଠ ପଢ଼ି ପାସ୍ କରିବାକୁ ମୋର ମନ ଡାକୁ ନାହିଁ ।''

ପରିଜାସାହେବ ମୋ କଥା ଶୁଣି ଚକିତ ହୋଇଗଲେ । ପ୍ରକୃତିସ୍ଥ ହୋଇ ଡାକିଲେ ତାଙ୍କର ସ୍ତ୍ରୀଙ୍କୁ ''ଶୁଣ ସୁନ୍ଦରମଣୀ, ଇଯେ କ'ଣ କହୁଛି ? ଏ ମାଗିଯାଚି ପାଠ ପଢ଼ିବ ନାହିଁ । ମୁଁ ତାକୁ ଯେଉଁ ପ୍ରସ୍ତାବ ଦେଲି ତାହା ମୁଁ ଅପରପ୍ରାଇମେରୀ ପାସ୍ ପରେ ଯଦି ମୋତେ କେହି ଏହି ପ୍ରସ୍ତାବରୁ ଅଧେ ଦେଇଥାଆନ୍ତା ତେବେ ମୁଁ ତା'ର ପାଦ ଚାଟିଦେଇ ଥାଆନ୍ତି । ଏ କହୁଛି ପଢ଼ିବ ନାହିଁ !''

ଗ୍ରୀଷ୍ମଛୁଟି ଶେଷରେ ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତି ମୋତେ ଖଣ୍ଡିଏ ଚିଠି ଲେଖି ଚିଉସନ ପଇସା ଧରି କଲେଜରେ ନାମ ଲେଖାଇବାକୁ ନିର୍ଦ୍ଦେଶ ଦେଲେ । ମୁଁ ତାଙ୍କୁ ଦେଖାକଲା ପରେ ସେ କହିଲେ ହଷ୍ଟେଲର ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ରୋହାତଗିଙ୍କୁ ଓଡ଼ିଆ ପଢ଼ାଇବାକୁ । ମାସିକ ୩୫ ଟଙ୍କା ଦରମା । ଏହା ସବୁ ଥିଲା ପରିଜାସାହେବଙ୍କର କୃତିତ୍ୱ । ସେ କେବଳ ମୋ ପରି ସାହାଯ୍ୟପ୍ରାର୍ଥୀଙ୍କୁ ମଣିଷ କରି ନାହାନ୍ତି ମୋ ଭଳି ଡଜନ ଡଜନ ଦୁସ୍ଥ ବିଦ୍ୟାର୍ଥୀ ତାଙ୍କର ସାହାଯ୍ୟ ପାଇ ପରେ ସ୍ୱନାମଧନ୍ୟ ହୋଇଛନ୍ତି ।

## କଲେଜ ୟୁନିଅନ ସମସ୍ୟା

୧୯୩୬ ମସିହାରେ ପ୍ରଭିନ୍ସିଆଲ୍ ଅଟୋନୋମୀ ପ୍ରବର୍ତ୍ତନ ପରେ ଓଡ଼ିଶାରେ କଂଗ୍ରେସ ମନ୍ତ୍ରିମଣ୍ଡଳ ହେଲା । ସେତେବେଳେ ସେହି ମନ୍ତ୍ରିମଣ୍ଡଳରେ ଏଡୁକେଶନ କୋର୍ଡର ପରିବର୍ତ୍ତନରେ କଲେଜମାନଙ୍କରେ ଛାତ୍ର ୟୁନିଅନଗୁଡ଼ିକର ସଭାପତି ନିର୍ବାଚନ ଛାତ୍ର ପ୍ରତିନିଧି ହେବେ ବୋଲି ଗୋଟିଏ କ୍ଲଜ୍ ଥିଲା । ଏହାରି ଉପଲକ୍ଷ୍ୟରେ ରେଭେନ୍ସା କଲେଜର ଡିବେଟିଙ୍ଗ ସୋସାଇଟି ଏକ କଲେଜ ୟୁନିଅନ୍ ହେବା ପାଇଁ ଛାତ୍ରମାନଙ୍କ ଭିତରେ ଆନ୍ଦୋଳନ ଆରମ୍ଭ ହେଲା । ସେ ପର୍ଯ୍ୟନ୍ତ ରେଭେନ୍ସା କଲେଜର ପ୍ରିନ୍ସିପାଲ ହିଁ ଥିଲେ ସେହି କଲେଜ ପ୍ରତିଷ୍ଠାନର ସଭାପତି । ତାଙ୍କ ତରଫରୁ ଜଣେ ଆଡ୍‌ଭାଇଜର ୟୁନିଅନର ଖବର ବୁଝୁଥିଲେ । ପିଲାମାନଙ୍କ ଭିତରୁ ଜଣେ ସିନିଅର ଛାତ୍ର ସାଧାରଣତଃ ସେକ୍ରେଟାରୀ ହୋଇଥିଲେ । ସେତେବେଳେ ଏପରି ଏକ ଏଡୁକେଶନ ବୋର୍ଡର ବ୍ୟବସ୍ଥା ପ୍ରତି ଛାତ୍ରମାନେ ଦୃଷ୍ଟି ପକାଇବାରୁ କଲେଜରେ ଆନ୍ଦୋଳନ ହେଲା । ପରିଜାସାହେବ ସେତେବେଳେ ପ୍ରିନ୍ସିପାଲ ଥିଲେ । ପ୍ରରବର୍ତ୍ତୀ କାଳରେ ପ୍ରଫେସର ଡକ୍ଟର ଶୀରାମଚନ୍ଦ୍ର ଦାଶ ସେତେବେଳେ ପଶ୍ଚିମ ଛାତ୍ରାବାସରେ ସ୍ଥାନ ପାଇ ନ ଥିଲେ । କାରଣ ତାଙ୍କର ଦେହରେ କୁଷ୍ଠ ଛଉ ଥିଲା । ପରିଜାସାହେବ ତାଙ୍କୁ ଅତ୍ୟନ୍ତ ସ୍ନେହ କରୁଥିଲେ ମଧ୍ୟ ତାଙ୍କର ରୋଗର ଉପଶମ ପର୍ଯ୍ୟନ୍ତ ତାଙ୍କୁ ହଷ୍ଟେଲରେ ରଖିବା ପାଇଁ ଅନିଚ୍ଛୁକ ଥିଲେ । ତା'ପରେ ଶ୍ରୀରାମଚନ୍ଦ୍ର ମେଡିକାଲ କଲେଜରୁ ଗୋଟିଏ ସାର୍ଟିଫିକେଟ ଆଣିଲେ ଯେ ତାଙ୍କର କୁଷ୍ଠଛଉ ଭଲ ହୋଇଯାଇଛି । ତେଣୁ ତାଙ୍କୁ ପଶ୍ଚିମ ଛାତ୍ରାବାସରେ ସ୍ଥାନ ମିଳିଲା । ସେତେବେଳେ ଛାତ୍ରାବାସର ଅନେକ ଛାତ୍ର ଏହାର ଆପତ୍ତି କରି ତୁମୁଳ ଗଣ୍ଡଗୋଳ ଆରମ୍ଭ କଲେ । ସେତେବେଳେ କଲେଜ ୟୁନିୟନର ନିୟମାବଳି କନ୍‌ଷ୍ଟିଚୁସନ୍ କିପରି ହୋଇ ଏକ ଭୋଟ ହୋଇଥିଲା । ଶ୍ରୀରାମଚନ୍ଦ୍ର ଦାଶଙ୍କୁ ହଷ୍ଟେଲରୁ ବହିଷ୍କାର କରିବା ପାଇଁ ଯେଉଁ ଛାତ୍ରମାନେ ଅଡ଼ିବସିଲେ ସେଥିଭିତରୁ ଜଣେ ଛାତ୍ର ଯାହାଙ୍କର ଶ୍ରୀରାମଚନ୍ଦ୍ର ଦାଶଙ୍କର ଆସବାବପତ୍ର ପୋଡ଼ିଦେବାର ଅଭିଯୋଗ ପ୍ରମାଣିତ ହେଲା । ତାଙ୍କର ବିଚାର ସମୟରେ ସେ ନିର୍ବାଚନରେ ଛିଡ଼ା ହୋଇ ପ୍ରଥମ କଲେଜ ୟୁନିଅନ ପ୍ରେସିଡେଣ୍ଟ ହେଲେ । ପରେ ଘରପୋଡ଼ି ମାମଲାରେ ସେ ଦଣ୍ଡିତ ହୋଇ କଲେଜରୁ ବହିଷ୍କୃତ ହେଲେ । ତା'ପରେ କଲେଜ ୟୁନିଅନର ଯେଉଁ ନିର୍ବାଚନ ହେଲା ସେତେବେଳେ ଏହି ଲେଖକ ସେହି ନିର୍ବାଚନରେ ପ୍ରେସିଡେଣ୍ଟ ନିର୍ବାଚିତ ହୋଇଥିଲେ । ଏଥିରେ ଡକ୍ଟର ପରିଜା ବେଶ୍ ସନ୍ତୁଷ୍ଟ ହୋଇଥିଲେ । କିନ୍ତୁ ଦୁର୍ଭାଗ୍ୟର କଥା, ତାହାର ଅଳ୍ପଦିନ ପରେ ରେଭେନ୍ସା କଲେଜରେ ପରୀକ୍ଷା ବର୍ଜନ ଆନ୍ଦୋଳନ ବେଳେ ଏହି ଲେଖକ କଲେଜଛକ ଠାରେ ବିଲାତି ସର୍ଜେଣ୍ଟ ମାଡ଼ରେ ଆହତ ହୋଇ ଜେଲଖାନାରେ ବନ୍ଦୀ ଥିଲାବେଳେ

ପରିଚ୍ଛାସାହେବ ଅତ୍ୟନ୍ତ କ୍ଷୁବ୍ଧ ହୋଇ ଜେଲଖାନାକୁ ଭଦ୍ରବ୍ୟକ୍ତିଙ୍କୁ ପଠାଇ ମୋର ଖବର ବୁଝିଥିଲେ ।

## ଗ୍ରୋମର ଫୁଡ୍

ତା'ପରେ ଆସିଲା ଯୁଦ୍ଧ । ଦେଶରେ ଖାଦ୍ୟପଦାର୍ଥର ନିଅଣ୍ଟ ପଡ଼ିଲା । ସାରା ୟୁରୋପ ହେଲା ଯୁଦ୍ଧଭୂମି । ଓଡ଼ିଶାରେ ଭାରତର ଅନ୍ୟାନ୍ୟ ଅଞ୍ଚଳ ଓଡ଼ିଶାରେ 'ଗ୍ରୋମର ଫୁଡ୍' କାର୍ଯ୍ୟକ୍ରମ ଆରମ୍ଭ ହେଲା । ସେତେବେଳେ ଉଦ୍ଭିଦ ବିଜ୍ଞାନବିତ୍ ପରିଚ୍ଛାସାହେବ ଓଡ଼ିଶାର ଏଗ୍ରିକଲଚର ଡାଇରେକ୍ଟର ହୋଇଥିଲେ ଓ ଏହି କାର୍ଯ୍ୟରେ ସ୍ୱଳ୍ପକାଳ ରହିବା ପରେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟକୁ ପ୍ରୋ-ଭାଇସ୍ ଚାନ୍ସେଲର ଭାବରେ ଯୋଗ ଦେଇ ଅଶେଷ ଖ୍ୟାତି ଅର୍ଜନ କରିଥିଲେ ।

ତାଙ୍କ ଜନ୍ମସ୍ଥାନର ନିର୍ବାଚନ ମଣ୍ଡଳୀର ଜନସାଧାରଣଙ୍କର ସନିର୍ବନ୍ଧ ଅନୁରୋଧରେ ପରିଚ୍ଛାସାହେବ ଓଡ଼ିଶା ଆସେମ୍ବ୍ଲିକୁ ଜଣେ ସ୍ୱାଧୀନ ସଭ୍ୟ ଭାବରେ ଛିଡ଼ାହୋଇ ନିର୍ବାଚିତ ହୋଇଥିଲେ ।

ତାଙ୍କର ବୁଦ୍ଧିମତ୍ତା, ଦେଶପ୍ରାଣବତ୍ସଳତା ଏବଂ ପୀଡ଼ିତ ପ୍ରତି ସହାନୁଭୂତି ଅସମ୍ଭବ ଥିଲା । ଓଡ଼ିଶାର ଜୀବନଧାରାରେ ପରିଚ୍ଛାସାହେବ ଏକ ବଡ଼ ମାଇଲ ଖୁଣ୍ଟ । ଆଜି ତାଙ୍କର ସେହି ଅମର ସ୍ମୃତିକୁ ଓଡ଼ିଶାବାସୀ ଏପରିକି ବହୁ ଭାରତବାସୀ ଜୀବନର ସଂଖାଳି ଭାବରେ ସାଇତି ରଖିଛନ୍ତି ।

# ମୋ ସ୍ମୃତି ପଥରେ ଡକ୍ଟର ପ୍ରାଣକୃଷ୍ଣ ପରିଜା

**ମନ୍ମଥ ନାଥ ଦାସ**

୧୯୩୫ ମସିହା । ମୁଁ ସେତେବେଳେ ଉଚ୍ଚ ପ୍ରାଥମିକ ସ୍କୁଲର ଛାତ୍ର । ବାଲେଶ୍ୱର ଜିଲ୍ଲାର ଭୋଗରାଇ ଥାନାର ସମୁଦ୍ର କୂଳବର୍ତ୍ତୀ ଗୋଟିଏ ଗ୍ରାମରେ ମୋର ଘର । ଓଡ଼ିଶାର ଦକ୍ଷିଣ-ପୂର୍ବ ସୀମାନ୍ତର ଗୋଟିଏ ଦୂରବର୍ତ୍ତୀ ପଲ୍ଲୀ । ସେତେବେଳେ ମୋ ବଡ଼ମାମୁ କାଳିକିଙ୍କର ସାମଲ ରେଭେନ୍ସା କଲେଜରେ ବି.ଏସ୍‌ସି. ପଢୁଥାନ୍ତି । ଛୁଟିରେ ଗାଁକୁ ଆସିଲେ ଆମ ଘରେ ରହୁଥାନ୍ତି । ତାଙ୍କରି ପାଖରୁ ପ୍ରଥମେ କାହାଣୀ ଆକାରରେ ଶୁଣୁଥିଲି ପରିଜାସାହେବଙ୍କ କଥା । ଦରିଦ୍ର ଘରର ପିଲା । ମା ଅନେକ କଷ୍ଟରେ ପୁଅକୁ ପଢ଼ାଇଥିଲେ । ପରେ ନିଜ ପ୍ରତିଭା ବଳରେ ଉଚ୍ଚ ଶିକ୍ଷା ଲାଭ କରି ଶେଷରେ ବିଲାତ ଗଲେ । ସେଠାରୁ ଉଚ୍ଚତର ଡିଗ୍ରି ହାସଲ କରି ଭାରତ ଫେରିଲେ ଏବଂ ରେଭେନ୍ସା କଲେଜରେ ଅଧ୍ୟାପକ ହେଲେ । ଚାହୁଁ ଚାହୁଁ ଜଣେ ବୈଜ୍ଞାନିକ ରୂପେ ତାଙ୍କର ଖ୍ୟାତି ବଢ଼ିଚାଲିଲା । ମାମୁଙ୍କ ପାଖରୁ ଶୁଣିଥିବା ଗୋଟିଏ କଥା ମନେଅଛି । ବିଲାତଫେରନ୍ତା ପରିଜାସାହେବ ଯେତେବେଳେ ଅଧ୍ୟାପକ ହେଲେ, ତାଙ୍କର ଜଣେ ନିକଟ ସମ୍ପର୍କୀୟ ଆତ୍ମୀୟ ଦୁଃଖ ପ୍ରକାଶ କରି କହିଥିଲେ : ''ପ୍ରାଣକୃଷ୍ଣ ! ଏତେ ପାଠ ପଢ଼ି ଶେଷରେ ମାଷ୍ଟର ଚାକିରିଟିଏ ବାଛିନେଲୁ ! ଥାନା ଦାରୋଗା ହୋଇଥିଲେ ଆମେ ସମସ୍ତେ କେତେ ଆନନ୍ଦ ଲାଭ କରିଥାନ୍ତୁ !'' ସରଳମନା ସେହି ବ୍ୟକ୍ତିଟି ଜାଣି ନ ଥିଲେ, ବୈଜ୍ଞାନିକ ପରିଜାଙ୍କର ଜ୍ଞାନ ଓ ଗୌରବର ମୂଲ୍ୟ !

୧୯୩୮ ମସିହା । ବାଲେଶ୍ୱର ଜିଲ୍ଲାସ୍କୁଲରେ ଅଷ୍ଟମ ଶ୍ରେଣୀରେ ପଢ଼ିଲା ବେଳେ କେତେ ଜଣ ସାଙ୍ଗକୁ ନେଇ ଥରେ କଟକ ସହର ଦେଖିବାକୁ ଗଲି । ଷ୍ଟେସନରେ ପହଞ୍ଚି ଆମେ ସମସ୍ତେ ଠିକ୍ କଲୁ, ପ୍ରଥମେ ପରିଜାସାହେବଙ୍କୁ ଦେଖିବା ଓ ତା ପରେ ବାରବାଟୀ ଦୁର୍ଗ ଓ କାଠଯୋଡ଼ି ନଦୀବନ୍ଧ ଇତ୍ୟାଦି । ରେଭେନ୍ସା କଲେଜ ପାଖରେ ପହଞ୍ଚି ପରିଜାସାହେବଙ୍କ ବାସଭବନ ଆଡ଼କୁ ଚାଲିଲୁଁ । ଅନେକ ଦୂରରେ ଛିଡ଼ା ହୋଇ ତାଙ୍କର କଲେଜ ବାହାରିବା ସମୟ ପର୍ଯ୍ୟନ୍ତ ଅପେକ୍ଷା କଲୁଁ ଏବଂ ଶେଷରେ ତାଙ୍କୁ ଦେଖିବା ପାଇଁ ସୁଯୋଗ ପାଇଲୁଁ । ସେତେବେଳକୁ ପରିଜାସାହେବଙ୍କ ନାମ ଥିଲା ଛାତ୍ର ଓ ଶିକ୍ଷିତ ସମାଜରେ ଏକ ଆଲୋଚ୍ୟ ବିଷୟ । ଶିକ୍ଷାଦାତା ରୂପେ ସତେଯେପରି ସେ ଥିଲେ ଜଣେ କିମ୍ବଦନ୍ତୀ ପୁରୁଷ ।

୧୯୪୨ ମସିହା ଜୁଲାଇ ମାସ ରେଭେନ୍ସା କଲେଜରେ ଆଇ. ଏ. କ୍ଲାସରେ ଭର୍ତ୍ତି ହେଲି । ଅଗଷ୍ଟ ମାସ ଆରମ୍ଭ ହେଲା 'ଭାରତ-ଛାଡ଼' ଆନ୍ଦୋଳନ । ପରିଜ୍ଞାସାହେବ ଥିଲେ କଲେଜର ଅଧ୍ୟକ୍ଷ । ଛାତ୍ରମାନେ ବ୍ରିଟିଶ୍-ବିରୋଧୀ ବିକ୍ଷୋଭ ଯାତ୍ରାରେ ବାହାରିଲେ । ଆଗରେ ଅନ୍ୟମାନଙ୍କ ମଧ୍ୟରେ ନେତୃତ୍ୱ ଦେଉଥିଲେ ପରିଜ୍ଞାସାହେବଙ୍କ କନ୍ୟା, ସୌଦାମିନୀ । ରେଭେନ୍ସା କଲେଜ ହତାରୁ ମେଡିକାଲ କଲେଜ ହତା ପର୍ଯ୍ୟନ୍ତ ବିକ୍ଷୋଭ ଯାତ୍ରା ଆଗେଇଗଲା । ସେଠାରେ ପୋଲିସବାହିନୀ ସହ ଉପସ୍ଥିତ ଥାନ୍ତି ଇଂରେଜ ପୋଲିସସାହେବ ହାର୍‌ଗ୍ରିଭସ୍ । ଲାଠି ଚାର୍ଜ ଚାଲିଲା । କେତେକ ଛାତ୍ର ଆହତ ହେଲେ । କଲେଜ ବନ୍ଦ ହେଲା । ଘରକୁ ଫେରିଲି । ଅକ୍ଟୋବର ମାସ ଆମ ଅଞ୍ଚଳରେ ଘଟିଗଲା ପ୍ରଳୟଙ୍କରୀ ତୋଫାନ । ଉତ୍ତର ବାଲେଶ୍ୱରର ଅନେକ ଗ୍ରାମାଞ୍ଚଳ ଧ୍ୱସ୍ତ ବିଧ୍ୱସ୍ତ ହେଲା । କିଛିଦିନ ପରେ କଲେଜ ଖୋଲିଲା ପରେ ପୁଣି ଯେତେବେଳେ ଛାତ୍ରାବାସକୁ ଫେରିଲି, କୌଣସି ଜଣେ କର୍ମଚାରୀଙ୍କ ପାଖରୁ ଶୁଣିଲି, ପରିଜ୍ଞାସାହେବ କୁଆଡ଼େ ଝଡ଼ତୋଫାନ କଥା ଶୁଣିବାଲାଗି ଇଚ୍ଛା କରୁଥିଲେ । ସାହସ ବାନ୍ଧି ତାଙ୍କ ବାସଭବନକୁ ଚାଲିଲି । ଅପରାହ୍ଣ ଘ ୪-୩୦ ମିନିଟ୍ । ପରିଜ୍ଞାସାହେବ ବସିବାକୁ କହିଲେ । କିନ୍ତୁ ଛିଡ଼ା ହୋଇ ଏବଂ ଡରି ଡରି ତୋଫାନ କଥା ବର୍ଣ୍ଣନା କଲି । ସେ ସବୁ କଥା ଶୁଣିଲେ ଓ ଗଭୀର ଦୁଃଖ ପ୍ରକାଶ କଲେ । ଅଧ୍ୟକ୍ଷ ଭାବେ ତାଙ୍କର ମହତ୍ ଗୁଣ ଥିଲା, ଯେ କୌଣସି ଛାତ୍ରକୁ ଥରେ ଦେଖିଲା ପରେ ସେହି ଛାତ୍ରକୁ ଓ ତା ନାମଟିକୁ ସେ ମନେ ରଖି ପାରୁଥାନ୍ତି । ଏ ବିଷୟ ମୁଁ ବ୍ୟକ୍ତିଗତ ଭାବେ ଅନୁଭବ କରିଛି । ବର୍ଷକ ପରେ ପଶ୍ଚିମ ଛାତ୍ରାବାସର ବାର୍ଷିକ ଉତ୍ସବରେ ସେ ଯେତେବେଳେ ପୁରସ୍କାର ବିତରଣ କରୁଥିଲେ ଓ ମୁଁ 'ପରିଜ୍ଞା ପେନ୍‌ସିଲ୍' ନାମରେ ବିଦିତ ପୁରସ୍କାରଟିକୁ ଗ୍ରହଣ କରିବା ଲାଗି ମଞ୍ଚ ଉପରକୁ ଗଲି, ସେ ସଙ୍ଗେ ସଙ୍ଗେ ମୋତେ ଚିହ୍ନିପାରିଲେ ଏବଂ ବୃହଦାକାର 'ପେନ୍‌ସିଲ୍'ଟିକୁ ମୋ ହାତରେ ଧରାଇ ଦେଇ କହିଥିଲେ, "Remember, Pen is mightier than Sword."

୧୯୪୭ରେ ଯେତେବେଳେ ପରିଜ୍ଞାସାହେବ ରେଭେନ୍ସା କଲେଜର ଅଧ୍ୟକ୍ଷ ପଦରୁ ବିଦାୟ ନେଲେ, ତାଙ୍କ ବିଦାୟ ସଭାରେ ଯେଉଁ ଦୁଇଜଣ ଛାତ୍ର କହିବା ପାଇଁ ସୁଯୋଗ ପାଇଥିଲେ, ସେଥିମଧ୍ୟରେ ମୁଁ ଥିଲି ଜଣେ ଏବଂ ତାଙ୍କ ଜ୍ଞାନ ଗରିମା ବର୍ଣ୍ଣନା କରି ସେଦିନ ସନ୍ଧ୍ୟାରେ ଗର୍ବ ଓ ଆନନ୍ଦ ଉପଭୋଗ କରିଥିଲି । ସେହି ବର୍ଷ ବି. ଏ. ପାସ୍ କଲା ପରେ ପରିଜ୍ଞାସାହେବଙ୍କୁ ସାକ୍ଷାତ କରିବାକୁ ଗଲି ଏବଂ ଖଣ୍ଡିଏ ବ୍ୟକ୍ତିଗତ ସାର୍ଟିଫିକେଟ୍ ମାଗିଲି । ସେ ତତ୍‌କ୍ଷଣାତ୍ ଖୁସି ମନରେ ସାର୍ଟିଫିକେଟ୍‌ଟି ଲେଖିଦେଲେ ଏବଂ ଆଲ୍ଲାହାବାଦ ବିଶ୍ୱବିଦ୍ୟାଳୟରେ ଇତିହାସରେ ଏମ୍. ଏ. ପଢ଼ିବାକୁ ଉପଦେଶ ଦେଲେ ।

୧୯୫୯ ମସିହା ଡିସେମ୍ବର ମାସ ରେଭେନ୍ସା କଲେଜର ସ୍ନାତକୋତ୍ତର ଇତିହାସ ବିଭାଗ ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନକୁ ହସ୍ତାନ୍ତରିତ ହେଲା । ପରିଜାସାହେବ ସେତେବେଳେ ବିଶ୍ୱବିଦ୍ୟାଳୟର କୁଳପତି । ମନୋନୟନ ସମିତିର ଅଧ୍ୟକ୍ଷ ଭାବେ ସେ ମୋତେ ରିଡର ଓ ମୁଖ୍ୟ ଇତିହାସ ଅଧ୍ୟାପକ ରୂପେ ନିର୍ବାଚନ କଲେ ଏବଂ ସେହି ସମୟରୁ ତାଙ୍କ ଅଧୀନରେ କାର୍ଯ୍ୟ କରିବା ଲଗି ସୌଭାଗ୍ୟ ଲାଭ କଲି । ଯେଉଁଦିନ କାର୍ଯ୍ୟଭାର ଗ୍ରହଣ କଲି ସେହିଦିନ ସେ ମୋତେ ଲଣ୍ଡନ ବିଶ୍ୱବିଦ୍ୟାଳୟରେ ଏକବର୍ଷ ପାଇଁ ଜଣେ 'ଗବେଷଣା ସହଯୋଗୀ' ଭାବରେ ଯୋଗ ଦେବା ପାଇଁ ଛୁଟି ମଞ୍ଜୁର କଲେ । ତାହା ଥିଲା କୁଳପତି ରୂପେ ତାଙ୍କ ମହତ୍ତ୍ୱର ଏକ ନିଦର୍ଶନ । କହିଥିଲେ, ''ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ପିଏଇଚ. ଡି. ଡିଗ୍ରି ପାଇଛ । ସେହି ବିଶ୍ୱବିଦ୍ୟାଳୟରେ ପୁଣି ଉଚ୍ଚତର ଗବେଷଣା କରିବା ଲାଗି ମନୋନୀତ ହେଲ । ସେଥିପାଇଁ ଆନନ୍ଦରେ ଛୁଟି ଦେଉଛି । It will add laurel to your service in Utkal University । ସେଠାରେ ଭଲ କାମ କରି ଆମ ବିଶ୍ୱବିଦ୍ୟାଳୟର ସୁନାମ ରକ୍ଷା କରିବ ବୋଲି ମୋର ଆଶା ।''

୧୯୬୧ ମସିହାରେ ଲଣ୍ଡନରୁ ଫେରି ପ୍ରଫେସର ପଦକୁ ଉନ୍ନୀତ ହେଲି । ୧୯୬୨ରେ ବିଶ୍ୱବିଦ୍ୟାଳୟ ବାଣୀବିହାରଠାକୁ ସ୍ଥାନାନ୍ତରିତ ହେଲା । କୁଳପତି ପରିଜା ମୋତେ ଛାତ୍ରସଂସଦର ଉପଦେଷ୍ଟା ଓ 'ବାଣୀବିକାଶ' ପତ୍ରିକାର ସମ୍ପାଦକ ରୂପେ କାର୍ଯ୍ୟ କରିବାକୁ ଆଦେଶ ଦେଲେ । ଦିନେ ଗାଡ଼ିରେ ଭୁବନେଶ୍ୱରରୁ ଗୋପାଳପୁର ପର୍ଯ୍ୟନ୍ତ ସାଙ୍ଗରେ ନେଇ ଗଲା ବେଳେ ତାଙ୍କ ଛାତ୍ରଜୀବନର ଅନେକ କଥା ମୋତେ କହିଲେ । ବିଲାତରେ ସେ ପଢୁଥିଲା ବେଳେ ସୁଭାଷ ଚନ୍ଦ୍ର ବୋଷ ତାଙ୍କର ଅତି ଅନ୍ତରଙ୍ଗ ବନ୍ଧୁ ଥିଲେ ବୋଲି ଜଣାଇଲେ । ମୁଁ ପଚାରିଲି : ''ସୁଭାଷ ବୋଷଙ୍କ ସହିତ ଚିଠିପତ୍ର ଆଦାନ ପ୍ରଦାନ ହେଉଥାଏ ?'' ସେ ଉତ୍ତର ଦେଲେ ''ହଁ, ପଢ଼ିବା ବେଳେ ଓ ଭାରତକୁ ଫେରିଲା ପରେ ଆମେ ଦୁହେଁ ଚିଠିପତ୍ର ମାଧ୍ୟମରେ ବନ୍ଧୁତା ରକ୍ଷା କରିଥିଲୁ ।'' ପଚାରିଲି ''ସେ ସବୁ ଚିଠି ରଖିଛନ୍ତି ?'' ହସି ହସି ଉତ୍ତର ଦେଲେ : ''ମୁଁ କ'ଣ ସେତେବେଳେ ଜାଣିଥିଲି ଯେ ସୁଭାଷ ଦିନେ 'ନେତାଜୀ' ହେବେ ? ତେଣୁ ତାଙ୍କର ଚିଠିଗୁଡ଼ିକ ରଖି ନ ଥିଲି । ସେ ସବୁ ନଷ୍ଟ ହୋଇଯାଇଛି । ସେହିପରି ଅନେକ ବଡ଼ ବଡ଼ ଲୋକଙ୍କ ଚିଠିପତ୍ର ମଧ୍ୟ ରଖି ପାରି ନାହିଁ ।''

୧୯୬୨ ଅକ୍ଟୋବର ମାସ କୁଳପତି ପରିଜା ଦିନେ କହିଲେ : ''ଭାରତ ସରକାର ତୁମକୁ ସୋଭିଏତ୍ ରୁଷରେ କେତେଗୋଟି ବିଶ୍ୱବିଦ୍ୟାଳୟରେ ଆଧୁନିକ ଭାରତ ଇତିହାସ ଓ ସ୍ୱାଧୀନତା ସଂଗ୍ରାମ ଉପରେ ଭାଷଣମାନ ଦେବା ପାଇଁ ମନୋନୀତ କରିଛନ୍ତି । ଆମ ବିଶ୍ୱବିଦ୍ୟାଳୟର ଜଣେ ଅଧ୍ୟାପକଙ୍କୁ ସେମାନେ ବାଛିଛନ୍ତି ଦେଖି ଖୁସି

ହେଲି ।'' ବିନମ୍ର ଭାବରେ ମୁଁ କହିଥିଲି "ସାର୍, ଆପଣଙ୍କ ପରି ଜଣେ ସ୍ୱନାମଧନ୍ୟ ଶିକ୍ଷାବିତ୍ କୁଳପତି ପଦରେ ଥିବା ଯୋଗୁଁ ଆମ ପରି ସାମାନ୍ୟ ଅଧ୍ୟାପକମାନଙ୍କ ପ୍ରତି ଏପରି ସୁଯୋଗ ମିଳିପାରୁଛି ।''

ପରିଜାସାହେବ ପରିଣତ ବୟସରେ କୁଳପତି ପଦରୁ ଅବସର ଗ୍ରହଣ କଲେ । ତାଙ୍କ ବିୟୋଗ ପରେ ରାଷ୍ଟ୍ରୀୟ ସମ୍ମାନ ସହ ତାଙ୍କ ଶବ ସତ୍କାର କାର୍ଯ୍ୟରେ ଉତ୍କଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ପ୍ରତିନିଧିତ୍ୱ କରିବା ଲାଗି ମତେ ସୁଯୋଗ ମିଳିଥିଲା ।

ଦିନେ ତାଙ୍କରି ଆସନରେ କୁଳପତି ରୂପେ ବସିବା ଲାଗି ଯେତେବେଳେ ସୌଭାଗ୍ୟ ଲାଭ କଲି, ସେତେବେଳେ ଜାଣିଥିଲି, ଜଣକ ପରେ ଜଣେ ଅନେକ ବ୍ୟକ୍ତି କୁଳପତି ପଦ ମଣ୍ଡନ କରିବେ, କିନ୍ତୁ କେହି ଜଣେ କୁଳପତି ପରିଜାସାହେବ ହେବାକୁ ସମର୍ଥ ହେବେ ନାହିଁ, କାରଣ ସେ ଥିଲେ ଜଣେ ଅନନ୍ୟ ସାଧାରଣ ବ୍ୟକ୍ତିବିଶେଷ !!

# ମହାପ୍ରୟାଣ ପଥେ

**ମହାପାତ୍ର ନୀଳମଣି ସାହୁ**

୧୯୭୮ ମସିହା ଜୁନ୍ ମାସର ୨ ତାରିଖ । ଓଡ଼ିଶାର ପ୍ରାତଃସ୍ମରଣୀୟ ଶିକ୍ଷାଗୁରୁ, ଭାରତବର୍ଷର ବରେଣ୍ୟ ଶିକ୍ଷାବିତ୍ ଏବଂ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ବୈଜ୍ଞାନିକ ଶ୍ରୀଯୁକ୍ତ ପ୍ରାଣକୃଷ୍ଣ ପରିଜା ୮୭ ବର୍ଷର ଉଜ୍ଜ୍ୱଳ କର୍ମମୟ ଜୀବନ ସମାପନ କରି ତାଙ୍କର କଟକ କ୍ୟାଣ୍ଟନମେଣ୍ଟ ରୋଡ଼ସ୍ଥ 'ପାରାଜାତକ' ବାସଭବନରେ ପୂର୍ବାହ୍ନ ୧୧ଟା ୫୫ ମିନିଟ୍‌ରେ ଚିରଦିନ ଲାଗି ମହାନିଦ୍ରା ବରଣ କଲେ । ଏହି ଦୁଃସମ୍ବାଦ ସହସା ରାଜ୍ୟସାରା ବ୍ୟାପି ଯାଇଥିଲା ।

ମାତ୍ର ଅଠର ଦିନ ତଳେ ମେ ମାସ ୧୬ ତାରିଖରେ ତାଙ୍କର ସୌଭାଗ୍ୟବତୀ ସହଧର୍ମିଣୀ ଶ୍ରୀମତୀ ସୁନ୍ଦରମଣୀ ପରିଜାଙ୍କର ୭୫ ବର୍ଷ ବୟସରେ ପରଲୋକ ଘଟିଥିଲା ଏବଂ ସତେକି ତାଙ୍କର ମହାନ୍ ଜୀବନର ଅର୍ଦ୍ଧାଙ୍ଗିନୀ ସ୍ୱରୂପିଣୀ ପ୍ରାଣପ୍ରିୟା ସୁନ୍ଦରମଣୀଙ୍କ ମୃତ୍ୟୁ ପରେ ସେ ଆଉ ଅଧିକ ଦିନ ଏ ପୁରରେ ରହିବାକୁ ଇଚ୍ଛା ନ କରି ଏପୁରର ସମସ୍ତ ମାୟା ଛିନ୍ନ କରି ତାଙ୍କ ସଙ୍ଗେ ସ୍ୱର୍ଗରେ ମିଳିତ ହେବା ଲାଗି ଅନ୍ତରାତ୍ମାରେ ପ୍ରସ୍ତୁତ ହୋଇ ରହିଥିଲେ ଓ ଏହି ଆଶୁ ମୃତ୍ୟୁକୁ ମନେ ମନେ କାମନା କରୁଥିଲେ ଏବଂ ତାଙ୍କର ମନସ୍କାମନା ପୂର୍ଣ୍ଣ କରି ବିଧାତା ତାଙ୍କର ଆତ୍ମାକୁ ସେ ପୁରକୁ ଡାକିନେଲେ ।

ଡକ୍ଟର ପରିଜାଙ୍କ ମୃତ୍ୟୁସମ୍ବାଦ ବିଦ୍ୟୁତ୍ ବେଗରେ ଚତୁର୍ଦ୍ଦିଗକୁ ବ୍ୟାପିଗଲା । ସମସ୍ତଙ୍କ ତୁଣ୍ଡରେ ସେହି ଗୋଟିଏ କଥା, "ପରିଜାସାହେବ ଆଉ ନାହାନ୍ତି । ଉତ୍କଳର ଉଜ୍ଜ୍ୱଳତମ ଜ୍ଞାନଦୀପ ଲିଭିଗଲା ।" ଘଣ୍ଟାକ ଭିତରେ ହଜାର ହଜାର ଶୋକାକୁଳ ଛାତ୍ର, ଶିକ୍ଷାବିତ୍, ବୁଦ୍ଧିଜୀବୀ, ସାହିତ୍ୟିକ, ବୈଜ୍ଞାନିକ, ରାଜନୀତିଜ୍ଞ ଓ ଜନସାଧାରଣ ତାଙ୍କ ବାସଭବନରେ ରୁଣ୍ଡ ହୋଇ ସେହି ମହାପୁରୁଷଙ୍କର ଶେଷ ଦର୍ଶନ ଲାଭ କରିଥିଲେ ।

ଡକ୍ଟର ପରିଜାଙ୍କ ତିନି ପୁଅ ଓ ଦୁଇ ଝିଅ ମଧ୍ୟରୁ ବଡ଼ଝିଅ ଶ୍ରୀମତୀ ମନ୍ଦାକିନୀ ଦାସମହାପାତ୍ର ଓ କନିଷ୍ଠ ପୁତ୍ର ଶ୍ରୀ ଲାଲଚାନ୍ଦ ପରିଜା ଆଇ. ଏ. ଏସ୍.ଙ୍କର ପୂର୍ବରୁ ପରଲୋକ ହୋଇଯାଇଥିଲା । ଅନ୍ୟ ଝିଅ ଡାକ୍ତର ସୌଦାମିନୀ ପରିଜା ଓ ଦୁଇ ପୁତ୍ର ଶ୍ରୀ ପ୍ରତାପରୁଦ୍ର ପରିଜା ଓ ଶ୍ରୀ ଲଳାଟେନ୍ଦୁ ପରିଜା ଆଇ. ଏ. ଏସ୍. ଅନ୍ତିମ ସମୟରେ ତାଙ୍କ ନିକଟରେ ଉପସ୍ଥିତ ଥିଲେ ।

ତାଙ୍କର ଶବଯାତ୍ରା ସଙ୍ଗରେ ହଜାର ହଜାର ବ୍ୟକ୍ତି ଖାନନଗର ଶ୍ମଶାନ ପର୍ଯ୍ୟନ୍ତ ଭକ୍ତି ପ୍ରଦର୍ଶନ କରି ଯାତ୍ରା କରିଥିଲେ । କଟକର ବିଭିନ୍ନ ରାସ୍ତା ଓ ସ୍କୁଲ, କଲେଜ ବାଟ ଦେଇ ଶବଯାତ୍ରା ଗଲାବେଳେ ଶତ ଶତ ବ୍ୟକ୍ତି ଓ ବହୁ ଅନୁଷ୍ଠାନ ତାଙ୍କ ଶବାଧାର ଉପରେ ମାଳା ଓ ପୁଷ୍ପ ବୃଷ୍ଟି କରିଥିଲେ ।

ଶବଦାହ ବେଳେ ରାଜ୍ୟ ମନ୍ତ୍ରିମଣ୍ଡଳର ବହୁ ସଦସ୍ୟଙ୍କ ସହିତ ଓଡ଼ିଶାର ବହୁ ବିଶିଷ୍ଟ ବ୍ୟକ୍ତି ଉପସ୍ଥିତ ଥାଇ ଶେଷ ସମ୍ମାନ ପ୍ରଦର୍ଶନ କରିଥିଲେ । ତାଙ୍କର ଜ୍ୟେଷ୍ଠପୁତ୍ର ଶ୍ରୀ ପ୍ରତାପରୁଦ୍ର ପରିଜା ମୁଖାଗ୍ନି ପ୍ରଦାନ କରିଥିଲେ ।

ଏହି ମହାନ୍ ଶିକ୍ଷକ, ବୈଜ୍ଞାନିକ ଓ ସମାଜସେବୀଙ୍କ ବିୟୋଗରେ ରାଜ୍ୟ ସରକାରଙ୍କ ତରଫରୁ ରାଷ୍ଟ୍ରୀୟ ସମ୍ମାନ ପ୍ରଦର୍ଶନ କରାଯାଇଥିଲା । ସରକାରୀ ଅଫିସ୍ ଓ ହାଇକୋର୍ଟରେ ଜାତୀୟ ପତାକା ଅର୍ଦ୍ଧନମିତ କରାଯାଇଥିଲା ଏବଂ ସମସ୍ତ ସରକାରୀ ଅଫିସ୍ ଓ ସ୍କୁଲକଲେଜ ବନ୍ଦ ହୋଇ ଯାଇଥିଲା ଏବଂ ଓଡ଼ିଶା ଗେଜେଟ୍‌ରେ ଏକ ସ୍ୱତନ୍ତ୍ର ଶୋକସଂଖ୍ୟା ପ୍ରକାଶିତ ହୋଇଥିଲା ।

ତାଙ୍କର ମହାପ୍ରୟାଣ ବାର୍ତ୍ତା ଶୁଣିବା ମାତ୍ରେ ଓଡ଼ିଶାର ଓ ଓଡ଼ିଶା ବାହାରୁ ବହୁ ବିଶିଷ୍ଟ ବ୍ୟକ୍ତି ଓ ଅନୁଷ୍ଠାନ ତରଫରୁ ସସମ୍ମାନ ଶୋକବାର୍ତ୍ତାମାନ ଆସି ପହଞ୍ଚିଥିଲା । ସହସ୍ରାଧିକ ବ୍ୟକ୍ତି ଶୋକବାର୍ତ୍ତାମାନ ପ୍ରେରଣ କରିଥିଲେ ।

ଓଡ଼ିଶାର ମାନ୍ୟବର ରାଜ୍ୟପାଳ ଶ୍ରୀଯୁକ୍ତ ଭଗବତ୍ ଦୟାଲ ଶର୍ମା ସମବେଦନା ସହ ଗଭୀର ଶୋକ ପ୍ରକାଶ କରି କହିଲେ ଯେ, ‘‘ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କ ତିରୋଧାନ ସମ୍ବାଦ ପାଇ ମୁଁ ଗଭୀର ମର୍ମାହତ । ସେ ଓଡ଼ିଶାର ଜଣେ ବିଶିଷ୍ଟ ବିଦ୍ୱାନ, ବୈଜ୍ଞାନିକ ଓ ଶିକ୍ଷାବିତ୍ ଥିଲେ । କାର୍ଯ୍ୟକ୍ଷେତ୍ରରେ ନିଷ୍ଠା ଓ ଉତ୍ସର୍ଗୀକୃତ ମନୋଭାବ ଦ୍ୱାରା ସେ ଓଡ଼ିଶାର ଖ୍ୟାତି ବୃଦ୍ଧି କରିଥିଲେ । କେବଳ ଆଜିର ଯୁବସମାଜ ନୁହେଁ, ପରବର୍ତ୍ତୀ ଯୁବସମାଜ ପାଇଁ ସେ ପ୍ରେରଣାର ଉତ୍ସ ହୋଇ ରହିବେ ।....’’

ଓଡ଼ିଶା ବିଧାନସଭାର ବାଚସ୍ପତି ଶ୍ରୀ ସତ୍ୟପ୍ରିୟ ମହାନ୍ତି ଶୋକବାର୍ତ୍ତାରେ କହିଲେ ଯେ, ‘‘ଡକ୍ଟର ପରିଜା ପ୍ରତିକୂଳ ପରିସ୍ଥିତିକୁ ଯେଉଁଭଳି ପ୍ରଗାଢ଼ ଆତ୍ମବିଶ୍ୱାସ ଓ ଅଧ୍ୟବସାୟ ବଳରେ ଅତିକ୍ରମ କରି ବିଜ୍ଞାନ ଜଗତରେ ନିଜର ସତ୍ୟ ପ୍ରତିଷ୍ଠା କରିବାକୁ ସମର୍ଥ ହୋଇଥିଲେ, ତାହା ଏ ଜାତିର ଇତିହାସରେ ଏକ ଅବିସ୍ମରଣୀୟ ଘଟଣା ହୋଇ ରହିବ । ତାଙ୍କର ଅମର ଆତ୍ମା ପରମ ଶାନ୍ତି ଲାଭ କରୁ, ଏହାହିଁ ଜଗନ୍ନାଥଙ୍କ ନିକଟରେ ମୋର ଏକାନ୍ତ ପ୍ରାର୍ଥନା ।’’

ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ନୀଳମଣି ରାଉତରାୟ ଗଭୀର ଶୋକ ପ୍ରକାଶ କରି କହିଲେ ଯେ, ‘‘ଡକ୍ଟର ପରିଜାଙ୍କ ମୃତ୍ୟୁ ସମ୍ବାଦ ମୋତେ ଦାରୁଣ ଆଘାତ

ଦେଇଛି । ସେ ଥିଲେ ଜୀବନ ସଂଗ୍ରାମ ଓ ସାଫଲ୍ୟର ଏକ ଜୀବନ୍ତ ପ୍ରତିଛବି । ତାଙ୍କର ମହାନ୍ ଜୀବନଧାରା ସମଗ୍ର ଦେଶର ଶିକ୍ଷାବିତ୍, ବିଜ୍ଞାନୀ ଓ କୃତୀ ସନ୍ତାନମାନଙ୍କ ପାଇଁ ପ୍ରେରଣାର ଏକ ଚିରନ୍ତନ ଉତ୍ସ ହୋଇ ରହିବ । ଏ ରାଜ୍ୟର ଶିକ୍ଷା ବିକାଶ କ୍ଷେତ୍ରରେ ତାଙ୍କର ଅବଦାନ ଅନନ୍ୟ ସାଧାରଣ । ବିଜ୍ଞାନ କ୍ଷେତ୍ରରେ ତାଙ୍କର ମହାନ୍ ପ୍ରତିଭା ଆନ୍ତର୍ଜାତିକ କ୍ଷେତ୍ରରେ ମଧ୍ୟ ସମ୍ମାନିତ ହୋଇ ଆସିଛି । ଏହି ରାଜ୍ୟରେ ବିଜ୍ଞାନସମ୍ମତ କୃଷିବିକାଶର ମୂଳଦୁଆ ସେ ଆରମ୍ଭ କରିଥିଲେ ଏବଂ ତାଙ୍କର ବିୟୋଗରେ ଓଡ଼ିଶା ରାଜ୍ୟର ବହୁ ଛାତ୍ର ଓ ଶିକ୍ଷାବିତ୍ ଆଜି ମର୍ମାହତ ହୋଇଛନ୍ତି ଏବଂ କେବଳ ଓଡ଼ିଶା ପାଇଁ ନୁହେଁ ସମଗ୍ର ଦେଶ ପାଇଁ ଡକ୍ଟର ପରିଜାଙ୍କର ବିୟୋଗ ଏକ ଅପୂରଣୀୟ କ୍ଷତି ।''

ଓଡ଼ିଶାର କୁଳବୃଦ୍ଧ ନେତା ଓ ଚିନ୍ତାନାୟକ ଡକ୍ଟର ହରେକୃଷ୍ଣ ମହତାବ ଏକ ଶୋକବାର୍ତ୍ତାରେ ପ୍ରକାଶ କଲେ ଯେ, ''ଭାରତର ବିଶିଷ୍ଟ ବିଜ୍ଞାନାଚାର୍ଯ୍ୟ ଓ ଅନ୍ୟତମ ଶ୍ରେଷ୍ଠ ଶିକ୍ଷାବିତ୍ ଡକ୍ଟର ପରିଜାଙ୍କ ପରଲୋକ ପ୍ରାପ୍ତିରେ ଓଡ଼ିଶା ଜଣେ ମହାନ୍ ବ୍ୟକ୍ତିଙ୍କୁ ହରାଇଲା । ଶିକ୍ଷାର ଅଗ୍ରଗତି ସମ୍ପର୍କରେ ସେ ଯାହା କରିଯାଇଛନ୍ତି ସେପରି କୌଣସି ଶିକ୍ଷାବିତ୍ କରିପାରି ନାହାନ୍ତି । ତାଙ୍କର କୃତି ସମ୍ପର୍କରେ ଲେଖିବସିଲେ ବିରାଟ ଗ୍ରନ୍ଥ ହେବ । ବାଣୀବିହାରରେ ପ୍ରତିଷ୍ଠିତ ଉତ୍କଳ ବିଶ୍ୱବିଦ୍ୟାଳୟ ଓ ଓଡ଼ିଶା ବିଜ୍ଞାନ ପ୍ରତିଷ୍ଠାନର ସେ କେବଳ ପ୍ରାଣ ପ୍ରତିଷ୍ଠାତା ନୁହନ୍ତି, ମୁଖ୍ୟ ନିର୍ମାତା ମଧ୍ୟ । ଏହିଭଳି ତାଙ୍କର ବହୁ କୃତି ଶିକ୍ଷାର ବିକାଶ ପଥରେ ଏକାନ୍ତ ସହାୟକ ହୋଇଛି । ତାଙ୍କର ବିୟୋଗ ଓଡ଼ିଶାବାସୀଙ୍କ ପ୍ରତି ଏକ ପ୍ରଚଣ୍ଡ ବଜ୍ରାଘାତ ।''

ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ଗଭୀର ଶୋକ ପ୍ରକାଶ କରି କହିଲେ ଯେ, ''....ପରିଜାସାହେବ ଜଣେ ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ବିଶିଷ୍ଟ ବୈଜ୍ଞାନିକ ଥିଲେ । ଓଡ଼ିଶାର ବିଜ୍ଞାନଶିକ୍ଷା ପ୍ରସାରରେ ସେ ପ୍ରଧାନ ପୁରୋଧା ଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । କେବଳ ଶିକ୍ଷା ନୁହେଁ ସାମାଜିକ ବ୍ୟାପାରରେ ମଧ୍ୟ ତାଙ୍କର ସମଧିକ ଆଗ୍ରହ ଥିଲା । ସେ ଥିଲେ ଆଧୁନିକ ଓଡ଼ିଶାର କୁଳବୃଦ୍ଧ । ବୋଧହୁଏ ତାଙ୍କ ବିୟୋଗରେ କୁଳବୃଦ୍ଧଙ୍କ କୋଠରିଟି ଖାଲି ପଡ଼ିଲା...... ।''

ଓଡ଼ିଶାର ବିଶିଷ୍ଟ ଜନନାୟକ କେନ୍ଦ୍ର ଇସ୍ପାତ ଓ ଖଣିମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଡକ୍ଟର ପରିଜାଙ୍କ ମୃତ୍ୟୁସମ୍ବାଦ ଶୁଣିବା ମାତ୍ରେ ଘୋର ମର୍ମାହତ ହୋଇ ସେହି ମହାନ୍ ଆତ୍ମାଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରି କହିଲେ ଯେ, ''....ଏକ ମହାନ୍ ଆତ୍ମା ଚାଲିଗଲେ । ଡକ୍ଟର ପରିଜା ଥିଲେ ଭାରତର ଜଣେ ବରପୁତ୍ର । ସେ ହିଁ ଏକମାତ୍ର ବ୍ୟକ୍ତି ଯେ କି ପୃଥିବୀର ବିଜ୍ଞାନ ମାନଚିତ୍ରରେ ଓଡ଼ିଶାକୁ ସ୍ଥାନ ଦେଇଥିଲେ । ରାଜ୍ୟରେ ଆଧୁନିକ ଶିକ୍ଷା ପ୍ରସାର ଦିଗରେ ସେ ଥିଲେ ଜଣେ ଅଗ୍ରଦୂତ ।''

ଦେଶର ବିଶିଷ୍ଟ ବୈଜ୍ଞାନିକ ଓ ସନ୍ନ୍ୟାସୀ ସ୍ୱାମୀ ସତ୍ୟପ୍ରକାଶ ଡକ୍ଟର ପରିଜାଙ୍କ ବିୟୋଗ ବାର୍ତ୍ତା ଶୁଣି ଭୁବନେଶ୍ୱର ଆର୍ଯ୍ୟସମାଜର ପ୍ରଥମ ବାର୍ଷିକ ଉତ୍ସବରେ ପ୍ରବଚନ ଦେଉଥିବା ସମୟରେ କହିଥିଲେ ଯେ ''ପ୍ରକୃତ ବୈଜ୍ଞାନିକ ଈଶ୍ୱର ବିଶ୍ୱାସୀ ତପସ୍ୱୀ ଓ ସତ୍ୟାନୁସନ୍ଧିତ୍ସୁ । ଡକ୍ଟର ପରିଜା ଏହିଭଳି ଏକ ବୈଜ୍ଞାନିକ ଥିଲେ ।''

ବିଧାନସଭାର ବିରୋଧୀ ଦଳ ନେତା ଶ୍ରୀ ବୃନ୍ଦାବନ ନାଏକ ଏକ ଶୋକବାର୍ତ୍ତାରେ କହିଲେ ଯେ ଡକ୍ଟର ପରିଜାଙ୍କ ମୃତ୍ୟୁ ସମ୍ବାଦରେ ସାରା ଓଡ଼ିଶା ସ୍ତମ୍ଭୀଭୂତ । ....ବିରୋଧୀ ଦଳର ଜଣେ ବୈଧାନିକ ଭାବରେ, ବିଶ୍ୱବିଦ୍ୟାଳୟର କୁଳପତି ଭାବରେ ଓ ନାନା ସାଂସ୍କୃତିକ ଅନୁଷ୍ଠାନର ସଭାପତି ଭାବରେ ସେ ନିଜର ଶୃଙ୍ଖଳା ତଥା ଦକ୍ଷତା ସର୍ବତ୍ର ପ୍ରମାଣିତ କରିଛନ୍ତି ।

ରାଜ୍ୟ ଯୋଜନା ବୋର୍ଡ଼ ସଭ୍ୟ ତଥା କମ୍ୟୁନିଷ୍ଟ ନେତା ଶ୍ରୀ ରାମକୃଷ୍ଣ ପତି ଶୋକ ପ୍ରକାଶ କରି କହିଲେ ଯେ କଲେଜ ଜୀବନରେ ଡକ୍ଟର ପରିଜାଙ୍କ ନିର୍ଦ୍ଦେଶରେ ଆମେ ଦକ୍ଷିଣାଞ୍ଚଳ ମିଶ୍ରଣ ଆନ୍ଦୋଳନ ଏବଂ ମେଦିନୀପୁରରେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ସୁରକ୍ଷା ପାଇଁ କାର୍ଯ୍ୟ କରିଥିଲୁ । ସେ ଯେ କେବଳ ଜଣେ ଶିକ୍ଷାବିତ୍ ଥିଲେ ତାହା ନୁହେଁ, ସେ ଥିଲେ ଜଣେ ଉଚ୍ଚକୋଟୀର ଦେଶପ୍ରେମୀ ।

ଉତ୍କଳର ବିଶିଷ୍ଟ ଜନନେତା ଓ 'ସମାଜ'ର ସମ୍ପାଦକ ଡକ୍ଟର ରାଧାନାଥ ରଥ ଗଭୀର ଶୋକ ପ୍ରକାଶ କରି କହିଛନ୍ତି ଯେ ବର୍ତ୍ତମାନ ଓଡ଼ିଶା ତଥା ଦେଶର ଜଣେ ମହାନ୍ ତଥା ବିଦ୍ୱାନ୍ ବ୍ୟକ୍ତିଙ୍କର ତିରୋଧାନ ଘଟିଲା....ତାଙ୍କର ମୃତ୍ୟୁ ଜାତି ପକ୍ଷରେ ଏକ ବିପର୍ଯ୍ୟୟ । ଦେଶ ପ୍ରତି ତାଙ୍କର ମହାନ୍ ସେବା ବିଶେଷ କରି ଶିକ୍ଷା ଓ ବିଜ୍ଞାନ କ୍ଷେତ୍ରରେ ତାଙ୍କର ମହାନ୍ ଦାନ ଦେଶବାସୀ ଚିରଦିନ ସ୍ମରଣ କରିବେ । ଗଭୀର ଭକ୍ତିରେ ତାଙ୍କ ନିକଟରେ ମୁଣ୍ଡ ନଇଁ ଯାଉଛି ।

ଓଡ଼ିଶାର ଅନ୍ୟତମ ବିଶିଷ୍ଟ ଜନନେତା ଏବଂ ଜନତା ଦଳର ସାଧାରଣ ସମ୍ପାଦକ ଶ୍ରୀ ରବି ରାୟ ଏମ୍. ପି. ଗଭୀର ଶୋକ ପ୍ରକାଶ କରି କହିଛନ୍ତି ଯେ ଗୁରୁଦେବ ପରିଜାଙ୍କର ମୃତ୍ୟୁ ଆମମାନଙ୍କ ପକ୍ଷରେ ବିନା ମେଘରେ ବଜ୍ରପାତ ଭଳି । ଏହା ଫଳରେ ଦେଶର ସାହିତ୍ୟ, ବିଜ୍ଞାନ ଓ ବୌଦ୍ଧିକ କ୍ଷେତ୍ରରେ ଯେଉଁ ଅପୂରଣୀୟ କ୍ଷତି ହେଲା ତାହାର ତୁଳନା ନାହିଁ ।

କଂଗ୍ରେସ (ଇ) ଦଳର ରାଜ୍ୟସାଖା ସଭାପତି ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଶୋକ ପ୍ରକାଶ କରି କହିଛନ୍ତି ଯେ, ଡକ୍ଟର ପରିଜା ତାଙ୍କ ପିଢ଼ିରେ ଜଣେ ବିଶିଷ୍ଟ ସ୍ଥିରସଂକଳ୍ପ ବ୍ୟକ୍ତି ଥିଲେ । ସେ ଥିଲେ ଓଡ଼ିଶାର ଜଣେ ବିଶିଷ୍ଟ ସନ୍ତାନ, ଆଦର୍ଶ ଛାତ୍ର, ଆଦର୍ଶ ଶିକ୍ଷକ ଏବଂ ସମୁଜ୍ଜ୍ୱଳ ପ୍ରତିଭାବାନ ବୈଜ୍ଞାନିକ । ତାଙ୍କର ଜୀବନ ଆମ ସମସ୍ତଙ୍କୁ ପ୍ରେରଣା ଦେଉଥିବ ।

ଏହି ରୂପେ ଶତ ଶତ ବିଶିଷ୍ଟ ବ୍ୟକ୍ତି ଓ ଅନୁଷ୍ଠାନ ପକ୍ଷରୁ ସେହି ମହାନ୍ ଆତ୍ମାଙ୍କ ଉଦ୍ଦେଶ୍ୟରେ ଶୋକବାର୍ତ୍ତା ଓ ଶ୍ରଦ୍ଧାଞ୍ଜଳିରେ ଓଡ଼ିଶାର ସମ୍ବାଦପତ୍ରମାନ କିଛି ଦିନ ପରିପୂର୍ଣ୍ଣ ହୋଇଯାଇଥିଲା । ସେଥିରୁ ଜଣାପଡ଼େ ଯେ ଡକ୍ଟର ପରିଜାଙ୍କୁ ସମଗ୍ର ଓଡ଼ିଶାବାସୀ କିଭଳି ଭାବେ ଶ୍ରଦ୍ଧା ଓ ଭକ୍ତି କରୁଥିଲେ । ସମଗ୍ର ଦେଶ ମଧ୍ୟ ତାଙ୍କ ପ୍ରତି ଗଭୀର ମମତା ଓ ଭକ୍ତି ପ୍ରଦର୍ଶନ କରୁଥିଲେ । ତାଙ୍କର ଶିକ୍ଷକ ଜୀବନର ଆରମ୍ଭରୁ ତାଙ୍କର ପରଲୋକ ପ୍ରାପ୍ତି ପର୍ଯ୍ୟନ୍ତ ଆମ ସମସ୍ତଙ୍କ ହୃଦୟରେ ତାଙ୍କର ଦୀପ୍ତିମାନ ଭବଚିତ୍ରଟି ଅଙ୍କିତ ହୋଇ ରହିଥିଲା । ଆଜି ଚିତାନଳରେ ତାଙ୍କର ମରଶରୀର ହୁଏତ ଭସ୍ମ ହୋଇ ଯାଇଛି ମାତ୍ର ତାଙ୍କର ଅମର ମହାନ୍ ଆତ୍ମାର ସେହି ଦୀପ୍ତିମାନ ଭାବଚିତ୍ର ଆମ ହୃଦୟରୁ କେବେ ଲିଭିଯିବ ନାହିଁ ।

ଭାରତୀୟ ବିଜ୍ଞାନ କଂଗ୍ରେସ ଡକ୍ଟର ପରିଜାଙ୍କ ମୃତ୍ୟୁରେ ପରମ କୃତଜ୍ଞତାର ସହିତ ଯେଉଁ ଶ୍ରଦ୍ଧାଞ୍ଜଳି ଅର୍ପଣ କରିଛନ୍ତି ତାହା ଏଠାରେ ଉଲ୍ଲେଖଯୋଗ୍ୟ । ଭାରତୀୟ ବିଜ୍ଞାନ କଂଗ୍ରେସ ତାରବାର୍ତ୍ତାରେ ଶୋକ ପ୍ରକାଶ କରି କହିଛନ୍ତି ଯେ, "ଭାରତର ଅନ୍ୟତମ ଯୁଗସ୍ରଷ୍ଟା ବିଶିଷ୍ଟ ବୈଜ୍ଞାନିକ ଓ ଶିକ୍ଷାବିତ୍ ପ୍ରଫେସର ପ୍ରାଣକୃଷ୍ଣ ପରିଜାଙ୍କ ତିରୋଧାନରେ ଭାରତୀୟ ବିଜ୍ଞାନ କଂଗ୍ରେସ ଗଭୀର ଶୋକ ପ୍ରକାଶ କରୁଛନ୍ତି, ଭାରତୀୟ ବିଜ୍ଞାନ କଂଗ୍ରେସର ଏହି ପୂର୍ବତନ ସଭାପତିଙ୍କ ପ୍ରତି ବୈଜ୍ଞାନିକମାନଙ୍କର ହୃଦୟରେ ଅମିତ ଶ୍ରଦ୍ଧା ସମ୍ମାନ ରହି ଆସିଛି । କେବଳ ଯେ ଏ ଦେଶର ଶିକ୍ଷା ବିସ୍ତାର ପାଇଁ ତାଙ୍କର ଐତିହାସିକ ଅବଦାନ ଥିଲା ତା' ନୁହେଁ, ଗତ କେତେ ଦଶନ୍ଧି ଧରି ଭାରତୀୟ ବିଜ୍ଞାନ କଂଗ୍ରେସର ସମୃଦ୍ଧି ପାଇଁ ତାଙ୍କର ପ୍ରତୁଳ ଅବଦାନ ରହି ଆସିଛି । ତାଙ୍କ ବିୟୋଗରେ ଦେଶ ଜଣେ ଅତୁଳନୀୟ ପ୍ରତିଭା ଓ ସଂସ୍କୃତିସମ୍ପନ୍ନ ବ୍ୟକ୍ତିଙ୍କୁ ହରାଇଲା ଏବଂ ଭାରତୀୟ ବିଜ୍ଞାନ କଂଗ୍ରେସ ମଧ୍ୟ ଜଣେ ମହାନ୍ ପୃଷ୍ଠପୋଷକଙ୍କୁ ହରାଇଲା ।"

(ଶ୍ରୀ ବିବେକାନନ୍ଦ ପଟ୍ଟନାୟକଙ୍କ ମୁଖ୍ୟ ସଂପାଦନାରେ ପ୍ରକାଶିତ 'ଉତ୍କଳ ପ୍ରସଙ୍ଗ' ସ୍ୱତନ୍ତ୍ର ସଂଖ୍ୟା, ୧୯୭୮ରୁ ଗୃହୀତ ।)

# ବୈଜ୍ଞାନିକ ଡକ୍ଟର ପରିଜା

**ମହେନ୍ଦ୍ର କୁମାର ରାଉତ**

୧୯୩୮ ମସିହା ଜୁଲାଇ ମାସରେ ମୁଁ ଯେତେବେଳେ ରେଭେନ୍ସା କଲେଜରେ ଆଇ. ଏସ୍‌ସି. କ୍ଲାସ୍‌ରେ ପ୍ରଥମ ବାର୍ଷିକ ଛାତ୍ର ରୂପେ ଯୋଗ ଦେଲି ପ୍ରଫେସର ପରିଜା ସେତେବେଳେ କଲେଜର ଅଧ୍ୟକ୍ଷ ଥିଲେ । ୧୯୪୪ ମସିହାରେ ମୁଁ ଯେତେବେଳେ ରେଭେନ୍ସା କଲେଜରେ ଅଧ୍ୟାପକ ରୂପେ ଯୋଗ ଦେଲି ପ୍ରଫେସର ପରିଜା କଲେଜର ଅଧ୍ୟକ୍ଷ ପଦ ସହିତ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଆସନରେ ଅଧିଷ୍ଠିତ ଥିଲେ । ୧୯୪୫ ମସିହା ଜାନୁଆରୀ ମାସରେ ଓଡ଼ିଶା କୃଷି ବିଭାଗର ପ୍ରଥମ ନିର୍ଦ୍ଦେଶକ ହୋଇ ଯିବାବେଳେ କଲେଜର ପ୍ରତ୍ୟେକ ଛାତ୍ରଙ୍କ ପାଖକୁ ଯେଉଁ ବିଦାୟ ବାର୍ତ୍ତା ପ୍ରେରଣ କରିଥିଲେ ତାହା ଥିଲା ଅତି ସଂକ୍ଷିପ୍ତ କିନ୍ତୁ ଅତିଶୟ ହୃଦୟସ୍ପର୍ଶୀ ''ଆଜି ମୁଁ ଏହି କଲେଜ ସହିତ ମୋର ତେଇଶ ବର୍ଷର ସମ୍ପର୍କକୁ ଛିନ୍ନ କରି ବିଦାୟ ନେଉଛି । ଏ ବିଦାୟବେଳର ଦୁଃଖ ମୋ ହୃଦୟକନ୍ଦରରେ ଅସହ୍ୟ ଯନ୍ତ୍ରଣା ଜାତ କରିଛି ।'' ସେହି ସ୍ମରଣୀୟ ଦିବସରେ କଲେଜହଲରେ ଅନୁଷ୍ଠିତ ବିଦାୟ ସଭାରେ ବହୁ ବକ୍ତା ବିଦାୟ ଭାଷଣ ଦେଲାବେଳେ ସେମାନଙ୍କ କଣ୍ଠରୋଧ ହୋଇଯାଇଥିଲା ଓ ସମସ୍ତଙ୍କ ଆଖି ଲୁହରେ ଛଳ ଛଳ ହୋଇଯାଇଥିଲା ।

ଏହାର କେତେକ ବର୍ଷ ପରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟର ଉପକୁଳାଧିପତି (ପ୍ରୋ-ଚାନସେଲର) ପଦରେ ଅଧିଷ୍ଠିତ ହୋଇଥିଲେ । ୧୯୫୫ ମସିହାରେ ସେ ପୁଣି ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ରୂପେ ଯୋଗଦାନ କଲେ ଓ ସେହି ପଦବୀରେ ୧୯୬୬ ମସିହା ପର୍ଯ୍ୟନ୍ତ ଅବସ୍ଥାପିତ ଥିଲେ । ରେଭେନ୍ସା କଲେଜ ଥିଲା ତାଙ୍କର ବିଦ୍ୟାସଂକ୍ରାନ୍ତ ଗୃହ । ଚାକିରିରୁ ଅବସର ଗ୍ରହଣ କଲା ପରେ ସେ ବହୁ ବର୍ଷ ପାଇଁ ତାଙ୍କର ଗବେଷଣା କାର୍ଯ୍ୟ ଉପଲକ୍ଷେ ସଚରାଚର ଉଦ୍ଭିଦବିଜ୍ଞାନ ବିଭାଗକୁ ଆସୁଥିଲେ ।

ଡକ୍ଟର ପରିଜାଙ୍କ କର୍ମମୁଖର ଜୀବନର କାର୍ଯ୍ୟାବଳୀ ବହୁ ବିଭାଗକୁ ପ୍ରସାର ଲାଭ କରିଥିଲା, ତଥାପି ତାଙ୍କର ବ୍ୟକ୍ତିତ୍ୱ ଥିଲା ସ୍ୱୟଂସଂପୂର୍ଣ୍ଣ, ଅବିଭକ୍ତ ଓ ଅଖଣ୍ଡ । ଭାରତୀୟ ଜୀବନଧାରାର ପ୍ରତ୍ୟେକ ବିଭାଗ ସହିତ ସେ ଜଡ଼ିତ ଥିଲେ– ଶିକ୍ଷା, ବିଜ୍ଞାନ, ଭାଷା, ସାହିତ୍ୟ, କୃଷି, ପ୍ରଶାସନ, ରାଜନୀତି, ବିଦ୍ୱତ୍ତା, ଜନହିତୈଷୀ କାର୍ଯ୍ୟାବଳୀ । ତାଙ୍କ ଜୀବନ ଓଡ଼ିଶାର ସାମାଜିକ– ସାଂସ୍କୃତିକ ଐତିହ୍ୟର ପରମ୍ପରା ଏକ ଅଂଶବିଶେଷ ଥିଲା ।

ଡକ୍ଟର ପରିଜା ବୈଜ୍ଞାନିକ ମନୋବୃତ୍ତିର ଏକ ପ୍ରତିମୂର୍ତ୍ତି ଥିଲେ । ସେ ଥିଲେ ସରଳ, ସାଧୁ, ବାସ୍ତବବାଦୀ ଓ ଶାନ୍ତ ପ୍ରକୃତିର । ସୃଜନଶକ୍ତିସମ୍ପନ୍ନ ପରୀକ୍ଷା ନିରୀକ୍ଷା କରିବା ଥିଲା ତାଙ୍କ ମନର ପ୍ରବଳ ଆବେଗ । ସେ ରେଭେନ୍ସା କଲେଜରେ ଅଧ୍ୟକ୍ଷ ଥିଲାବେଳେ କଲେଜରେ ଛାତ୍ର ୟୁନିୟନ ଗଠନ କରାଯାଇ ତହିଁରେ ଜଣେ ଛାତ୍ର ସଭାପତି ରୂପେ କାର୍ଯ୍ୟ କରିବା ନିମିତ୍ତ ପ୍ରବର୍ତ୍ତନ କରିଥିଲେ । ରେଭେନ୍ସା କଲେଜର ଛାତ୍ରାବାସଗୁଡ଼ିକରେ ଯେଉଁ ସାଧାରଣ ମେସ୍ ପଦ୍ଧତି ଚାଲୁରହିଛି ତାହା ତାଙ୍କ ଯୋଗୁଁ ଆରମ୍ଭ ହୋଇଥିଲା । ଛାତ୍ରାବାସରେ ଛାତ୍ରମାନଙ୍କର ଶ୍ରମ ସଂସ୍ଥା "(ଲେବର ବ୍ୟୁରୋ) ଶୁଭାରମ୍ଭ କରି ଅଧ୍ୟୟନରତ ଗରିବ ଛାତ୍ରମାନେ କିଛି ଆର୍ଥିକ ରୋଜଗାର କରିବାର ପନ୍ଥା ସେ ପ୍ରଚଳନ କରିଥିଲେ । ଲୋକର ମର୍ଯ୍ୟାଦା ଓ ସମ୍ମାନ ରକ୍ଷା ଓ ଗଣତାନ୍ତ୍ରିକ ନୀତି ଉପରେ ତାଙ୍କର ଗଭୀର ବିଶ୍ୱାସ ଥିଲା । ସେ ମଧ୍ୟ ଶୃଙ୍ଖଳା ଓ ଚାରିତ୍ରିକ ସାଧୁତାର ମୂଲ୍ୟବୋଧ ଉପରେ ବିଶ୍ୱାସ କରୁଥିଲେ । ସେ ପ୍ରକୃତରେ ଜଣେ ମହାନ୍ ବୈଜ୍ଞାନିକ ଥିଲେ, ଏକଥା ପାଇଁ ନୁହେଁ ଯେ, ଜ୍ଞାନ ଭଣ୍ଡାରକୁ ତାଙ୍କର ମୌଳିକ ଅବଦାନ ଯୋଗୁଁ ସେ ଅପରିମେୟ ଓ ବହୁ ଭାବରେ ସମ୍ମାନିତ ହୋଇଥିଲେ, କିନ୍ତୁ ଏଥିପାଇଁ ଯେ ସେ ଥିଲେ ଜଣେ ବ୍ୟକ୍ତି ଯେ କି ପ୍ରକୃତ ବୈଜ୍ଞାନିକ ମନୋବୃତ୍ତିର ପରିଚାୟକ ଗୁଣରାଜି ଯଥା ଉଚ୍ଚ ମୂଲ୍ୟବୋଧ, ସଚ୍ଚୋଟ ନୀତି ଓ ସତ୍ ପନ୍ଥା ନିଜ ଜୀବନରେ ଅନୁସରଣ କରିପାରିଥିଲେ ।

ପ୍ରଫେସର ପରିଜା ଟ୍ରାଇପସ୍ ଡିଗ୍ରୀ ଲାଭ କଲା ପରେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରୁ ଫ୍ରାଙ୍କ୍ ସ୍ମାର୍ଟ ଛାତ୍ରବୃତ୍ତି ପ୍ରାପ୍ତ ହୋଇଥିଲେ ଓ ସେଠାରେ ପ୍ରଫେସର ଏଫ୍. ଏଫ୍. ବ୍ଲାକ୍‌ମ୍ୟାନ୍‌ଙ୍କ ତତ୍ତ୍ୱାବଧାନରେ ଜଣେ ଗବେଷକ ଛାତ୍ର ରୂପେ ଯୋଗ ଦେଇଥିଲେ । ସେ ସାଇତା ହୋଇ ରଖାଯାଇଥିବା ସେଓ ଫଳର ଶ୍ୱାସକ୍ରିୟା ସମ୍ବନ୍ଧରେ ଗବେଷଣା କରିଥିଲେ ଏବଂ ସଜୀବ ବସ୍ତୁର "ସଂଗଠନ-ପ୍ରତିରୋଧ ଶକ୍ତି" "Organisation resistance"ର ହ୍ରାସ ଯୋଗୁଁ ବୃଦ୍ଧାବସ୍ଥା ଆସନ୍ନ ହୁଏ ବୋଲି ତତ୍ତ୍ୱ ପ୍ରକାଶ କରିଥିଲେ । ସେଓ ସମ୍ବନ୍ଧରେ ତାଙ୍କ ଗବେଷଣାରୁ ସେ ପ୍ରତିପାଦନ କରିଥିଲେ ଯେ ଅଙ୍ଗାରକ ପରିମାଣର କ୍ଷତି ଉପରେ ଅମ୍ଳଜାନର ସଂରକ୍ଷଣ ପ୍ରଭାବ ରହିଛି ଏବଂ ସେ ପୁଣି "ଜାରଣ ଜନିତ ଗଠନ ପ୍ରକ୍ରିୟା" (Oxidative anabolism)ତତ୍ତ୍ୱର ପ୍ରବକ୍ତା ଥିଲେ । ଏହି ସବୁ ଗବେଷଣା କାର୍ଯ୍ୟ କେମ୍ବ୍ରିଜରେ ସେ କରିଥିଲେ ।

ପ୍ରଫେସର ପରିଜା କେମ୍ବ୍ରିଜରୁ ଫେରିଲା ପରେ କଟକସ୍ଥିତ ରେଭେନ୍ସା କଲେଜରେ ଉଦ୍ଭିଦ ବିଜ୍ଞାନର ବିଭିନ୍ନ ବିଷୟରେ ଏକ ଗବେଷଣା କେନ୍ଦ୍ର ସ୍ଥାପନ କରିଥିଲେ । ତାଙ୍କର ଗବେଷଣାର ବିଷୟବସ୍ତୁ ମଧ୍ୟରେ ଅନ୍ତର୍ଗତ ଥିଲା (କ) ବିଲାତିଦଳ ଓ ଅନ୍ୟାନ୍ୟ ଜଳଜ ଅନାବନା ଉଦ୍ଭିଦର ବୃଦ୍ଧି ନିୟନ୍ତ୍ରଣ, (ଖ) ଧାନଗଛର ଶରୀର

ପ୍ରକ୍ରିୟା ଓ ଗଠନ ପ୍ରକ୍ରିୟା ସମ୍ବନ୍ଧରେ ଅନୁଧ୍ୟାନ, (ଗ) ଫଳଗୁଡ଼ିକର ସ୍ଫୋଟନ ଓ ବୀଜବିକ୍ଷେପ କୌଶଳ ଅନୁସନ୍ଧାନ, (ଘ) କଟକ ନିକଟବର୍ତ୍ତୀ ଧାନକ୍ଷେତ୍ରରେ ବଢ଼ୁଥିବା ନୀଳ-ସବୁଜ ଶୈବାଳଗୁଡ଼ିକର ସଂଗ୍ରହ ଓ ଚିହ୍ନଟ ଏବଂ (ଙ) ଶୈବାଳଗୁଡ଼ିକର ପର୍ଯ୍ୟାପ୍ତ ବଂଶବୃଦ୍ଧି ସମ୍ବନ୍ଧରେ ଅନୁଧ୍ୟାନ । ତାଙ୍କର ଗବେଷଣା କାର୍ଯ୍ୟର ତାତ୍ପର୍ଯ୍ୟ ବହୁ ପାଠ୍ୟପୁସ୍ତକ ଓ ଗବେଷଣାତ୍ମକ ପ୍ରବନ୍ଧଗୁଡ଼ିକରେ ଉଦ୍ଧୃତ ହୋଇଛି । ଚିଲିକା ହ୍ରଦର ଜଳଜ ଉଦ୍ଭିଦଗୁଡ଼ିକର ସଂଗ୍ରହ ଓ ଚିହ୍ନଟ ପରେ ସେଥିରୁ ଅଗର ଅଗର ନାମକ ଉପକାରୀ ଦ୍ରବ୍ୟର ବହୁଳ ଉତ୍ପାଦନ ସମ୍ବନ୍ଧରେ ଡକ୍ଟର ପରିଜାଙ୍କ ଗବେଷଣା ଏବଂ ଧାନ ବିଲରେ ଧାନଗଛ କିପରି ଧୋଇ, ମରୁଡ଼ି ଓ ଲୁଣି ଜଳ ପ୍ଲାବନ ପ୍ରଭୃତି ପ୍ରାକୃତିକ ବିପର୍ଯ୍ୟୟ ସହ୍ୟ କରି ବଞ୍ଚିରହି ଫଳପ୍ରସୂ ହୋଇପାରିବ ସେ ସମ୍ବନ୍ଧରେ ଗବେଷଣା କାର୍ଯ୍ୟକ୍ଷେତ୍ରରେ ବିଶେଷ ଉପଯୋଗୀ ଫଳ ପ୍ରଦାନ କରିଥିଲା ।

ଡକ୍ଟର ପରିଜାଙ୍କ ବ୍ୟକ୍ତିତ୍ୱରେ ଏକ ବୈଜ୍ଞାନିକର ଯୁକ୍ତିଯୁକ୍ତ ନିରପେକ୍ଷ ନ୍ୟାୟପରାୟଣତା ଏବଂ ଜଣେ ସୃଜନଶୀଳ କଳାତ୍ମକ ରଚନାକାରୀର ସୌନ୍ଦର୍ଯ୍ୟ ମାଧୁର୍ଯ୍ୟ ଓ ମାନବଧର୍ମୀ ସଦୟ ପ୍ରକୃତିର ଏକ ମଧୁର ସମ୍ମିଶ୍ରଣ । ଉଦ୍ଭିଦବିଜ୍ଞାନରେ ତାଙ୍କର ଅବଦାନ ଥିଲା ଅତି ମୌଳିକ ଓ ଅମୂଲ୍ୟ । ସର୍ବଭାରତୀୟ ଜାତୀୟ ସ୍ତରରେ, ନିଜ ରାଜ୍ୟ ମଧ୍ୟରେ ଓ ବିଭିନ୍ନ ବିଶ୍ୱବିଦ୍ୟାଳୟ ସ୍ତରରେ ଶିକ୍ଷା ସମ୍ବନ୍ଧୀୟ ନୀତି ନିର୍ଦ୍ଧାରଣ କରିବାରେ ସେ ତାତ୍ପର୍ଯ୍ୟପୂର୍ଣ୍ଣ ସାର୍ଥକ ଅଂଶ ଗ୍ରହଣ କରିଥିଲେ ।

ଡକ୍ଟର ପରିଜା ତାଙ୍କ ଜୀବନକାଳ ମଧ୍ୟରେ ଶହ ଶହ ଗରିବ ଛାତ୍ରଙ୍କୁ ଆର୍ଥିକ ସାହାଯ୍ୟ ପ୍ରଦାନ କରିଛନ୍ତି । ତାଙ୍କ ଅନ୍ତିମ କାମନାରେ ସେ ଦରିଦ୍ର ଓ ମେଧାବୀ ଛାତ୍ରମାନଙ୍କ ପ୍ରତି ଅତିଶୟ ଦୟାର୍ଦ୍ରତା ପ୍ରକାଶ କରିଛନ୍ତି । ମୋ ଭଳି ଅନେକେ ଯେଉଁମାନେ ତାଙ୍କ ଘନିଷ୍ଠ ସମ୍ପର୍କରେ ଆସିଥିଲେ ଓ ତାଙ୍କ ସହିତ ଜାତୀୟ ସ୍ତରରେ କାର୍ଯ୍ୟ କରିବାର ସୁଯୋଗ ଲାଭ କରିଥିଲେ, ସେମାନେ ତାଙ୍କୁ ଏକ ମହାନୁଭବ ଉଦାରହୃଦୟ, ମହତ୍ ଚରିତ୍ରସମ୍ପନ୍ନ ଓ ନିଜର ଅତି ଆତ୍ମୀୟ ବର୍ଗର ବ୍ୟକ୍ତି ରୂପେ ସ୍ମରଣ କରିବେ । ଡକ୍ଟର ପରିଜାଙ୍କ କୃତିତ୍ୱପୂର୍ଣ୍ଣ ଜୀବନରୁ ବର୍ତ୍ତମାନ ପିଢ଼ିର ଯୁବକ ଯୁବତୀମାନଙ୍କର ବହୁତ କିଛି ଶିକ୍ଷା କରିବାର ଅଛି । ତାଙ୍କର ଜୀବନୀ ଓ କାର୍ଯ୍ୟାବଳୀର ସଦ୍‌ଗୁଣରାଜି ଯଥା ପ୍ରୀତି, ସଦିଚ୍ଛା, ମାଧୁର୍ଯ୍ୟ, ମାନବିକତା ଏବଂ ନ୍ୟାୟପରାୟଣତା ମାଧ୍ୟମରେ ଆମର ଜାତୀୟ ଲକ୍ଷ୍ୟ ସାଧନ ପଥରେ ଏକ ଉଜ୍ଜ୍ୱଳ ଆଲୋକବର୍ତ୍ତିକା ରୂପେ କାର୍ଯ୍ୟ କରୁ, ଏତିକି ହିଁ ପ୍ରାର୍ଥନା ।

(ଶ୍ରୀ ବିବେକାନନ୍ଦ ପଟ୍ଟନାୟକଙ୍କ ମୁଖ୍ୟ ସଂପାଦନାରେ ପ୍ରକାଶିତ 'ଉତ୍କଳ ପ୍ରସଙ୍ଗ' ସ୍ୱତନ୍ତ୍ର ସଂଖ୍ୟା, ୧୯୭୮ରେ ସ୍ଥାନିତ ମୂଳ ଇଂରାଜୀ ରଚନାରୁ ଡକ୍ଟର ଗଦାଧର ମିଶ୍ରଙ୍କ ଦ୍ୱାରା ଓଡ଼ିଆରେ ଅନୂଦିତ ।)

# ଛାତ୍ରବତ୍ସଳ ପ୍ରଫେସର ପରିଜା

ମୁରଲୀଧର ମହାନ୍ତି

୧୯୨୨ ମସିହା ଜୁଲାଇ ମାସରେ ମୁଁ ରେଭେନ୍ସା କଲେଜରେ ଆଇ. ଏ.ର ପ୍ରଥମ ଶ୍ରେଣୀରେ ନାମ ଲେଖାଇଲି । ସେତେବେଳେ ପ୍ରଫେସର ପରିଜା କଲେଜରେ ଉଦ୍ଭିଦବିଜ୍ଞାନ ବିଭାଗରେ ମୁଖ୍ୟ ଅଧ୍ୟାପକ ଥିଲେ । ଆଇ. ଏ. ପାଠ୍ୟକ୍ରମରେ ମୁଁ ଉଦ୍ଭିଦବିଜ୍ଞାନକୁ ଏକ ବିଷୟ ରୂପେ ନିର୍ବାଚନ କରିଥିଲି । ସେ ମଧ୍ୟ କଲେଜର ପଶ୍ଚିମ ଛାତ୍ରାବାସର ୱାର୍ଡେନ୍ ଥିଲେ, ମୁଁ ସେହି ଛାତ୍ରାବାସରେ ରହିଲି । ଏଭଳି ପରିସ୍ଥିତିରେ ମୁଁ ତାଙ୍କର ଘନିଷ୍ଠ ସମ୍ପର୍କରେ ଆସିବାର ସୁଯୋଗ ଲାଭ କଲି । ମୁଁ କଲେଜରେ ତଥା ଛାତ୍ରାବାସରେ ଶିକ୍ଷା ବ୍ୟତୀତ ଅନ୍ୟାନ୍ୟ ସାଂସ୍କୃତିକ କାର୍ଯ୍ୟଗୁଡ଼ିକରେ କିପରି ଅଧିକରୁ ଅଧିକ ଅଂଶ ଗ୍ରହଣ କରେ, ସେଥିପାଇଁ ସେ ମତେ ଉତ୍ସାହିତ କରୁଥିଲେ । ଏହି କାରଣରୁ ମୁଁ ତାଙ୍କ ଚା ପାନ ଟେବୁଲକୁ ନିୟମିତ ଅତିଥି ରୂପେ ନିମନ୍ତ୍ରିତ ହେଉଥିଲି ।

ପ୍ରଫେସର ରୂପେ ସେ ଥିଲେ ଅଦ୍ୱିତୀୟ । ତାଙ୍କର କ୍ଲାସ ସବୁବେଳେ ଆକର୍ଷଣୀୟ ଓ ତାଙ୍କର ବକ୍ତୃତା ସବୁବେଳେ ହୃଦୟଗ୍ରାହୀ ଥିଲା । ଏହାର କାରଣ ହେଉଛି ତାଙ୍କର ଛାତ୍ରମାନେ କେବେ ଅନୁଭବ କରିପାରୁ ନ ଥିଲେ ଯେ ସେମାନଙ୍କୁ ଶିକ୍ଷା ପ୍ରଦାନ କରାଯାଉଛି । ସେ ସରଳ ଭାଷାରେ ଓ କଥୋପକଥନ ଛଳରେ ଉଦ୍ଭିଦମାନଙ୍କ ଜୀବନ କ୍ରିୟାର ରହସ୍ୟ ଏପରି ଭାବରେ ଉଦ୍‌ଘାଟନ କରୁଥାନ୍ତି, ଯାହାଫଳରେ କି ତାଙ୍କର ଛାତ୍ରମାନେ କୌଣସି ରହସ୍ୟାବୃତ ଗଳ୍ପ ଶ୍ରବଣ କରିବାରେ ନିବିଷ୍ଟ ରହିଛନ୍ତି ବୋଲି ଅନୁଭବ କରୁଥିଲେ । ସେ କିନ୍ତୁ ତାଙ୍କ ଦାୟିତ୍ୱ ସମ୍ବନ୍ଧରେ ସଂପୂର୍ଣ୍ଣ ସଚେତନ ଥାଇ ବ୍ଲାକ୍‌ବୋର୍ଡରେ ଚିତ୍ର ଅଙ୍କନ କରି ତାଙ୍କ ବକ୍ତୃତାକୁ ଏପରି ପ୍ରାଞ୍ଜଳ ଭାବରେ ଉପସ୍ଥାପନ କରୁଥିଲେ, ଯଦ୍ୱାରା ଛାତ୍ରମାନଙ୍କ ମନରେ ସମସ୍ତ ବିଷୟବସ୍ତୁ ସ୍ପଷ୍ଟ ରୂପେ ମୁଦ୍ରିତ ହୋଇ ରହିଯାଉଥିଲା । ଏଭଳି ଗୋଟିଏ ଘଟଣା ବି ମୁଁ ସ୍ମରଣ କରିପାରୁ ନାହିଁ ଯେଉଁଥିରେ କି ଜଣେ ହେଲେ ଛାତ୍ର ମଧ୍ୟ ତାଙ୍କ କ୍ଲାସ୍‌ରେ ଅମନୋଯୋଗୀ ରହୁଥିଲା ବା ବିଶୃଙ୍ଖଳ ଆଚରଣ ଦେଖାଉଥିଲା ।

ପଶ୍ଚିମଛାତ୍ରାବାସର ୱାର୍ଡେନ ହିସାବରେ ପ୍ରଫେସର ପରିଜା କେବେ କଠୋର ଶାସକ ହେବାକୁ ଚେଷ୍ଟା କରୁ ନ ଥିଲେ । ସାନ୍ଧ୍ୟକାଳୀନ ଅଧ୍ୟୟନ ସମୟ (Evening study hours)ର କଟକଣା ଭାଙ୍ଗି ସେ ମଝିରେ ମଝିରେ ଛାତ୍ରମାନଙ୍କ କୋଠରି ସମ୍ମୁଖ

ବାରଣ୍ଡାରେ ଛିଡ଼ା ହୋଇ କଥୋପକଥନରେ ସମୟ ଅତିବାହିତ କରୁଥିଲେ । କଠିନ ଅଧ୍ୟୟନର କଠୋରତାରୁ ମୁକ୍ତିଲାଭ କରି ଅନ୍ତେବାସୀଗଣ ସେ ଦଳରେ ଯୋଗଦେବାକୁ ଭଲ ପାଉଥିଲେ । ସେତେବେଳେ ଆମେ ଏତେ କୋମଳମତି ଓ ସରଳ ଥିଲୁ ଯେ ଆମ୍ଭେମାନେ ଜାଣିପାରୁ ନ ଥିଲୁ ନିର୍ଦ୍ଧାରିତ ଅଧ୍ୟୟନ ସମୟରେ ଏପରି ବ୍ୟତିକ୍ରମ ପୂର୍ବକ ଅନ୍ତେବାସୀମାନଙ୍କ ସହିତ କଥୋପକଥନ ଯୋଜନାବଦ୍ଧ ଭାବରେ ଜାଣିଶୁଣି କରାଯାଉଥିଲା, ଯଦ୍ଦ୍ୱାରା କି ସେମାନଙ୍କୁ ଭଲ ମଣିଷ ହେବା ପାଇଁ ସେମାନଙ୍କ ଅନ୍ତର୍ନିହିତ ଗୁଣ, ଚରିତ୍ର ଓ ଜ୍ଞାନର ବିକାଶ ସାଧନ କରିବା ପାଇଁ ସେମାନଙ୍କୁ ବିବିଧ ଉପଦେଶ ଓ ସମ୍ବାଦ ପ୍ରଦାନ କରାଯାଉଥିଲା ।

ସେ ମଧ୍ୟ ଅନ୍ତେବାସୀମାନଙ୍କ ଠାରୁ କଥୋପକଥନ ଛଳରେ ସେମାନଙ୍କର ଆଶାଆକାଂକ୍ଷା ଓ ନୈରାଶ୍ୟ ସମ୍ବନ୍ଧରେ ସେମାନଙ୍କର ମନକଥା ବିଶଦ ଭାବରେ ଜାଣିପାରୁ ଥିଲେ ଯାହାକି ସେ ଯଦି ନିୟମାନୁଗତ ଓ ଦୂରଛଡ଼ା ହୋଇ ରହୁଥାନ୍ତେ ତେବେ ସେ ସବୁ ଜାଣିପାରୁ ନ ଥାନ୍ତେ । ଛାତ୍ରାବାସରେ ତାଙ୍କ ୱାର୍ଡେନ୍ କାର୍ଯ୍ୟକାଳ ମଧ୍ୟରେ ଘଟିଥିବା ଅନେକ କୌତୁକମୟ ଘଟଣା ଓ ମଜା କଥା ମୁଁ ଉଲ୍ଲେଖ କରିପାରନ୍ତି, କିନ୍ତୁ ତାହା ଏହି ପ୍ରବନ୍ଧର କଳେବରକୁ ବୃଦ୍ଧି କରିଦେବ ।

ଗୋଟିଏ ଘଟଣା ଏଠି କହିଲେ ଯଥେଷ୍ଟ ହେବ । ସେତେବେଳେ ନିୟମ ଥିଲା ଯେ ଜଣେ ଅନ୍ତେବାସୀ ପ୍ରଥମେ ଛାତ୍ରାବାସର ତତ୍ତ୍ୱାବଧାରକ (ସୁପରିଣ୍ଟେଣ୍ଡେଣ୍ଟ)ଙ୍କ ଠାରୁ ସାର୍ଟିଫିକେଟ୍ ନ ଆଣିଲେ ସେ ୱାର୍ଡେନ୍‌ଙ୍କ ଠାରୁ ସାର୍ଟିଫିକେଟ୍ ପାଇପାରିବ ନାହିଁ । ଜଣେ ଅନ୍ତେବାସୀ ଗୋଟିଏ ଚାକିରି ପାଇଁ ଆବେଦନ କରିବା ଉଦ୍ଦେଶ୍ୟରେ ତତ୍ତ୍ୱାବଧାରକଙ୍କ ଠାରୁ ଏକ ସାର୍ଟିଫିକେଟ୍ ଆଣିସାରିଲା ପରେ ୱାର୍ଡେନ୍ ପ୍ରଫେସର ପରିଜାଙ୍କୁ ଭେଟିଥିଲା ଓ ତାଙ୍କୁ ଗୋଟିଏ ସାର୍ଟିଫିକେଟ୍ ଦବାକୁ ଅନୁରୋଧ କରିଥିଲା । ତତ୍ତ୍ୱାବଧାରକ ତାଙ୍କ ସାର୍ଟିଫିକେଟ୍‌ରେ ଉଲ୍ଲେଖ କରିଥିଲେ ଯେ ଅନ୍ତେବାସୀଜଣକ ଅତି ନିୟମନିଷ୍ଠ ଓ ଆଜ୍ଞାବହ ଥିଲେ ଓ ଛାତ୍ରାବାସରେ ତାଙ୍କର ତିନି ବର୍ଷର ରହଣି ମଧ୍ୟରେ ସେ କେବେହେଲେ ଛାତ୍ରାବାସ-ନିୟମ ଭଙ୍ଗ କରି ନାହିଁ । ଏହି ସାର୍ଟିଫିକେଟ୍ ପଢ଼ିସାରି ପ୍ରଫେସର ପରିଜା ଛାତ୍ରଙ୍କୁ ଏକ ସାର୍ଟିଫିକେଟ୍ ଦବାକୁ ମନା କରିଦେଲେ । ସେ ଛାତ୍ରକୁ କହିଥିଲେ ଯେ ଯଦି ତତ୍ତ୍ୱାବଧାରକଙ୍କ ଉକ୍ତି ଠିକ୍ ହୁଏ ସେହି ଛାତ୍ରଜଣକ ସଂପୂର୍ଣ୍ଣ ଅକାମିକା ଓ ଅକର୍ମା ଅଟେ । ତା ବୟସର ଯେକୌଣସି ସାଧାରଣ ଯୁବକ ଯଦି ତା ଭିତରେ କିଛି ଜୀବନ ଓ ତେଜ ରହିଥିବ ତେବେ ସେ ତିନି ବର୍ଷ ମଧ୍ୟରେ ନିଶ୍ଚିତ ଭାବେ ଥରେ ହେଲେ ଛାତ୍ରାବାସ ନିୟମକୁ ଭଙ୍ଗ କରିଥାନ୍ତା । ସେ ମଧ୍ୟ ତାକୁ କହିଲେ ତା ବୟସର ଜଣେ ଯୁବକଠାରେ ସାଧାରଣ ଆଚରଣ ଅସାଧାରଣ ଭାବେ ନିଶ୍ଚେଷ୍ଟ ହୋଇଥିବା ନିସ୍ତେଜ ଓ ଭୟାଳୁ ଗୁଣ ପ୍ରତି ତାଙ୍କର ଶ୍ରଦ୍ଧା ନାହିଁ । ସେ ଛାତ୍ରକୁ ଏଭଳି

କହିଲା ପରେ ଛାତ୍ରଜଣକ ସ୍ୱୀକାର କରିଥିଲା ଯେ ତତ୍ତ୍ୱାବଧାରକ ତାଙ୍କ ସାର୍ଟିଫିକେଟ୍‌ରେ ଯାହା ଲେଖିଛନ୍ତି ତାହା ସତ୍ୟ ନୁହେଁ, କାରଣ ସେ ଛାତ୍ର ମଝିରେ ମଝିରେ ଛାତ୍ରାବାସରେ ଯଥେଷ୍ଟ ଗଣ୍ଡଗୋଳ କରୁଥିଲା । ସେ ଆଉ କେବେ ଅଶାନ୍ତି ସୃଷ୍ଟି କରିବ ନାହିଁ ବୋଲି ଲିଖିତ ପ୍ରତିଶ୍ରୁତି ଦେଲା ପରେ ପ୍ରଫେସର ପରିଜା ତାକୁ ଏକ ସାର୍ଟିଫିକେଟ୍ ଦେଇଥିଲେ ।

କଲେଜ ବ୍ୟାପାର ବ୍ୟତୀତ ମୋର ତାଙ୍କ ସହିତ ସମ୍ପର୍କ ଗଢ଼ିଉଠିଥିଲା କଲେଜ ଛାତ୍ରମାନଙ୍କର ଓ ଛାତ୍ରାବାସର ଅନ୍ତେବାସୀମାନଙ୍କର ବିବିଧ ସମସ୍ୟାର ସମାଧାନ ନେଇ । ଏଠି ସେଗୁଡ଼ିକର ପର୍ଯ୍ୟାପ୍ତ ଅବତାରଣା ବହୁତ ହୋଇଯିବ । ମୁଁ ଏଠି ଗୋଟିଏ ବିଷୟ ଉଲ୍ଲେଖ କରିବି, ଯାହାକି ଅନ୍ୟଗୁଡ଼ିକର ଦୃଷ୍ଟାନ୍ତ ସ୍ୱରୂପ ହେବ । ସେ କାଳରେ ପ୍ରଫେସର ପରିଜା ପ୍ରତି ମାସରେ ଗରିବ ଓ ଅଭାବଗ୍ରସ୍ତ ଛାତ୍ରମାନଙ୍କୁ ଦୁଇଶହ ଟଙ୍କାରୁ ତିନିଶହ ଟଙ୍କା ପର୍ଯ୍ୟନ୍ତ ଆର୍ଥିକ ସାହାଯ୍ୟ ଦେଉଥିଲେ । ଥରେ ସେ ମତେ କହିଲେ ଯେ ଛାତ୍ର ଜୀବନରେ ତାଙ୍କର ଖର୍ଚ୍ଚ ତୁଲାଇବା ପାଇଁ ତାଙ୍କ ନିକଟକୁ ଆର୍ଥିକ ସାହାଯ୍ୟ ଭିକ୍ଷା ମାଗିବାକୁ ଆସୁଥିବା ଛାତ୍ରମାନଙ୍କୁ ଭେଟି ଭେଟି ସେ କ୍ଳାନ୍ତ ହୋଇ ପଡୁଛନ୍ତି । ଅନ୍ୟାନ୍ୟ କଥା ବିଚାରକୁ ନ ନେଇ ଭିକ୍ଷା ମାଗିବା ଯୁବ ଛାତ୍ରମାନଙ୍କର କେବଳ ଛାତ୍ର ଜୀବନରେ ନୁହେଁ, ଏପରିକି ପରବର୍ତ୍ତୀ ଜୀବନକାଳ ମଧ୍ୟରେ ସେମାନଙ୍କ ସମ୍ମାନ ଓ ବ୍ୟକ୍ତିତ୍ୱ ପ୍ରତି କ୍ଷତିକାରକ । ସେ ଏଥିରୁ ରକ୍ଷା ପାଇବାର କୌଣସି ଉପାୟ ବାହାର କରିବା ଦାୟିତ୍ୱ ମୋ ଉପରେ ନ୍ୟସ୍ତ କଲେ । ସେ ମୋତେ ଉପଦେଶ ଦେଲେ ଗୋଟିଏ ଅନୁଷ୍ଠାନ ଗଢ଼ିବାକୁ, ଯାହା ଜରିଆରେ ଅଭାବଗ୍ରସ୍ତ ଛାତ୍ରମାନେ କିଛି କାର୍ଯ୍ୟ କରି କିଛି କିଛି ରୋଜଗାର କରିପାରିବେ, ଯାହା ଫଳରେ କି ସେମାନେ ଆଂଶିକ ଭାବରେ ଆତ୍ମନିର୍ଭରଶୀଳ ହୋଇପାରିବେ । ଏହାର ଫଳସ୍ୱରୂପ ଛାତ୍ରାବାସରେ ଗୋଟିଏ ଅନୁଷ୍ଠାନ ଗଠିତ ହେଲା, ଏହାର ନାମକରଣ ମୁଁ କରିଥିଲି ''ଛାତ୍ରମାନଙ୍କ ଶ୍ରମ ସଂଘଟନ'' । ମୁଁ କଲେଜ ଛାଡ଼ିବାର ବହୁ ବର୍ଷ ପର୍ଯ୍ୟନ୍ତ ଏହା ଜୀବିତ ରହିଥିଲା ଓ ଫଳପ୍ରସୂ ରୂପେ କାର୍ଯ୍ୟ କରୁଥିଲା ଓ ବର୍ତ୍ତମାନ ସୁଦ୍ଧା ମଧ୍ୟ ବଞ୍ଚି ରହିଥାଇପାରେ ।

ମୋର ବ୍ୟକ୍ତିଗତ ଅଭିଜ୍ଞତାରୁ ପ୍ରଫେସର ପରିଜାଙ୍କ ସମ୍ବନ୍ଧରେ ଅଳ୍ପ କେତୋଟି ଘଟଣା ଉଲ୍ଲେଖ କଲି । ଏକଥା କହିଲେ ଯଥେଷ୍ଟ ହେବ ଯେ ତାଙ୍କର ଜୀବନ ଓ ଆଦର୍ଶ ତାଙ୍କର ବହୁ ଛାତ୍ର ଓ ଛାତ୍ରାବାସର ଅନ୍ତେବାସୀମାନଙ୍କ ଉପରେ ଗଭୀର ପ୍ରଭାବ ପକାଇଥିଲା, ଯେଉଁମାନେ ସେମାନଙ୍କ ପରବର୍ତ୍ତୀ ଜୀବନକାଳରେ ଅନେକ ଦାୟିତ୍ୱସମ୍ପନ୍ନ ପଦବୀ ଅଧିକାର କରି ଯଶ, ଗୌରବ ଓ ସୁଖ୍ୟାତି ଲାଭ କରିଛନ୍ତି ।

ଏକଥା ସମସ୍ତଙ୍କୁ ବିଦିତ ଅଛି ଯେ ପରବର୍ତ୍ତୀ ସମୟରେ ପ୍ରଫେସର ପରିଜା ରେଭେନ୍ସା କଲେଜର ଅଧ୍ୟକ୍ଷ ଓ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଆସନ ଅଳଂକୃତ କରିଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ତାଙ୍କୁ ସମ୍ମାନସୂଚକ ''ଡକ୍ଟରେଟ୍ ଅଫ୍ ସାଇନ୍ସ'' ଡିଗ୍ରୀରେ ସମ୍ମାନିତ କରିଅଛି । ଆଉ ଦୁଇଟି ବିଷୟ ଉଲ୍ଲେଖ କରୁଛି । ନିଖିଳ ଓଡ଼ିଶା ଛାତ୍ରସମ୍ମିଳନୀର ଦୁଇଟି ଅଧିବେଶନ କରିବାକୁ ପ୍ରଫେସର ପରିଜା ଆମ ଛାତ୍ରମାନଙ୍କୁ ପ୍ରେରଣା ଦେଇଥିଲେ । ସେଥିରୁ ଗୋଟିଏ ସଭାରେ ସଭାପତିତ୍ୱ କରିଥିଲେ କଲିକତାର ଏକ ବୈଷୟିକ ଶିକ୍ଷା କଲେଜର ଅଧ୍ୟକ୍ଷ ତତ୍କାଳୀନ ପ୍ରସିଦ୍ଧ ଶିକ୍ଷାବିତ୍ କ୍ୟାପ୍‌ଟେନ୍ ପିଡାଭେଲ । ଅନ୍ୟ ଅଧିବେଶନଟିରେ ସଭାପତିତ୍ୱ କରିଥିଲେ ପଣ୍ଡିତ ଗୋଦାବରୀଶ ମିଶ୍ର ଯେ କି ସେ ସମୟରେ କଂଗ୍ରେସର ଜଣେ ତୁଙ୍ଗ ନେତା ଓ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଥିଲେ । ତାଙ୍କର ରାଜନୀତିକ ଚିନ୍ତାଧାରା ଓ କାର୍ଯ୍ୟକଳାପ ତତ୍କାଳୀନ ଇଂରେଜ ସରକାରଙ୍କ ବିରୋଧୀ ହୋଇଥିବା ଯୋଗୁଁ ପଶ୍ଚିମ ଛାତ୍ରାବାସରେ ସଭା କରିବାକୁ ଅନୁମତି ଦେଇଥିବା ଛାତ୍ରାବାସର ୱାର୍ଡେନ୍ ପ୍ରଫେସର ପରିଜା ସରକାରଙ୍କ ବିଷଦୃଷ୍ଟିରେ ପଡ଼ିଥିଲେ । ସେ ସର୍ବଦା ଛାତ୍ରମାନଙ୍କ ସପକ୍ଷରେ ଥିଲେ ।

(ରଚନାକାଳ ୧୯୭୭ ମସିହା । ମୂଳ ଇଂରାଜୀ ଲେଖାରୁ ଡକ୍ଟର ଗଦାଧର ମିଶ୍ରଙ୍କ ଦ୍ୱାରା ଓଡ଼ିଆରେ ଅନୂଦିତ ।)

# ଅତୀତର ସ୍ମୃତି

ରବୀନ୍ଦ୍ର କୁମାର ମିଶ୍ର

ମୁଁ ଜନ୍ମ ହେବା ପୂର୍ବରୁ ପଦ୍ମଭୂଷଣ ଡକ୍ଟର ପ୍ରାଣକୃଷ୍ଣ ପରିଜା ରେଭେନ୍ସା କଲେଜର ଉଦ୍ଭିଦବିଜ୍ଞାନ ବିଭାଗରୁ ତାଙ୍କର ଅଧ୍ୟାପନା କାର୍ଯ୍ୟରୁ ଅବ୍ୟାହତି ନେଇସାରିଥିଲେ । ତଥାପି ୧୯୬୭ରୁ ୧୯୬୯ ମସିହା ମଧ୍ୟରେ ସେ ଯେତେବେଳେ ସେହି ବିଭାଗରେ ଏମେରିଟସ୍ ବୈଜ୍ଞାନିକ ରୂପେ ଯୋଗଦାନ କରିଥିଲେ ମୁଁ ତାଙ୍କ ତତ୍ତ୍ୱାବଧାନରେ ଜଣେ ଗବେଷକ ଛାତ୍ର ରୂପେ କାର୍ଯ୍ୟ କରିବାର ପରମ ସୌଭାଗ୍ୟ ଲାଭ କରିଥିଲି । ପଞ୍ଚସ୍ତରୀ ବର୍ଷ ବୟସରେ ଆମ ଯୁବକ ଛାତ୍ରମାନଙ୍କ ଅପେକ୍ଷା ତାଙ୍କର କାର୍ଯ୍ୟ କରିବାର ଆଗ୍ରହ ଅଧିକ ଥିଲା ।

ଥରେ ମୋର ମନେଅଛି ସେ ମୋର ନୋଟ୍ ଖାତା ପଢୁଥିଲା ବେଳେ ସେଥିରେ ଏକ ବନାନ ଭୁଲ ଦେଖି ମୋ ଉପରେ ଭୟଙ୍କର ବିରକ୍ତ ହୋଇ ନୋଟ୍ ଖାତାଟିକୁ ମୋ ଉପରକୁ ଫିଙ୍ଗିଦେଇ କହିଲେ, ''ଜଣେ ମାଟ୍ରିକୁଲେଟ୍ ଠାରୁ ତୁମର ଜ୍ଞାନ କମ୍'' । ଏହା ମୋତେ ଏପରି ଶିକ୍ଷା ଦେଇଥିଲା ଯାହା ଫଳରେ ମୁଁ ତରବରରେ ଏଣୁ ତେଣୁ ଲେଖି ଦେଇଥିବା ଲେଖା ଧରି ତାଙ୍କ ପାଖକୁ ଯିବାକୁ ଆଉ କେବେ ସାହସ କରି ନାହିଁ ଏବଂ ତାଙ୍କୁ କୌଣସି ଲେଖା ଦେଲା ପୂର୍ବରୁ ମୋ ନୋଟ୍‌ର ପ୍ରତ୍ୟେକ ଶବ୍ଦକୁ ଅଭିଧାନ ସହିତ ମିଳାଇ ଯାଞ୍ଚ କରିନେବାକୁ ଅଭ୍ୟାସ କରିଥିଲି ।

ଏହି ଗୋଟିଏ ଘଟଣା ବ୍ୟତୀତ ସେ ସାଧାରଣତଃ ଶାନ୍ତଶିଷ୍ଟ ପ୍ରକୃତିର ଲୋକ ଥିଲେ । ଯୁବସୁଲଭ ଅମନୋଯୋଗିତା ପାଇଁ ସେ ଯେତେବେଳେ ଭର୍ତ୍ସନା କରୁଥିଲେ ତାହା କୋମଳ ଓ ମଧୁର ଶବ୍ଦବିଶିଷ୍ଟ ହେଉଥିଲା, ହେଲେହେଁ ହୃଦୟକନ୍ଦରକୁ ତାହା ବିଶେଷ ଭାବରେ ଆନ୍ଦୋଳିତ କରୁଥିଲା । ଏକଦା ମୋର ଦୁର୍ଭାଗ୍ୟକୁ ମୁଁ କଲେଜକୁ ଆସୁଥିଲାବେଳେ ମୋର ସାଇକେଲର ଟାୟାର ପଙ୍କଚର ହୋଇଗଲା ଓ ମୁଁ ରେଭେନ୍ସା କଲେଜରେ ଉଦ୍ଭିଦବିଜ୍ଞାନ ବିଭାଗରେ ପହଞ୍ଚିଲାବେଳକୁ ପାଞ୍ଚ ମିନିଟ୍ ଡେରି ହୋଇଗଲା । ସେତେବେଳକୁ ପ୍ରଫେସର ପରିଜା ଯେ କି ଅତିଶୟ ସମୟାନୁବର୍ତ୍ତୀ ଉଦ୍ଭିଦବିଜ୍ଞାନ ଛାଡ଼ି ସାରିଥିଲେ ଓ ମୋ ପାଇଁ ଟେବୁଲ ଉପରେ ଗୋଟିଏ ଲେଖା ରଖିଦେଇ ଯାଇଥିଲେ । ସେ ଲେଖାଟି ଗୋଟିଏ ସାଧାରଣ ନୋଟ୍ ନ ଥିଲା, ଏହା ଥିଲା ମୋ ପ୍ରତି ଏକ ଉପଦେଶ, ଯାହାକି ଥିଲା ଗୀତାଭଳି ଶକ୍ତିସମ୍ପନ୍ନ । ଏକଥା ଆଜିପର୍ଯ୍ୟନ୍ତ ମୋର ସ୍ମୃତିରେ ଜୀବନ୍ତ ରହିଛି ଓ ମୁଁ ସେ ଲେଖାକୁ ଏକ ମୂଲ୍ୟବାନ

ସମ୍ପଦ ରୂପେ ସାଇତି ରଖିଛି । ସେହିଦିନଠାରୁ ମୋର ଦୈନନ୍ଦିନ ଜୀବନରେ ମୁଁ ସମୟାନୁବର୍ତ୍ତୀ ହେବାକୁ ସତତ ଚେଷ୍ଟା କରିଛି ।

ତାଙ୍କ ନିଜ ବିଷୟ ଉଦ୍ଭିଦବିଜ୍ଞାନ ସମ୍ବନ୍ଧରେ ତାଙ୍କଠାରୁ ଅଧିକ ଜଣେ ଜ୍ଞାନୀ ବ୍ୟକ୍ତିଙ୍କୁ ମୁଁ ଦେଖି ନାହିଁ । ଛାତ୍ରମାନଙ୍କ ପ୍ରତି ଦୟା, ସଦ୍‌ଭାବ, ଅନୁକମ୍ପା, ସ୍ନେହ ଓ ନିଃସ୍ୱାର୍ଥପରତା ପ୍ରଦର୍ଶନରେ ତାଙ୍କ ସହିତ ସମକକ୍ଷ ହେବା ଭଳି ଜଣେ ବ୍ୟକ୍ତିଙ୍କୁ ପାଇବା ଅତିଶୟ ବିରଳ । ଗବେଷଣାତ୍ମକ ପ୍ରବନ୍ଧ ବୈଜ୍ଞାନିକ ପତ୍ରପତ୍ରିକାରେ ପ୍ରକାଶ କରିବାକୁ ପଠାହେବା ପାଇଁ ପ୍ରସ୍ତୁତ ହେଉଥିଲାବେଳେ ଲେଖକ ତାଲିକାରୁ ତାଙ୍କ ନାମ ବାଦ ଦେବାକୁ କିମ୍ବା ସମସ୍ତଙ୍କ ପଛରେ ରଖିବାକୁ ସେ ଉପଦେଶ ଦେଉଥିଲେ ।

ମୋ ଭଳି ଅନେକ ଛାତ୍ର ତାଙ୍କଠାରୁ ଆର୍ଥିକ ସାହାଯ୍ୟ ପାଇଛନ୍ତି ଏବଂ ସେ ତାଙ୍କର ଦୟାଳୁତା, ଅଧିକନ୍ତୁ ମମତା ଦ୍ୱାରା ଆମ ଛାତ୍ରମାନଙ୍କୁ ଋଣୀ କରି ଦେଇଛନ୍ତି । ସେ ତାଙ୍କର ପୁଅଝିଅ ଓ ନାତିନାତୁଣୀଙ୍କ ସଙ୍ଗେ ବ୍ୟବହାର କଲାଭଳି ଆମ୍ଭମାନଙ୍କ ସହିତ ବ୍ୟବହାର କରିଛନ୍ତି । ମୁଁ ତାଙ୍କଠାରେ ସ୍ନେହ, ଅନୁରାଗ, ମହାନୁଭବତା ଓ କର୍ତ୍ତବ୍ୟପରାୟଣତାର ଏକ ଅସରନ୍ତି ଉତ୍ସର ସନ୍ଧାନ ପାଇଥିଲି । ଏହି ନିରବଚ୍ଛିନ୍ନ ପ୍ରବାହ ଚିରକାଳ ପ୍ରବାହିତ ହେଉଥାଉ ଓ ଅସଂଖ୍ୟ ତୃଷାର୍ତ୍ତଙ୍କର ତୃଷା ନିବାରଣ କରୁଥାଉ ।

(ରଚନା କାଳ ୧୯୭୬ ମସିହା । ମୂଳ ଇଂରାଜୀ ଲେଖାରୁ ଡକ୍ଟର ଗଦାଧର ମିଶ୍ରଙ୍କ ଦ୍ୱାରା ଓଡ଼ିଆରେ ଅନୂଦିତ ।)

# ଗୁରୁଦେବଙ୍କ ସ୍ମରଣେ

**ରାଜକିଶୋର ଦାସ**

ମୋର କଲେଜ ଜୀବନ ଆରମ୍ଭ ହେଲା ୧୯୨୩ ମସିହାରେ । ରେଭେନ୍ସା କଲିଜିଏଟ୍ ସ୍କୁଲରୁ ପ୍ରବେଶିକା ପରୀକ୍ଷା ପାସ୍ କରି ରେଭେନ୍ସା କଲେଜରେ ନାଁ ଲେଖାଇଲି । 'ରେଭେନ୍ସା କଲେଜ' ନାମ ଉଚ୍ଚାରଣ କଲାମାତ୍ରେ ଦେହରେ ଅପୂର୍ବ ଶିହରଣ ସୃଷ୍ଟି ହୁଏ । 'ଆମ କଲେଜ' ଛଡ଼ା ଆଉ କିଛି କହିବାକୁ ଇଚ୍ଛା ହୁଏ ନାହିଁ । ତାର ଧୂଳିମାଟି ପବିତ୍ର । ତା ଭିତରେ ଲୁଚିରହିଛି ବହୁ ଗୌରବାବହ ଅତୀତ । ତାର ପରମ୍ପରା ମହାନ୍ । ଓଡ଼ିଶାର ଏହି ସର୍ବବୃହତ୍ ଜ୍ଞାନମନ୍ଦିର ଆଜି ମଧ୍ୟ ତାର ଉନ୍ନତ ପରମ୍ପରାକୁ ଅକ୍ଷୁଣ୍ଣ ରଖିପାରିଛି । ଅଗଣିତ ଜ୍ଞାନପିପାସୁ ବିଦ୍ୟାର୍ଥୀଙ୍କ ପଦଧୂଳିରେ ଆମ କଲେଜ ପୂତ ପବିତ୍ର । ପ୍ରଜ୍ଞାର ଅଖଣ୍ଡ ଜ୍ୟୋତି ଧାରଣ କରି ସେ ଅଗଣିତ ବିଦ୍ୟାର୍ଥୀଙ୍କୁ ଜ୍ଞାନାଲୋକରେ ଉଦ୍ଭାସିତ କରୁଛି ।

ମୁଁ ଆଇ. ଏ. ପଢ଼ିଲାବେଳେ ମୋର ବିଷୟବସ୍ତୁ ଥିଲା ଇତିହାସ, ତର୍କଶାସ୍ତ୍ର ଓ ଉଦ୍ଭିଦବିଜ୍ଞାନ । ଉଦ୍ଭିଦବିଜ୍ଞାନକୁ ସେତେବେଳେ କଳା ବିଭାଗ ଅନ୍ତର୍ଭୁକ୍ତ କରାଯାଇଥିଲା । ଯେଉଁ ବିଜ୍ଞାନ ଛାତ୍ରଛାତ୍ରୀମାନେ ଆଇ. ଏସ୍‌ସି.ରେ ଉଦ୍ଭିଦବିଜ୍ଞାନକୁ ୪ର୍ଥ ଅତିରିକ୍ତ ବିଷୟ ରୂପେ ନେଇଥିଲେ ସେମାନେ ଆସି ଆମ ସାଙ୍ଗରେ ଉଦ୍ଭିଦବିଜ୍ଞାନ କ୍ଲାସ୍ କରୁଥିଲେ ।

ପ୍ରଫେସର ପ୍ରାଣକୃଷ୍ଣ ପରିଜା ଆଇ. ଇ. ଏସ୍. ନୂଆ ହୋଇ ବିଲାତରୁ ଆସି ଆମ ଉଦ୍ଭିଦବିଜ୍ଞାନ ବିଭାଗର ପ୍ରଫେସର ଓ ବିଭାଗୀୟ ମୁଖ୍ୟ ହୋଇଥିଲେ । ପ୍ରଶାସନିକ କ୍ଷେତ୍ରରେ ସେ ସମୟରେ ଆଇ. ସି. ଏସ୍. (ଇଣ୍ଡିଆନ୍ ସିଭିଲ ସର୍ଭିସ୍) ଭଳି ଶିକ୍ଷା କ୍ଷେତ୍ରରେ ଆଇ. ଇ. ଏସ୍. (ଇଣ୍ଡିଆନ୍ ଏଡୁକେଶନାଲ ସର୍ଭିସ୍) ମଧ୍ୟ ସର୍ବାପେକ୍ଷା ଉଚ୍ଚପଦବୀ ଥିଲା । ଉଦ୍ଭିଦବିଜ୍ଞାନ ବିଭାଗରେ ପରିଜାସାହେବଙ୍କ ଆଗରୁ ଖ୍ୟାତନାମା ଉଦ୍ଭିଦବୈଜ୍ଞାନିକ ରାୟ ବାହାଦୁର ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧି ପ୍ରଫେସର ଥିଲେ । ଶ୍ରୀ ଦେବବ୍ରତ ମୁଖାର୍ଜି ଓ ଶ୍ରୀ ପରଶୁରାମ ମିଶ୍ର ଦୁଇଜଣ ଅଧ୍ୟାପକ ଥିଲେ । ଶ୍ରୀ ଅଧିରାଜ ମୋହନ ସେନାପତି ଏହି ବିଭାଗ ସହିତ ସମ୍ପୃକ୍ତ ଥିଲେ । କଲେଜର ତତ୍କାଳୀନ ଅଧ୍ୟକ୍ଷ ଲାମ୍ବାର୍ଟସାହେବ(H. Lambert, I. E. S.)ମଧ୍ୟ ଜଣେ ଉଦ୍ଭିଦବିଜ୍ଞାନୀ । ସେ ଆମ ଉଦ୍ଭିଦବିଜ୍ଞାନର ଥିଓରି କ୍ଲାସ୍ ନେଉଥିଲେ । ବିଶ୍ୱବିଦ୍ୟାଳୟ ସ୍ତରରେ ସେ ଆମ ପ୍ରାକ୍ଟିକାଲ୍ ପରୀକ୍ଷାର ପରୀକ୍ଷକ ହେଉଥିଲେ ।

ଆମ ସମୟରେ ରେଭେନ୍ସା କଲେଜରେ ବହୁ ଖ୍ୟାତନାମା ବିଦ୍ୱାନ ପ୍ରଫେସର ଥିଲେ । କେତେକ ଗୋରାସାହେବ ମଧ୍ୟ ଥିଲେ । କେତେକ ବିଲାତ ଫେରନ୍ତା ପ୍ରଫେସର ଥିଲେ । ସେମାନଙ୍କୁ 'ସାହେବ' କୁହାଯାଉଥିଲା । ପ୍ରଫେସର ପ୍ରାଣକୃଷ୍ଣ ପରିଜାଙ୍କୁ 'ପରିଜାସାହେବ' ଓ ପଦାର୍ଥବିଜ୍ଞାନ ପ୍ରଫେସର ତଥା ବିଭାଗୀୟ ମୁଖ୍ୟ ଶ୍ୟାମଚନ୍ଦ୍ର ତ୍ରିପାଠୀଙ୍କୁ 'ତ୍ରିପାଠୀସାହେବ' କୁହାଯାଉଥିଲା । ଆମ ଇତିହାସ ବିଭାଗର ମୁଖ୍ୟ ପ୍ରଫେସର ଥିଲେ ସାର୍ ଯଦୁନାଥ ସରକାର । ଜଣେ ଉଚ୍ଚକୋଟୀର ଐତିହାସିକ ଭାବରେ ତାଙ୍କର ଆନ୍ତର୍ଜାତିକ ଖ୍ୟାତି ଥିଲା । ପରବର୍ତ୍ତୀ ସମୟରେ ସେ କଲିକତା ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲେ । ତର୍କଶାସ୍ତ୍ର ବା ଲଜିକ୍‌ର ବିଭାଗୀୟ ମୁଖ୍ୟ ଥିଲେ ବ୍ୟାସକବି ଫକୀରମୋହନ ସେନାପତିଙ୍କ ପୁଅ ମୋହିନୀମୋହନ ସେନାପତି । ଅଧ୍ୟାପକ କାଶୀନାଥ ଦାଶ ଓ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଥିଲେ ଆମର ଓଡ଼ିଆ ଅଧ୍ୟାପକ । ଅଧ୍ୟାପକ ଗିରିଜାଶଙ୍କର ରାୟ ଓ ଅଧ୍ୟାପକ ଜନାର୍ଦ୍ଦନ ମହାନ୍ତି ଆମକୁ ଇଂରାଜୀ ପଢ଼ାଉଥିଲେ । ଉଦ୍ଭିଦବିଜ୍ଞାନ ଅଧ୍ୟାପକ ପରଶୁରାମ ମିଶ୍ରଙ୍କର ଜଣେ ସରଳ, ମିଷ୍ଟଭାଷୀ ଓ ଛାତ୍ରବତ୍ସଳ ଅଧ୍ୟାପକ ଭାବରେ ସୁନାମ ଥିଲା । ସେ ପରବର୍ତ୍ତୀ ଜୀବନରେ ଉତ୍କଳ ବିଶ୍ୱବିଦ୍ୟାଳୟ ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲେ ।

ପ୍ରଫେସର ପ୍ରାଣକୃଷ୍ଣ ପରିଜା ଥିଲେ ଉତ୍କଳର ଜଣେ ଯୋଗଜନ୍ମା ପୁରୁଷ । ଭାରତର ଶ୍ରେଷ୍ଠ ବୈଜ୍ଞାନିକ ଏବଂ ଉଚ୍ଚକୋଟୀର ଶିକ୍ଷାବିତ୍ ଭାବରେ ଖ୍ୟାତି ଅର୍ଜନ କରି ସେ ସମଗ୍ର ଦେଶ ଓ ଜାତିର ଶ୍ରଦ୍ଧାଭାଜନ ହୋଇ ପାରିଥିଲେ । ଗୋଟିଏ ସାଧାରଣ ମଧ୍ୟବିତ୍ତ ପରିବାରରେ ଜନ୍ମଗ୍ରହଣ କରି ସେ ନିଜ କର୍ମପଟୁତା ଓ ଅଧ୍ୟବସାୟ ବଳରେ ଜୀବନର ଶୀର୍ଷତମ ସୋପାନରେ ପହଞ୍ଚି ପାରିଥିଲେ ।

ତାଙ୍କ ସହିତ ମୋର ସମ୍ପର୍କ ନିବିଡ଼ ଥିଲା । ସେ ଥିଲେ ମୋର ସମ୍ମାନାସ୍ପଦ ଗୁରୁ । ମୁଁ ଥିଲି ଏକାନ୍ତ ଅନୁରକ୍ତ ଛାତ୍ର । ଦିନକର କଥା । ଉଦ୍ଭିଦବିଜ୍ଞାନର ଗୋଟିଏ ବିଷୟକୁ ମୁଁ ଅଣୁବୀକ୍ଷଣ ଯନ୍ତ୍ର (ମାଇକ୍ରୋସ୍କୋପ)ରେ ଦେଖିବାକୁ ଚେଷ୍ଟା କରୁଥିଲି । ଏହି ସମୟରେ ମୋ ପଛରେ ଆସି ଛିଡ଼ାହେଲେ ପ୍ରଫେସର ପରିଜା । ତାଙ୍କୁ ଦେଖି ମୁଁ ସନ୍ତ୍ରମରେ ଶଙ୍କିଗଲି । ପରିସ୍ଥିତିକୁ ହାଲୁକା କରିଦେଇ ସେ ପଚାରିଲେ, ''କ'ଣ କରୁଛ ?''

''ସାର୍, ମାଇକ୍ରୋସ୍କୋପ୍‌ରେ ଗୋଟିଏ ସ୍ଲାଇଡ୍ ଦେଖୁଛି ।''

''କିନ୍ତୁ ମାଇକ୍ରୋସ୍କୋପ୍ ତ ଠିକ୍ ଭାବରେ ସେଟ୍ ହୋଇ ନାହିଁ । ଠିକ୍ ଭାବେ ଦେଖିବ କେମିତି ?'' ଏହା କହି ପରିଜାସାହେବ ନିଜେ ଯନ୍ତ୍ରଟିକୁ ଠିକ୍ ଭାବେ ସଜେଇଦେଇ କହିଲେ, ''ଏଥର ଦେଖ ।''

ଏହାହିଁ ଥିଲା ଅଧ୍ୟାପକ ପ୍ରାଣକୃଷ୍ଣ ପରିଜାଙ୍କ ସହିତ ମୋର ପ୍ରଥମ ବ୍ୟକ୍ତିଗତ ସାକ୍ଷାତ । ପ୍ରତ୍ୟେକ ବିଷୟକୁ ଟିକିନିଖି କରି ଦେଖିବା ତାଙ୍କର ସହଜାତ ଅଭ୍ୟାସ । ଏହି ଅଭ୍ୟାସକୁ ସେ ତାଙ୍କ ଶେଷ ଜୀବନ ପର୍ଯ୍ୟନ୍ତ ବଜାୟ ରଖିଥିଲେ ।

ଏହା ବ୍ୟତୀତ ତାଙ୍କର ଅନ୍ୟ ଏକ ବିଶେଷ ଗୁଣ ଥିଲା ସମୟାନୁବର୍ତ୍ତିତା । ସେ ଅପୂର୍ବ ଶୃଙ୍ଖଳାର ପ୍ରତୀକ ଥିଲେ । ସେହିପରି ତାଙ୍କ ପୋଷାକ ପରିଚ୍ଛଦରେ ମଧ ଅଦ୍ଭୁତ ଚାରିତ୍ରିକ ମୂଲ୍ୟବୋଧର ପରିଚୟ ମିଳୁଥିଲା । ବିଲାତୀ ବେଶପୋଷାକରେ ସେ ଥିଲେ ଖାଣ୍ଟି ସାହେବ । ସୁଟ୍ ପିନ୍ଧିବା ଓ ଇଂରାଜୀ କହିଲାବେଳେ ତାଙ୍କୁ ଯେପରି କେମ୍ବ୍ରିଜର ସାହେବ ଅଧ୍ୟାପକ ଛଡ଼ା ଅନ୍ୟ କିଛି କହିହେବ ନାହିଁ; ସେହିପରି ସାମାଜିକ ମିଳନରେ ଧୋତି, ପଞ୍ଜାବି ଓ ଚଦର ପିନ୍ଧି ଓଡ଼ିଆ କହିଲାବେଳେ ସେ ଜଣେ ଖାଣ୍ଟି ଓଡ଼ିଆ ।

ଜଣେ ବିଶିଷ୍ଟ ବୈଜ୍ଞାନିକ ଭାବେ କେବଳ ଭାରତରେ ନୁହେଁ, ଆନ୍ତର୍ଜାତିକ କ୍ଷେତ୍ରରେ ମଧ ତାଙ୍କ ପ୍ରତିଷ୍ଠା ବିଶେଷ ଉଲ୍ଲେଖଯୋଗ୍ୟ । କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ଉଦ୍ଭିଦବିଜ୍ଞାନ ବିଭାଗର ପ୍ରବୀଣ ଅଧ୍ୟାପକ ଏଫ୍. ଏଫ୍. ବ୍ଲାକ୍‌ମ୍ୟାନ୍‌ଙ୍କ ଅଧୀନରେ ଗବେଷଣା କରି ପ୍ରଫେସର ପରିଜା ସେଓର ଶ୍ୱାସକ୍ରିୟା (respiration of apples)ସମ୍ବନ୍ଧରେ ଯେଉଁ ବୈଜ୍ଞାନିକ ପ୍ରବନ୍ଧ ରଚନା କରିଥିଲେ ତାହା ୧୯୨୮ ମସିହାରୁ "Blackman and Parija Theory"ନାମରେ ବିଶ୍ୱବିଖ୍ୟାତ । କେମ୍ବ୍ରିଜ ବିଶ୍ୱବିଦ୍ୟାଳୟ ଆନୁକୁଲ୍ୟରେ "Analytic studies on plant respiration"ଶୀର୍ଷକ ପୁସ୍ତକ ୧୯୫୪ ମସିହାରେ ପ୍ରକାଶିତ ହେଲା ପରେ ଉଦ୍ଭିଦର ଶ୍ୱାସକ୍ରିୟା ବିଷୟରେ ପ୍ରଫେସର ପରିଜାଙ୍କର ଏହି ବୈଜ୍ଞାନିକ ଅବଦାନ ସାରା ପୃଥିବୀରେ ଆହୁରି ଅଧିକ ସମ୍ମାନିତ ହୋଇଥିଲା ।

ଏହିଠାରେ ଆମେ ଶୁଣିଥିବା ଗୋଟିଏ ଘଟଣା ମୋର ମନେପଡୁଛି । ଥରେ ଜଣେ ବିଶିଷ୍ଟ ବୈଜ୍ଞାନିକ ଡକ୍ଟର ଏରିକ୍ ଅଶ୍ୱବି କାନାଡ଼ାର ଟରଣ୍ଟୋ ସହରରେ ଇଂରେଜ ରାଜ୍ୟଗୋଷ୍ଠୀ ରାଷ୍ଟ୍ରଗୁଡ଼ିକର ବିଶ୍ୱବିଦ୍ୟାଳୟ କୁଳପତି ଓ ପ୍ରତିନିଧିମାନଙ୍କର ସମ୍ମିଳନୀରେ ପରିଜାଙ୍କ କୋଟ୍‌ରେ ମରାହୋଇଥିବା ନାମଫଳକକୁ ଦେଖି ପରିଜାଙ୍କୁ ପଚାରିଲେ, "ଆପଣଙ୍କ ନାମ ତ ଏକ ପ୍ରାଚୀନ ସୁବିଦିତ(classical)ନାମ ।" ଉତ୍ତରରେ ପରିଜା କହିଲେ, "ହଁ, ମୁଁ ସେହି କ୍ଲାସିକାଲ ପରିଜା, କିନ୍ତୁ ବର୍ତ୍ତମାନ ଅଶ୍ମୀଭୂତ ହୋଇଯାଇଛି ।" ଏହି ଘଟଣାରୁ ଜଣେ ସ୍ୱନାମଧନ୍ୟ ଉଦ୍ଭିଦବିଜ୍ଞାନୀ ଭାବରେ ପ୍ରଫେସର ପରିଜା କିପରି ଅନ୍ତର୍ଜାତୀୟ ସ୍ତରରେ ଉଚ୍ଚ ସ୍ଥାନ ଅଧିକାର କରିଥିଲେ, ତାହା ଅନୁମାନ କରିହୁଏ ।

ପ୍ରାଚୀନ ଓଡ଼ିଆ ସାହିତ୍ୟରେ ତାଙ୍କର ଗଭୀର ଅଧ୍ୟୟନ ଥିଲା । କଥା ପ୍ରସଙ୍ଗରେ ସେ ଅତିବଡ଼ି ଜଗନ୍ନାଥ ଦାସଙ୍କ ଭାଗବତ ପଦ ସବୁ ଆବୃତ୍ତି କରୁଥିଲେ । ପ୍ରାଚୀନ କାବ୍ୟକବିତା ଓ ଓଡ଼ିଆରେ ଢଗଢମାଳିର ଉଦାହରଣ ଦେଇ ସେ ଆମ୍ଭମାନଙ୍କୁ ଚମକୃତ କରି ଦେଉଥିଲେ । ଉଦ୍ଭିଦବିଜ୍ଞାନର ଜଣେ ବିଖ୍ୟାତ ଅଧ୍ୟାପକଙ୍କର ଓଡ଼ିଆ ଭାଷା ଓ ସାହିତ୍ୟରେ ଏପରି ଗଭୀର ଜ୍ଞାନ ଛାତ୍ରସମାଜକୁ ଅଭିଭୂତ କରୁଥିଲା ।

କଟକ ଜିଲ୍ଲାର ବାଲିକୁଦା ଥାନା ଅନ୍ତର୍ଗତ ଇଛାପୁର ଗ୍ରାମରେ ୧୮୯୧ ମସିହା ଅପ୍ରେଲ ୧ ତାରିଖରେ ପ୍ରଫେସର ପରିଜା ଜନ୍ମଗ୍ରହଣ କରିଥିଲେ । ନିଜର ଐକାନ୍ତିକ ନିଷ୍ଠା ଓ ଅଧ୍ୟବସାୟ ଯୋଗୁଁ ସେ ଉନ୍ନତିର ଶିଖରରେ ପହଞ୍ଚି ପାରିଥିଲେ । ସେ ୧୯୩୮ ମସିହାରୁ ୧୯୪୫ ମସିହା ପର୍ଯ୍ୟନ୍ତ ରେଭେନ୍ସା କଲେଜର ଅଧ୍ୟକ୍ଷ, ୧୯୪୩ରୁ ୧୯୪୮ ପର୍ଯ୍ୟନ୍ତ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି, ୧୯୫୫ରେ ପୁନର୍ବାର କୁଳପତି, ୧୯୫୨ରେ ବାଲିକୁଦା ନିର୍ବାଚନମଣ୍ଡଳୀରୁ ଓଡ଼ିଶା ବିଧାନସଭାର ନିର୍ବାଚିତ ନିର୍ଦ୍ଦଳୀୟ ବିଧାୟକ, ଓଡ଼ିଶାର ପ୍ରଥମ କୃଷି-ନିର୍ଦ୍ଦେଶକ, ଭାରତୀୟ ବିଜ୍ଞାନ-କଂଗ୍ରେସର ସଭାପତି, ଜାତୀୟ ଭାଷା-କମିସନ୍‌ର ସଭ୍ୟ, ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନ୍‌ର ସାଧାରଣ ଶିକ୍ଷା କମିଟିର ଚେୟାରମ୍ୟାନ୍ ଓ ବହୁ ଜାତୀୟ ତଥା ଅନ୍ତର୍ଜାତୀୟ ଅନୁଷ୍ଠାନର ଉଚ୍ଚ ପଦବୀରେ ଅଧିଷ୍ଠିତ ହୋଇ ନିଷ୍ଠା ଓ ଦକ୍ଷତାର ସହ ଦାୟିତ୍ୱ ତୁଲାଇଥିଲେ ।

ବିଗତ ୧୯୭୮ ମସିହା ଜୁନ୍ ୨ ତାରିଖରେ ଏହି ମହାପୁରୁଷ ଆମ ସମସ୍ତଙ୍କ ଠାରୁ ବିଦାୟ ନେଇ ଚାଲିଯାଇଛନ୍ତି । ତାଙ୍କ ବିୟୋଗ ଦେଶର ଶିକ୍ଷା କ୍ଷେତ୍ରରେ ଏପରି ଏକ ଶୂନ୍ୟ ସ୍ଥାନ ସୃଷ୍ଟି କରିଛି, ଯାହାକି ପୂରଣ ହେବା ଅସମ୍ଭବ ।

ଡକ୍ଟର ପରିଜାଙ୍କ ପବିତ୍ର ସ୍ମୃତିରକ୍ଷା ନିମିତ୍ତ ରାଜ୍ୟ ସ୍ତରରେ "ପ୍ରଫେସର ପରିଜା ସ୍ମୃତି ପରିଷଦ" ଗଠିତ ହୋଇ ୧୯୭୯ ମସିହାଠାରୁ ଆଜିଯାଏ କାର୍ଯ୍ୟ କରି ଆସୁଛି । ମୁଁ ଉକ୍ତ ସଂଗଠନ ସହିତ ଆରମ୍ଭରୁ ସଂପୃକ୍ତ ଏବଂ ଏବେ ଉକ୍ତ ପରିଷଦର ସଭାପତି ଅଛି । ତାଙ୍କ ସ୍ମୃତି ଉଦ୍ଦେଶ୍ୟରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ପରିଜା ପ୍ରଫେସର ନିଯୁକ୍ତି ଓ ପରିଜାସ୍ମାରକୀ ବକ୍ତୃତାମାଳାର ଆୟୋଜନ ସହିତ ଅନ୍ୟାନ୍ୟ ପଦକ୍ଷେପମାନ ନିଆଯାଉଛି ।

(ଶ୍ରୀ ବସନ୍ତ କୁମାର ରାୟଙ୍କ ସୌଜନ୍ୟରୁ ପ୍ରାପ୍ତ)

# ଡକ୍ଟର ପ୍ରାଣକୃଷ୍ଣ ପରିଜା – ଏକ ଅମ୍ଳାନ ପ୍ରତିଭା

**ରାଧାଚରଣ ଦାସ**

ଶିକ୍ଷାଜଗତରେ ଡକ୍ଟର ପ୍ରାଣକୃଷ୍ଣ ପରିଜା ଥିଲେ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ, ଯାହାର ପ୍ରତିଭା ସବୁଦିନ ପାଇଁ ଅମ୍ଳାନ ରହିଥିବ । ଉଦ୍ଭିଦବିଜ୍ଞାନରେ ସେ ନିଜର ଗବେଷଣାରେ ପୃଥିବୀରେ ସୁପରିଚିତ । ତାଙ୍କ ଭଳି ଯୋଗ୍ୟ ସନ୍ତାନ ଲାଭ କରି ଓଡ଼ିଶା ଧନ୍ୟ ହୋଇଛି । ଓଡ଼ିଶାର ଶିକ୍ଷାର ବିକାଶରେ ତାଙ୍କର ଅବଦାନ ଅବିସ୍ମରଣୀୟ । ଉଦ୍ଭିଦବିଜ୍ଞାନର ଅଧ୍ୟାପକ ଭାବରେ, ରେଭେନ୍ସା କଲେଜର ଅଧ୍ୟକ୍ଷ ଭାବରେ ଓ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଭାବରେ ସେ ଯେଉଁ ଜ୍ଞାନର ଆଲୋକ ବିକିରଣ କରୁଥିଲେ ଏବଂ ଅସଂଖ୍ୟ ଲୋକଙ୍କର ଜୀବନକୁ ସତ୍‌ମାର୍ଗରେ ବିକଶିତ କରିବା ପାଇଁ ପ୍ରଭାବିତ କରୁଥିଲେ, ତାହା ଭୁଲି ହେବ ନାହିଁ ।

୧୯୪୫ ମସିହାରେ ମୁଁ ଯେତେବେଳେ ରେଭେନ୍ସା କଲେଜରେ ପଦାର୍ଥବିଜ୍ଞାନର ଅଧ୍ୟାପକ ଭାବରେ ନିଯୁକ୍ତି ପାଏ, ସେତେବେଳକୁ ଡକ୍ଟର ପରିଜା ରେଭେନ୍ସା କଲେଜର ଅଧ୍ୟକ୍ଷ ପଦ ଛାଡ଼ି କୃଷିବିଭାଗ ନିର୍ଦ୍ଦେଶକ ହେଲେ ଓ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ପଦରେ ମଧ୍ୟ ରହିଲେ । ତଥାପି ତାଙ୍କର ପ୍ରଭାବ ରେଭେନ୍ସା କଲେଜରେ ଅନୁଭୂତ ହେଉଥାଏ । ପରିଚ୍ଛନ୍ନତା, ନିୟମାନୁବର୍ତ୍ତିତା ଓ ସମୟଜ୍ଞାନର ଯେଉଁ ଆଦର୍ଶ ସେ ତାଙ୍କ ଜୀବନରେ ନିଜର ଆଚରଣରେ ଦେଖାଇଥିଲେ, ତାହାର ପ୍ରଭାବ ମୁଁ ରେଭେନ୍ସା କଲେଜରେ ସେ ସମୟରେ ଦେଖିବାକୁ ପାଇଥିଲି । ସେ ସମୟରେ କଲେଜର କୋଠାବାଡ଼ି ଭିତର ଓ ବାହାର ସବୁବେଳେ ପରିଷ୍କାର ଥିଲା । କୋଠାର ମଧ୍ୟଭାଗରେ ସୁନ୍ଦର ବଗିଚା ଓ ଘାସପଡ଼ିଆ ଥିଲା । କଲେଜର ନିୟମକାନୁନ୍ ପ୍ରତି ସମସ୍ତଙ୍କର ପ୍ରଗାଢ଼ ଆନୁଗତ୍ୟ ଥିଲା ଓ ତାକୁ ମାନି ଚଳୁଥିଲେ । ସମୟ ନିର୍ଘଣ୍ଟ ଅନୁଯାୟୀ ଠିକ୍ ସମୟରେ ସମସ୍ତ କାର୍ଯ୍ୟ ପରିଚାଳିତ ହେଉଥିଲା । ଏହିସବୁ କାର୍ଯ୍ୟରେ ଡକ୍ଟର ପରିଜାଙ୍କ ପୂର୍ବ ପରିଚାଳନା ଓ ପ୍ରଭାବ ଥିଲା ।

ଡକ୍ଟର ପରିଜା ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଭାବରେ ଅନେକ ବର୍ଷ ରହିଥିଲେ ଏବଂ ତାଙ୍କର ପରିଚାଳନାରେ ବିଶ୍ୱବିଦ୍ୟାଳୟର ଗୁଣାତ୍ମକ ମାନ ଏତେ ଉଚ୍ଚ ହୋଇ ପାରିଥିଲା ଯେ ସାରା ଭାରତରେ ତାହାର ସୁନାମ ଥିଲା । ଏହି ବିଶ୍ୱବିଦ୍ୟାଳୟର ସ୍ନାତକମାନ ସହଜରେ ଅନ୍ୟ ବିଶ୍ୱବିଦ୍ୟାଳୟମାନଙ୍କରେ ସ୍ନାତକୋତ୍ତର ଶିକ୍ଷାଲାଭର ସୁବିଧା ପାଇ ପାରୁଥିଲେ । ଡକ୍ଟର ପରିଜାଙ୍କ ସମୟରେ ରେଭେନ୍ସା କଲେଜରେ

ବିଭିନ୍ନ ବିଷୟରେ ଏମ୍. ଏ. ଓ ଏମ୍. ଏସ୍‌ସି. ଶିକ୍ଷା ଖୋଲା ଯାଇଥିଲା ଏବଂ ଅତି ଉଚ୍ଚକୋଟୀର ଶିକ୍ଷା ଦିଆ ଯାଉଥିଲା । ଏହା ବ୍ୟତୀତ ବିଭିନ୍ନ ବିଷୟରେ ଗବେଷଣା କରି ପିଏଚ୍. ଡି. ଡିଗ୍ରି ଲାଭର ସୁବିଧା ବି କରାଯାଇଥିଲା । ଓଡ଼ିଶାର ଛାତ୍ରମାନେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଶିକ୍ଷା ଶେଷ କରି ଅନ୍ୟ ପ୍ରଦେଶ/ରାଜ୍ୟରେ ଅଧ୍ୟାପକ ଭାବେ ନିଯୁକ୍ତି ପାଉଥିଲେ ଏବଂ ଅନେକେ ବିଦେଶରେ ଶିକ୍ଷା ଓ ନିଯୁକ୍ତି ପାଇଁ ଯାଉଥିଲେ ।

ଡକ୍ଟର ପରିଜା ଏକ ସୁଦକ୍ଷ ପରିଚାଳକ ଥିଲେ । ସେ ବିଶ୍ୱବିଦ୍ୟାଳୟର ନୀତି ନିୟମ ସହିତ ଭଲ ଭାବରେ ପରିଚିତ ଥିଲେ ଏବଂ ସେଥିରୁ କୌଣସି ବିଚ୍ୟୁତି କରିବାକୁ ଦେଉ ନ ଥିଲେ । ସେ ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ୍, ସିନେଟ୍ ଓ ଏକାଡେମିକ୍ କାଉନ୍‌ସିଲର ସଭାଗୁଡ଼ିକୁ ଏତେ ଦକ୍ଷତାର ସହିତ ପରିଚାଳିତ କରୁଥିଲେ ଯେ କୌଣସି ସଭା ଅଧଘଣ୍ଟାକରୁ ଅଧିକ ସମୟ ଲାଗୁ ନ ଥିଲା । କାରଣ ସଭାକୁ ଆସିବା ପୂର୍ବରୁ ଡକ୍ଟର ପରିଜା ସଭାର ବିଷୟଗୁଡ଼ିକର ସମସ୍ତ ତଥ୍ୟ ଓ ତତ୍ ସମ୍ବନ୍ଧୀୟ ନିୟମକାନୁନ୍ ଭଲ ଭାବରେ ଅଧ୍ୟୟନ କରିଥାନ୍ତି ଏବଂ ପ୍ରତ୍ୟେକ ବିଷୟ ଉତ୍‌ଥାପନ କରି ସଂକ୍ଷେପରେ ସେହି ତଥ୍ୟ ନିୟମକାନୁନ୍ ବୁଝାଇ ଦିଅନ୍ତି । ଏଣୁ ସିଦ୍ଧାନ୍ତରେ ପହଞ୍ଚିବା ପାଇଁ ସମୟ ଲାଗେ ନାହିଁ । କୌଣସି ବ୍ୟକ୍ତି ଅବାନ୍ତର ବା ଅଯୌକ୍ତିକ କଥା କହିଲେ ତାଙ୍କୁ ତାହା କହିବାକୁ ଅନୁମତି ଦିଅନ୍ତି ନାହିଁ । ଏଣୁ ସମସ୍ତ ବିଷୟ ଅଧଘଣ୍ଟାକ ମଧ୍ୟରେ ଆଲୋଚିତ ହୋଇଯାଇ ସଭା ସରିଯାଏ । ତାଙ୍କ ସମୟରେ ଛାତ୍ର, ଶିକ୍ଷକ ବା କର୍ମଚାରୀମାନଙ୍କର ଆନ୍ଦୋଳନ ବା ଧାରଣା କେବେ ହେଉ ନ ଥିଲା । କାରଣ ସମସ୍ତଙ୍କର ତାଙ୍କ ପ୍ରତି ପ୍ରଗାଢ଼ ଭକ୍ତି ଓ ଶ୍ରଦ୍ଧା ଥିଲା ଏବଂ ତାଙ୍କର ଶାସନ ଯେ ନ୍ୟାୟୋଚିତ ଓ ନୀତିଗତ ଏଥିରେ ସମସ୍ତଙ୍କର ବିଶ୍ୱାସ ଥିଲା ।

ଡକ୍ଟର ପରିଜା ସମୟକୁ ଅତି ମୂଲ୍ୟବାନ ଭାବନ୍ତି ଓ ଅଯଥାରେ ସମୟ ନଷ୍ଟ କରିବା ସହ୍ୟ କରିପାରନ୍ତି ନାହିଁ । କୌଣସି କାର୍ଯ୍ୟ ଠିକ୍ ସମୟରେ ନ ହେଲେ, ସେ ଅତି ବିଚଳିତ ହୋଇପଡ଼ନ୍ତି । ଥରେ ମେଡିକାଲ୍ କଲେଜର ବାର୍ଷିକ ଉତ୍ସବରେ ତାଙ୍କୁ ପ୍ରଧାନ ଅତିଥି ଭାବରେ ନିମନ୍ତ୍ରିତ କରାଯାଇଥିଲା । ସେ ଠିକ୍ ସମୟରେ ସଭାସ୍ଥଳରେ ପହଞ୍ଚି ଦେଖିଲେ ଯେ, ଅନ୍ୟାନ୍ୟ ନିମନ୍ତ୍ରିତ ବ୍ୟକ୍ତିମାନେ ଆସି ନାହାନ୍ତି ଏବଂ ଅଳ୍ପସଂଖ୍ୟକ ଛାତ୍ର ଓ ଅଧ୍ୟାପକ ଆସିଛନ୍ତି । କିନ୍ତୁ ଡକ୍ଟର ପରିଜା କାହାରିକୁ ଅପେକ୍ଷା ନ କରି ନିଜର ଭାଷଣ ଆରମ୍ଭ କରିଦେଲେ ଏବଂ ତାହା ସରିବା ପରେ ସଭା ଛାଡ଼ି ଚାଲିଗଲେ । ଏଣୁ ଡକ୍ଟର ପରିଜାଙ୍କୁ ଯେଉଁ ସଭାକୁ ନିମନ୍ତ୍ରିତ କରାଯାଇଥାଏ, ତାହା ଠିକ୍ ସମୟରେ ଆରମ୍ଭ ହୋଇ ଠିକ୍ ସମୟରେ ଶେଷ ହୁଏ । ବିଶ୍ୱବିଦ୍ୟାଳୟର ସମସ୍ତ କାର୍ଯ୍ୟ ବି ଠିକ୍ ସମୟ ସୂଚୀ ଅନୁଯାୟୀ ସେ ପରିଚାଳିତ କରୁଥିଲେ । ତାଙ୍କ

ସମୟରେ ବିଶ୍ୱବିଦ୍ୟାଳୟର ସମସ୍ତ ପରୀକ୍ଷା ଠିକ୍ ସମୟରେ ହେଉଥିଲା ଏବଂ ପରୀକ୍ଷା ଶେଷ ହେବା ଛଅ ସପ୍ତାହରେ ପରୀକ୍ଷା ଫଳ ବାହାରୁଥିଲା । ଏପ୍ରିଲ ଶେଷ ସୁଦ୍ଧା ସମସ୍ତ ପରୀକ୍ଷା ଶେଷ ହେଉଥିଲା ଏବଂ ଜୁନ୍ ୧୫ ସୁଦ୍ଧା ସମସ୍ତ ପରୀକ୍ଷା ଫଳ ବାହାରୁଥିଲା ।

ବିଶ୍ୱବିଦ୍ୟାଳୟର କୁଳପତି ପଦରୁ ଅବସର ନେଲା ପରେ ସୁଦ୍ଧା ଡକ୍ଟର ପରିଜା ନିଜର ବିଷୟ ଉଦ୍ଭିଦବିଜ୍ଞାନରେ ଗବେଷଣା କରୁଥିଲେ ଏବଂ ବହୁ ବର୍ଷ ପର୍ଯ୍ୟନ୍ତ ପିଏଚ୍. ଡି. ଛାତ୍ରଙ୍କ ଗବେଷଣା ତତ୍ତ୍ୱାବଧାନ କରୁଥିଲେ । ଓଡ଼ିଶାର ସମସ୍ତ ଶିକ୍ଷା ବିଷୟକ ସମସ୍ୟାରେ ତାଙ୍କର ପରାମର୍ଶ ନିଆଯାଉଥିଲା । ଓଡ଼ିଶାର ଶିକ୍ଷାର ଉନ୍ନତି ପାଇଁ ତାଙ୍କର ଅବଦାନ ଅତୁଳନୀୟ । ସେ ଚିରଦିନ ସ୍ମରଣୀୟ ହୋଇ ରହିବେ ।

# ବିଶିଷ୍ଟ ଶିକ୍ଷାଗୁରୁ

**ରାଧାନାଥ ରଥ**

ଭାରତର ଅନ୍ୟତମ ଶ୍ରେଷ୍ଠ ଶିକ୍ଷାବିତ୍, ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ବୈଜ୍ଞାନିକ, ଉତ୍କଳ ବିଶ୍ୱବିଦ୍ୟାଳୟର ଅନ୍ୟତମ ପ୍ରତିଷ୍ଠାତା ଓ ପ୍ରଥମ ନିର୍ବାଚିତ କୁଳପତି ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କର ପୂର୍ବାହ୍ନ ୧୧ଟା ୫୫ ମିନିଟ୍‌ରେ ତାଙ୍କ କଟକ କାଣ୍ଟନମେଣ୍ଟରୋଡ୍ ବାସଭବନରେ ଶେଷ ନିଃଶ୍ୱାସ ତ୍ୟାଗ ଫଳରେ ଭାରତ କାହିଁକି ସମଗ୍ର ପୃଥିବୀର ଶିକ୍ଷାଜଗତରୁ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ତିରୋହିତ ହୋଇଗଲେ । ମାତ୍ର ଏହାର ଅଠର ଦିନ ତଳେ ତାଙ୍କର ସହଧର୍ମିଣୀ ଶ୍ରୀମତୀ ସୁନ୍ଦରମଣୀ ପରିଜାଙ୍କର ବିୟୋଗ ଘଟିଥିଲା । ପରିଜା ଦମ୍ପତି ଆଦର୍ଶ ଦମ୍ପତି ଭାବରେ ଓଡ଼ିଶାରେ ସୁବିଦିତ । ଡକ୍ଟର ପରିଜା ଯଥାର୍ଥରେ ଆଧୁନିକ ଓଡ଼ିଶାର ଶିକ୍ଷାଗୁରୁ । ଆଧୁନିକ ଓଡ଼ିଶାର ଶିକ୍ଷିତ ଲୋକଙ୍କ ମଧ୍ୟରୁ ପ୍ରାୟ ସମସ୍ତେ କୌଣସି ନା କୌଣସି ସମୟରେ ତାଙ୍କର ଛାତ୍ରଭାବରେ ତାଙ୍କର ଶିକ୍ଷା ଓ ଆଦର୍ଶରେ ଅନୁପ୍ରାଣିତ ହୋଇଛନ୍ତି । ସେ ଶିକ୍ଷା ଓ ସଂସ୍କୃତି କ୍ଷେତ୍ରରେ ସର୍ବୋଚ୍ଚ ଆଲୋକସ୍ତମ୍ଭରୂପେ ବିଗତ ଅର୍ଦ୍ଧଶତାବ୍ଦୀରୁ ଅଧିକକାଳ ଓଡ଼ିଶା ଓ ଭାରତକୁ ତେଜୋଦୀପ୍ତ କରିଯାଇଛନ୍ତି । ତାଙ୍କର ବହୁମୁଖୀ ପ୍ରତିଭାର ସ୍ୱାକ୍ଷର ଓଡ଼ିଶାର ସବୁ କ୍ଷେତ୍ରରେ ଦେଖାଯାଏ । ଦରିଦ୍ରତମ ଅବସ୍ଥାରୁ ମଧ୍ୟ ମନୁଷ୍ୟ ନିଜର ପ୍ରତିଭା ସାଧନା, ଅଧ୍ୟବସାୟ, ମନୋବଳ ଓ ଚରିତ୍ରବତ୍ତା ଦ୍ୱାରା କିପରି ଜୀବନର ସର୍ବୋଚ୍ଚ ସୋପାନ ଆରୋହଣ କରିପାରେ, ତାହା ସ୍ୱର୍ଗୀୟ ଡକ୍ଟର ପରିଜାଙ୍କର ଜୀବନରେ ପରିସ୍ଫୁଟ । ୧୮୯୧ ସାଲ ଅପ୍ରେଲ ପହିଲା ଦିନ କଟକ ଜିଲ୍ଲାର ବାଲିକୁଦା ଅଞ୍ଚଳର ଗୋଟିଏ ସାଧାରଣ ପଲ୍ଲୀଗ୍ରାମରେ ଜନ୍ମଲାଭ କରିଥିଲେ । ଦାରିଦ୍ର୍ୟ ବିରୋଧରେ କଠୋର ସଂଗ୍ରାମ କରି ନିଜର ମେଧା ଅଟଳ ସଙ୍କଳ୍ପ, ସାଧନା ଓ ଚରିତ୍ରବତ୍ତା ବଳରେ ସେ ଯେପରି ଭାରତର ଏକ ଶ୍ରେଷ୍ଠ ଛାତ୍ର ଓ ପରେ ଏକ ଶ୍ରେଷ୍ଠ ଶିକ୍ଷାବିତ୍ ଓ ଆଚାର୍ଯ୍ୟ ହେବାର ଗୌରବ ଅର୍ଜନ କଲେ, ତାହା ଭାରତର ଯୁବସମ୍ପ୍ରଦାୟ ସମୟରେ ଚିରକାଳ ଏକ ମହାନ୍ ଆଦର୍ଶ ହୋଇ ରହିବ, ଏଥିରେ ସନ୍ଦେହ ନାହିଁ । ତାଙ୍କର କର୍ମମୟ ଜୀବନ ଯଥାର୍ଥରେ ସାଧନା ଓ ସଂଯମର ଏକ ଅପୂର୍ବ କାହାଣୀ । ଚାଟଶାଳୀରେ ପଢ଼ିବାଦିନୁ ସେ ଯେଉଁ ନିୟମାନୁବର୍ତ୍ତିତା, ଅଧ୍ୟବସାୟ ଓ କର୍ତ୍ତବ୍ୟବୋଧର ଆଦର୍ଶ ଅନୁସରଣ କରି ଚାଲିଥିଲେ, ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ତାହା ତାଙ୍କଠାରେ ଦେଖାଯାଉଥିଲା । ଏହାରି ବଳରେ ସେ ଜୀବନରେ ଅସାମାନ୍ୟ କୃତିତ୍ୱ ବିଭିନ୍ନ କ୍ଷେତ୍ରରେ ଅର୍ଜନ କରି ଆଜି ସମଗ୍ର ଦେଶର ନମସ୍ୟ ହୋଇଛନ୍ତି । ପିଲାଦିନୁ ସେ ଶ୍ରେଷ୍ଠ ଛାତ୍ରରୂପେ ଶିକ୍ଷକମାନଙ୍କର ପ୍ରିୟ ଶିଷ୍ୟ ଥିଲେ । ସମଗ୍ର ଓଡ଼ିଶାରେ ମାଇନର ପରୀକ୍ଷାରେ ସେ ପ୍ରଥମ ସ୍ଥାନ ଅଧିକାର

କରିଥିଲେ । ବିଶ୍ୱବିଦ୍ୟାଳୟ ପ୍ରବେଶିକା ପରୀକ୍ଷା ଓ ଆଇ.ଏସ୍‌ସି. ପରୀକ୍ଷାରେ ମଧ୍ୟ ସେ ଓଡ଼ିଶାରେ ପ୍ରଥମ ସ୍ଥାନ ଅଧିକାର କରି କଲିକତା ବିଶ୍ୱବିଦ୍ୟାଳୟର ଶ୍ରେଷ୍ଠ ଛାତ୍ରଙ୍କ ମଧ୍ୟରେ ଅନ୍ୟତମ ହୋଇଥିଲେ ।

କଲିକତା ପ୍ରେସିଡେନ୍‌ସି କଲେଜରୁ ଜଣେ ଅତି ମେଧାବୀ ଛାତ୍ର ରୂପେ ସେ ବିହାର-ଓଡ଼ିଶାର ସରକାରୀ ବୃତ୍ତି ଲାଭ କରି ବିଲାତର ବିଖ୍ୟାତ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ୧୯୧୪ ମସିହାରେ ଯୋଗ ଦେଇଥିଲେ । ସେଠାରେ ଉଦ୍ଭିଦ ବିଜ୍ଞାନରେ ଶ୍ରେଷ୍ଠ ସ୍ଥାନ ଅର୍ଜନ କରି ସେ ତତ୍କାଳୀନ ବିଖ୍ୟାତ ବୈଜ୍ଞାନିକ ଅଧ୍ୟାପକ ବ୍ଲାକମ୍ୟାନଙ୍କ ସହ ଗବେଷଣା କରି ଉଦ୍ଭିଦବିଜ୍ଞାନରେ ଯେଉଁ ନୂତନ ତତ୍ତ୍ୱ ଉଦ୍ଭାବନ କରିଥିଲେ ତାହା ତାଙ୍କୁ ଆନ୍ତର୍ଜାତିକ କ୍ଷେତ୍ରରେ ଚିରଭାସ୍ୱର କରି ରଖିବ । ସେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରୁ ଯେଉଁ ସମ୍ମାନ ଲାଭ କରିଥିଲେ ତାଙ୍କ ପୂର୍ବରୁ ଆଉ କୌଣସି ଭାରତୀୟଙ୍କ ଭାଗ୍ୟରେ ତାହା ଘଟି ନ ଥିଲା । ଭାରତର ଶିକ୍ଷାକ୍ଷେତ୍ରରେ ପ୍ରାୟ ସବୁ ଦିଗରେ ତାଙ୍କର ସେବା ଓ ସାଧନାର ସ୍ୱାକ୍ଷର ରହିଛି । ଅଧ୍ୟୟନ, ଅଧ୍ୟାପନା ଓ ଗବେଷଣା ସବୁ କ୍ଷେତ୍ରରେ ସେ ତାଙ୍କର ଓ ତାଙ୍କ ପରବର୍ତ୍ତୀ ଯୁଗର ଆଦର୍ଶ ହୋଇ ରହି ଆସିଛନ୍ତି । ତାଙ୍କର ସରଳ, ନିରାଡ଼ମ୍ବର ଓ ଆଦର୍ଶନିଷ୍ଠ ଜୀବନଯୋଗୁଁ ସେ ସର୍ବଦା ସ୍ୱତନ୍ତ୍ର ସମ୍ମାନର ଅଧିକାରୀ ହୋଇଥିଲେ । ଭାରତର ବହୁ ବିଶ୍ୱବିଦ୍ୟାଳୟ ତାଙ୍କୁ ସମ୍ମାନସୂଚକ ଡକ୍ଟରେଟ୍ ଉପାଧି ଅର୍ପଣ କରି ନିଜକୁ ଗୌରବାନ୍ୱିତ ମନେ କରିଛନ୍ତି । ବିଦେଶୀ ସରକାର ଅମଳରେ ଓ.ବି.ଇ. ଓ ସ୍ୱାଧୀନତା ପରେ ପଦ୍ମଭୂଷଣ ଉପାଧିରେ ତାଙ୍କୁ ଭୂଷିତ କରାଯାଇଥିଲା । ଓଡ଼ିଆ ଭାଷା ଓ ସଂସ୍କୃତିର ବିକାଶ ଏବଂ ପ୍ରତିଷ୍ଠା ଲାଗି ସେ ତାଙ୍କ ଜୀବଦ୍ଦଶାରେ ନିରବଚ୍ଛିନ୍ନ ଭାବରେ କାର୍ଯ୍ୟ କରିଯାଇଛନ୍ତି । କୁସଂସ୍କାର ଓ ଅନ୍ଧବିଶ୍ୱାସ ରହିତ ଏକ ବିଜ୍ଞାନସମ୍ମତ ସମାଜ ପ୍ରତିଷ୍ଠା ତାଙ୍କର ଗୋଟିଏ ପ୍ରଧାନ ଲକ୍ଷ୍ୟ ଥିଲା ଓ ଏଥିଲାଗି ସେ ଅନବରତ ଉଦ୍ୟମ କରି ଆସିଛନ୍ତି । ମଧୁବାବୁଙ୍କ ପରି ଓଡ଼ିଶାର ପୁରପଲ୍ଲୀରେ ତାଙ୍କ ନାମ ସବୁଆଡ଼େ ସୁବିଦିତ । ୧୯୫୨ ସାଲରେ ସ୍ୱାଧୀନ ପ୍ରାର୍ଥୀ ଭାବରେ ବାଲିକୁଦା ନିର୍ବାଚନ ମଣ୍ଡଳୀରୁ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହେବା ସାଧାରଣ ଜୀବନରେ ତାଙ୍କର ପ୍ରତିଷ୍ଠା ଓ ଲୋକପ୍ରିୟତାର ପ୍ରମାଣ । ଓଡ଼ିଆ ଭାଷା ଓ ଓଡ଼ିଆ ସାହିତ୍ୟର ବିକାଶ କ୍ଷେତ୍ରରେ ତାଙ୍କର ଅବଦାନର ସ୍ୱୀକୃତି ସ୍ୱରୂପ ତାଙ୍କୁ ଉତ୍କଳ ସାହିତ୍ୟସମାଜ ଓ ଉତ୍କଳ ସମ୍ମିଳନୀର ସଭାପତି ଆସନ ଅର୍ପଣ କରାଯାଇଥିଲା ।

ଡକ୍ଟର ପରିଜାଙ୍କର ଜୀବନ ଏକ ପରିପୂର୍ଣ୍ଣ ଜୀବନ । ଏହା ସାଧନା ଏବଂ କୃତିତ୍ୱର ଏକ ଅନବଦ୍ୟ ସୃଷ୍ଟି । ଆଜି ଏଭଳି ଏକ ଆଦର୍ଶ ଜୀବନଦୀପ ଚିରକାଳ ଲାଗି ନିର୍ବାପିତ ହୋଇଯିବାରେ ଓଡ଼ିଶା ଓ ସମଗ୍ର ଦେଶର ଯେଉଁ କ୍ଷତି ହେଲା ତାହା ଯଥାର୍ଥରେ ଅପୂରଣୀୟ । ଆଜି ଏହି ଗଭୀର ଶୋକଦିବସରେ ଆମ୍ଭେମାନେ ତାଙ୍କର ପୁତ୍ରକନ୍ୟା ଓ ପରିବାରର ଅନ୍ୟମାନଙ୍କୁ ଏହି ଦାରୁଣ ବିୟୋଗରେ ସମବେଦନା ଜ୍ଞାପନ କରିବା ସଙ୍ଗେ ସଙ୍ଗେ ସ୍ୱର୍ଗତ ଆତ୍ମାଙ୍କ ପ୍ରତି ଆମର ଗଭୀର ଭକ୍ତି ଓ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛୁ ।

# ପ୍ରଫେସର ପରିଜା – ଏକ ବିରଳ ବ୍ୟକ୍ତିତ୍ୱ

**ରେବତୀ ଚରଣ ଦାସ**

ପ୍ରଫେସର ପ୍ରାଣକୃଷ୍ଣ ପରିଜାଙ୍କ ନାଁ କହିଲେ ବୋଧହୁଏ ମୋ ଭଳି ପ୍ରତ୍ୟେକ ଶିକ୍ଷାବିତ୍‌ର ମନରେ ଗଭୀର ଭକ୍ତି ଓ ଶ୍ରଦ୍ଧା ଜାତ ହେଉଥିବ । ମନରେ ଗର୍ବ ଆସୁଥିବ ଯେ, ସେତେବେଳର ପରାଧୀନ ଭାରତରେ ବିଭିନ୍ନ ସାମାଜିକ ଓ ରାଜନୈତିକ ପ୍ରତିକୂଳ ବାତାବରଣ ମଧ୍ୟରେ ସୁଦ୍ଧା ଓଡ଼ିଶା ତାଙ୍କ ଭଳି ଜଣେ ମହାନ୍ ଶିକ୍ଷାବିତ୍‌ଙ୍କୁ ଜନ୍ମଦେଇ ପାରିଥିଲା ।

୧୯୬୪ ମସିହାର ଘଟଣା । ମୁଁ ରେଭେନ୍ସା କଲେଜରେ ଅଳ୍ପ କିଛି ବର୍ଷ ପୂର୍ବରୁ ଅଧ୍ୟାପକ ଭାବରେ ନିଯୁକ୍ତି ପାଇଥାଏ । ଉତ୍କଳ ବିଶ୍ୱବିଦ୍ୟାଳୟରେ ପିଏଚ୍. ଡି. ଥିସିସ୍ ଦାଖଲ କରିଥାଏ । ଥିସିସ୍ ଦାଖଲ କରିବା ପରେ ଗବେଷକର ତତ୍ତ୍ୱାବଧାରକ (ଗାଇଡ୍) କେତେ ଜଣ ଶିକ୍ଷାବିତ୍‌ଙ୍କ ନାମ ଥିବା ତାଲିକାଟିଏ ଦିଅନ୍ତି । ତାହା ମଧ୍ୟରୁ ସିଣ୍ଡିକେଟ୍ ଜଣେ ଭାରତୀୟ ଏବଂ ଜଣେ ବିଦେଶୀ ପରୀକ୍ଷକଙ୍କୁ ଥିସିସ୍ ପରୀକ୍ଷା କରିବା ନିମନ୍ତେ ବାଛନ୍ତି । ମୁଁ ସେହି ସମୟରେ ଆମେରିକା ଯାଇ ଉଚ୍ଚତର ଗବେଷଣା କରିବା ପାଇଁ ଫୁଲବ୍ରାଇଟ୍ ସ୍କଲାରସିପ୍ (Fulbright Scholarship)ପାଇଥାଏ । ସମୟ ମୁତାବକ ଥିସିସ୍ ପରୀକ୍ଷା ସରିଲେ ବିଦେଶ ଯାତ୍ରା କରିବା କଥା । ମୋ କ୍ଷେତ୍ରରେ ସିଣ୍ଡିକେଟ୍ ଉପଯୁକ୍ତ ପରମ୍ପରାକୁ ଗ୍ରହଣ ନ କରି ପରୀକ୍ଷକ ବାଛିବା ପାଇଁ ବୋର୍ଡ୍ ଅଫ୍ ଷ୍ଟଡିଜ୍‌କୁ (Board of Studies) କହିଲେ ।

ଥିସିସ୍‌ର ପରୀକ୍ଷକ ସ୍ଥିର ହେବାରେ ଯେତେ ବିଳମ୍ବ ହେଉଥାଏ, ମୋର ବୃତ୍ତି ପାଇଁ ବିଦେଶ ଯାତ୍ରାର ଆଶା ସେତେ କ୍ଷୀଣ ହେଉଥାଏ । ପିଏଚ୍. ଡି. ପାଇବା କାମ ଶେଷ ନ କରି ମୁଁ ଚାଲିଯାଇପାରିବି ନାହିଁ । ଅବଶେଷରେ ବାଧ୍ୟ ହୋଇ ବିଶ୍ୱବିଦ୍ୟାଳୟର କୁଳପତି ପ୍ରଫେସର ପରିଜାଙ୍କୁ ସାକ୍ଷାତ କରିବା ପାଇଁ ସ୍ଥିର କଲି ।

ଜଣେ କନିଷ୍ଠ ଅଧ୍ୟାପକ କୁଳପତିଙ୍କୁ ସାକ୍ଷାତ୍ କରିବା ସେ ସମୟରେ ଏତେ ସହଜ ବ୍ୟାପାର ନ ଥିଲା । ଆଜିକାଲି କୁଳପତିମାନଙ୍କର ଅଫିସ୍ ପ୍ରକୋଷ୍ଠକୁ ଛାତ୍ରମାନଙ୍କର ମଧ୍ୟ ଯେଉଁଭଳି ଅବାଧ-ପ୍ରବେଶ, ସେତେବେଳେ ତାହା ଭାବି ହେବ ନାହିଁ ।

ପ୍ରଫେସର ପରିଜା ପ୍ରଥମେ ଗମ୍ଭୀର ହୋଇ ମୋ ସହିତ ଇଂରାଜୀରେ କଥା ହେଲେ । କହିଲେ, ଏଭଳି ଦେଖାକରି ଆସିବା ଅର୍ଥ ତମେ Lobby(ଧରାଧରି)

କରୁଛ । ମୁଁ ଅନୁରୋଧ କଲି ଯେ, ମୋ କଥା ଟିକେ ଦୟାକରି ଶୁଣନ୍ତୁ ଏବଂ ମୋର ଫୁଲ୍‌ବ୍ରାଇଟ୍ ସ୍କଲାରସିପ୍ କଥା କହିଲି ।

ଏହା ମଧ୍ୟରେ ଦୀର୍ଘବର୍ଷ ବିତିଯାଇଥିଲେ ମଧ୍ୟ ସେହି ଦିନଟିକୁ ମୁଁ ଭୁଲିପାରି ନାହିଁ । ମୋ କଥା ଶୁଣିବା ପରେ କୁଳପତିଙ୍କ କଠୋର ମୁହଁରେ ଜଣେ ଛାତ୍ରବତ୍ସଳ ଶିକ୍ଷକର ନମନୀୟତା ଆସିଯାଇଥିଲା । ଖୁବ୍ ପ୍ରସନ୍ନ ଭାବରେ ପଚାରିଲେ,"ତମେ ଫୁଲ୍‌ବ୍ରାଇଟ୍ ସ୍କଲାରସିପ୍ ପାଇଛ, ସତେ ?" ଏଥରର କଥା ଓଡ଼ିଆରେ ।

ଏହା ପରେ କୁଳପତି ଆଉ ଅଫିସରେ କାଗଜ-କଲମର ନିୟମକୁ ଚାଲୁ ନ ରଖି ଟେଲିଫୋନ୍, ଟେଲିଗ୍ରାମ୍ ମାଧ୍ୟମରେ ହିଁ ନିର୍ଦ୍ଦେଶମାନ ଦେଇଥିଲେ, ଯେଭଳିକି ଥିସିସ୍ ପରୀକ୍ଷା କାର୍ଯ୍ୟ ତ୍ୱରାନ୍ୱିତ ହେଉ ଏବଂ ମୋର ବିଦେଶ ଯାତ୍ରା ପଥରେ କୌଣସି ପ୍ରତିବନ୍ଧକ ନ ରହୁ । ସେ ସମୟରେ ଡି. ପି. ଆଇ. ପଦରେ ଅଧିଷ୍ଠିତ ପ୍ରଫେସର ଡଃ ସଦାଶିବ ମିଶ୍ରଙ୍କର ସହାନୁଭୂତି ଓ ଅକୁଣ୍ଠ ସାହାଯ୍ୟକୁ ମଧ୍ୟ ମୁଁ ଭୁଲି ପାରିବି ନାହିଁ ।

ହୁଏତ ଅତୀତରେ ସେହିଭଳି କେତେ ଜଣ ଆଦର୍ଶ ଶିକ୍ଷାବିତ୍ ଏକ ଦୃଢ଼ ଭିତ୍ତିଭୂମି ତିଆରି କରି ଯାଇଛନ୍ତି ବୋଲି ଆଜିର ସ୍ଖଳିତ ସମାଜରେ ଶିକ୍ଷାବିଭାଗ ତଥାପି ତାର ମର୍ଯ୍ୟାଦା ସଂପୂର୍ଣ୍ଣ ହରାଇ ନାହିଁ ।

# ପୂଜାର୍ଘ୍ୟ

**ଇଲାଚେନ୍ଦୁ ପରିଜା**

୧୯୧୭ ମସିହା ପୃଥିବୀର ବହୁ ଦେଶରୁ ମେଧାବୀ ଛାତ୍ରବୃନ୍ଦ ବିଲାତର ପ୍ରସିଦ୍ଧ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ଉଚ୍ଚ ଶିକ୍ଷା ଲାଭ କରିବା ପାଇଁ ସମବେତ ହୋଇଛନ୍ତି । ସେମାନଙ୍କ ମଧ୍ୟରେ ଥିଲେ ସୁଭାଷ ଚନ୍ଦ୍ର ବୋଷ, ଭାରତର ସ୍ୱାଧୀନତା ସଂଗ୍ରାମରେ 'ନେତାଜୀ' ରୂପେ ଭାରତବାସୀଙ୍କ ଠାରୁ ଶ୍ରେଷ୍ଠ ସମ୍ମାନରେ ଭୂଷିତ ହେବା ପାଇଁ ଯାହାଙ୍କ ଭାଗ୍ୟରେ ଲେଖା ହୋଇଥିଲା । ସୁଭାଷ ଚନ୍ଦ୍ରଙ୍କର ମୁରବିମାନଙ୍କର ଅନୁରୋଧ ରକ୍ଷା କରି କେମ୍ବ୍ରିଜରେ ଅଧ୍ୟୟନ କରୁଥିବା ମୋର ପିତା ପ୍ରାଣକୃଷ୍ଣ ପରିଜା ସୁଭାଷ ଚନ୍ଦ୍ରଙ୍କର ସ୍ଥାନୀୟ ଅଭିଭାବକ ରହିବା ପାଇଁ ସ୍ୱୀକୃତି ପ୍ରଦାନ କରିଥିଲେ । ମୋର ପିତା କେମ୍ବ୍ରିଜରେ ସୁଭାଷ ଚନ୍ଦ୍ରଙ୍କୁ ସାଦର ସମ୍ଭାଷଣ ଜଣାଇଥିଲେ ଓ ତାଙ୍କୁ ସର୍ବବିଧ ସାହାଯ୍ୟ ସହଯୋଗ କରିଥିଲେ । ଦୁଇ ମନୀଷୀଙ୍କ ମଧ୍ୟରେ ଆଜୀବନ ଘନିଷ୍ଠ ବନ୍ଧୁତ୍ୱର ସୂତ୍ରପାତ ହୋଇଥିଲା । ସୁଭାଷ ଚନ୍ଦ୍ର ଭାରତୀୟ ସିଭିଲ ସର୍ଭିସ୍ ଚାକିରିରୁ ଇସ୍ତଫା ଦେବାକୁ ସିଦ୍ଧାନ୍ତ ଗ୍ରହଣ କଲାବେଳେ ପ୍ରଥମେ ସେ ମୋର ପିତାଙ୍କୁ ତାଙ୍କ ମନକଥା କହିଥିଲେ ।

କେମ୍ବ୍ରିଜରେ ଭାରତ ଓ ସିଂହଳ (ଶ୍ରୀଲଙ୍କା)ର ଛାତ୍ରମାନଙ୍କ ଦ୍ୱାରା ଗଠିତ ''ଭାରତୀୟ ମଜ୍‌ଲିସ୍'' ନାମକ ସାଂସ୍କୃତିକ ଅନୁଷ୍ଠାନର ସଭାପତି ଆସନ ଏହି ବିଦ୍‌ବତ୍ତା ଓଡ଼ିଆଛାତ୍ର ପ୍ରାଣକୃଷ୍ଣ ପରିଜା ମଣ୍ଡନ କରିଥିଲେ । ଭାରତର ଏକତା ଓ ସଂହତି ବଜାୟ ରଖିବା ପାଇଁ କେମ୍ବ୍ରିଜରେ ଗଢ଼ାହୋଇଥିବା 'ୟୁନିଟ୍ ଲିଗ୍' ନାମକ ଅନୁଷ୍ଠାନର ମଧ୍ୟ ସେ ସଭାପତି ଆସନ ଅଳଙ୍କୃତ କରିଥିଲେ । ୧୯୧୮ ମସିହାରେ ବିଲାତ ସରକାର ବିଲାତରେ ବାସକରୁଥିବା ଭାରତୀୟ ଛାତ୍ରମାନଙ୍କର ସୁବିଧା ଅସୁବିଧା ସମ୍ବନ୍ଧରେ ଅନୁଧ୍ୟାନ କରିବା ପାଇଁ ଲର୍ଡ଼ ଲିଟନ୍‌ଙ୍କ ଅଧ୍ୟକ୍ଷତାରେ ଏକ କମିଟି ବସାଇଥିଲେ । ''ଭାରତୀୟ ମଜ୍‌ଲିସ୍''ର ପ୍ରତିନିଧି ରୂପେ ପ୍ରାଣକୃଷ୍ଣ ପରିଜା, ସୁଭାଷ ଚନ୍ଦ୍ର ବୋଷ ଓ କେ. ଏମ୍. ଖେଡିଆ ଉକ୍ତ କମିଟି ଆଗରେ ସାକ୍ଷ୍ୟ ପ୍ରଦାନ କରିଥିଲେ । ଲୋକମାନ୍ୟ ବାଳ ଗଙ୍ଗାଧର ତିଳକ ଥରେ କେମ୍ବ୍ରିଜକୁ ଯାଇଥିଲେ । ସେ ମୋର ପିତାଙ୍କ ଅତିଥି ହୋଇ ରହିଥିଲେ ଓ ''ଭାରତୀୟ ମଜ୍‌ଲିସ୍''ରେ ଏକ ଗଭୀର ଦେଶାତ୍ମବୋଧକ ଭାଷଣ ପ୍ରଦାନ କରିଥିଲେ ।

କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ଟ୍ରାଇପସ୍ ୧ମ ବା ୨ୟ ଭାଗ ପରୀକ୍ଷାରେ ଯେଉଁ ଛାତ୍ର ଉଦ୍ଭିଦବିଜ୍ଞାନରେ ସର୍ବାଧିକ ନମ୍ବର ରଖେ ତାଙ୍କୁ ଉଚ୍ଚତର ଗବେଷଣା କରିବା ପାଇଁ ଫ୍ରାଙ୍କ ସ୍ମାର୍ଟ ଛାତ୍ରବୃତ୍ତି ପ୍ରଦାନ କରାଯାଏ । ମୋର ପିତା ହେଉଛନ୍ତି ପ୍ରଥମ ଭାରତୀୟ ଯେ କି ୧୯୧୮ ମସିହାରେ ଏହି ଛାତ୍ରବୃତ୍ତି ଲାଭ କରିବାର ଗୌରବ ଲାଭ କରିଥିଲେ । ଆଉ ଯେଉଁ ଦୁଇଜଣ ଭାରତୀୟ ଛାତ୍ର ତାଙ୍କ ପରେ ଏହି ଛାତ୍ରବୃତ୍ତି ଲାଭ କରିଥିଲେ ସେମାନେ ହେଉଛନ୍ତି ଆର୍. ଏସ୍. ଇନାମ୍‌ଦାର, ପରବର୍ତ୍ତୀ ସମୟରେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର କୃଷି ଉଦ୍ଭିଦବିଜ୍ଞାନର ମୁଖ୍ୟ ଅଧ୍ୟାପକ ଏବଂ ଚିନ୍ତାମନ୍ ଡି. ଦେଶମୁଖ, ପରବର୍ତ୍ତୀ ସମୟରେ ଭାରତର ଅର୍ଥମନ୍ତ୍ରୀ ।

ମୋର ପିତା ଅଧ୍ୟାପକ ଏଫ୍. ଏଫ୍. ବ୍ଲାକମ୍ୟାନ୍‌ଙ୍କ ତତ୍ତ୍ୱାବଧାନରେ ଉଦ୍ଭିଦର ଶ୍ୱାସକ୍ରିୟା ସମ୍ବନ୍ଧରେ ଅତି ଉଚ୍ଚକୋଟୀର ମୌଳିକ ଗବେଷଣା କରିଥିଲେ ଓ ତାହା ଲଣ୍ଡନର ପ୍ରସିଦ୍ଧ ରୟାଲ ସୋସାଇଟିର ପ୍ରସିଡିଂରେ ୧୯୨୮ ମସିହାରେ ପ୍ରକାଶିତ ହୋଇଥିଲା । ଏହି ଗବେଷଣା ଯୋଗୁଁ ମୋର ପିତାଙ୍କର ଖ୍ୟାତି ସାରା ପୃଥିବୀରେ ବ୍ୟାପି ଯାଇଥିଲା । ୧୯୫୮ ମସିହାରେ କାନାଡ଼ାର ଟରଣ୍ଟୋ ନଗରୀରେ ଇଂରେଜ ରାଜ୍ୟଗୋଷ୍ଠୀ ଅନ୍ତର୍ଗତ ବିଶ୍ୱବିଦ୍ୟାଳୟ ସମୂହ କୁଳପତିମାନଙ୍କର ଏକ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ସେହି ସମ୍ମିଳନୀରେ ମୋର ପିତା ଯୋଗ ଦେଇଥିଲେ । ଲଣ୍ଡନ ବିଶ୍ୱବିଦ୍ୟାଳୟର କୁଳପତି ଡକ୍ଟର ଏରିକ୍ ଆସବି ମୋର ପିତାଙ୍କ ପୋଷାକରେ ମରାଯାଇଥିବା ପରିଚୟପତ୍ର ଦେଖି ତାଙ୍କୁ ଉତ୍କଣ୍ଠାର ସହିତ ପଚାରିଥିଲେ, "ଆପଣ କ'ଣ ସୁପ୍ରସିଦ୍ଧ ପ୍ରଫେସର ବ୍ଲାକ୍‌ମ୍ୟାନଙ୍କ ପୁରାତନ ଛାତ୍ର ପରିଜାଙ୍କ ବନ୍ଧୁବାନ୍ଧବ କି ?" ମୋର ପିତା ଯେତେବେଳେ ତାଙ୍କୁ କହିଲେ ଯେ ସେ ନିଜେ ହେଉଛନ୍ତି ସେହି ପରିଜା, ଡକ୍ଟର ଆସବି ଭାବବିହ୍ୱଳ ହୋଇ ତାଙ୍କୁ କୁଣ୍ଢାଇ ପକାଇଥିଲେ ।

କେମ୍ବ୍ରିଜରେ ମୋର ପିତାଙ୍କ ସମ୍ମାନ କିପରି ଥିଲା ତାର ଗୋଟିଏ ଦୃଷ୍ଟାନ୍ତ । ୧୯୪୯ ମସିହାରେ ରେଭେନ୍ସା କଲେଜରେ ଉଦ୍ଭିଦବିଜ୍ଞାନ ଅଧ୍ୟାପକ ବଂଶୀଧର ସାମନ୍ତରାୟ ଲଣ୍ଡନ ଇମ୍ପିରିୟାଲ କଲେଜ ଅଫ୍ ସାଇନ୍ସ ଓ ଟେକ୍‌ନୋଲଜିରେ ଗବେଷଣା କରୁଥିଲାବେଳେ ଥରେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ଉଦ୍ଭିଦବିଜ୍ଞାନ ବିଭାଗ ଦେଖିବାକୁ ଯାଇଥିଲେ । କେମ୍ବ୍ରିଜର ପ୍ରଫେସର ଡକ୍ଟର ଜି. ଇ. ବ୍ରିଗସ୍ ତାଙ୍କ ପୁଅକୁ ଡାକି କହିଲେ ତାଙ୍କୁ ଟିକିଏ ଡିପାର୍ଟମେଣ୍ଟ ଦେଖାଇଦିଅ । ବୁଲିଲାବେଳେ ଦୈବାତ୍ ବଂଶୀଧର ସାମନ୍ତରାୟଙ୍କର ଶିଢ଼ି ଉପରେ ପ୍ରଫେସର ବ୍ରିଗସ୍‌ଙ୍କ ସହିତ ସାକ୍ଷାତ ହୋଇଗଲା ଓ ସେ ତାଙ୍କୁ କହିଲେ ଯେ ସେ ପ୍ରଫେସର ପରିଜାଙ୍କ ଛାତ୍ର । ଏକଥା ଶୁଣି ପ୍ରଫେସର ବ୍ରିଗସ୍ ଅତିଶୟ ଆନନ୍ଦିତ ହେଲେ ଓ ମୋ ପିତାଙ୍କ କୁଶଳାଦି ପଚାରି ବୁଝିଲେ ଓ ତାଙ୍କ ପୁଅକୁ କହିଲେ, ବଂଶୀଧର ସାମନ୍ତରାୟଙ୍କୁ ଗବେଷଣାଗାରରେ ହେଉଥିବା ସବୁ ଗବେଷଣାଗୁଡ଼ିକୁ ଟିକ୍‌ନିଖି କରି ବୁଝାଇ ଦବାକୁ ।

କେମ୍ବ୍ରିଜରେ ମୋର ପିତା କରିଥିବା ଗବେଷଣା କାର୍ଯ୍ୟର କିୟଦଂଶ ଡକ୍ଟର ବ୍ଲାକ୍‌ମ୍ୟାନ୍ ୧୯୨୮ ମସିହାରେ ତିନୋଟି ପ୍ରବନ୍ଧ ଆକାରରେ ରୟାଲ ସୋସାଇଟିର ପ୍ରସିଡିଂରେ ଛପାଇଥିଲେ । ବାକି ସବୁ ଗବେଷଣାଲବ୍ଧ ଫଳାଫଳକୁ ବିଡ଼ା ବାନ୍ଧି ସାଇତି କରି ରଖିଦେଇଥିଲେ । ତାଙ୍କ ମୃତ୍ୟୁ ପରେ ପ୍ରଫେସର ଜି.ଇ. ବ୍ରିଗସ୍ ଏହି ଅମୂଲ୍ୟ ରତ୍ନକୁ ଉଦ୍ଧାର କରି ୧୯୫୪ ମସିହାରେ 'The analytic studies in plant respiration' ଶୀର୍ଷକ ଏକ ପୁସ୍ତକ ଆକାରରେ ପ୍ରକାଶ କରିଛନ୍ତି । ଏହି ପୁସ୍ତକର ରଚୟିତା ରୂପେ ଏଫ୍. ଏଫ୍. ବ୍ଲାକ୍‌ମ୍ୟାନ୍‌ଙ୍କ ନାମ ରହିଛି । ବହିର ମୁଖବନ୍ଧରେ ପ୍ରଫେସର ବ୍ରିଗସ୍ ଉଲ୍ଲେଖ କରିଛନ୍ତି ଯେ ଏହି ବହିରେ ସନ୍ନିହିତ ସବୁ ତାତ୍ତ୍ୱିକ ବିଚାର ମୋର ପିତାଙ୍କ ଗବେଷଣାଲବ୍ଧ ଫଳାଫଳ ଉପରେ ଆଧାରିତ । ମୋର ପିତାଙ୍କ ପରେ ଓଡ଼ିଶାରୁ ଆଉ କେତେକ ଛାତ୍ର କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରିବାକୁ ଯାଇଛନ୍ତି, କିନ୍ତୁ କେମ୍ବ୍ରିଜରେ ମୋର ପିତା ଯେପରି ଛାପ ରଖିଦେଇ ଆସିଛନ୍ତି ସେପରି ଆଉ କେହି କରିପାରି ନାହାନ୍ତି ।

ବାଲ୍ୟାବସ୍ଥାରେ ମୋର ପିତାଙ୍କ ଭଳି ଜଣେ କୃତବିଦ୍ ଛାତ୍ର ଉପରେ ପରିବାରର କି ପ୍ରକାର ପ୍ରଭାବ ପଡ଼ିଥିଲା, ଯାହାକି ଭବିଷ୍ୟତରେ ତାଙ୍କୁ ଏତେ ବଡ଼ ମନୀଷୀ ରୂପେ ଗଢ଼ି ତୋଳି ପାରିଥିଲା ତାହା ପ୍ରଣିଧାନଯୋଗ୍ୟ । ମୋର ପିତା ତାଙ୍କର ଆତ୍ମଜୀବନୀରେ ଲେଖିଛନ୍ତି ଯେ ମଧ୍ୟଯୁଗର ଓଡ଼ିଆ କବି ସାରଳା ଦାସଙ୍କୁ ଆମର ପୂର୍ବପୁରୁଷ ବୋଲି ଦାବି କରାଯାଏ । ଆମ ବଂଶର ଆଭିଜାତ୍ୟ ହେଉଛି ବିଦ୍ୟାଧ୍ୟୟନ, ସତ୍ ସାହସ ଓ ସରଳ ଜୀବନଯାପନ । ପ୍ରଖ୍ୟାତଯଶା ଜ୍ଞାନୀ ଓ ଅଗାଧ ପାଣ୍ଡିତ୍ୟର ସାରଳା ଦାସଙ୍କ ଉଚ୍ଚ ଆଦର୍ଶର ଦୃଷ୍ଟାନ୍ତରୁ ପ୍ରତିଭାତ ହୁଏ ଯେ ସେ କିପରି ତାଙ୍କର ନିଜ ବଂଶର ସାଙ୍ଗିଆ ପରିତ୍ୟାଗ କରି ନିଜେ ଦେବୀ ସାରଳାଙ୍କର ଦାସ ବୋଲି ପରିଚିତ ହେବାକୁ ଶ୍ରେୟ ମଣିଥିଲେ ।

ମୋର ପିତା ତାଙ୍କ ବିଦ୍ୟାରମ୍ଭ କରିଥିଲେ ଗାଁ ଚାହାଳିରେ । ଚାହାଳି ପାଠ ଶେଷ କରି ସେ ମହାପ୍ରସାଦ ବନ୍ଧୁ ସମ୍ପର୍କୀୟ ତାଙ୍କର ଜଣେ ମଉସାଙ୍କ ପାଖରେ ଜମିଦାରୀ ରେକର୍ଡପତ୍ର ରଖିବା ପାଇଁ ଜଣେ ଶିକ୍ଷାନବିସ ରୂପେ ପ୍ରାୟ ଏକବର୍ଷ କାର୍ଯ୍ୟ କରିଥିଲେ । ଏହି ସମୟରେ ତାଙ୍କର ବାପା ବିଶ୍ୱନାଥ ପରିଜା ମୟୂରଭଞ୍ଜରୁ ଘରକୁ ଆସିଲେ ଓ ତାଙ୍କ ମା' ଜୟନ୍ତୀ ଦେବୀଙ୍କ ସହିତ କଥାବାର୍ତ୍ତା କରି ସ୍ଥିର କଲେ ଯେ ସେ ଏକ ଆଧୁନିକ ସ୍କୁଲରେ ପଢ଼ିବାକୁ ଯିବେ । ଏହିପରି ଗୋଟିଏ ମାଇନର ସ୍କୁଲ ଆମ ଗ୍ରାମଠାରୁ ୩ କି.ମି. ଦୂର ବାଳିକୁଦାରେ ଥିବାଯୋଗୁଁ ସେହିଠାରେ ତାଙ୍କର ପଢ଼ିବା ସ୍ଥିର ହେଲା । ଏହି ମାଇନର ସ୍କୁଲରେ ମୋର ପିତାଙ୍କ ନାମଲେଖା ୧୯୦୧ ମସିହା ଅପ୍ରେଲ ମାସରେ ହୋଇଗଲା ।

ଜୀବନରେ ଦୁଃଖଦୁର୍ଦ୍ଦଶା ମଧ୍ୟ ଆଶୀର୍ବାଦ ଭଳି କାମ କରିପାରେ, ଯଦି ସେ ସବୁର ମୁକାବିଲା କରିବା ପାଇଁ ଜଣେ ଲୋକର ଯଥେଷ୍ଟ ସାହସ, ଦୃଢ଼ ପ୍ରତିଜ୍ଞା, ସୁଶୃଙ୍ଖଳା ଓ ବଳବତି ଇଚ୍ଛା ଥାଏ । ଯୁବକ ପ୍ରାଣକୃଷ୍ଣ ବାଲ୍ୟକାଳରୁ ଦାରିଦ୍ର୍ୟ ବିରୋଧରେ ସଂଗ୍ରାମ କରି ପ୍ରତିଦିନ ୬ କି.ମି. ରାସ୍ତା ପାଦରେ ଚାଲି ଗାଁରୁ ମାଇନର ସ୍କୁଲକୁ ଯିବାଆସିବା କରୁଥିଲା ବେଳେ 'ତୁଳସୀ ଦୁଇ ପତ୍ରରୁ ବାସିଲା' ଭଳି ତାଙ୍କ ଚରିତ୍ରରେ ଏହିସବୁ ମହନୀୟ ଗୁଣରାଜିର ଆଭାସ ପରିସ୍ଫୁଟ ହୋଇଥିଲା । ତାଙ୍କର ବାପା ମୟୂରଭଞ୍ଜ ତାଙ୍କ ଚାକିରିକୁ ଫେରିଗଲେ ଓ ହଠାତ୍ ସେଠାରେ ତାଙ୍କ ଦେହାନ୍ତ ହୋଇଗଲା । ପ୍ରାଣକୃଷ୍ଣଙ୍କ ପଢ଼ା ଅବଶ୍ୟ ବନ୍ଦ ହେଲା ନାହିଁ । ମାଆ ଜୟନ୍ତୀ ଦେବୀ ପ୍ରତିଦିନ ସନ୍ଧ୍ୟାବେଳେ ପୁଅର ସ୍କୁଲରୁ ଫେରିବା ରାସ୍ତାକୁ ଅପେକ୍ଷା କରି ବସିଥାନ୍ତି । ଅନ୍ଧାର ହୋଇଗଲେ ବି ଘରେ ଡିବି ଜଳାନ୍ତି ନାହିଁ । କିରାସିନି ସରିଯିବ, ପୁଅ ପଢ଼ିବ କିମିତି । ପୁଅ ପିଲାଟିଏ ହେଲେ ମଧ୍ୟ ମାଆର ଯେ ସ୍ନେହକୁ ଲକ୍ଷ୍ୟକରି ଚାଲିଥାଏ । ତାଙ୍କ ମାଆ ଏକାନ୍ନବର୍ତ୍ତୀ ପରିବାରରେ ଏପରି ନିରପେକ୍ଷ ମହିଳା ଥିଲେ ଯେ ତାଙ୍କୁ ପରିବାରର ସମସ୍ତଙ୍କୁ ଖାଦ୍ୟ ପରିବେଷଣ ଦାୟିତ୍ୱ ଦିଆଯାଇଥିଲା । ଏକ ସମୟରେ ପରିବାରର ସମସ୍ତଙ୍କ ଭିତରେ ଖାଦ୍ୟପଦାର୍ଥ ବିତରଣ ଯେପରି ସମାନ ଓ ଶୃଙ୍ଖଳିତ ଭାବେ ହେବ ସେକଥା ସେ ଦେଖୁଥିଲେ । ପ୍ରାଣକୃଷ୍ଣଙ୍କ ବାପାଙ୍କ ମୃତ୍ୟୁର ପ୍ରାୟ ବର୍ଷକ ପରେ ତାଙ୍କ ମାଆ ମଧ୍ୟ ସ୍ୱର୍ଗାରୋହଣ କଲେ । ପ୍ରାଣକୃଷ୍ଣ ବାପମାଆ ଛେଉଣ୍ଡ ହୋଇଗଲେ ।

ବାଳକ ପ୍ରାଣକୃଷ୍ଣଙ୍କ ସ୍ମରଣଶକ୍ତି ଅତି ପ୍ରଖର ଥିଲା । ପ୍ରତିଦିନ ସନ୍ଧ୍ୟାବେଳେ ଘଣ୍ଟାଏ କାଳ ପଣକିଆ, ଓଡ଼ିଆ ପଦ୍ୟ, ସଂସ୍କୃତ ଶ୍ଲୋକ ଏପରିକି ଅମରକୋଷ ଆବୃତ୍ତି କରୁଥିଲେ । ସେ ମାଇନର ସ୍କୁଲରେ ଦୁଇ ତିନି ଥର ଦୋହରା ଉତ୍ତୀର୍ଣ୍ଣ (ଡବଲ ପ୍ରମୋସନ୍) ପାଇ ୧୯୦୪ ସାଲରେ ମଧ୍ୟଇଂରାଜୀ ପାଠ୍ୟ ଶେଷ କରି ସେହି ବର୍ଷ କଟକରେ ମଧ୍ୟଇଂରାଜୀ ପରୀକ୍ଷା ଦେଲେ । ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ମାସିକ ଚାରି ଟଙ୍କା ବୃତ୍ତି ପାଇଲେ । ତାଙ୍କର ଜେଜେ (ବାପାଙ୍କର ଦାଦା) ତାଙ୍କୁ ପଢ଼ିବାକୁ କଟକ ପଠାଇଲେ ଓ ୧୯୦୪ ମସିହାରେ ସେ ରେଭେନ୍ସା କଲେଜିଏଟ୍ ସ୍କୁଲରେ ନାମ ଲେଖାଇଲେ । ସ୍କୁଲର ହେଡ୍‌ମାଷ୍ଟ୍ର ଥିଲେ ଶ୍ରୀ ମୋହିନୀମୋହନ ଚୌଧୁରୀ ଓ ସଂସ୍କୃତ ପଣ୍ଡିତ ଥିଲେ ଶ୍ରୀ ବିଶ୍ୱନାଥ ଶତପଥୀ । ସ୍କୁଲରେ ସେ ଫ୍ରିସିପ୍ ପାଇଲେ ।

ନାମଲେଖା ପରେ ପ୍ରାଣକୃଷ୍ଣ ଯେତେବେଳେ ସଂସ୍କୃତ ପଣ୍ଡିତଙ୍କ କ୍ଲାସକୁ ଗଲେ କ୍ଲାସର ଅନ୍ୟ ପିଲାମାନଙ୍କ ଠାରୁ ତାଙ୍କର ବୟସ ଅଧିକ ଥିଲା । ଡେଙ୍ଗା ଚେହେରା, ତନ୍ତବୁଣା ଖଦି ଖଣ୍ଡେ ପିନ୍ଧି ଖାଲି ଦେହରେ ବେକରେ ଚାଦର ପକାଇ ସେ

ଯେତେବେଳେ ଖାଲି ପାଦରେ ପଣ୍ଡିତଙ୍କ କ୍ଲାସ୍‌କୁ ପଶିଗଲେ ସବୁ ପିଲା ତାଙ୍କ ଆଡ଼କୁ ଚାହିଁରହିଲେ । ପଣ୍ଡିତ ମହାଶୟ ସେତେବେଳେ ଶତକ ବୋଲୁଥିଲେ । ତାହା ଛାଡ଼ି ସେ ମଧ୍ୟ ପ୍ରାଣକୃଷ୍ଣଙ୍କ ଆଡ଼କୁ ଚାହିଁଲେ । ତା'ପରେ ତାଙ୍କ ନାମ ପଚାରି କହିଲେ, "ଆସ, ବସ । ମୋତେ ଜଣାଯାଉଛି ତୁମର ଭବିଷ୍ୟତ୍ ଖୁବ୍ ଉଜ୍ଜ୍ୱଳ ହେବ ।"

ତାଙ୍କ ଗୁରୁଙ୍କ ଆଶୀର୍ବାଦ ଓ ଭବିଷ୍ୟତବାଣୀକୁ ସାକାର କରିବା ପାଇଁ ବାଳକ ପ୍ରାଣକୃଷ୍ଣ କଠୋର ଅଧ୍ୟୟନରେ ବ୍ରତୀ ହେଲେ । କୌଣସି ଆମୋଦ ପ୍ରମୋଦରେ ବୃଥା ସମୟ ନଷ୍ଟ କଲେ ନାହିଁ । ତାଙ୍କର ଅଧ୍ୟବସାୟ ବଳରେ ସେ ୧୯୦୯ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରୁ ଏଣ୍ଟ୍ରାନ୍ସ ପରୀକ୍ଷାରେ ଓଡ଼ିଶାରୁ ୧ମ ସ୍ଥାନ ଓ ବିଶ୍ୱବିଦ୍ୟାଳୟରେ ୯ମ ସ୍ଥାନ ଅଧିକାର କରି କୃତକାର୍ଯ୍ୟତାର ସହିତ ଉତ୍ତୀର୍ଣ୍ଣ ହେଲେ ଓ ମାସିକ ୨୦ ଟଙ୍କା ବୃତ୍ତି ପାଇଲେ । କଲିକତା ବିଶ୍ୱବିଦ୍ୟାଳୟ ଅଧୀନରେ ସେତେବେଳେ ଅବିଭକ୍ତ ବଙ୍ଗଳା, ବିହାର, ଓଡ଼ିଶା ଓ ଆସାମର ସବୁ ହାଇସ୍କୁଲ ରହିଥିଲା । ତାଙ୍କର ସଂସ୍କୃତ ପଣ୍ଡିତଙ୍କର ଆଶାକୁ ସାକାର କରି ପ୍ରାଣକୃଷ୍ଣ କଲିକତା ବିଶ୍ୱବିଦ୍ୟାଳୟରେ ସେଥର ଏଣ୍ଟ୍ରାନ୍ସ ପରୀକ୍ଷାରେ ସଂସ୍କୃତରେ ସର୍ବାଧିକ ନମ୍ବର ରଖିଥିଲେ ଓ ସେଥିପାଇଁ ସେ ବିଶ୍ୱବିଦ୍ୟାଳୟର ଜୟନାରାୟଣ ପୁରସ୍କାର ଲାଭ କଲେ ।

ପିଲାଟି ଦିନୁ ତାଙ୍କ ବାପା ଓ ମାଆଙ୍କ ପ୍ରଭାବ ଯୋଗୁଁ ପ୍ରାଣକୃଷ୍ଣ ଆତ୍ମନିର୍ଭରଶୀଳ ଥିଲେ । ସେ ଅତ୍ୟନ୍ତ କଷ୍ଟସହିଷ୍ଣୁ ଥିଲେ । ରେଭେନ୍ସା କଲେଜିଏଟ୍ ସ୍କୁଲରେ ପଢ଼ିଲାବେଳେ ଛୁଟି ଦିନମାନଙ୍କରେ ସେ କଟକରୁ ଆମ ଗାଁକୁ ୫୮ କି.ମି. ଚାଲିକରି ଯାଉଥିଲେ ଓ ଛୁଟି ପରେ ସେତିକି ରାସ୍ତା ଚାଲିକରି କଟକ ଫେରୁଥିଲେ । ତାଙ୍କୁ ୨୩ ବର୍ଷ ବୟସ ହେଲା ପର୍ଯ୍ୟନ୍ତ ସେ ଗୋଡ଼ରେ ହଳେ ଚଟି ପିନ୍ଧି ନ ଥିଲେ । ସରଳ ନିରାଡ଼ମ୍ବର ଜୀବନଯାପନ କରି ପ୍ରାଣକୃଷ୍ଣ ନୀତିବାନ୍, ସତ୍ୟନିଷ୍ଠ, କର୍ମତତ୍ପର ଓ ଅଧ୍ୟବସାୟୀ ଥିଲେ ।

୧୯୦୯ ମସିହାରେ ପ୍ରାଣକୃଷ୍ଣ ରେଭେନ୍ସା କଲେଜରେ ଆଇ. ଏସ୍‌ସି. କ୍ଲାସରେ ନାମ ଲେଖାଇଲେ । ୧୯୧୧ ମସିହାରେ ଆଇ. ଏସ୍‌ସି. ପରୀକ୍ଷାରେ ପ୍ରଥମ ଶ୍ରେଣୀରେ କଲିକତା ବିଶ୍ୱବିଦ୍ୟାଳୟରେ ଚତୁର୍ଥ ସ୍ଥାନ ଅଧିକାର କରି କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହେଲେ ଓ ମାସକୁ ୨୦ ଟଙ୍କା ବୃତ୍ତି ଲାଭ କଲେ । ରେଭେନ୍ସା କଲେଜରେ ସେତେବେଳେ ବି. ଏସ୍‌ସି. ପାଠ୍ୟ ନ ଥିବାରୁ ପ୍ରାଣକୃଷ୍ଣ କଲିକତା ଯାଇ ପ୍ରସିଦ୍ଧ ପ୍ରେସିଡେନ୍ସି କଲେଜରେ ନାମ ଲେଖାଇଲେ । ସେ ଗଣିତରେ ଅନର୍ସ ନେଲେ, ତାଙ୍କର ପାସ୍ ବିଷୟ ଥିଲା ପଦାର୍ଥବିଜ୍ଞାନ ଓ ରସାୟନବିଜ୍ଞାନ । ୧୯୧୩ ମସିହାରେ ସେ ବି. ଏସ୍‌ସି. ଅନର୍ସ ପରୀକ୍ଷା ଦେଇ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ ଓ ସେହି

ବର୍ଷ ଗଣିତଶାସ୍ତ୍ର ଏମ୍.ଏସ୍‌ସି. ଶ୍ରେଣୀରେ ନାମ ଲେଖାଇଲେ । ଏମ୍.ଏସ୍‌ସି. ପଢୁଥିଲାବେଳେ ସେ କଟକସ୍ଥିତ ଓଡ଼ିଆ ପିପୁଲ୍ସ ଆସୋସିଏସନ୍ସ ଜରିଆରେ ସ୍ନାତକୋତ୍ତର ବୃତ୍ତି ପାଇଁ ବିହାର ଓ ଓଡ଼ିଶା ସରକାରଙ୍କୁ ଦରଖାସ୍ତ କରିଥିଲେ ଓ ମାସିକ ୨୦ ଟଙ୍କା ବୃତ୍ତି ଲାଭ କରିଥିଲେ ।

ଏହି ସମୟରେ ବିହାର ଓ ଓଡ଼ିଶା ପ୍ରଦେଶ ସରକାର ଇଂଲଣ୍ଡକୁ କେତେଜଣ ଛାତ୍ରଙ୍କୁ ଉଚ୍ଚଶିକ୍ଷା ଲାଭ ପାଇଁ ପଠାଇବାକୁ ନିଷ୍ପତ୍ତି କରିଥିଲେ । ପ୍ରାଣକୃଷ୍ଣ ପରିଜ୍ଞା ଓଡ଼ିଶାରୁ ଏବଂ ଅବଦୁସ୍ ସମଦ ଖାଁ ଓ ଏସ୍. ଆର୍. ୟୁ. ଜମାନ୍ ବିହାରରୁ ବଛାଗଲେ । ୧୯୧୪ ମସିହା ଅଗଷ୍ଟ ୧୦ ତାରିଖ ଦିନ ପ୍ରାଣକୃଷ୍ଣ ବମ୍ବେ ଅଭିମୁଖେ କଲିକତା ଛାଡ଼ିଲେ ଓ ୧୪ ତାରିଖ ସକାଳେ ସେଠାରୁ ଇଂଲଣ୍ଡ ଅଭିମୁଖେ ଜାହାଜ ଧରିଲେ । ଅକ୍ଟୋବର ମାସରେ ସେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର କ୍ରାଇଷ୍ଟ'ସ କଲେଜରେ ନାମ ଲେଖାଇଲେ । ୧୯୧୫ ମସିହାରେ ସେ ଟ୍ରାଇପସ୍ ପ୍ରଥମ ଭାଗରେ ଦ୍ୱିତୀୟ ଶ୍ରେଣୀରେ ଓ ୧୯୧୭ ମସିହାରେ ଟ୍ରାଇପସ୍ ଦ୍ୱିତୀୟ ଭାଗରେ ପ୍ରଥମ ଶ୍ରେଣୀରେ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇଥିଲେ । ଏହା ପରେ ସେ ଡକ୍ଟର ଏଫ୍. ଏଫ୍. ବ୍ଲାକ୍‌ମ୍ୟାନ୍‌ଙ୍କ ତତ୍ତ୍ୱାବଧାନରେ କେମ୍ବ୍ରିଜରେ ଉଦ୍ଭିଦର ଶ୍ୱାସକ୍ରିୟା ସମ୍ବନ୍ଧରେ ଗବେଷଣା କାର୍ଯ୍ୟ କରିଥିଲେ ।

୧୯୨୧ ମସିହାରେ ପ୍ରାଣକୃଷ୍ଣ ଇଂଲଣ୍ଡରେ ରହଣି ମଧ୍ୟରେ ସେକ୍ରେଟେରୀ ଅଫ୍ ଷ୍ଟେଟ୍ ଫର୍ ଇଣ୍ଡିଆଙ୍କ ପକ୍ଷରୁ ଇଣ୍ଡିଆନ୍ ଏଡୁକେସନ୍ ସର୍ଭିସ୍‌ରେ ନିଯୁକ୍ତି ପାଇ ସର୍ଭିସ୍ ଚୁକ୍ତିନାମାରେ ଦସ୍ତଖତ କରିଥିଲେ । ଭାରତକୁ ପ୍ରତ୍ୟାବର୍ତ୍ତନ କରି ସେ ୧୯୨୧ ମସିହା ଅଗଷ୍ଟ ୪ ତାରିଖ ଦିନ ରେଭେନ୍ସା କଲେଜରେ ଉଦ୍ଭିଦବିଜ୍ଞାନରେ ପ୍ରଫେସର ରୂପେ ଯୋଗଦାନ କରିଥିଲେ । ମୋର ପିତା ତାଙ୍କ ଜୀବନରେ ବହୁ ଉଚ୍ଚ ପଦପଦବୀରେ ଅଧିରୂଢ଼ ହୋଇଥିଲେ, ବହୁ ସମ୍ମାନ ଲାଭ କରିଥିଲେ । ତାଙ୍କ ଭଳି ଏତେଗୁଡ଼ିଏ ମର୍ଯ୍ୟାଦାପୂର୍ଣ୍ଣ ପଦପଦବୀ ଓ ସମ୍ମାନର ଅଧିକାରୀ ବ୍ୟକ୍ତି ଓଡ଼ିଶାରେ ବିରଳ । ସେ ଥିଲେ ଏକାନ୍ତ ବିନୟୀ । ସେ କେବେ ତାଙ୍କ ନିଜର କୃତିତ୍ୱପୂର୍ଣ୍ଣ ଯଶ ଗାଥା କାହା ଆଗରେ ପ୍ରକାଶ କରନ୍ତି ନାହିଁ, ଏପରିକି ଆମେ ତାଙ୍କ ପୁଅଝିଅମାନେ ମଧ୍ୟ ଏ ସମ୍ବନ୍ଧରେ ବିଶେଷ କିଛି ତାଙ୍କଠୁ ଶୁଣି ନ ଥିଲୁ । ଏ ପୁସ୍ତକରେ ସନ୍ନିବେଶିତ ପ୍ରବନ୍ଧଗୁଡ଼ିକରେ ଏଗୁଡ଼ିକର ବିସ୍ତୃତ ଉଲ୍ଲେଖ ଅଛି । ତେଣୁ ସେଗୁଡ଼ିକର ପୁନରାବୃତ୍ତିରୁ ମୁଁ କ୍ଷାନ୍ତ ହେଲି ।

ଭାରତରେ ବିଜ୍ଞାନ ଓ ଶିକ୍ଷା କ୍ଷେତ୍ରରେ ପ୍ରଫେସର ପରିଜ୍ଞାଙ୍କ ଅବଦାନ ତାଙ୍କର ସମସାମୟିକ ମନୀଷୀମାନଙ୍କର ଅବଦାନର ସମକକ୍ଷ ଥିଲା । ଭାରତ, ବର୍ମା (ମିଆଁମାର) ଓ ସିଂହଳ (ଶ୍ରୀଲଙ୍କା)ର ପ୍ରାୟ ସବୁ ବିଶ୍ୱବିଦ୍ୟାଳୟ ସହିତ କୌଣସି ନା

କୌଣସି କାର୍ଯ୍ୟରେ ମୋର ପିତା ସଂଶ୍ଳିଷ୍ଟ ଥିଲେ, ବିଶେଷତଃ ପ୍ରାକ୍ଟିକାଲ ପରୀକ୍ଷା ଓ ଡକ୍ଟରେଟ୍ ପରୀକ୍ଷାରେ ସେ ପରୀକ୍ଷକ ହୋଇ ଯାଉଥିଲେ । ତାଙ୍କର ପାଣ୍ଡିତ୍ୟ ଯେପରି ଥିଲା ଅଗାଧ, ଛାତ୍ରମାନଙ୍କ ପ୍ରତି ସ୍ନେହ ଓ ବାତ୍ସଲ୍ୟମମତା ଥିଲା ଅପରିସୀମ । ସେ ଓଡ଼ିଶାର ବହୁ ଛାତ୍ରଙ୍କୁ ସୁପାରିସ ପତ୍ର ଦେଇ ଭାରତର ବିଭିନ୍ନ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରିବା ପାଇଁ ସାହାଯ୍ୟ କରୁଥିଲେ । ତାଙ୍କ ଚିଠିର ଗୁରୁତ୍ୱ ବହୁତ ରହୁଥିଲା ।

ଥରେ ମୋ ପିତାଙ୍କ ପରମବନ୍ଧୁ ପ୍ରଖ୍ୟାତ ଉଦ୍ଭିଦ ଓ ଭୂତତ୍ତ୍ୱବିଜ୍ଞାନୀ ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟର ପ୍ରଫେସର ଡକ୍ଟର ବୀରବଲ ସାହାଣୀ ଓ ମୋ ପିତା ଏକତ୍ର ଛାତ୍ରମାନଙ୍କର ଗହଣରେ ନାଗପୁର ନିକଟରେ ବୈଜ୍ଞାନିକ ଅନୁସନ୍ଧାନରେ ଯାଇଥିଲେ । ବାପା ଗୋଟିଏ ଗଛର ଜୀବାଶ୍ମ ଫଳ ସଂଗ୍ରହ କରିଥିଲେ । ଏହା ଏକ ନୂତନ ଆବିଷ୍କାର ହୋଇଥିବାରୁ ପ୍ରଫେସର ସାହାଣୀ ଏହି ଫଳର ନାମ ଦେଇଥିଲେ Enigmocarpon Parijae । ପରବର୍ତ୍ତୀ ସମୟରେ ଏହି ଗଛର ଫୁଲ ଓ ବୀଜ ଆବିଷ୍କୃତ ହେବାରୁ ଏହି ଗଛର ନାମ ପରିବର୍ତ୍ତିତ ହୋଇ ଦିଆଯାଇଥିଲା Sahania-nthus Parijae । ପ୍ରଫେସର ସାହାନୀ ତାଙ୍କର ସମସ୍ତ ସମ୍ପତ୍ତି ଦାନ କରି ଲକ୍ଷ୍ନୌ ଠାରେ ବୀରବଲ ସାହାନୀ ଇନ୍‌ଷ୍ଟିଚିଉଟ୍ ଅଫ୍ ପେଲିଓ ବଟାନୀ ସ୍ଥାପନ କରିଥିଲେ ଓ ଏହାର ନିର୍ଦ୍ଦେଶକ ରୂପେ ରହିଥିଲେ । ମୋର ପିତା ଏହି ଇନ୍‌ଷ୍ଟିଚିଉଟ୍‌ର ସ୍ଥାପନା ସମୟରୁ ଏହାର ପରିଚାଳନା ସମିତିର ସଦସ୍ୟ ରୂପେ ମନୋନୀତ ହୋଇ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ଏହି ଅନୁଷ୍ଠାନର ସର୍ବବିଧ ଉନ୍ନତିକଳ୍ପେ ମନପ୍ରାଣ ଢାଳି କାର୍ଯ୍ୟ କରିଥିଲେ ।

ନୀତିନିୟମ ମାନି ଚଳିବା ମୋର ପିତାଙ୍କର ଏକ କଠୋର ଅଭ୍ୟାସରେ ପରିଣତ ହୋଇଯାଇଥିଲା । ମୋର ବଡ଼ଭଉଣୀ ସୌଦାମିନୀ ୧୯୪୩ ମସିହାରେ ପାଟନା ମେଡିକାଲ କଲେଜରେ ନାମ ଲେଖାଇବା ପାଇଁ ଓଡ଼ିଶା ସରକାରଙ୍କ ଦ୍ୱାରା ମନୋନୀତ ହୋଇଥାଏ । ମେଡିକାଲ କଲେଜରେ ନାମ ଲେଖାଇବା ପାଇଁ ଦରଖାସ୍ତ କରିଥାଏ, କିନ୍ତୁ ସେଥିପାଇଁ ପାଟନା ବିଶ୍ୱବିଦ୍ୟାଳୟର ରେଗୁଲେସନ୍ ଅନୁସାରେ ତାର ବୟସ ଅଳ୍ପ କେତେ ମାସ କମ୍ ଥିଲା । ସେତେବେଳେ ବାପାଙ୍କ ପରମ ବନ୍ଧୁ ଡକ୍ଟର ସଚ୍ଚିଦାନନ୍ଦ ସିହ୍ନା ପାଟନା ବିଶ୍ୱବିଦ୍ୟାଳୟର କୁଳପତି ଥିଲେ । ଡକ୍ଟର ସିହ୍ନା ଭଲରୂପେ ଜାଣିଥିଲେ ଯେ ବାପା କେବେ କୌଣସି ନିୟମ ବହିର୍ଭୂତ କାର୍ଯ୍ୟ କରିବାକୁ ତାଙ୍କୁ ଅନୁରୋଧ କରିବେ ନାହିଁ । ଡକ୍ଟର ସିହ୍ନା ତାଙ୍କ ନିଜ ତରଫରୁ ବିଶ୍ୱବିଦ୍ୟାଳୟ ରେଗୁଲେସନ୍ ତନ୍ନ ତନ୍ନ କରି ପଢ଼ି ଦେଖିଲେ ଯେ ଜଣେ ଛାତ୍ର ଏକ ସେସନ୍ ମଧ୍ୟରେ କେଉଁ ନିର୍ଦ୍ଦିଷ୍ଟ ତାରିଖ ପୂର୍ବରୁ ନାମ ଲେଖାଇବା ଉଚିତ ତାର କୌଣସି ଉଲ୍ଲେଖ ନାହିଁ । ରେଗୁଲେସନ୍ ଅନୁଯାୟୀ ମୋ ଭଉଣୀର ବୟସ ମେଡିକାଲ କଲେଜରେ ନାମ ଲେଖାଇବା ପାଇଁ ଯେତେବେଳେ ଉପଯୁକ୍ତ ହୋଇଥିଲା ସେତେବେଳେ ଡକ୍ଟର ସିହ୍ନା ତାକୁ ନାମ ଲେଖାଇବାକୁ ଅନୁମତି ଦେଇଥିଲେ ।

ଥରେ ଆମ ପରିବାରର ଜଣେ ଆତ୍ମୀୟଙ୍କ ପୁଅ ରେଭେନ୍ସା କଲେଜରେ କୌଣସି ବିଶୃଙ୍ଖଳ ଆଚରଣ କରିବାରୁ ବାପା ତାକୁ କଲେଜରୁ ରଷ୍ଟିକେଟ୍ କରିଦେଲେ । ଯିଏ ଯେତେ ତାଙ୍କ ଉପରେ ଚାପ ପକାଇଲେ ମଧ୍ୟ ବନ୍ଧୁବାନ୍ଧବଙ୍କ ଉପରୋଧ ରକ୍ଷାକରି ସେ କେବେ ନିୟମ କାନୁନ୍ ଉଲ୍ଲଙ୍ଘନ କରୁ ନ ଥିଲେ । ତାଙ୍କର ଉପରିସ୍ଥ ସରକାରୀ କର୍ମକର୍ତ୍ତାଗଣ ବାପାଙ୍କର ଏ ବିରଳ ସଦ୍‌ଗୁଣକୁ ଅତ୍ୟନ୍ତ ପ୍ରଶଂସା କରୁଥିଲେ ।

ଓଡ଼ିଶାରେ ମୋର ସରକାରୀ ଚାକିରିକାଳ ମଧ୍ୟରେ ଜନୈକ ମନ୍ତ୍ରୀ ଥରେ ମୋ ପ୍ରତି ବିମୁଖ ହୋଇ ଉଠିଲେ, କାରଣ ମୁଁ ତାଙ୍କର ଅଯୁକ୍ତିକର କାର୍ଯ୍ୟ ନିୟମ ବହିର୍ଭୂତ ହେବ ବୋଲି ଫାଇଲ୍‌ରେ ଲିଖିତ ଭାବରେ ଆପତ୍ତି କଲି । ତେଣୁ ମନ୍ତ୍ରୀଙ୍କ ଆଦେଶରେ ମୋର ସେ ପୋଷ୍ଟରୁ ବଦଳି ହୋଇଗଲା ଓ ମୁଁ ପଲିଟିକାଲ ଏବଂ ସର୍ଭିସେସ୍ ବିଭାଗରେ ନୂତନ ପୋଷ୍ଟରେ ଯୋଗଦେଲି । ତଦାନୀନ୍ତନ ମୁଖ୍ୟ ଶାସନ ସଚିବ ଶ୍ରୀ ଏ.କେ. ବାରେନ୍‌ଙ୍କ ପ୍ରତ୍ୟକ୍ଷ ନିୟନ୍ତ୍ରଣରେ କାର୍ଯ୍ୟକଲି । ଏହି ସମୟରେ ଡକ୍ଟର ହରେକୃଷ୍ଣ ମହତାବ କଂଗ୍ରେସ ସହିତ ତାଙ୍କ ସମ୍ପର୍କ ଛିନ୍ନ କରି ଅନ୍ୟ ଏକ ଦଳରେ ଯୋଗ ଦେଇଥାନ୍ତି । ଶାସକ ଦଳର କେତେଜଣ ପ୍ରମୁଖ ନେତା ଓ ଉକ୍ତ ମନ୍ତ୍ରୀ ମୁଖ୍ୟ ଶାସନ ସଚିବଙ୍କ ପାଖେ ଆପତ୍ତି କଲେ ଯେ ଯେହେତୁ ଡକ୍ଟର ମହତାବ ମୋର ପିତାଙ୍କର ଜଣେ ଘନିଷ୍ଠ ବନ୍ଧୁ ଅଟନ୍ତି ସେ ଶାସକ କଂଗ୍ରେସ ଦଳର ସ୍ୱାର୍ଥହାନୀ ଘଟିଲା ଭଳି କେତେ କାର୍ଯ୍ୟ ମୋ ଉପରେ ଚାପ ପକାଇ କରାଇ ନେଇପାରନ୍ତି । ଶ୍ରୀ ବାରେନ୍ ସେମାନଙ୍କୁ ଉତ୍ତର ଦେଇଥିଲେ, "ଏହି ଯୁବଅଫିସର ଜଣକ ଠିକ୍ ତାଙ୍କ ପିତାଙ୍କ ଭଳି କର୍ତ୍ତବ୍ୟନିଷ୍ଠ ଓ ନିରପେକ୍ଷ । ସେ କିମ୍ବା ତାଙ୍କ ପିତା କେହି କେବେ ଅନୁଚିତ କାର୍ଯ୍ୟ କରିବେ ନାହିଁ, ଏପରିକି ସେମାନଙ୍କର ବାପାଙ୍କର ବେନିୟମ ଅନୁରୋଧକୁ ମଧ୍ୟ ସେମାନେ ଗ୍ରହଣ କରିବେ ନାହିଁ ।"

ସବୁ କାମରେ ମୋର ପରମଆରାଧ୍ୟ ପିତୃଦେବ ଅତି ସଂଯମ ଓ କଠୋର ସମୟାନୁବର୍ତ୍ତୀ ଥିଲେ । ଠିକ୍ ସମୟରେ କୌଣସି ଅନୁଷ୍ଠାନରେ କିମ୍ବା ଭଦ୍ରବ୍ୟକ୍ତିଙ୍କ ନିକଟରେ ନ ପହଞ୍ଚିଲେ ତାହା ସେ ଅନୁଷ୍ଠାନ ବା ବ୍ୟକ୍ତିବିଶେଷଙ୍କ ପ୍ରତି ଅସମ୍ମାନ ହେବ ବୋଲି ସେ କହୁଥିଲେ । ତେଣୁ ସମୟକୁ ଉଚିତ ମୂଲ୍ୟବୋଧ ଦେଉଥିଲେ । ପିଲାଦିନର ମୋର ଗୋଟିଏ ଘଟଣା ମନେ ପଡୁଛି । ଥରେ ଚନ୍ଦକା ଜଙ୍ଗଲ ଅଞ୍ଚଳସ୍ଥ ଗୋଟିଏ ସ୍କୁଲର ଉତ୍ସବରେ ମୋର ପିତାଙ୍କୁ ମୁଖ୍ୟ ଅତିଥିରୂପେ ନିମନ୍ତ୍ରଣ କରାଯାଇଥିଲା । ସେ ମୋତେ ସଙ୍ଗରେ ନେଇ ଯାଇଥିଲେ, କିନ୍ତୁ ସେଦିନ ସେ ସ୍କୁଲ ନିକଟରେ ନିର୍ଦ୍ଧାରିତ ସମୟର ବହୁତ ଆଗରୁ ପହଞ୍ଚିଗଲେ । ଏପ୍ରିଲ ମାସର ପ୍ରଚଣ୍ଡ ଖରାରେ ଆମେ ଜଙ୍ଗଲର ଗଛ ଛାଇରେ ପ୍ରାୟ ଦେଢ଼ଘଣ୍ଟା ଅପେକ୍ଷା କରି ରହିଲୁ । ଠିକ୍ ସମୟରେ ସେଠୁ ବାହାରି ସ୍କୁଲ ଉତ୍ସବରେ ନିର୍ଦ୍ଦିଷ୍ଟ ସମୟରେ ଯୋଗଦେଲୁ ।

କୌଣସି ଉତ୍ସବରେ ଡେରିରେ ଯାଇ ପହଞ୍ଚୁଥିବା ଯେପରି ଅଶିଷ୍ଟ ସେହିଭଳି ଆଗରୁ ଯାଇ ପହଞ୍ଚିବା ମଧ୍ୟ ଅଶିଷ୍ଟ ବୋଲି ବାପା କହୁଥିଲେ ।

ପିଲାଦିନେ ପ୍ରତିଦିନ ଖାଇବା ସମୟରେ ପାଞ୍ଚ ମିନିଟ୍ ପୂର୍ବରୁ ଆମ ଘରେ ଗୋଟିଏ ଘଣ୍ଟା ବାଜୁଥିଲା । ସମସ୍ତେ ସେଇ ପାଞ୍ଚ ମିନିଟ୍ ମଧ୍ୟରେ ଧଡ଼ପଡ଼ ହୋଇ ଖାଇବା ଟେବୁଲରେ ଯାଇ ବସିପଡୁଥିଲେ ଓ ଠିକ୍ ମିନିଟ୍ ସେକେଣ୍ଡ ଅନୁସାରେ ଖାଦ୍ୟ ପରିବେଷଣ କରାଯାଉଥିଲା । କୌଣସି କାରଣରୁ ଆମ ପରିବାରର କେହି ଲୋକ ଯଦି ଠିକ୍ ସମୟରେ ଖାଇବା ଟେବୁଲକୁ ଆସି ପାରୁ ନ ଥିଲେ ତା ଦୁଃଖ ପାଣିଗାର ନ ଥିଲା । ଏଭଳି ଭାବରେ ପିଲାଟିଦିନୁ ଆମେ ଅତି ସମୟାନୁବର୍ତ୍ତୀ ହୋଇ କଠୋର ସୁଶୃଙ୍ଖଳ ଜୀବନ ଯାପନ କରିବାରେ ଅଭ୍ୟସ୍ତ ହୋଇ ଯାଇଥିଲୁ ।

ଉଦ୍ଭିଦବିଜ୍ଞାନରେ ମୋର ପିତା କି ମୌଳିକ ଗବେଷଣା କାର୍ଯ୍ୟ କରିଥିଲେ ସେ ବିଷୟରେ ବିଶଦ ବିବରଣୀ ଦବାର ସ୍ଥାନ ମୋର ନାହିଁ । ମୁଁ ଏତିକି ଜାଣେ ଯେ ଭାରତରେ ଜଣେ ଉଦ୍ଭିଦବିଜ୍ଞାନୀ ଓ ଶିକ୍ଷାବିଦ୍ ହିସାବରେ ତାଙ୍କର ଯେଉଁ ଶୀର୍ଷ ଆସନ ଥିଲା ତାରି ବଳରେ ତାଙ୍କ ପ୍ରଚେଷ୍ଟାରେ କଟକଠାରେ କେନ୍ଦ୍ରୀୟ ଧାନ ଗବେଷଣା ଅନୁଷ୍ଠାନ ସ୍ଥାପିତ ହୋଇପାରିଥିଲା । ବନ୍ୟାଜଳ ଓ ଲୁଣାଜଳ ପ୍ଳାବିତ ଜମିରେ ଏବଂ ବର୍ଷା ବିହୁନେ ମରୁଡ଼ି ହେଲେ କି କି କିସମର ଧାନ ବିହନ କିଭଳି ଉପଚାର ଦ୍ୱାରା ସଫଳତାର ସହିତ ପ୍ରତିକୂଳ ପରିସ୍ଥିତିରେ ଚାଷ କରାଯାଇପାରିବ ସେ ଦିଗରେ ସେ ଜଣେ ଅଗ୍ରଗଣ୍ୟ ଗବେଷକ ହୋଇଥିବା ଯୋଗୁଁ କେନ୍ଦ୍ରୀୟ ଧାନ ଗବେଷଣା ଅନୁଷ୍ଠାନ ନୂତନ ସୃଷ୍ଟ ଏକ ଅଧିକ ଅମଳକ୍ଷମ ଧାନ ବିହନକୁ ମୋର ପିତାଙ୍କ ନାମରେ ନାମିତ କରି ତାଙ୍କ ପ୍ରତି ଗଭୀର ସମ୍ମାନ ପ୍ରଦର୍ଶନ କରିଛନ୍ତି ।

ମୋର ପିତାଙ୍କର ଅତିଥିପରାୟଣତା ଅନନ୍ୟ ସାଧାରଣ । ଆମ୍ଭମାନଙ୍କ ସୌଭାଗ୍ୟ ଯେ ଭାରତର ବିଶିଷ୍ଟ ବୈଜ୍ଞାନିକ, ଦାର୍ଶନିକ ଓ ରାଜନୀତିଜ୍ଞମାନଙ୍କୁ ଆମେ ଆମ ଘରେ ଅତିଥି ରୂପେ ପାଇ ଗୌରବାନ୍ୱିତ ହେଉଥିଲୁ । ନୋବେଲ ପୁରସ୍କାର ବିଜେତା ସାର୍ ଚନ୍ଦ୍ରଶେଖର ଭେଙ୍କଟରମନ୍, ଡକ୍ଟର ସତ୍ୟେନ୍ଦ୍ର ନାଥ ବୋଷ, ଡକ୍ଟର ମେଘନାଦ ସାହା, ଡକ୍ଟର ବୀରବଲ ସାହାନୀ, ଡକ୍ଟର ଶାନ୍ତିସ୍ୱରୂପ ଭଟ୍ଟନାଗର, ଡକ୍ଟର ଏମ୍. ଓ. ପି. ଆୟଙ୍ଗାର, ଡକ୍ଟର ଇ. କେ. ଜାନକୀ ଅମଲ, ଡକ୍ଟର ଜ୍ଞାନେନ୍ଦ୍ରନାଥ ମୁଖାର୍ଜି, ଡକ୍ଟର ଏସ୍. ପି. ଅଗରକର, ଡକ୍ଟର ପଞ୍ଚାନନ ମାହେଶ୍ୱରୀ, ନେତାଜୀ ସୁଭାଷଚନ୍ଦ୍ର ବୋଷ, କଂଗ୍ରେସ ନେତ୍ରୀ ବାଗ୍ମୀ ଶ୍ରୀମତୀ ସରୋଜିନୀ ନାଇଡୁ, ପ୍ରଜାସୋସାଲିଷ୍ଟ ପାର୍ଟିର ନେତା ଶ୍ରୀ ସାରଙ୍ଗଧର ଦାସ, କଂଗ୍ରେସ ନେତା ଶ୍ରୀ ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ, ଶିକ୍ଷାବିତ୍ ଡକ୍ଟର ସଚ୍ଚିଦାନନ୍ଦ ସିହ୍ନା, ଶିକ୍ଷାବିଦ୍ ଡକ୍ଟର ଅମରନାଥ ଝା, ପ୍ରଫେସର ଶ୍ରୀରଞ୍ଜନ, ପ୍ରଫେସର ରାମକୁମାର ସାକ୍ସେନା,

ପ୍ରଫେସର ନୀଳରତନ ଧର ପ୍ରଭୃତି କେତେ ଜଣ ଅତି ବିଶିଷ୍ଟ ଅତିଥିଙ୍କ ନାମ ମୋର ସ୍ମରଣକୁ ଆସୁଛି ।

ଥରେ ଆହ୍ଲାବାଦ ବିଶ୍ୱବିଦ୍ୟାଳୟର ଅର୍ଥନୀତି ପ୍ରଫେସର ଏସ୍. କେ. ରୁଦ୍ର ଆମ ଘରେ ଅତିଥି ହୋଇ ରହିଥିଲେ । ସେତେବେଳେ ମୁଁ ଆହ୍ଲାବାଦର ଇଉଇଙ୍ଗ୍ କ୍ରିଷ୍ଟିଆନ୍ କଲେଜରେ (Ewing Christian College) ପଢ଼ିବାକୁ ସ୍ଥିର ହୋଇଥାଏ, କିନ୍ତୁ ପ୍ରଫେସର ରୁଦ୍ର ବାପାଙ୍କୁ ପ୍ରବର୍ତ୍ତାଇଲେ ଯେ ମୁଁ ଆହ୍ଲାବାଦ ନ ଯାଇ ଦିଲ୍ଲୀର ସେଣ୍ଟ ଷ୍ଟିଫେନ୍ସ କଲେଜକୁ ପଢ଼ିବାକୁ ଯିବା ମୋ ପକ୍ଷରେ ଅଧିକ ଶ୍ରେୟସ୍କର ହେବ । ପ୍ରଫେସର ରୁଦ୍ରଙ୍କ ପିତା କୁଆଡ଼େ ଅତୀତରେ ସେଣ୍ଟ ଷ୍ଟିଫେନ୍ସ କଲେଜର ଏକ ଖ୍ୟାତନାମା ଅଧ୍ୟକ୍ଷ ଥିଲେ । ପ୍ରଫେସର ରୁଦ୍ରଙ୍କ ପରାମର୍ଶ ବାପା ଗ୍ରହଣ କରିଥିଲେ ଓ ମୋ ଭାଗ୍ୟ ଡୋରି ବଦଳିଗଲା ।

ମୋର ବାପାଙ୍କ ଜୀବନରେ ବହୁ ଦୁଃଖକଷ୍ଟର ଝଡ଼ଝଞ୍ଜା ବୋହିଯାଇଛି । ସବୁ ଦୁଃଖ ଯନ୍ତ୍ରଣାକୁ ସେ ନିଜ ଭିତରେ ସହ୍ୟ କରି ନିଅନ୍ତି । ତାଙ୍କୁ ବାହାରୁ ଦେଖିଲେ ତାଙ୍କ ମାନସିକ ଯନ୍ତ୍ରଣାର ଆଭାସ କେହି କିଛି ଜାଣିପାରନ୍ତି ନାହିଁ । ମାନସିକ ତଥା ଶାରୀରିକ ଯନ୍ତ୍ରଣା ସହ୍ୟ କରିବାରେ ସେ ଥିଲେ ଅଦ୍ୱିତୀୟ । ଯେଉଁଦିନ ମୋର ସବା ବଡ଼ଭଉଣୀ ମନ୍ଦାକିନୀଅପାର ଦେହାନ୍ତ ହୋଇଥାଏ ସେଦିନ ସେ ମଧ୍ୟ କୁଳପତି ରୂପେ ଉତ୍କଳ ବିଶ୍ୱବିଦ୍ୟାଳୟର ପୂର୍ବରୁ ନିର୍ଦ୍ଧାରିତ ହୋଇଥିବା ସିଣ୍ଡିକେଟ୍ ସଭାରେ ସଭାପତିତ୍ୱ କରି ଅବିଚଳିତ ଭାବେ କାର୍ଯ୍ୟ ନିର୍ବାହ କରିଥିଲେ ଓ ତା'ପରେ କେନ୍ଦ୍ର ମନ୍ତ୍ରୀ ଶ୍ରୀମତୀ ଲକ୍ଷ୍ମୀ ମେନନ୍‌ଙ୍କ ସମ୍ମାନାର୍ଥେ ପ୍ରଦତ୍ତ ରାତ୍ରି ଭୋଜନରେ ଯୋଗଦାନ କରିଥିଲେ ।

ଦିନକର କଥା । ସେଦିନ ସକାଳେ ମୋର ସାନଭାଇ ଭାଲଚନ୍ଦ୍ର ଆଇ. ଏ. ଏସ୍. କର୍କଟରୋଗରେ ଆକ୍ରାନ୍ତ ହୋଇ ବମ୍ବେ ହସ୍ପିଟାଲରେ ଇହଲୀଳା ସମ୍ବରଣ କରିଥାନ୍ତି । ସନ୍ଧ୍ୟାରେ ଏ ଦୁଃସମ୍ବାଦ ମୁଁ ରାଉରକେଲାରେ ପାଇଲି । ମୋ ସ୍ତ୍ରୀଙ୍କୁ ସଙ୍ଗରେ ଧରି ମୁଁ ଗାଡ଼ିରେ କଟକ ଅଭିମୁଖେ ଯାତ୍ରା କଲି । ପରଦିନ ସକାଳେ ୧୦ ନମ୍ବର କ୍ୟାଣ୍ଟନ୍‌ମେଣ୍ଟ ରୋଡ଼ (ବର୍ତ୍ତମାନ ମୋର ପିତାଙ୍କ ସମ୍ମାନାର୍ଥେ ଏହାର ନାମକରଣ କରାଯାଇଛି ଡକ୍ଟର ପ୍ରାଣକୃଷ୍ଣ ପରିଜା ମାର୍ଗ) ବାସଭବନରେ ପହଞ୍ଚିଲା ବେଳକୁ ଦେଖିଲି ବାପା ବାହାର ବାରଣ୍ଡାରେ ବସିଛନ୍ତି, ମୁଁ ତାଙ୍କୁ ଏ ଦାରୁଣ ଦୁଃସମ୍ବାଦ ଦେଲି । କିଛିକ୍ଷଣ ପାଇଁ ସେ ମୋ ଦୁଇ ହାତକୁ ଜାବୁଡ଼ି ଧରିଲେ । ନିଜ କୋହକୁ ସମ୍ଭାଳି ନେଇ କହିଲେ ମାଆଙ୍କୁ ଯାଇ କୁହ । ମାଆଙ୍କୁ ସମ୍ଭାଳି ହେଲାନି, ସେ କାନ୍ଦି ଅଥୟ ହୋଇ ପଡ଼ିଲେ ।

ଆଉ ଏକ ଘଟଣା । ଅତି ତୁଚ୍ଛ ହେଲେ ମଧ୍ୟ ମୋର ପିତାଙ୍କର ଅସୀମ ଧୈର୍ଯ୍ୟ ଓ ଦୃଢ଼ ମନୋବଳର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ମୋର ପିତା ପ୍ରୋ-ଭାଇସ୍ ଚାନ୍‌ସେଲର

ରୂପେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର କନଭୋକେସନ୍ ଉତ୍ସବରେ ସଭାପତିତ୍ୱ କରୁଥାନ୍ତି । ଉତ୍ସବ ଆରମ୍ଭ ହେବାର କିୟତ୍ କାଳ ପରେ ଗୋଟିଏ ଝିଟିପିଟି କୁଆଡ଼ୁ ଆସି ତାଙ୍କ ବେକରେ ପଡ଼ି ହଠାତ୍ କମିଜ୍ ଭିତରକୁ ପଶି ପିଠି ପଟେ ଯାଇ ରହିଲା । ଯେ କେହି ଲୋକ ବିବ୍ରତ ହୋଇଯାଇଥାନ୍ତା, କିନ୍ତୁ କନ୍‌ଭୋକେସନ୍ ଭଳି ଗାମ୍ଭୀର୍ଯ୍ୟପୂର୍ଣ୍ଣ ଉତ୍ସବରେ କୌଣସି ପ୍ରକାର ବିଶୃଙ୍ଖଳା ସୃଷ୍ଟି ହେବା ଉଚିତ ନୁହେଁ ବୋଲି ହୃଦୟଙ୍ଗମ କରି ବାପା ଧୀରସ୍ଥିର ଭାବରେ କନ୍‌ଭୋକେସନ୍‌ର ସବୁ କାର୍ଯ୍ୟକ୍ରମ ଶେଷ ହେଲା ପର୍ଯ୍ୟନ୍ତ ପେଣ୍ଡାଲରେ ବସି ରହିଲେ, ତାଙ୍କର ଭାଷଣ ପ୍ରଦାନ କଲେ, ମୁଖ୍ୟଅତିଥି ତାଙ୍କର ଭାଷଣ ପ୍ରଦାନ କଲେ, ଛାତ୍ରମାନଙ୍କୁ ଡିଗ୍ରୀ ସାର୍ଟିଫିକେଟ୍, ପଦକ, ପୁରସ୍କାର ପ୍ରଦାନ କରାଗଲା, ସର୍ବଶେଷରେ ମର୍ଯ୍ୟାଦାପୂର୍ଣ୍ଣ କନ୍‌ଭୋକେସନ୍ ପ୍ୟାରେଡ୍ ସହିତ ବିଶିଷ୍ଟ ଅତିଥିମାନେ ପେଣ୍ଡାଲ ପରିତ୍ୟାଗ କରି ଗ୍ରୀନ୍ ରୁମରେ ପହଞ୍ଚିଲେ, ବାପା ତାଙ୍କ କନ୍‌ଭୋକେସନ୍ ରୋବ୍ କାଢ଼ି ଜଣେ ସହକର୍ମୀଙ୍କୁ କହିଲେ ତାଙ୍କ କାମିଜ ଖୋଲି ପିଠିପଟୁ ଝିଟିପିଟିଟିକୁ କାଢ଼ି ଦବାକୁ ଉପସ୍ଥିତ ସମସ୍ତେ ତାଙ୍କ ସହନଶୀଳତା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ ଏବଂ ତାଙ୍କୁ ପ୍ରଶଂସା ନ କରି ରହିପାରିଲେ ନାହିଁ ।

ବ୍ୟକ୍ତିଗତ ଜୀବନରେ ମୋର ବାପା ଅତି ସୁଶୃଙ୍ଖଳ ଓ ସୁବ୍ୟବସ୍ଥିତ ଥିଲେ । ଗୃହର ସମସ୍ତ ବ୍ୟବହାର୍ଯ୍ୟ ପଦାର୍ଥ, ଲୁଗାପଟା ହେଉ, ବାସନକୁସନ ହେଉ, ଯନ୍ତ୍ରପାତି ହେଉ ବା ବହିପତ୍ର ହେଉ ସବୁ କିଛି ବ୍ୟବହାର ହୋଇସାରିଲା ପରେ ନିଜ ନିଜ ସ୍ଥାନରେ ଯାଇ ରଖାଯିବା ପାଇଁ କଡ଼ା ତାଗିଦ ଥିଲା । ତାଙ୍କ ମୃତ୍ୟୁର ଏକ ସପ୍ତାହ ପୂର୍ବ ପର୍ଯ୍ୟନ୍ତ ସେ ତାଙ୍କ ଲୁଗା ନିଜେ ସାବୁନ ଦେଇ ସଫା କରୁଥିଲେ । ପ୍ରତ୍ୟେକ ଦିନ ଲୁଗାସବୁ ଘର ପଛ ପଟେ ଖରାରେ ନିର୍ଦ୍ଦିଷ୍ଟ ସ୍ଥାନରେ ଶୁଖା ଯାଉଥିଲା, ଏକ ଇଞ୍ଚ ମଧ ଏପଟ ସେପଟ ହେଉ ନ ଥିଲା ।

ମୋର ପିତା ଆମ ଘରର ଚାକର ପୂଜାରୀଙ୍କ ପ୍ରତି ଅତି ବିଚାରବନ୍ତ ଥିଲେ । ସେମାନେ କାମ ସାରି ବିଶ୍ରାମ ନେଉଥିଲା ବେଳେ ସେମାନଙ୍କୁ ଆଦୌ ଅଶାନ୍ତ କରୁ ନ ଥିଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କୁ ସେମାନଙ୍କ ଯୋଗ୍ୟତା ଅନୁସାରେ ସରକାରୀ ଦପ୍ତରରେ ଚାକିରିରେ ମୁକରିର କରିଦେଉଥିଲେ । ସେମାନଙ୍କ ପିଲାମାନଙ୍କୁ ନିଜ ହାତରୁ ବହିପତ୍ର, ପୋଷାକ ଓ ଅନ୍ୟାନ୍ୟ ଖର୍ଚ୍ଚ ଦେଇ ସ୍କୁଲରେ ପଢ଼ିବା ପାଇଁ ଉତ୍ସାହିତ କରୁଥିଲେ ।

ମୋର ପିତା ଜଣେ ଅସାଧାରଣ ରହସ୍ୟପ୍ରିୟ ଲୋକ ଥିଲେ, ତାଙ୍କର ଓଡ଼ିଆ, ସଂସ୍କୃତ ଓ ଇଂରାଜୀ ଭାଷା ଓ ସାହିତ୍ୟରୁ ବହୁ କାହାଣୀ, କୌତୁକପ୍ରଦ ଓ ଚିତ୍ତାକର୍ଷକ ଗଳ୍ପ କଥା ସ୍ମରଣରେ ଥିଲା । ସେ ସେଗୁଡ଼ିକର ଏକ ଗନ୍ତାଘର ଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ସେ ସଭାସମିତିରେ ଏଗୁଡ଼ିକୁ କହି ହାସ୍ୟରୋଳ ସୃଷ୍ଟି

କରୁଥିଲେ, ବିଶେଷତଃ ଯେତେବେଳେ ପ୍ରବଳ ଯୁକ୍ତିତର୍କ ଲାଗି ଲୋକ ଲୋକଙ୍କ ମଧ୍ୟରେ ବାଦବିସମ୍ବାଦ ସୃଷ୍ଟି ହେଉଥିଲା ତାହା ଏତଦ୍ୱାରା ଅଚିରେ ଉପଶମ ହୋଇଯାଉଥିଲା । ଘରେ ମଧ୍ୟ ପରିବାର ଗହଣରେ ସେ କାହାଣୀ କହି ସମସ୍ତଙ୍କ ଚିତ୍ତ ବିନୋଦନ କରୁଥିଲେ । ପରିବାରରେ ଗୋଟିଏ ଗଳ୍ପ ବିଶେଷ ହାସ୍ୟରୋଳ ସୃଷ୍ଟି କରୁଥିଲା । ବାପା ନିଜେ ଯଦି କେତେବେଳେ କାହା ଉପରେ ରାଗି ଯାଉଥିଲେ ଆମେ ଏହି ଗଳ୍ପଟି କହି ତାଙ୍କ ରାଗକୁ ପ୍ରଶମିତ କରୁଥିଲୁ । ବାପା ମୁହୂର୍ତ୍ତକରେ ଯେପରି ରାଗି ଯାଉଥିଲେ ସେହିଭଳି ମୁହୂର୍ତ୍ତକରେ ମଧ୍ୟ ଶାନ୍ତ ହୋଇଯାଉଥିଲେ । ଏ ଘଟଣାଟି ଘଟିଥିଲା କେମ୍ବ୍ରିଜରେ । ମୋର ପିତାଙ୍କର ଜଣେ ବନ୍ଧୁ ତେଲୁଗୁ ଭାଷାଭାଷୀ ଶ୍ରୀ ହନୁମନ୍ତ ରାଓଙ୍କୁ ଥରେ ଦଳେ ଯୁବତୀ କୌଣସି ଉତ୍ସବ ପାଇଁ ଚାନ୍ଦା ମାଗିବାକୁ ଆସିଥିଲେ । ସେ ଚାନ୍ଦା ଦବାକୁ ମନା କରିଦେଲେ । କେତେ ଦିନ ପରେ ସେଇ ଯୁବତୀଦଳ ପୁଣି ଥରେ ତାଙ୍କ ପାଖକୁ ଚାନ୍ଦା ମାଗିବାକୁ ଆସିଲେ । ସେ କହିଲେ, "ମୁଁ ଥରେ ଚାନ୍ଦା ଦେବାକୁ ମନା କରି ଦେଇଛି, ତୁମ୍ଭେମାନେ କାହିଁକି ବାରମ୍ବାର ମୋ ପାଖକୁ ଆସୁଛ ?" ଯୁବତୀମାନେ କହିଲେ, "ସାର୍, ଆପଣ ଆପଣଙ୍କ ନାମ ଆମକୁ କୁହନ୍ତୁ, ଆମେ ତାକୁ ଟିପିରଖିବୁ ଯେପରିକି ଆଉ ଆପଣଙ୍କ ପାଖକୁ ଆସି କେବେ ବିରକ୍ତ କରିବୁ ନାହିଁ ।" ଯୁବତୀମାନଙ୍କୁ କୌତୁକରେ ଚିଡ଼ାଇବା ପାଇଁ ସେ ତାଙ୍କ ନାମକୁ ଏପରି କହିଲେ, "ରାଜମାନ୍ୟ ରାଜଶ୍ରୀ ଚିନ୍ତାଖେଣ୍ଡି ଭେଙ୍କଟ ହନୁମନ୍ତ ରାଓ ପାନ୍ତୁଲୁ ଗାରୁ ।" ଏହା ଶୁଣି ଯୁବତୀମାନେ ଏପରି ଚକିତ ହୋଇଗଲେ ଯେ ସେମାନେ ସଙ୍ଗେ ସଙ୍ଗେ ସେ ସ୍ଥାନ ପରିତ୍ୟାଗ କରି ପଳାଇଗଲେ । ଯେତେବେଳେ ଘରେ ବାପାଙ୍କୁ ଆମେ ରାଗାନ୍ୱିତ ଅବସ୍ଥାରେ ଦେଖୁ ଆମ ପିଲାଙ୍କ ଭିତରୁ କେହି ଉଚ୍ଚ କଣ୍ଠସ୍ୱରରେ ତେଲୁଗୁକୁ ଅତିରଞ୍ଜିତ କରି କହି ପକାଉ "ରାଜମାନ୍ୟ ରାଜଶ୍ରୀ ଚିନ୍ତାଖେଣ୍ଡି ଭେଙ୍କଟ ହନୁମନ୍ତରାଓ ପାନ୍ତୁଲୁ ଗାରୁ" ଓ ହସି ହସି ଗଡ଼ିଯାଉ । ବାପାଙ୍କ ରାଗ ଅଚିରେ ଶାନ୍ତ ହୋଇଯାଏ ।

ବାପାଙ୍କର ନିଜର ଏକ ବିଶାଳ ପାଠାଗାର ଥିଲା । ଅନେକ ଲେଖକଙ୍କ ଦ୍ୱାରା ଲିଖିତ ବିଭିନ୍ନ ବ୍ୟାପକ ବିଷୟ ସମ୍ବନ୍ଧରେ । ସେ ଚାର୍ଲସ ଡିକେନ୍ସ, ବର୍ଣ୍ଣାଡ ଶ, ବର୍ଟ୍ରାଣ୍ଡ ରସେଲ, ଜନ୍ ପଲ୍‌ଙ୍କ ଲିଖିତ ପୁସ୍ତକଠାରୁ ଆରମ୍ଭ କରି ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍, ସାତ୍ରେ, ଭିକ୍ଟର ହ୍ୟୁଗୋ, ମୋପାଁଶା, କ୍ୟାଣ୍ଟ୍, ହିଗେଲ, ଭର୍ଜିଲଙ୍କ ରଚନାବଳୀ, ଗ୍ରୀସ୍‌ଦେଶ, ଇଟାଲୀ ଦେଶର ପୁରାଣ ଶାସ୍ତ୍ର ସବୁ ସାଇତି ରଖିଥିଲେ ଓ ନିଜେ ସେସବୁକୁ ପଢ଼ିଲେ ।

ନିଜର ଦୈନନ୍ଦିନ ପ୍ରଗାଢ଼ କର୍ମମୁଖର ଜୀବନଯାପନରେ ମନକୁ ଶାନ୍ତ କରିବା ପାଇଁ ସେ ଏଡ୍‌ଗାର୍ ୱାଲେସ୍, ଆଗାଥା କ୍ରିଷ୍ଟି, ଡୋରଥି ସେୟର୍ସଙ୍କ ଲିଖିତ ଗୋଯେନ୍ଦା

ପୁଲିଶଙ୍କ ଦ୍ୱାରା ଅପରାଧୀ ଅନୁସନ୍ଧାନ ଗଳ୍ପଗୁଡ଼ିକ, ଜି. କେ. ଚେଷ୍ଟାରଟନ୍‌ଙ୍କ ପ୍ରଣୀତ ଫାଦର ବ୍ରାଉନ୍ ପୁସ୍ତକମାଳା, ଆମେରିକୀୟ ଓ୍ୱାଇଲ୍ଡ ଓ୍ୱେଷ୍ଟ, ପି. ଜି. ଉଡ୍‌ହାଉସ୍, ଷ୍ଟିଫେନ୍ ଲିକକ୍‌ଙ୍କ ଲିଖିତ ବ୍ୟଙ୍ଗ ସାହିତ୍ୟ, ପୁଞ୍ଚ, ଶଙ୍କରଙ୍କ ସାପ୍ତାହିକୀ ପ୍ରଭୃତି ହାଲୁକା ଲେଖାସବୁ ମଧ୍ୟ ପଢୁଥିଲେ । ଦିନକ ଯାକର କାର୍ଯ୍ୟ ସାରି ସେ ସନ୍ଧ୍ୟାବେଳେ ପଢ଼ାପଢ଼ି କରନ୍ତି । ପ୍ରତିଦିନ ସକାଳେ ସେ ଖଣ୍ଡିଏ କାଗଜରେ ସେ ଦିନର କ'ଣ କ'ଣ ଗୁରୁତ୍ୱପୂର୍ଣ୍ଣ କାମ ପ୍ରଥମେ ଟିପି ଦେଉଥିଲେ । ସେହି ତାଲିକାକୁ ଦେଖି ଗୋଟିଏ ପରେ ଗୋଟିଏ କାମ କରିଯାଉଥିଲେ, ଯେଉଁ କାମଟି ସରି ଯାଉଥିଲା ତାକୁ କାଟି ଦଉଥିଲେ, ଏପରି ଭାବରେ ସକାଳେ ପ୍ରସ୍ତୁତ କରିଥିବା ସବୁତକ କାମ ଦିନ ଭିତରେ ଶେଷ ନ କରିବା ପର୍ଯ୍ୟନ୍ତ ସେ ଶାନ୍ତି ପାଉ ନ ଥିଲେ । ଏଭଳି କଠୋର ସାଧନା ଯୋଗୁଁ ସେ ଆଶ୍ଚର୍ଯ୍ୟଜନକ ଭାବରେ ଗୁଡ଼ିଏ କାମ କରିପାରୁଥିଲେ ଓ ସନ୍ଧ୍ୟାରେ କିଛି ସମୟ ବିଶ୍ରାମ କରିବାକୁ ବା ନିଜର ପଢ଼ାପଢ଼ି କରିବାକୁ ସମୟ ପାଉଥିଲେ ।

ଆମେ ତାଙ୍କ ପୁଅଝିଅମାନେ ତାଙ୍କର ପ୍ରଖର ସ୍ମରଣଶକ୍ତି ଦେଖି ଚକିତ ହୋଇଯାଉଥିଲୁ । ସେ ଯେତେବେଳେ ରେଭେନ୍ସା କଲେଜରେ ପ୍ରଫେସର ଥିଲେ ଓ ପରବର୍ତ୍ତୀ ସମୟରେ ଅଧ୍ୟକ୍ଷ ଥିଲେ ସେ ଯେ କେବଳ ସବୁ ଛାତ୍ରଛାତ୍ରୀମାନଙ୍କର ନାମ ଜାଣିଥିଲେ ସେତିକି ନୁହେଁ, ସେ ସେମାନଙ୍କର ପିତାମାତା,, ବନ୍ଧୁବାନ୍ଧବ ଓ ପରିବାରର ବୁନିଆଦି ବିଷୟ ସବୁକିଛି ଜାଣିଥିଲେ ।

ତାଙ୍କ ନିଜର ଧୀଶକ୍ତି, ପ୍ରତ୍ୟୁତ୍ପନ୍ନମତିତା ଏତେ ତୀକ୍ଷ୍ଣ ଥିଲା ଯେ ସେ ଗୋଟିଏ କଥା କହିଲେ ଯଦି ଅନ୍ୟ ଜଣେ ତାଙ୍କ କଥାର ମର୍ମକୁ ସଙ୍ଗେ ସଙ୍ଗେ ହୃଦୟଙ୍ଗମ କରିପାରୁ ନ ଥିଲା ସେ ଅଧୈର୍ଯ୍ୟ ହୋଇପଡୁଥିଲେ, ଅବଶ୍ୟ ସେ ଅନ୍ୟମାନଙ୍କ ପ୍ରତି ସର୍ବଦା ସୌଜନ୍ୟପୂର୍ଣ୍ଣ ଓ ଶିଷ୍ଟ ବାକ୍ୟାଳାପ ଦ୍ୱାରା ସେମାନଙ୍କ ଚିତ୍ତବିନୋଦନ କରିପାରୁଥିଲେ । ବିଶେଷତଃ ଯେତେବେଳେ ସେ ଥଟ୍ଟା ପରିହାସ ଯୁକ୍ତ କଥା କହୁଥିଲେ ଆମେ ତାଙ୍କର ଓ ଅନ୍ୟମାନଙ୍କ ମଧ୍ୟରେ ଥିବା ବୌଦ୍ଧିକ ସ୍ତରର ପ୍ରଭେଦକୁ ସହଜରେ ବାରି ପାରୁଥିଲୁ ।

କଟକ ସହରରେ ସେତେବେଳେ ଅତି କମ୍ ଲୋକଙ୍କର ମଟରଗାଡ଼ି ଥିଲା । ସେମାନଙ୍କ ମଧ୍ୟରେ ବାପା ଥିଲେ ଜଣେ । ସେ ଗାଡ଼ି ଚଳାଇବା ଶିଖୁଥିଲାବେଳେ ଥରେ ମା ପଛ ସିଟ୍‌ରେ ବସିଥିଲେ । ରେଭେନ୍ସା କଲେଜର ବିସ୍ତୀର୍ଣ୍ଣ ଖେଳପଡ଼ିଆରେ ବାପା ଗାଡ଼ି ଚଳାଉଥିଲା ବେଳେ ବୋଧେ ଗୋଟିଏ ଗଛରେ ଯାଇ ଗାଡ଼ି ବାଜି ଯାଇଥିଲା, ସେତିକିରେ ବାପା ଗାଡ଼ି ଚଳା ଶିଖା ଛାଡ଼ି ଦେଇଥିଲେ ।

ବାପା ରେଭେନ୍ସା କଲେଜରେ ଅଧ୍ୟକ୍ଷଙ୍କ ବଙ୍ଗଳାରେ ଆମ ସହିତ ଉପରଓଳି ନିୟମିତ ବ୍ୟାଡ୍‌ମିଣ୍ଟନ ଖେଳୁଥିଲେ । ଥରେ ଥରେ ମା ଲଗାଇଲେ ବାପା ଆମ ଘରେ

ବ୍ରିଜ୍ ଖେଳିବାର ଆୟୋଜନ କରୁଥିଲେ । ବାପା ସେତେ ଭଲ ବ୍ରିଜ୍ ଖେଳ ଖେଳି ପାରୁ ନ ଥିଲେ । କିନ୍ତୁ ଆମ ମା ସେ ଖେଳରେ ବିଚକ୍ଷଣ ଥିଲେ । ବ୍ରିଜ୍ ଖେଳରେ ଗୋଟେ ପ୍ରବାଦ ଥିଲା ଯେ ସବୁ ଉତ୍ତମ ଖେଳାଳିମାନେ ଧୀଶକ୍ତିସମ୍ପନ୍ନ, କିନ୍ତୁ ସବୁ ମେଧାବୀ ଲୋକମାନେ ଉତ୍ତମ ଖେଳାଳି ନୁହନ୍ତି ।

ମୋର ପିତା କେତେଗୁଡ଼ିଏ ଗୁଣ ପ୍ରତି ପରାଙ୍ମୁଖ ଥିଲେ, ସେଗୁଡ଼ିକ ହେଲା ଆଳସ୍ୟ ପରାୟଣତା, ଅମିତାଚାରତା, ଅସାଧୁତା ଏବଂ କପଟତା । ବାପା କିଛି ବର୍ଷ ପାଇଁ ଓଡ଼ିଶା ବିଧାନସଭାର ସଭ୍ୟ ଥିଲେ ଓ ସେ ହିସାବରେ ଓଡ଼ିଶାର ବହୁ ରାଜନୀତିଜ୍ଞମାନଙ୍କ ପ୍ରତ୍ୟକ୍ଷ ସଂପର୍କରେ ଆସିବାର ସୁଯୋଗ ଲାଭ କରିଥିଲେ । ତାଙ୍କ ଯୁବାବସ୍ଥାର ରାଜନୀତିଜ୍ଞମାନେ ଯେପରି ଉଚ୍ଚ ଆଦର୍ଶବାଦୀ ଓ ଜାତୀୟବାଦୀ ଥିଲେ ପରବର୍ତ୍ତୀ ସମୟର ରାଜନୀତିଜ୍ଞମାନଙ୍କ ଠାରେ ସେ ତାର ସ୍ଖଳନ ଦେଖି ମନଦୁଃଖ କରୁଥିଲେ ।

ମୋର ବାପାଙ୍କୁ ତାଙ୍କ ଛାତ୍ରମାନେ ଏତେ ଭକ୍ତି ଓ ସମ୍ମାନ କରୁଥିଲେ ଯେ ମୋ ଚାକିରିର ପ୍ରଥମ ଦଶ ବାର ବର୍ଷ ମୁଁ ଯେଉଁଠି ଅବସ୍ଥାପିତ ହୋଇଛି ସବୁଠି ତାଙ୍କର ପୁରାତନ ଛାତ୍ରମାନଙ୍କର ସ୍ନେହ ଶ୍ରଦ୍ଧା ଲାଭ କରିବାର ସୌଭାଗ୍ୟ ଲାଭ କରିଛି, କାରଣ ମୁଁ ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କ ପୁଅ । ସେମାନେ ମଧ୍ୟ ଅକୁଣ୍ଠିତ ଚିତ୍ତରେ ସ୍ୱୀକାର କରୁଥିଲେ ଯେ ସେମାନେ ବାପାଙ୍କର ପ୍ରିୟ ଛାତ୍ରମାନଙ୍କ ମଧ୍ୟରେ ଅନ୍ୟତମ ଥିଲେ ଓ ସେମାନଙ୍କ ଜୀବନ ଗଢ଼ିବାରେ ବାପାଙ୍କର ଅବଦାନ ଅତୁଳନୀୟ ଥିଲା ।

ଉତ୍କଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ବାପାଙ୍କର ୮୫ ତମ ଜନ୍ମ ତିଥିରେ ତାଙ୍କୁ ଅଭିନନ୍ଦନ ଜ୍ଞାପନ କରାଯାଇଥିଲା ଓ ବାପାଙ୍କ ସମ୍ମାନାର୍ଥେ ଉତ୍କଳ ବିଶ୍ୱବିଦ୍ୟାଳୟର ପାଠାଗାରକୁ ତାଙ୍କ ନାମରେ ନାମିତ କରାଯାଇଥିଲା । କୃତଜ୍ଞତାର ସହିତ ବାପା ପ୍ରକାଶ କରିଥିଲେ ଯେ ତାଙ୍କର ଛାତ୍ରଛାତ୍ରୀମାନେ ସବୁ କ୍ଷେତ୍ରରେ ଯଶ ଅର୍ଜନ କରି ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରରେ ସୁନାମ ଅର୍ଜନ କଲେ ତାଙ୍କଠାରୁ ଆଉ କେହି ବେଶୀ ଖୁସୀ ହେବେ ନାହିଁ । ଜଣେ ପ୍ରକୃତ ଓ ଆଦର୍ଶବାଦୀ ଶିକ୍ଷକ ହିଁ ସବୁବେଳେ ତାଙ୍କର ଛାତ୍ରମାନେ ତାଙ୍କଠାରୁ ଅଧିକ ଯୋଗ୍ୟ ହୁଅନ୍ତୁ ଏ ଆଶୀର୍ବାଦ ପ୍ରଦାନ କରନ୍ତି ଓ ସେଥିରେ ଗୌରବ ଅନୁଭବ କରନ୍ତି ।

ମୋର ବାପା ତାଙ୍କର ଜନ୍ମଭୂମି ଓଡ଼ିଶାର ଛାତ୍ରଛାତ୍ରୀମାନେ ବିଶ୍ୱ ଦରବାରରେ ଗୌରବରେ ମଣ୍ଡିତ ହୁଅନ୍ତୁ, ଏହାହିଁ ସଦାସର୍ବଦା କାମନା କରୁଥିଲେ । ଓଡ଼ିଶାକୁ ସେ ନିଜ ପ୍ରାଣଠାରୁ ଅଧିକ ଭଲ ପାଉଥିଲେ, ସେଥିପାଇଁ କେମ୍ବ୍ରିଜରେ ଦୀର୍ଘ ସାତ ବର୍ଷ ରହି ସେ ଯେତେବେଳେ ଭାରତକୁ ଫେରିଥିଲେ ଓ କଲିକତାରୁ ପୁରୀ ଏକ୍ସପ୍ରେସ୍ ରେଳଗାଡ଼ି ଯୋଗେ କଟକ ଆସୁଥିଲେ, ସେ ଗାଡ଼ି ଯେତେବେଳେ ମହାନଦୀ ପୋଲ

ଉପରେ ପହଞ୍ଚିଗଲା ତାଙ୍କ ଆଖିରୁ ଝରଝର ହୋଇ ଲୁହ ବୋହିପଡ଼ିଲା, ଗାଁ ମାଟିରେ ସେ ଯାଇ ପାଦ ଦେବେ ଏଇ କଥା ସ୍ମରଣରେ ତାଙ୍କ ଦେହସାରା ଶିହରଣ ଜାତ ହୋଇଥିଲା । ଗାଁର ମମତା ମାଆଙ୍କ ଭଳି ଥିଲା ତାଙ୍କ ପାଇଁ ଗରୀୟସୀ ।

ଓଡ଼ିଶାର ଯୁବ ପିଢ଼ି ପାଇଁ ତାଙ୍କ ଜୀବନ ଏକ ଆଲୋକବର୍ତ୍ତିକା, ଏକ ପ୍ରେରଣାର ଉତ୍ସ । ତାଙ୍କ ଜୀବନକାଳ ମଧ୍ୟରେ ସେ ପ୍ରତିପାଦନ କରିଯାଇଛନ୍ତି ଯେ ମଣିଷର କୃତିତ୍ୱପୂର୍ଣ୍ଣ କାର୍ଯ୍ୟ ପାଇଁ ନିଜର ନିରବଚ୍ଛିନ୍ନ ସାଧନା ହିଁ ପ୍ରକୃଷ୍ଟ ପନ୍ଥା, ବିଶେଷତଃ ସେ ଯେତେ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହେଉଥାଏ ସେତିକି ବେଶୀ ତାର ମନବଳ ଅଧିକ ହୁଏ, ସେ ସେତିକି ଅଧିକ ଯଶସ୍ୱୀ ହୁଏ । ଭାରତର ବିଖ୍ୟାତ ବିଜ୍ଞାନ ଅନୁଷ୍ଠାନ ନାସନାଲ୍ ଇନ୍‌ଷ୍ଟିଚିଉଟ୍ ଅଫ୍ ସାଇନ୍ସ ବାପାଙ୍କ ପ୍ରତି ଯେଉଁ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିଥିଲେ ସେଥିରୁ କିୟଦଂଶ ଉଦ୍ଧାର କରି ମୁଁ ମୋର ପିତାଙ୍କ ପ୍ରତି ଅର୍ଘ୍ୟ ପ୍ରଦାନ କରୁଛି, ‘‘ଡକ୍ଟର ପ୍ରାଣକୃଷ୍ଣ ପରିଜା ତାଙ୍କର ୮୭ ବର୍ଷ କର୍ମମୟ ଜୀବନକାଳ ମଧ୍ୟରେ ବୈଜ୍ଞାନିକ ଓ ବୁଦ୍ଧିଜୀବୀମାନଙ୍କ ଉପରେ ଏକ ଅଲିଭା ଛାପ ରଖିଯାଇଛନ୍ତି । ଜଣେ ସର୍ବଗୁଣସମ୍ପନ୍ନ ପୂର୍ଣ୍ଣାଙ୍ଗ ବ୍ୟକ୍ତିତ୍ୱ ଆମର କଳ୍ପନାର ବସ୍ତୁ ହେଲେ ସୁଦ୍ଧା ଡକ୍ଟର ପରିଜା ଯେ ଏହାର ଖୁବ୍ ସନ୍ନିକଟବର୍ତ୍ତୀ ହୋଇପାରିଥିଲେ, ଏହା ଏକ ସର୍ବବାଦୀସମ୍ମତ ନିରାଟ ସତ୍ୟ ।’’

ଯାହାହେଉ ବିଭିନ୍ନ ସମୟରେ ମୁଁ ସଂଗ୍ରହ କରିଥିବା ତାଙ୍କର କେତେକ କୃତିତ୍ୱ ଓ ସଫଳତାର ଘଟଣାବଳୀ ନିମ୍ନରେ ଉଲ୍ଲେଖ କଲି ।

(୧) ମଧ୍ୟଇଂରାଜୀ ପରୀକ୍ଷାରେ ଓଡ଼ିଶାରେ ପ୍ରଥମ ସ୍ଥାନ ଅଧିକାର ।

(୨) କଲିକତା ବିଶ୍ୱବିଦ୍ୟାଳୟରୁ ଏଣ୍ଟ୍ରାନ୍‌ସ ପରୀକ୍ଷାରେ ନବମ ସ୍ଥାନ ଅଧିକାର ଏବଂ ସଂସ୍କୃତରେ ସର୍ବୋଚ୍ଚ ନମ୍ବର ରଖି ଜୟନାରାୟଣ ପୁରସ୍କାର ଲାଭ ।

(୩) କଲିକତା ବିଶ୍ୱବିଦ୍ୟାଳୟରେ ଆଇ.ଏସ୍‌ସି. ପରୀକ୍ଷାରେ ୪ର୍ଥ ସ୍ଥାନ ଅଧିକାର ।

(୪) ତତ୍‌କାଳୀନ ବିହାର-ଓଡ଼ିଶା ସରକାରଙ୍କର ନିଷ୍ପତ୍ତି ଅନୁଯାୟୀ ଓଡ଼ିଶାରୁ ଜଣେ ଓ ବିହାରରୁ ଦୁଇଜଣ ଛାତ୍ରଙ୍କୁ ଉଚ୍ଚଶିକ୍ଷା ପାଇଁ ଅକ୍ସଫୋର୍ଡ଼ ଓ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟକୁ ପଠାଇବାର ସ୍ଥିର ହୋଇଥିଲା । ଓଡ଼ିଶାରୁ ଶ୍ରୀଯୁକ୍ତ ପରିଜା ଏଥିପାଇଁ ମନୋନୀତ ହୋଇଥିଲେ ।

(୫) କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କାଳରେ ଉଦ୍ଭିଦବିଜ୍ଞାନରେ ସର୍ବୋଚ୍ଚ ନମ୍ବର ରଖି ‘ଫ୍ରାଙ୍କ ସ୍ମାର୍ଟ’ ପୁରସ୍କାର ଲାଭ କରିଥିଲେ । ଏହି ପୁରସ୍କାର ଲାଭ କରିବାରେ ସେ ଥିଲେ ପ୍ରଥମ ଭାରତୀୟ । ପରେ ଅନ୍ୟ ଦୁଇଜଣ ଭାରତୀୟ

ଶ୍ରୀଯୁକ୍ତ ଆର୍.ଏସ୍. ଇନାମଦାର ଓ ଶ୍ରୀଯୁକ୍ତ ସି.ଡି. ଦେଶମୁଖ ଏହି ପୁରସ୍କାର ଲାଭ କରିଥିଲେ ।

(୬) କେମ୍ବ୍ରିଜରେ ଅବସ୍ଥାନ ସମୟରେ ଭାରତୀୟ 'ମଜଲିସ୍' ଏବଂ ଇଉନିଟ ଲିଗ୍‌ର ସଭାପତି ନିର୍ବାଚିତ । ଏହି ଛାତ୍ର ସଂଗଠନର ଲକ୍ଷ୍ୟ ଥିଲା ଦେଶର ଐକ୍ୟ ଏବଂ ଅଖଣ୍ଡତା ।

(୭) ଭାରତୀୟ ଶିକ୍ଷାସେବାକୁ ମନୋନୀତ । ଏହି ସେବାପାଇଁ ମନୋନୀତ ଅନ୍ୟ ଜଣେ ଓଡ଼ିଆ ଥିଲେ ଶ୍ରୀଯୁକ୍ତ ଶ୍ୟାମଚନ୍ଦ୍ର ତ୍ରିପାଠୀ । ପରେ ଶ୍ରୀଯୁକ୍ତ ତ୍ରିପାଠୀ ଭାରତବର୍ଷରେ ପ୍ରଥମ ଭାରତୀୟ ଶିକ୍ଷା ନିର୍ଦ୍ଦେଶକ ହୋଇଥିଲେ ଏବଂ କେନ୍ଦ୍ରୀୟ ଲୋକସେବା ଆୟୋଗରେ ପ୍ରଥମ ଓଡ଼ିଆ ସଭ୍ୟ ଥିଲେ ।

ପ୍ରସଙ୍ଗକ୍ରମେ ବାପା ଲେଖିଛନ୍ତି ଯେ ତାଙ୍କୁ ମଧ୍ୟ ଏହି ଆୟୋଗର ସଭ୍ୟ ପଦ ଯଚା ଯାଇଥିଲା, କିନ୍ତୁ ସେ ତାହା ଗ୍ରହଣ କରି ନ ଥିଲେ ।

(୮) ୧୯୨୧ ମସିହାରେ ରେଭେନ୍ସା କଲେଜର ଉଦ୍ଭିଦବିଜ୍ଞାନ ପ୍ରଫେସର ଏବଂ ୧୯୩୮ରୁ ୧୯୪୫ ପର୍ଯ୍ୟନ୍ତ ଉକ୍ତ କଲେଜର ଅଧ୍ୟକ୍ଷ ।

(୯) ୧୯୩୦ ମସିହାରେ ନିଖିଳଭାରତ ବିଜ୍ଞାନକଂଗ୍ରେସର ଉଦ୍ଭିଦବିଜ୍ଞାନ ଶାଖାର ସଭାପତି ଏବଂ ୧୯୩୧ରେ ଭାରତୀୟ ଉଦ୍ଭିଦବିଜ୍ଞାନ ସମିତିର ସଭାପତି ଭାବେ ନିର୍ବାଚିତ ।

(୧୦) ୧୯୪୩ରୁ ୧୯୪୮ ପର୍ଯ୍ୟନ୍ତ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି ଏବଂ ୧୯୫୫ରୁ ୧୯୬୫ ପର୍ଯ୍ୟନ୍ତ ପୁନଶ୍ଚ ଉକ୍ତ ବିଶ୍ୱବିଦ୍ୟାଳୟର ଦ୍ୱିତୀୟ ଓ ତୃତୀୟ ଥର ପାଇଁ କୁଳପତି । ବର୍ତ୍ତମାନ ପର୍ଯ୍ୟନ୍ତ ଏହି ବିଶ୍ୱବିଦ୍ୟାଳୟରେ କେହି ଏତେ ଦୀର୍ଘଦିନ ପାଇଁ କୁଳପତି ହୋଇ ନାହାନ୍ତି ।

(୧୧) ୧୯୪୫ ମସିହାରେ ଓଡ଼ିଶା ସରକାରଙ୍କର ପ୍ରଥମ କୃଷି ନିର୍ଦ୍ଦେଶକ ଭାବେ ନିଯୁକ୍ତ ଏହି ସମୟରେ ସେ ବେସରକାରୀ ପ୍ରତିରକ୍ଷା ସଂସ୍ଥାର ମୁଖ୍ୟ ୱାର୍ଡେନ ମଧ୍ୟ ନିଯୁକ୍ତ ହୋଇଥିଲେ ।

ଏହି ସମୟରେ ଅଧ୍ୟକ୍ଷ, କୁଳପତି, କୃଷି ନିର୍ଦ୍ଦେଶକ ଓ ମୁଖ୍ୟ ୱାର୍ଡେନ ନିଯୁକ୍ତ ହୋଇଥିବା ହେତୁ ସେ ସମୟର "ନିଆଁଖୁଣ୍ଟା" ପତ୍ରିକାରେ ବାପା ଚାରିଗୋଟି ଘୋଡ଼ା ଦୌଡ଼ାଇଥିବାର ଏକ ବ୍ୟଙ୍ଗଚିତ୍ର ପ୍ରକାଶ ପାଇଥିଲା ।

(୧୨) ୧୯୪୯ ମସିହାରେ ଭାରତ ସରକାରଙ୍କ ଦ୍ୱାରା ବନ୍ୟସମ୍ପଦ ବିନିଯୋଗ ନିମନ୍ତେ ଗଠିତ କେନ୍ଦ୍ର ଉପଦେଷ୍ଟା ବୋର୍ଡ଼ର ସଦସ୍ୟ ନିଯୁକ୍ତ ।

(୧୩) ୧୯୩୪-୩୭ ପର୍ଯ୍ୟନ୍ତ ଉତ୍କଳ ସାହିତ୍ୟସମାଜର ସଭାପତି ।

(୧୪) ୧୯୫୩ରେ କେନ୍ଦ୍ରୀୟ କୃଷି ଗବେଷଣା ସଂସ୍ଥାଗୁଡ଼ିକର ପୁନର୍ଗଠନ ପାଇଁ କେନ୍ଦ୍ର ସରକାରଙ୍କ ଖାଦ୍ୟ ଓ କୃଷି ମନ୍ତ୍ରଣାଳୟ ଦ୍ୱାରା ଗଠିତ ବିଶେଷଜ୍ଞ କମିଟିର ଅଧ୍ୟକ୍ଷ ।

(୧୫) ୧୯୫୫-୧୯୫୬ରେ ସରକାରୀ ଭାଷା କମିସନର ସଦସ୍ୟରୂପେ ଭାରତ ସରକାରଙ୍କ ଦ୍ୱାରା ନିଯୁକ୍ତ ।

(୧୬) ୧୯୩୩ରେ ଦି ନାସନାଲ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ସାଇନ୍ସେସ କଲିକତାର ପ୍ରତିଷ୍ଠାତା ଫେଲୋ ରୂପେ ନିର୍ବାଚିତ । ।

(୧୭) ନାସନାଲ୍ ଏକାଡେମୀ ଅଫ୍ ସାଇନ୍ସେସ୍, ଆହ୍ଲାବାଦର ଫେଲୋ ରୂପେ ନିର୍ବାଚିତ । ।

(୧୮) ଇଣ୍ଡିଆନ୍ ଏକାଡେମୀ ଅଫ୍ ସାଇନ୍‌ସେସ୍, ବାଙ୍ଗାଲୋରର ପ୍ରତିଷ୍ଠାତା ଫେଲୋ ରୂପେ ନିର୍ବାଚିତ ।

(୧୯) ରୟେଲ ଏସିଆଟିକ୍ ସୋସାଇଟି, କଲିକତାର ସଭ୍ୟଭାବେ ନିର୍ବାଚିତ । ଏହି ସୋସାଇଟି ୧୯୬୬ ମସିହାରେ ବାପାଙ୍କୁ 'ବାର୍କଲେ ସ୍ମାରକୀ ମେଡ଼ାଲ' ପ୍ରଦାନ କରିଥିଲେ ।

(୨୦) ୧୯୪୬ ମସିହାରେ ଭାରତ ସରକାରଙ୍କ ଭୂତତ୍ତ୍ୱ ଶିକ୍ଷା ସମ୍ବନ୍ଧୀୟ କମିଟିର ଅଧ୍ୟକ୍ଷ ଭାବେ ନିଯୁକ୍ତ ।

(୨୧) ୧୯୩୮ ମସିହାରେ ଓଡ଼ିଶା ସରକାରଙ୍କ ଦ୍ୱାରା ପଣ୍ଡିତ ନୀଳକଣ୍ଠ ଦାଶଙ୍କ ଅଧ୍ୟକ୍ଷତାରେ ଗଠିତ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କମିଟିର ସଦସ୍ୟ ଭାବେ ନିଯୁକ୍ତ । ଏହି କମିଟିର ସୁପାରିସ କ୍ରମେ ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇଥିଲା ।

(୨୨) ୧୯୪୩ ମସିହାରେ ବ୍ରିଟିଶ ସରକାରଙ୍କ ଦ୍ୱାରା Order of the British Empire (OBE) ଉପାଧିରେ ଭୂଷିତ ।

(୨୩) ୧୯୫୫ ମସିହାରେ ଭାରତ ସରକାରଙ୍କ ଦ୍ୱାରା ପଦ୍ମଭୂଷଣ ଉପାଧିରେ ସମ୍ମାନିତ ।

(୨୪) ୧୯୪୮ରୁ ୧୯୫୧ ପର୍ଯ୍ୟନ୍ତ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ପ୍ରୋ-ଭାଇସ୍-ଚାନ୍‌ସେଲର ଭାବେ ନିଯୁକ୍ତ ।

(୨୫) ୧୯୫୨ ମସିହାରେ ବାଲିକୁଦା ନିର୍ବାଚନ ମଣ୍ଡଳୀରୁ ସ୍ୱାଧୀନ ପ୍ରାର୍ଥୀ ଭାବେ ଓଡ଼ିଶା ବିଧାନସଭାକୁ ନିର୍ବାଚିତ । ପରେ ବିରୋଧୀ ଦଳର ନେତା ଭାବରେ ମଧ୍ୟ ନିର୍ବାଚିତ ହୋଇଥିଲେ ।

(୨୬) ଓଡ଼ିଶା ସରକାରଙ୍କ ଦ୍ୱାରା ରାଜ୍ୟରେ ନିଶାନିବାରଣ ଅନୁଧ୍ୟାନ ପାଇଁ ଗଠିତ କମିଟିର ଅଧ୍ୟକ୍ଷ ଭାବେ ୧୯୬୦ରେ ନିଯୁକ୍ତ ।

(୨୭) ୧୯୬୩ ମସିହାରେ ରାଜ୍ୟ ସରକାରଙ୍କ ଦ୍ୱାରା ଗଠିତ ରାଜ୍ୟ ବିଶ୍ୱବିଦ୍ୟାଳୟ କମିଟିର ଅଧ୍ୟକ୍ଷ ଭାବେ ନିଯୁକ୍ତ । ଏହି କମିଟିର ସୁପାରିସ କ୍ରମେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା ।

(୨୮) ୧୯୩୫ରୁ ୧୯୪୨ ଦୀର୍ଘ ସାତବର୍ଷ ଧରି ଭାରତୀୟ ଉଦ୍ଭିଦବିଜ୍ଞାନ ସମିତି ଦ୍ୱାରା ପ୍ରକାଶିତ ପତ୍ରିକାର ସମ୍ପାଦକ ।

(୨୯) ୧୯୬୦ ମସିହାରେ ଭାରତୀୟ ଉଦ୍ଭିଦବିଜ୍ଞାନ ସମିତି 'ବୀରବଲ ସାହାଣୀ' ସ୍ୱର୍ଣ୍ଣପଦକ ବାପାଙ୍କୁ ପ୍ରଦାନ କରିଥିଲେ ।

ପ୍ରସଙ୍ଗକ୍ରମେ ଏଠାରେ ଉଲ୍ଲେଖ ଯୋଗ୍ୟ ଯେ, ତାଙ୍କର ଜୀବଦ୍ଦଶାରେ ପ୍ରଫେସର ବୀରବଲ ସାହାଣୀ ବାପାଙ୍କର ଜଣେ ଅତି ଅନ୍ତରଙ୍ଗ ବନ୍ଧୁ ଥିଲେ ଏବଂ ଅନେକ ସମୟରେ ଆମ୍ଭମାନଙ୍କର ଆତିଥ୍ୟ ଗ୍ରହଣ କରୁଥିଲେ ।

ନାଗପୁର ନିକଟରେ ଏକ ମିଳିତ ବୈଜ୍ଞାନିକ ଅଭିଯାନ ସମୟରେ ବାପା ଏକ ଜୀବାଶ୍ମ ଫଳ (Fossil fruit) ଆବିଷ୍କାର କରିଥିଲେ, ଯାହା ପୂର୍ବରୁ କାହାରିକୁ ଜଣା ନ ଥିଲା । ପ୍ରଫେସର ସାହାଣୀ ଏହାର ନାମ ବାପାଙ୍କ ନାମକୁ ଯୋଡ଼ି Enigmocarpon Parijaii ଦେଇଥିଲେ । ପରବର୍ତ୍ତୀ କାଳରେ ଏହି ଫଳର ଫୁଲ ଏବଂ ମଞ୍ଜି ମଧ୍ୟ ଆବିଷ୍କୃତ ହୋଇଥିଲା ଏବଂ ଏହାର ନାମ ପରିବର୍ତ୍ତନ କରାଯାଇ 'Sahanianthus Parijaii ରଖାଯାଇଥିଲା ।

ପ୍ରଫେସର ସାହାଣୀ ପରବର୍ତ୍ତୀ ସମୟରେ ଲକ୍ଷ୍ନୌଠାରେ 'Sahani Institute of Paleo botany ସ୍ଥାପନା କରିଥିଲେ ଏବଂ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ଏହାର ନିର୍ଦ୍ଦେଶକ ଥିଲେ । ଏହି ସଂସ୍ଥା ଆରମ୍ଭରୁ ଜୀବନର ଅନ୍ତିମ ସମୟ ପର୍ଯ୍ୟନ୍ତ ବାପା ଏହାର ପରିଚାଳନା କମିଟିର ସଦସ୍ୟ ଥିଲେ ।

(୩୦) ୧୯୬୦ ମସିହାରେ ଭାରତୀୟ ବିଜ୍ଞାନ କଂଗ୍ରେସର ସାଧାରଣ ସଭାପତି ନିର୍ବାଚିତ । ଆଜି ପର୍ଯ୍ୟନ୍ତ ଅନ୍ୟ କେହି ଓଡ଼ିଆ ଏହି ସମ୍ମାନର ଅଧିକାରୀ ହୋଇପାରି ନାହାନ୍ତି ।

(୩୧) ୧୯୬୧ ମସିହାରେ ଭାରତ ଓ ଶ୍ରୀଲଙ୍କାର ବିଭିନ୍ନ ବିଶ୍ୱବିଦ୍ୟାଳୟର କୁଳପତିମାନଙ୍କୁ ନେଇ ଗଠିତ ଅନ୍ତର୍ବିଶ୍ୱବିଦ୍ୟାଳୟ ବୋର୍ଡ଼ର ଅଧ୍ୟକ୍ଷ ରୂପେ ନିର୍ବାଚିତ ।

ମନେପଡ଼େ ସେ ସମୟରେ ଡଃ ଜାକିରହୁସେନ ଆଲିଗଡ଼ ବିଶ୍ୱବିଦ୍ୟାଳୟର କୁଳପତି ଥିଲେ ।

୧୯୬୨-୬୩ରେ ବାପା ଏହି ବୋର୍ଡ଼ର ସ୍ଥାୟୀ କମିଟିର ଅଧ୍ୟକ୍ଷ ଭାବେ ନିର୍ବାଚିତ ହୋଇଥିଲେ ଏବଂ ଏହି କମିଟି ପରବର୍ତ୍ତୀ ସମୟରେ ୧୯୬୩ରେ ରାଜ୍ୟଗୋଷ୍ଠି

ବିଶ୍ୱବିଦ୍ୟାଳୟ ସଙ୍ଗଠନର କାଉନ୍‌ସିଲରେ ପ୍ରତିନିଧିତ୍ୱ କରିବା ପାଇଁ ବାପାଙ୍କୁ ମନୋନୀତ କରିଥିଲେ ।

(୩୨) ସ୍ନ ୧୯୬୩ରେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ସାଧାରଣ ଶିକ୍ଷା କମିଟିର ଅଧ୍ୟକ୍ଷ ଭାବେ ନିଯୁକ୍ତ ।

(୩୩) ସ୍ନ ୧୯୫୯ ଏବଂ ପୁନର୍ବାର ସ୍ନ ୧୯୬୪ରେ ଆନ୍ତର୍ଜାତିକ ଉଦ୍ଭିଦବିଜ୍ଞାନ ସମିତିର ଉପାଧ୍ୟକ୍ଷ ଭାବେ ନିର୍ବାଚିତ ହୋଇଥିଲେ । ଅନ୍ୟ କୌଣସି ଓଡ଼ିଆ ଆଜି ପର୍ଯ୍ୟନ୍ତ ଏହି ପଦବୀ ଅଧିକାର କରି ପାରି ନାହାନ୍ତି ।

୧୯୫୦ ମସିହାରୁ ୧୯୫୫ ପର୍ଯ୍ୟନ୍ତ ସେ ଉତ୍କଳ ବିଶ୍ୱବିଦ୍ୟାଳୟର ଉପକୁଳାଧିପତି (Pro. Chancellor) ରହିଥିଲେ । ୧୯୫୫ ମସିହାରେ ଯେତେବେଳେ ତାଙ୍କୁ ପୁନର୍ବାର ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ରୂପେ ନିଯୁକ୍ତ କରାଗଲା, ସ୍ୱଭାବସୁଲଭ ପରିହାସ ଛଳରେ ତତ୍କାଳୀନ କୁଳାଧିପତି (ମାନ୍ୟବର ରାଜ୍ୟପାଳ) ତାଙ୍କୁ କାହିଁକି ଉପକୁଳାଧିପତିରୁ କୁଳପତିକୁ ଖସାଇ ଦେବାକୁ ଇଚ୍ଛା କରିଛନ୍ତି ବୋଲି କହିଥିଲେ ।

(୩୪) ବିଭିନ୍ନ ବିଶ୍ୱବିଦ୍ୟାଳୟ ବିଭିନ୍ନ ସମୟରେ ତାଙ୍କୁ ନିମ୍ନମତେ ସମ୍ମାନସୂଚକ Doctorate of Science (D.Sc.) ଉପାଧିରେ ଭୂଷିତ କରିଥିଲେ ।

୧୯୪୪ – ପାଟନା ବିଶ୍ୱବିଦ୍ୟାଳୟ, ପାଟନା
୧୯୪୯ – ଉତ୍କଳ ବିଶ୍ୱବିଦ୍ୟାଳୟ, କଟକ
୧୯୬୨ – ଶ୍ରୀ ଭେଙ୍କଟେଶ୍ୱର ବିଶ୍ୱବିଦ୍ୟାଳୟ, ତିରୁପତି
୧୯୭୨ – ସମ୍ବଲପୁର ବିଶ୍ୱବିଦ୍ୟାଳୟ, ସମ୍ବଲପୁର
୧୯୭୬ – ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର

(୩୫) ଓଡ଼ିଶା ବିଜ୍ଞାନ ଶିକ୍ଷା ପ୍ରସାରଣ ସମିତିର ପ୍ରତିଷ୍ଠା ଦିବସରୁ ୧୯୬୩ ପର୍ଯ୍ୟନ୍ତ ଏହାର ସଭାପତି ରହିଥିଲେ ଏବଂ ତତ୍‌ପରେ ସେ ଏହି ସମିତିର ପୃଷ୍ଠପୋଷକ ରହିଥିଲେ ।

(୩୬) ୧୯୬୬ରେ ସେ ଓଡ଼ିଶା ଜୀବତତ୍ତ୍ୱ ବିଜ୍ଞାନ ସଂସ୍ଥା (Orissa Academy of Biological Science)ର ପ୍ରତିଷ୍ଠାତା ସଭାପତି ହୋଇଥିଲେ ।

ଉଲ୍ଲିଖିତ ଘଟଣାବଳୀ ପ୍ରଫେସର ପରିଜାଙ୍କର ସମସ୍ତ କୃତିତ୍ୱର ଏକ ସମ୍ପୂର୍ଣ୍ଣ ବିବରଣୀ ହୋଇ ନ ଥିଲେ ମଧ୍ୟ ଏଥିରୁ ସ୍ପଷ୍ଟ ଜଣାପଡ଼େ ଯେ ତାଙ୍କର ସମସାମୟିକ ଦେଶରେ ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠାଲାଭ କରିଥିବା ବିଶିଷ୍ଟ ବ୍ୟକ୍ତିମାନଙ୍କର ସେ ସମକକ୍ଷ ହୋଇପାରିଥିଲେ ।

(ମୂଳ ଇଂରାଜୀ ରଚନାରୁ ଡକ୍ଟର ଗଦାଧର ମିଶ୍ରଙ୍କ ଦ୍ୱାରା ଓଡ଼ିଆରେ ଅନୂଦିତ)

# ଡକ୍ଟର ପରିଜା
# ଭାରତରେ ଉଦ୍ଭିଦବିଜ୍ଞାନର ଅଗ୍ରଦୂତ

**ଶଚୀନ୍ଦ୍ର ନାଥ ଦାସଗୁପ୍ତ**

ଉତ୍କଳ ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷ ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କ ପଞ୍ଚାଅଶୀତମ ଜୟନ୍ତୀ ଉତ୍ସବ ପାଳନ କରିବାକୁ ସ୍ଥିର କରିଥିବା ଜାଣି ମୁଁ ପରମ ସନ୍ତୋଷ ଲାଭ କରୁଛି । ଡକ୍ଟର ପରିଜା ହେଉଛନ୍ତି ଭାରତର ଉଦ୍ଭିଦ ବିଜ୍ଞାନର ପଥପ୍ରଦର୍ଶକ ଓ ଅଗ୍ରଦୂତମାନଙ୍କ ମଧ୍ୟରେ ଅନ୍ୟତମ । ସେ ଭାରତୀୟ ବୈଜ୍ଞାନିକମାନଙ୍କ ମଧ୍ୟରେ ଏକ ଗୌରବୋଜ୍ଜ୍ୱଳ ଆସନ ଲାଭ କରିଛନ୍ତି । ପୁରୁଷାନୁକ୍ରମେ କେତେ ପିଢ଼ିର ଛାତ୍ରମାନଙ୍କର ସେ ହେଉଛନ୍ତି ପ୍ରେରଣାର ଏକ ଚିରନ୍ତନ ଉତ୍ସ । ତାଙ୍କର ସହକର୍ମୀମାନେ ତଥା ତାଙ୍କର ଘନିଷ୍ଠ ସଂସ୍ପର୍ଶରେ ଆସିଥିବା ଲୋକମାନେ ତାଙ୍କୁ ତାଙ୍କର ଅଗାଧ ପାଣ୍ଡିତ୍ୟ ପାଇଁ ଯେତିକି, ତାଙ୍କର ବ୍ୟକ୍ତିତ୍ୱର କୁହୁକସ୍ପର୍ଶ ପାଇଁ ତତୋଽଧିକ ଆଦର, ଶ୍ରଦ୍ଧା ଓ ସମ୍ମାନ କରୁଛନ୍ତି । ସେ ଯେ ଆମ୍ଭମାନଙ୍କ ଗହଣରେ ବହୁ ବର୍ଷ ବଞ୍ଚି ରହିଛନ୍ତି, ଏହା ଆମ ପ୍ରତି ଈଶ୍ୱରଙ୍କ ପରମ ଅନୁଗ୍ରହ ବ୍ୟତୀତ ଅନ୍ୟ କିଛି ନୁହେଁ ।

ତାଙ୍କର ଜୟନ୍ତୀ ପାଳନ ଅବସରରେ ଭାରତର ବହୁ ବରିଷ୍ଠ ବୈଜ୍ଞାନିକମାନଙ୍କୁ ନିମନ୍ତ୍ରଣ କରାଯାଇ ଏକ ସମ୍ମିଳନୀ ଆହୂତ ହୋଇ ସେମାନଙ୍କର ମୌଳିକ ଗବେଷଣାଲବ୍ଧ ସନ୍ଦର୍ଭଗୁଡ଼ିକର ଆଲୋଚନା ପାଇଁ ଯେଉଁ ଆଲୋଚନାଚକ୍ର (ସିମ୍ପୋସିୟମ୍)ର ଆୟୋଜନ କରାଯାଇଛି, ତାହା ଅତୀବ ଉପାଦେୟ ଅଟେ । ଏତଦ୍‌ବ୍ୟତୀତ ଏହି ଉତ୍ସବ ଆନୁକୂଲ୍ୟରେ "ପ୍ରାଣକୃଷ୍ଣ ପରିଜା ଜୀବନବିଜ୍ଞାନ ଇନ୍‌ଷ୍ଟିଚ୍ୟୁଟ୍" ନାମକ ଏକ ଗବେଷଣା ଅନୁଷ୍ଠାନର ମୂଳଭିତ୍ତି ସ୍ଥାପନ କରାଯାଉ । ଏହା ଅବଶ୍ୟ ଉଭୟ ସରକାରୀ ଓ ସର୍ବସାଧାରଣଙ୍କ ଆର୍ଥିକ ଅନୁଦାନରେ ଫଳବତୀ ହେବ ।

ଲଣ୍ଡନସ୍ଥିତ ପ୍ରସିଦ୍ଧ ଇମ୍ପିରିୟାଲ କଲେଜ ଅଫ୍ ସାଇନ୍ସ ଆଣ୍ଡ୍ ଟେକ୍‌ନୋଲଜିର ଉଦ୍ଭିଦ ବିଜ୍ଞାନ ବିଭାଗରେ "ହକ୍ସଲେ ଲାବୋରେଟୋରୀ" ପ୍ରତିଷ୍ଠିତ ହୋଇଛି । ତାହାରି ଆଦର୍ଶରେ ଉତ୍କଳ ବିଶ୍ୱବିଦ୍ୟାଳୟର ଉଦ୍ଭିଦ ଶରୀର ତତ୍ତ୍ୱ ପରୀକ୍ଷାଗାର (Plant Physiology Laboratory)କୁ ଡକ୍ଟର ପରିଜାଙ୍କ ନାମରେ ନାମିତ କରି ଏକ ବିନମ୍ର ଶୁଭାରମ୍ଭ କରାଯାଉ । (ରଚନାକାଳ ୧୯୭୭ ମସିହା । ମୂଳ ଇଂରାଜୀ ଲେଖାରୁ ଡକ୍ଟର ଗଦାଧର ମିଶ୍ରଙ୍କ ଦ୍ୱାରା ଓଡ଼ିଆରେ ଅନୂଦିତ ।)

# ପରମପୂଜ୍ୟ ଗୁରୁ ଡକ୍ଟର ପରିଜାଙ୍କର ପବିତ୍ର ସ୍ମୃତି

**ଡାକ୍ତର ଶରଚ୍ଚନ୍ଦ୍ର ମିଶ୍ର**

ଉତ୍କଳ ଜନନୀଙ୍କର ଊନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟାୟରେ ଯେଉଁ କତିପୟ ଯୋଗଜନ୍ମା ସନ୍ତାନ ଭୂମିଷ୍ଠ ହୋଇ ଉତ୍କଳମାତାଙ୍କର ତଥା ଭାରତରେ ତାଙ୍କର ଅସାଧାରଣ ପ୍ରତିଭା, ବୈଜ୍ଞାନିକ, ପ୍ରଶାସନିକ, ଶିକ୍ଷାଦାନ ଓ ଶିକ୍ଷାପ୍ରସାର କ୍ଷେତ୍ରରେ ସେମାନଙ୍କର କୃତି ଓ କୀର୍ତ୍ତି ଏବଂ ଅବିସ୍ମରଣୀୟ ଅବଦାନ ଏ ଜାତିର ଜନମାନସରେ ଜୀବନ୍ତ ରହିଛି ସେମାନଙ୍କ ମଧ୍ୟରେ ଡକ୍ଟର ପ୍ରାଣକୃଷ୍ଣ ପରିଜା ଏକ ବିରଳ ଏବଂ ଅସାଧାରଣ ପ୍ରତିଭା । ଉଦ୍ଭିଦ ବିଜ୍ଞାନ କ୍ଷେତ୍ରରେ ଅଧ୍ୟାପକଭାବରେ ଏବଂ ଗବେଷଣା କ୍ଷେତ୍ରରେ, ଉଚ୍ଚ ଶିକ୍ଷା ପ୍ରସାର ଏବଂ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କ୍ଷେତ୍ରରେ ତଥା କୁଳପତି ଭାବରେ ତାଙ୍କର ବ୍ୟକ୍ତିତ୍ୱ ତଥା ପ୍ରତିଭା ଏବଂ କର୍ମକୁଶଳତାର ସ୍ୱଚ୍ଛ ଚିତ୍ର ପ୍ରତିଫଳିତ ।

ଓଡ଼ିଶାରେ ଯେତେବେଳେ ଉଚ୍ଚଶିକ୍ଷିତ ବ୍ୟକ୍ତିବିଶେଷରେ ପାଶ୍ଚାତ୍ୟ ଦେଶର ଶିକ୍ଷାଲାଭ କରିଥିବା ବ୍ୟକ୍ତିମାନଙ୍କର ସଂଖ୍ୟା ଥିଲା ନଗଣ୍ୟ ସେହି ସମୟରେ ଏହି ଶତାବ୍ଦୀର ପ୍ରଥମ ଭାଗରେ ଯେଉଁମାନେ ପାଶ୍ଚାତ୍ୟ ଦେଶର ଶିକ୍ଷାଲାଭ କରି ନିଜର କୃତିତ୍ୱ ପ୍ରଦର୍ଶନ କରିପାରିଥିଲେ, ସେମାନଙ୍କ ମଧ୍ୟରେ ଡକ୍ଟର ପରିଜା ହେଉଛନ୍ତି ଅନ୍ୟତମ । ଅନ୍ୟ ବିଶିଷ୍ଟ ପ୍ରତିଭାଶାଳୀ ବ୍ୟକ୍ତିମାନେ ହେଲେ, ଶ୍ରୀଯୁକ୍ତ ଶ୍ୟାମଚନ୍ଦ୍ର ତ୍ରିପାଠୀ, ଶ୍ରୀଯୁକ୍ତ ନୀଳମଣି ସେନାପତି, ଶ୍ରୀଯୁକ୍ତ କୃପାସିନ୍ଧୁ ମିଶ୍ର, ଶ୍ରୀଯୁକ୍ତ ଅନ୍ନଦାଶଙ୍କର ରାୟ ଓ ଶ୍ରୀଯୁକ୍ତ ଭୁବନାନନ୍ଦ ଦାସ । ଶ୍ରୀଯୁକ୍ତ ତ୍ରିପାଠୀ ଓ ଶ୍ରୀଯୁକ୍ତ ପରିଜା ତତ୍କାଳୀନ ବ୍ରିଟିଶ୍ ଶାସନରେ ଭାରତୀୟ ଶିକ୍ଷା ସେବାରେ (Indian Educational Service) ନିଯୁକ୍ତି ପାଇଥିଲେ । ଶ୍ରୀଯୁକ୍ତ ନୀଳମଣି ସେନାପତି, ଶ୍ରୀଯୁକ୍ତ କୃପାସିନ୍ଧୁ ମିଶ୍ର ଏବଂ ଶ୍ରୀଯୁକ୍ତ ଅନ୍ନଦାଶଙ୍କର ରାୟ ଭାରତୀୟ ପ୍ରଶାସନିକ ସେବାରେ (Indian Civil Service) ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଏହି ସେବାରେ ନିଯୁକ୍ତ ହୋଇଥିଲେ ।

ତତ୍କାଳୀନ ଓଡ଼ିଶାର ଶିକ୍ଷା କ୍ଷେତ୍ରରେ ଏବଂ ପ୍ରଶାସନିକ ସେବା କ୍ଷେତ୍ରରେ ଉଚ୍ଚଶିକ୍ଷା ପ୍ରାପ୍ତ ଉତ୍କଳ ସନ୍ତାନମାନଙ୍କ ସଂଖ୍ୟା ସୀମିତ ଥିଲା । ଯଥାର୍ଥରେ ସେମାନେ ଏ ଜାତିର ଉଚ୍ଚ ଶିକ୍ଷା ଓ ସଂସ୍କୃତିର ଅଗ୍ରଦୂତ ଥିଲେ ଏବଂ ଏ ଜାତିକୁ ସେମାନଙ୍କ ଅବଦାନ ଅବିସ୍ମରଣୀୟ ।

ପୂଜ୍ୟ ଡକ୍ଟର ପରିଜାଙ୍କର ଛାତ୍ର ହେବାର ଗୌରବ ମୁଁ ଜୀବନରେ ପାଇଥିଲି । ରେଭେନ୍ସା କଲେଜରେ ସେ ପ୍ରିନ୍ସିପାଲ୍ ଥିଲାବେଳେ ମୁଁ ଆଇ.ଏସ୍‌ସି. କ୍ଲାସ୍‌ରେ ଯୋଗଦେଇଥିଲି ମୋର ବନ୍ଧୁ ଡାକ୍ତର ରାଧାନାଥ ମିଶ୍ରଙ୍କ ସହିତ । ସେତେବେଳେ ଆମ୍ଭେମାନେ କଟକ ମେଡ଼ିକାଲ ସ୍କୁଲରୁ ଏଲ୍.ଏମ୍.ପି. ପାସ୍ କରି କିଛିଦିନ ସରକାରୀ ଚାକିରି କରିଥିଲୁ । ୧୯୪୦-୪୧ ମସିହାରେ ପାଟନା ବିଶ୍ୱବିଦ୍ୟାଳୟରେ ପରିବର୍ତ୍ତିତ ଏମ୍.ବି.ବି.ଏସ୍. କୋର୍ସ ଆଇନ୍ ପ୍ରଣୀତ ହେଲା । ଯେଉଁ ଡାକ୍ତରମାନେ ଏଲ୍.ଏମ୍.ପି. (L.M.P.) ପାସ୍ କରିଥିବେ ଏବଂ ବାଓଲଜି (ବଟାନି ଓ ଜୁଲଜି) ବିଷୟ ନେଇ ଆଇ.ଏସ୍‌ସି. ପାସ୍ କରିଥିବେ ସେମାନଙ୍କୁ ପାଟନା ମେଡ଼ିକାଲ୍ କଲେଜରେ ତିନି ବର୍ଷ ଅଧ୍ୟୟନ କରିବାର ସୁଯୋଗ ମିଳିଲା । ଇଣ୍ଟର ଏମ୍.ବି.ବି.ଏସ୍. ଏକ ବର୍ଷ ଏବଂ ଫାଇନାଲ୍ ଏମ୍.ବି.ବି.ଏସ୍. ଦୁଇବର୍ଷ, ୪ର୍ଥ ବର୍ଷ ଫାଇନାଲ୍ ପାର୍ଟ ୧ ଓ ୫ମ ବର୍ଷ ଫାଇନାଲ୍ ପାର୍ଟ ୨ରେ ଉତ୍ତୀର୍ଣ୍ଣ ହେଲା ପରେ ଆମ୍ଭେମାନେ ଏମ୍.ବି.ବି.ଏସ୍. ଡିଗ୍ରୀ ଲାଭ କଲୁ । ନୂତନ ଭାବରେ ଆରମ୍ଭ ହୋଇଥିବା ଓଡ଼ିଶା ମେଡ଼ିକାଲ୍ କଲେଜରେ ଜୁନିଅର ଟିଚର ଭାବରେ ଯୋଗଦେଲୁ ।

ଡକ୍ଟର ପରିଜାଙ୍କ କନ୍ୟା ସୌଦାମିନୀ ମଧ୍ୟ ପାଟନା ମେଡ଼ିକାଲ୍ କଲେଜରେ ଏମ୍.ବି.ବି.ଏସ୍. କୋର୍ସରେ ଫାଷ୍ଟ ଇୟରରେ ଯୋଗ ଦେଇଥାନ୍ତି । ଡକ୍ଟର ପ୍ରାଣକୃଷ୍ଣ ପରିଜା ଓ ଶ୍ରୀଯୁକ୍ତ ଶ୍ୟାମଚନ୍ଦ୍ର ତ୍ରିପାଠୀ ପାଟନାକୁ ବିଶ୍ୱବିଦ୍ୟାଳୟର ସିନେଟ୍ ଓ ସିଣ୍ଡିକେଟ୍ ସଭାକୁ ଯୋଗଦେବାପାଇଁ ଆସିଲା ସମୟରେ ଆମ୍ଭେମାନେ ସେମାନଙ୍କୁ ସାକ୍ଷାତ କରି ଉପଦେଶ ନେଉଥିଲୁ ଏବଂ ସେମାନେ ଆମ୍ଭମାନଙ୍କୁ ବହୁଭାବରେ ଉତ୍ସାହିତ କରିଥିଲେ, ତା'ର କାରଣ ରେଭେନ୍ସା କଲେଜରେ ଅଧ୍ୟୟନ କରିବା ସମୟରେ ଡାକ୍ତର ଭାବରେ ଆମ୍ଭେମାନେ ଛାତ୍ର ଓ ଅଧ୍ୟାପକମାନଙ୍କୁ ପରାମର୍ଶ ଦେଉଥିଲୁ ଏବଂ ଡକ୍ଟର ପରିଜା ଓ ଅନ୍ୟାନ୍ୟ ଅଧ୍ୟାପକମାନେ ଆମ୍ଭମାନଙ୍କୁ ଅନ୍ୟ ଛାତ୍ରମାନଙ୍କ ଅପେକ୍ଷା ସ୍ୱତନ୍ତ୍ର ଭାବରେ ଦେଖୁଥିଲେ । ପରୀକ୍ଷାରେ ମଧ୍ୟ ଆମ୍ଭେମାନେ ଭଲ କରିଥିଲୁ ।

କଟକ ମେଡ଼ିକାଲ କଲେଜରେ ଚାକିରିରେ ଥିବା ସମୟରେ ମୁଁ ମେଡ଼ିସିନ୍‌ରେ ଉପାଧ୍ଯୁତ୍ତର ଡିଗ୍ରୀ କରିବାପାଇଁ ଦୁଇବର୍ଷ ଷ୍ଟଡ଼ି ଲିଭ୍ ନେଇ ୧୯୫୩ ଫେବୃୟାରୀରେ ପାଟନା ବିଶ୍ୱବିଦ୍ୟାଳୟରୁ ଏମ୍.ଡି. ଡିଗ୍ରୀ ପ୍ରାପ୍ତ ହେଲି । ତା'ପରେ ଚାକିରି ଜୀବନରେ ଉତ୍ତରୋତ୍ତର ଉନ୍ନତ ସ୍ତରକୁ ଯାଇ ୧୯୬୧ରେ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜରେ ସ୍ୱତନ୍ତ୍ର ହୋଇ ନୂତନଭାବେ ଖୋଲାଯାଇଥିବା ଶିଶୁ ଚିକିତ୍ସା ବିଭାଗରେ ଅଧ୍ୟାପକ ହେଲି ।

ଏହି ବିଭାଗରେ ଉପାଧ୍ଯୁତ୍ତର ଡିଗ୍ରୀ କ୍ଲାସ୍ ଖୋଲିବାପାଇଁ ମନରେ ଆକାଂକ୍ଷା ଥାଏ । ୧୯୬୩ ମସିହାରେ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ୍ କଲେଜରେ ପ୍ରତ୍ୟେକ ବିଷୟରେ

ଉପାଧିଉତ୍ତର ପାଠ୍ୟକ୍ରମ ଓ ତତ୍‌ସହିତ ଗବେଷଣାର ସୁଯୋଗ ପାଇଁ ସେଣ୍ଟ୍ରାଲ୍ ଲାଇବ୍ରେରି ଖୋଲିଥିଲା । ଶିଶୁ ଚିକିତ୍ସାରେ ଉପାଧିଉତ୍ତର ଶିକ୍ଷାର କାର୍ଯ୍ୟକ୍ରମ, ଗବେଷଣାର ସୁଯୋଗ ଏବଂ ଚାଳିଶ ଜଣ ରୋଗୀଙ୍କର ବେଡ୍ (ଭେଷଜ ୨୦ଟି ଶଯ୍ୟା ଏବଂ ଶଲ୍ୟ ଚିକିତ୍ସା ୨୦ଟି ଶଯ୍ୟା) ଶିଶୁ ବିଭାଗରେ ଥିଲା ।

ଏହି ବିଭାଗର ଉପାଧିଉତ୍ତର ଶିକ୍ଷାପାଇଁ (D.C.H) ଏବଂ (M.D.) ଡିଗ୍ରୀର ବିଭିନ୍ନ ବିଶ୍ୱବିଦ୍ୟାଳୟରୁ ଶିଶୁରୋଗ ବିଭାଗର ସିଲାବସ୍ ସବୁ ତୁଳନା କରି ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ, କଟକର ଶିଶୁରୋଗ ବିଭାଗର ପାଠ୍ୟକ୍ରମ ଓ ଗବେଷଣା ପାଇଁ ମୁଁ ସୁଯୋଗର ବ୍ୟବସ୍ଥା ସମ୍ବନ୍ଧରେ ଉଲ୍ଲେଖ କରି ଉତ୍କଳ ବିଶ୍ୱବିଦ୍ୟାଳୟକୁ ସ୍ୱୀକୃତି ପାଇଁ ମେଡ଼ିକାଲ୍ କଲେଜର ପ୍ରିନ୍ସିପାଲ୍‌ଙ୍କୁ ଦରଖାସ୍ତ କରି ତାହା ଉତ୍କଳ ବିଶ୍ୱବିଦ୍ୟାଳୟକୁ ପଠାଗଲା । ଡକ୍ଟର ପରିଜା ଥାନ୍ତି କୁଳପତି ।

ନିୟମାନୁସାରେ ଏହା ସିଣ୍ଡିକେଟ୍‌ର ମେଡ଼ିକାଲ୍ କଲେଜର ପ୍ରିନ୍ସିପାଲ୍ କିମ୍ବା ଅନ୍ୟ କୌଣସି ସିଣ୍ଡିକେଟ୍ ସଭ୍ୟ କିମ୍ବା ଏକାଡ଼େମିକ୍ କାଉନ୍‌ସିଲର ସଭ୍ୟ ଏକାଡେମିକ୍ କାଉନ୍‌ସିଲ୍‌ରେ ପ୍ରସ୍ତାବ କରିବା କଥା । ମାତ୍ର ମେଡ଼ିକାଲ କଲେଜର ସିଣ୍ଡିକେଟ୍ ସଭ୍ୟମାନେ ଏହି ପ୍ରସ୍ତାବ ଆଣିବାକୁ ଦ୍ୱିଧାବୋଧ କରୁଥିଲେ । ମୁଁ ଏ ବିଷୟରେ ପରିଜାସାହେବଙ୍କୁ ତାଙ୍କର କଟକସ୍ଥିତ ବାସଭବନକୁ ଯାଇ ତାଙ୍କୁ ସମସ୍ତ ବିଷୟ ଜଣାଇଦେଲି । ସେ ସ୍ୱତଃପ୍ରବୃତ୍ତ ହୋଇ କହିଲେ ଯଦି ମେଡ଼ିକାଲ୍ କଲେଜର ସଦସ୍ୟ ଶିଶୁରୋଗ ବିଭାଗରେ ସ୍ନାତକୋତ୍ତର ଶିକ୍ଷାର ବ୍ୟବସ୍ଥା ପାଇଁ ପ୍ରସ୍ତାବ ଆଗତ ନ କରନ୍ତି ସେ କୁଳପତି ଏବଂ ଏକାଡେମିକ୍ କାଉନ୍‌ସିଲ୍‌ର ଅଧ୍ୟକ୍ଷ ଭାବରେ ନିଜେ ଏ ପ୍ରସ୍ତାବ ଆଗତ କରିବେ । ମୋତେ ଏ ବିଷୟରେ ସେ ଉତ୍ସାହିତ କରିଥିଲେ । ପ୍ରକୃତରେ ସେ ନିଜେ ଏ ପ୍ରସ୍ତାବ ଆଗତ କଲେ ଏବଂ ଏହା ସଦସ୍ୟମାନଙ୍କର ସ୍ୱୀକୃତି ଲାଭକଲା ।

ତା'ପରେ ଗୋଟିଏ କମିଟି ଅଫ୍ ଇନ୍ସପେକ୍ଟର୍ସ ପରିଜାସାହେବଙ୍କ ସଭାପତିତ୍ୱରେ ଗଠିତ ହୋଇଥିଲା । ପାଟନା ମେଡ଼ିକାଲ କଲେଜର ଦୁଇଜଣ ଅଧ୍ୟାପକ ଏବଂ ଡକ୍ଟର ପରିଜା ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜର ଶିଶୁରୋଗ ବିଭାଗର ଶଯ୍ୟାସଂଖ୍ୟା, ଲାଇବ୍ରେରି ସୁବିଧା ଓ ଲାବୋରେଟୋରୀରେ ପରୀକ୍ଷା ନିରୀକ୍ଷା ପାଇଁ ସୁବିଧା ଏସବୁ ତନ୍ନ ତନ୍ନ କରି ପରୀକ୍ଷା କଲେ । ଶିଶୁରୋଗ ବିଭାଗ (Paediatrics)ରେ D.C.H. ଡିପ୍ଲୋମା ଏବଂ M.D. ପାଠ୍ୟକ୍ରମ ଆରମ୍ଭ କରିବାକୁ ସମ୍ମତି ଦେଲେ । ଏ ଘଟଣାଟି ମୋର ଜୀବନରେ ସ୍ମରଣୀୟ ହୋଇ ରହିଛି ।

ପରିଜାସାହେବଙ୍କ ପରିବାର ସହିତ ଚିକିତ୍ସକ ଭାବରେ ଏବଂ ପୂର୍ବରୁ ରେଭେନ୍ସା କଲେଜରେ ଆଇ.ଏସ୍‌ସି. ଶ୍ରେଣୀରେ ଛାତ୍ର ଭାବରେ ମୁଁ ବିଶେଷ ରୂପେ ପରିଚିତ ହୋଇଥିଲି ଏବଂ ତାଙ୍କ ପରିବାରର ଲୋକଙ୍କୁ ଚିକିତ୍ସା କରିବାର ଗୌରବ ମୁଁ ମଧ୍ୟ

ପାଉଥିଲି । ତାଙ୍କପରି ଛାତ୍ରବତ୍ସଳ, ନୀତିବାନ୍, ଶିକ୍ଷା ପ୍ରସାର ଓ ପ୍ରଗତି ପାଇଁ ସର୍ବଦା ସୁବିଧା ଓ ସୁଯୋଗ ଦେବାରେ ସେ ଥିଲେ ଏକ ଆଦର୍ଶ । ତାଙ୍କର କର୍ତ୍ତବ୍ୟନିଷ୍ଠା, ନିୟମାନୁବର୍ତ୍ତିତା, ଓଡ଼ିଶାରେ ଉଚ୍ଚଶିକ୍ଷାର ପ୍ରସାର ତଥା ବିଭିନ୍ନ ବିଷୟରେ ଉଚ୍ଚଶିକ୍ଷାର ବ୍ୟବସ୍ଥା କରିବା ପାଇଁ କାର୍ଯ୍ୟକ୍ରମକୁ ସେ ସର୍ବଦା ଅଗ୍ରାଧିକାର ଦେଉଥିଲେ । ତାଙ୍କ କୁଳପତିତ୍ୱ ସମୟରେ ବହୁତ ମହାବିଦ୍ୟାଳୟ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ସ୍ଥାପିତ ହୋଇ ଉଚ୍ଚଶିକ୍ଷା ପ୍ରସାରରେ ଅଗ୍ରଗତି କରିଥିଲା ।

ଡକ୍ଟର ପରିଜା ଥିଲେ ନୀତିବାନ୍, କର୍ତ୍ତବ୍ୟନିଷ୍ଠ, ଛାତ୍ରବତ୍ସଳ, ଏକ କୃତୀ ବୈଜ୍ଞାନିକ ଓ ଅଧ୍ୟାପକ ଏବଂ ଶିକ୍ଷାବିତ୍ । ତାଙ୍କର ବହୁମୁଖୀ ପ୍ରତିଭା ଓ ଶିକ୍ଷାର ପ୍ରସାର ସକାଶେ ଉଦ୍ୟମ ଏବଂ ଆଦର୍ଶ ଜୀବନର ସ୍ମୃତି ଅବିସ୍ମରଣୀୟ । ତାଙ୍କର ମହନୀୟ ଜୀବନୀ ଓ ଓଡ଼ିଶାର ଉଚ୍ଚ ଶିକ୍ଷାକ୍ଷେତ୍ରରେ ଅବଦାନ ଆମର ଉତ୍ତରପୁରୁଷଙ୍କୁ ଉଦ୍‌ବୁଦ୍ଧ ଓ ଅନୁପ୍ରାଣିତ କରିବ । ତାଙ୍କ ଜୀବନ ଦର୍ଶନର ମହନୀୟ ଆଦର୍ଶ ଚିର ଜାଜ୍ୱଲ୍ୟମାନ ଆଲୋକ ସ୍ତମ୍ଭ ରୂପେ ଏ ଜାତିକୁ ଉଦ୍‌ବୁଦ୍ଧ କରୁ । ସେ ପାବନ ଜୀବନ ପ୍ରତି ଗଭୀର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

# ପରମ ଗୁରୁ

**ଶରତ ଚନ୍ଦ୍ର ମିଶ୍ର**

ପରିଜାସାହେବଙ୍କ ସମ୍ବନ୍ଧରେ ମୋର ପରିଚିତି "କେମ୍ବ୍ରିଜ ବିଶ୍ୱବିଦ୍ୟାଳୟ" ଜରିଆରେ । ମାଟ୍ରିକୁଲେସନ ସାହିତ୍ୟ ବହିରେ ପରିଜାସାହେବଙ୍କ "କେମ୍ବ୍ରିଜ ବିଶ୍ୱବିଦ୍ୟାଳୟ" ବୋଲି ଗୋଟିଏ ପ୍ରବନ୍ଧ ଥିଲା ଓ ତାଙ୍କ ନାଁ ସାଙ୍ଗରେ ଗୁଡ଼ିଏ ଉପାଧି ଯୋଡ଼ା ଥିଲା । ଅବଶ୍ୟ ଡକ୍ଟର ଉପାଧି ଦୁଇଟି ସମ୍ମାନସୂଚକ ବୋଲି ବହୁତ ପରେ ଜାଣିଲି । ସେ ଲେଖାଟି ମୋତେ ବହୁତ ପ୍ରଭାବିତ କରିଥିଲା । ସେ ଲେଖାରେ ପରିଜାସାହେବଙ୍କ ଚିନ୍ତାଧାରା ବେଶ୍ ସୁସ୍ପଷ୍ଟ । ତାଙ୍କ ଅନୁସାରେ "ଜୀବଜଗତରେ ଯେତିକି ତଳକୁ ଯିବ, ଆଚାରର ମାତ୍ରା ସେତିକି ବଢ଼େ ଓ ବିଚାରର ମାତ୍ରା କମେ । ସେହିଠାରୁ ହିଁ ରକ୍ଷଣଶୀଳତା ଆରମ୍ଭ" । ରକ୍ଷଣଶୀଳତାର ଅର୍ଥ ଏପରି ଗୋଟିଏ ସାଧାରଣ ପିଲା ବୁଝିଲା ଭଳି ବୋଧେ ଆଉ କେଉଁଠାରେ ନାହିଁ । ମୋ ପିଢ଼ିର ପିଲା କଲେଜ ଆସିଲା ବେଳକୁ ପରିଜାସାହେବ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ ଚାଲିଗଲେଣି ପ୍ରୋ-ଭାଇସ ଚାନସେଲର ହୋଇ । ଶିକ୍ଷାବିଭାଗର ଦୁଇଜଣଯାକ ସାହେବ ସେତେବେଳକୁ ଓଡ଼ିଶା ବାହାରେ । ତ୍ରିପାଠୀସାହେବ ଜୟପୁର ପବ୍ଲିକ ସର୍ଭିସ କମିଶନ ଚେୟାରମ୍ୟାନ ଓ ସେଠାରେ ତାଙ୍କର ମୃତ୍ୟୁ ହୁଏ । ପରିଜାସାହେବ କାଳକ୍ରମେ ଉତ୍କଳ ଇଉନିଭରସିଟିର ପ୍ରୋ-ଚାନସେଲର ହୁଅନ୍ତି ଓ ରେଭେନ୍ସା କଲେଜରେ ସିନେଟ ବୈଠକ ବସିଥିବା ବେଳେ ତାଙ୍କୁ ଥରେ ଦୂରରୁ ଦେଖିବାର ସୁଯୋଗ ମିଳିଥିଲା ।

ପରିଜାସାହେବଙ୍କ ସାଙ୍ଗରେ ପ୍ରଥମଦେଖା ୧୯୫୨ ମସିହାରେ । ସେ ସେତେବେଳେ ଏମ୍. ଏଲ୍. ଏ. ଥାଆନ୍ତି ଓ ରେଭେନ୍ସା କଲେଜରେ ସବୁ କଲେଜ ୟୁନିୟନମାନଙ୍କର ପ୍ରେସିଡେଣ୍ଟ ଓ ସେକ୍ରେଟାରୀମାନଙ୍କର ଏକ ସମ୍ମିଳନୀର ବ୍ୟବସ୍ଥା ରେଭେନ୍ସା କଲେଜ ୟୁନିୟନ ତରଫରୁ ହେଉଥାଏ । ରେଭେନ୍ସା କଲେଜ ୟୁନିୟନର ତତ୍କାଳୀନ ସଭାପତି ଶ୍ରୀ ରାଜେନ୍ଦ୍ର ପ୍ରସାଦ ଦାସଙ୍କ ସାଙ୍ଗରେ ପରିଜାସାହେବଙ୍କୁ ନିମନ୍ତ୍ରଣ କରିବା ପାଇଁ ଅନ୍ୟ ଜଣେ ଦୁଇଜଣଙ୍କ ସହ ମୁଁ ବି ଯାଇଥିଲି । ଏମ୍. ଏଲ୍. ଏ.ମାନଙ୍କ ପାଇଁ ଉଦ୍ଦିଷ୍ଟ ଏକ ଛୋଟ ଘର ଭିତରେ ପରିଜାସାହେବ ସୁଟ୍, ଟାଇ ପିନ୍ଧି ବସିଥାନ୍ତି । କୁଆଡ଼େ ବାହାରକୁ ଯିବାର ଥାଏ ଓ ସେ ଆମ ସମ୍ମିଳନୀକୁ ଉଦ୍‌ଘାଟକ ଭାବରେ ଆସିପାରିଲେ ନାହିଁ । ତତ୍କାଳୀନ କୁଳପତି ଡକ୍ଟର ପରଶୁରାମ ମିଶ୍ର ଉଦ୍‌ଘାଟକ ହେଲେ । ବି. ଏ. ଶେଷବର୍ଷ ହେଲା ବେଳକୁ ପରିଜାସାହେବ

ଭାଇସ-ଚାନସେଲର । ଆମର ଚତୁର୍ଥ ବାର୍ଷିକ ଶ୍ରେଣୀ । ଦଳେଇଘାଇ ଭାଙ୍ଗିବା ଓ ସୀମା ଆନ୍ଦୋଳନରେ ବେଶ୍ କିଛି ସମୟ ନଷ୍ଟ ହୋଇଥାଏ । ବି. ଏ. ପରୀକ୍ଷା ଘୁଞ୍ଚାଇବା ପାଇଁ ଅନ୍ୟ କେତେକଙ୍କ ସାଙ୍ଗରେ ମୁଁ ବି ଯାଇଥିଲି ପରିଜାସାହେବଙ୍କ ପାଖକୁ । ଧୀରସ୍ଥିର ହୋଇ ସବୁ ଶୁଣିଲେ ଓ ଦଳେଇଘାଇ ଭାଙ୍ଗିବାଜନିତ ବିଷୟରେ ଦୁଷ୍ଟବ୍ୟକ୍ତିଙ୍କ ସାହାଯ୍ୟ ପାଇଁ ବିଶେଷ କିଛି କରି ନାହୁଁ ବୋଲି ରୋକଠୋକ୍ ମନ୍ତବ୍ୟ ଦେଲେ । ସୀମା ଆନ୍ଦୋଳନରେ ଆମ କାର୍ଯ୍ୟର ସାବାସୀ କଲେ ଓ ପରୀକ୍ଷା ଘୁଞ୍ଚାଇବାର ପ୍ରତିଶ୍ରୁତି ଦେଇ, ଘୁଞ୍ଚାଇ ଦେଲେ । ବି. ଏ. ଓ ଏମ୍. ଏ. ସାର୍ଟିଫିକେଟ୍‌ରେ ତାଙ୍କର ଦସ୍ତଖତ ରହିଛି ।

ପୁଣି କିଛି ବର୍ଷ ଗଡ଼ିଗଲା । ୧୯୬୪ ମସିହାରେ ତତ୍‌କାଳୀନ ରାଜ୍ୟପାଳ ଡକ୍ଟର ଅଯୋଧ୍ୟାନାଥ ଖୋସଲାଙ୍କ ପାଖରେ ମୁଁ ଏ. ଡି. ସି. ଭାବେ କାର୍ଯ୍ୟ କରୁଥାଏ । ଡକ୍ଟର ପରିଜା ସେଠାକୁ ଅନେକ ସମୟରେ ଆସନ୍ତି । ଡକ୍ଟର ଖୋସଲା ତାଙ୍କୁ ଜଣେ ନିଜର ଘନିଷ୍ଠ ବନ୍ଧୁ ଭାବରେ ଗ୍ରହଣ କରିଥାନ୍ତି ଓ ପରିଜାସାହେବ ଆସି ରାଜ୍ୟପାଳଙ୍କ ପାଖକୁ ଯିବା ଆଗରୁ ମୋ ପାଖରେ ୩/୪ ମିନିଟ ବସନ୍ତି । ସେହିଦିନ ଠାରୁ ସେ ଭଲ ଭାବରେ ମୋତେ ଜାଣିଲେ ଓ ସ୍ନେହପୂର୍ଣ୍ଣ ଦୃଷ୍ଟିରେ ବ୍ୟବହାର କରନ୍ତି । ଥରେ ସେ ଅସୁସ୍ଥ ଥିବା ଖବର ପାଇ ଡକ୍ଟର ଖୋସଲା ତାଙ୍କୁ ସନ୍ଦର୍ଶନ କରିବାକୁ ଚାହିଁଲେ । ରାଜ୍ୟପାଳ ଜଣେ କାହାରି ଗୃହକୁ ଯିବାର ପରମ୍ପରା ନାହିଁ ବୋଲି କେତେକ ଦର୍ଶାଇଲେ । ଡକ୍ଟର ଖୋସଲା ସେସବୁ ନ ଶୁଣି କଟକ ଆସି ପରିଜାସାହେବଙ୍କୁ ତାଙ୍କ କ୍ୟାଣ୍ଟନମେଣ୍ଟ ବାସଭବନରେ ସନ୍ଦର୍ଶନ କଲେ । ମୁଁ ସାଙ୍ଗରେ ଥାଏ । ସେଠାରେ ମଧ୍ୟ ପରିଜାସାହେବ କୁଳପତି ରହିବା ପାଇଁ ଆଉ ତାଙ୍କର ଇଚ୍ଛା ଲାଗୁ ନାହିଁ ଓ ଇସ୍ତଫା ଦେବା କଥା ଉଠାଇଲେ । ରାଜ୍ୟପାଳ ତାଙ୍କୁ ନିବର୍ତ୍ତାଉଥାନ୍ତି । କିଛି ଦିନ ପରେ ପରିଜାସାହେବ କୁଳପତି ପଦରୁ ଇସ୍ତଫା ଦେଲେ ଓ ବନ୍ଧୁ ବିଦାୟ ନାମରେ ଗୋଟିଏ ଚିଠି କେତେକଙ୍କୁ ବାଣ୍ଟିଲେ । ତାର ବର୍ଷେ ପରେ ବ୍ରିଟିଶ କାଉନସିଲର ବୃତ୍ତି ପାଇଁ ମୁଁ ଦରଖାସ୍ତ ଦେଲି । ଦରଖାସ୍ତରେ ତିନିଜଣ ନିର୍ଣ୍ଣାୟକଙ୍କ ନାମ ଦେବାକୁ ପଡ଼ିଲା । ସେଥିରୁ ଜଣେ ନିଜର ବିଭାଗୀୟ କର୍ତ୍ତା ହେବା ଦରକାର । ବାକି ଦୁଇଜଣଙ୍କ ମଧ୍ୟରୁ ରାଜ୍ୟପାଳ ଡକ୍ଟର ଖୋସଲାଙ୍କ ନାମ ଦେଲି ଓ ଅନ୍ୟଜଣେ ନିର୍ଣ୍ଣାୟକ ହେବା ପାଇଁ ଡକ୍ଟର ପରିଜା ଆଗ୍ରହରେ ସମ୍ମତି ଜଣାଇଲେ । ବ୍ରିଟିଶ କାଉନସିଲର ସ୍କଲାରସିପ୍ ମୁଁ ପାଇଲି ମଧ୍ୟ । କୌଣସି ପୁଲିସ ଅଫିସରଙ୍କ ଭାଗ୍ୟରେ ସେ ପର୍ଯ୍ୟନ୍ତ ତା ଜୁଟି ନ ଥିଲା । ଲଣ୍ଡନରୁ ଫେରି ପରିଜାସାହେବଙ୍କୁ ଦେଖା କରିଥିଲି ଓ ବଡ଼ ଆଗ୍ରହରେ କେମ୍ବ୍ରିଜ ଓ ଲଣ୍ଡନ କଥା ପଚାରିଲେ ।

୧୯୭୨ ମସିହାରେ କେନ୍ଦ୍ର ଗୋଇନ୍ଦା ବିଭାଗରେ ଅବସ୍ଥାପିତ ହୋଇ ପରିଜାସାହେବଙ୍କର କ୍ୟାଣ୍ଟନମେଣ୍ଟସ୍ଥିତ ଘର ସାମନାରେ ମୁଁ ଆସି ରହିଲି । ପରିଜାସାହେବ ପୂରା ଅବସରପ୍ରାପ୍ତ ଓ ନିଜ ହତାର ପରିସର ମଧ୍ୟରେ ସଂଧ୍ୟା ଓ ସକାଳେ ବୁଲାବୁଲି କରନ୍ତି । ଦୁଇତିନିଥର ଯାଇ ତାଙ୍କ ସାଙ୍ଗେ ଦେଖା କରିଛି । ବଡ଼ ସ୍ନେହ ଓ ଆଦରର ସହିତ ବ୍ୟବହାର କରନ୍ତି ।

ପରିଜାସାହେବ ଆମର ଗୁରୁ ନ ଥିଲେ । ତାଙ୍କୁ ଗୁରୁଭାବରେ ପାଇବାର ସୌଭାଗ୍ୟ ଆମକୁ ଜୁଟି ନାହିଁ । ସିଏ କିନ୍ତୁ ଆମ ସମୟର ଥିଲେ ଅତ୍ୟନ୍ତ ସମ୍ମାନାସ୍ପଦ ବ୍ୟକ୍ତି ଓ ଆମର ସବୁ ସମ୍ମାନାସ୍ପଦ ଗୁରୁମାନଙ୍କର ଥିଲେ ଗୁରୁ । ତାଙ୍କ ବ୍ୟକ୍ତିତ୍ୱ ସାମନାରେ ଯେକୌଣସି ଲୋକର ମୁଣ୍ଡ ନଇଁ ଯାଉଥିଲା ଓ ବହୁ ସଦ୍‌ଗୁଣର ସେ ଥିଲେ ଆଧାର । ସେ ଥିଲେ ଆମର ଚିର ନମସ୍ୟ ପରମଗୁରୁ ।

# ପୂଜ୍ୟ ସାର୍ ପ୍ରଫେସର ପରିଜା

ଶତ୍ରୁଘ୍ନ ନାଥ

ସେ ପିଢ଼ିର ସମସ୍ତେ ପ୍ରଫେସର ପରିଜାଙ୍କୁ 'ସାର୍' ବୋଲି ସମ୍ବୋଧନ କରୁଥିଲେ । ଶ୍ରେଣୀରେ ତାଙ୍କ ପାଖରେ ପଢ଼ିଥାନ୍ତୁ ବା ନ ଥାନ୍ତୁ, ତାଙ୍କୁ ଦେଖିବା ଓ ତାଙ୍କ କଥା ଶୁଣିବା ମାତ୍ରେ "ସାର୍" କହୁଥିଲେ । ତାଙ୍କ ଅସାଧାରଣ କୃତି, ସଂଗ୍ରାମୀ ଜୀବନ, ସ୍ୱାଭିମାନୀ ପୁରୁଷକାର ଓ ତାଙ୍କ ବହୁମୁଖୀ ବ୍ୟକ୍ତିତ୍ୱ ଘରେ ଘରେ ତାଙ୍କୁ ପ୍ରବାଦ ପୁରୁଷ କରିଥିଲା । ଶିକ୍ଷକହିଁ ସେ ବେଳର ଯଥାର୍ଥ ଭାବମୂର୍ତ୍ତିର ପ୍ରତୀକ ଥିଲେ । ଭୟ ଲାଗେ, ପଛଘୁଞ୍ଚା ଦେବାକୁ ପଡ଼େ, ପ୍ରଶ୍ନର ଉତ୍ତର ନ ଥାଏ, ସବୁ କିଛି ଗ୍ରହଣ କରିନିଆଯାଏ, ବାଟ ଭାଙ୍ଗି ଚାଲିଯିବାକୁ ହୁଏ., ମୁଣ୍ଡ ଟୁଙ୍ଗାରିବାକୁ ପଡ଼େ, ଆଗେଇଆସି ହୁଏ ନାହିଁ, ପ୍ରତିବାଦ କରାଯାଏ ନାହିଁ ଇତ୍ୟାଦି । ପଢ଼ିଥାନ୍ତୁ ବା ନ ପଢ଼ିଥାନ୍ତୁ, ଏହାହିଁ ଶିକ୍ଷକ ଓ ଶିକ୍ଷାର୍ଥୀ ସମ୍ପର୍କ । ଶ୍ରେଣୀରେ ଶିକ୍ଷକ ସବୁଠି ଓ ସମସ୍ତଙ୍କ ଶିକ୍ଷକ ବୋଲି ବିବେଚିତ ହୁଅନ୍ତି ।

ଜଣେ ଅନୁଭବୀ ଛାତ୍ରଭାବରେ ମୋର ମଧ୍ୟ ଧାରଣା ଯେ କେବଳ ରେଭେନ୍ସା କଲେଜର ସବୁ ଶିକ୍ଷକ ବିଶେଷ କରି ପ୍ରଫେସର ପରିଜା ମୋର ସଦା ସ୍ମରଣୀୟ । ସ୍ମରଣ ଆଣିଦିଏ ସମ୍ପତ୍ତି ଓ ଗୌରବର ଅନୁଭୂତି । ଏପରି ପିଢ଼ିର ଶିକ୍ଷକ ଏବେ ସହଜରେ ଦୃଷ୍ଟିପଥାରୂଢ଼ ନ ହୋଇଥିବାବେଳେ ସେ କେଡ଼େ ମହାନ୍ ଆଜିସୁଦ୍ଧା ହୃଦ୍‌ବୋଧ ହୁଏ ।

୧୯୩୪ ମସିହାରେ I.Sc. କ୍ଲାସ୍‌ର ଛାତ୍ର ହେଲି । ପଦାର୍ଥ ବିଜ୍ଞାନ, ରସାୟନ ବିଜ୍ଞାନ ଓ ଗଣିତ ସହିତ ଉଦ୍ଭିଦ ବିଜ୍ଞାନକୁ ଚତୁର୍ଥ ବିଷୟ ନେଇଥାଏ । ସେତେବେଳେ ଉଦ୍ଭିଦ ବିଜ୍ଞାନ ହିଁ ଚତୁର୍ଥ ବିକଳ୍ପ ବିଷୟ ମିଳୁଥିଲା । ଶ୍ରୀ ଦେବବ୍ରତ ମୁଖାର୍ଜି ଓ ଶ୍ରୀ ପରଶୁରାମ ମିଶ୍ର ଆମକୁ ଥିଓରି ପଢ଼ାଉଥିଲେ । ଶ୍ରୀ ମୁଖାର୍ଜି ପୃଥୁଳକାୟ ହୋଇଥିବାରୁ ଗୋଟିଏ ଉଚ୍ଚ ଟୁଲ୍ ଉପରେ ବସି ପଢ଼ାନ୍ତି । ତେଣୁ ସେ ବିଶେଷ କଳାପଟା କାମ କରନ୍ତି ନାହିଁ, Conceptଗୁଡ଼ିକୁ ଛୋଟ ଛୋଟ କରି ଗୋଟି ଗୋଟିକୁ ବାରମ୍ବାର ବୁଝାନ୍ତି । ପ୍ରଫେସର ପରିଜା କେତୋଟି ପ୍ରାକ୍ଟିକାଲ କ୍ଲାସ ନିଅନ୍ତି । ମୁଁ କେବେ ତାଙ୍କୁ ବସିବାର ଦେଖି ନାହିଁ । କ୍ଲାସ ଛାଡ଼ି ବାହାରକୁ ଯିବାର ଦେଖି ନାହିଁ ବା ଶୁଣି ନାହିଁ । ଅନ୍ୟ କାହାରି ପ୍ରାକ୍ଟିକାଲ ନୋଟ ଖାତାକୁ ଟିପି ନେବାର ଜଣା ନ ଥିଲା । କଳାପଟାରେ ପ୍ରଫେସର ପରିଜାଙ୍କ ଡ୍ରଇଂ ମୋ ଜଣାରେ ଖୁବ୍ ସ୍ପଷ୍ଟ । ତାଙ୍କ ଡିଟେକ୍‌ସନ୍ ଓ ଡିମୋନଷ୍ଟ୍ରେସନ୍ ଆମ ପାଇଁ ଏକାନ୍ତ ଗ୍ରହଣୀୟ । ମନରେ ଆଙ୍କି

ହୋଇଯାଏ । ଥରେ ପିଆଜର ଡିଟେକ୍‌ସନ୍ କରି ଡ୍ରଇଂ ସହ ପ୍ରାକ୍ଟିକାଲ ଖାତା ପ୍ରଫେସର ପରିଜାଙ୍କୁ ଦେଖାଇଲି । ସେ କହିଲେ, "କିହୋ, ଡ୍ରଇଂ ପାଇଁ ସ୍କୁଲରେ ପୁରସ୍କାର ପାଉଥିଲ କି ?" ପରିଜାସାହେବଙ୍କ ମୁଖମଣ୍ଡଳର ଏହି ଲଘୁ ମୁହୂର୍ତ୍ତ ମୋ ପାଇଁ ପ୍ରଥମ ଓ ଶେଷ ।

ବୋଧହୁଏ କ୍ଲାସ ଉପ ପରୀକ୍ଷା ହେବ, ହଲ୍‌ରେ ସିଟ୍ ପଡ଼ିଥାଏ । ଦିନେ ଅନ୍ୟ ଦୁଇଜଣ ଅଧ୍ୟାପକଙ୍କ ସମତେ ପ୍ରଫେସର ପରିଜା ନିରୀକ୍ଷକ ଥାନ୍ତି । ସେ ସମ୍ଭବତଃ ଚାଲୁ ନ ଥାନ୍ତି । ବରାବର ଦୌଡ଼ୁଥାନ୍ତି କହିଲେ ଚଳେ । ପରୀକ୍ଷାର୍ଥୀ ଓ ପରୀକ୍ଷା ନିରୀକ୍ଷକ, କେହି କୌଣସି କାରଣରୁ ବାହାରକୁ ଯାଇ ନାହାନ୍ତି । ପଦେ ପାଟି ଫିଟେ ନାହିଁ । ଠିଆ ହେବା ମାତ୍ରେ ଅଧିକା ଖାତା ଆସିଯାଏ । ଆଜିର ପରୀକ୍ଷା କେନ୍ଦ୍ରରେ ଶୁଖୁଆ ହାଟ ଓ ଅନେକାଂଶରେ ରଣକ୍ଷେତ୍ର ଚାଲିଥିଲାବେଳେ ସେଦିନର ସ୍ମୃତି ମୋତେ ନିଶ୍ଚୟ ସତ୍ୟ ଓ ଏବର ପାଠକମାନଙ୍କୁ ମିଥ୍ୟା ଜଣା ପଡ଼ିବ । କର୍ତ୍ତବ୍ୟପରାୟଣତାର ମୂର୍ତ୍ତିଟିଏ ହେଉଛନ୍ତି ପ୍ରଫେସର ପରିଜା—ଏହା ସେଦିନରୁ ଆଜିଯାଏଁ ଦୃଢ଼ ହୋଇ ରହିଛି ।

ପ୍ରଥମ ବର୍ଷ (୧୯୩୪-୩୫) ମୋତେ ଦିବାଧାୟୀ ହେବାକୁ ପଡ଼ିଛି । ଏହାର କାରଣ ଅର୍ଥାଭାବ ହେଲେ ହେଁ ଏହା ମୋ ପାଇଁ କେତେକ ସୁଯୋଗ ଆଣି ଦେଇଛି । ରାୟସାହେବ ଯଦୁନାଥ ମହାପାତ୍ର ଓ ତାଙ୍କ ପତ୍ନୀ ମା ସରସ୍ୱତୀଙ୍କୁ ଧର୍ମ ପିତାମାତା ଭାବରେ ପରମେଶ୍ୱରଙ୍କ ଦୟାରୁ ପାଇଛି । ବାପଛେଉଣ୍ଡ ବାଳକଟିଏ ପିତାମାତାଙ୍କ ସ୍ନେହ, ସନ୍ତାନ ବାତ୍ସଲ୍ୟ ଓ ଜୀବନର ପରବର୍ତ୍ତୀ କାଳ ପାଇଁ ମୁରବି ପାଇବା ପରମ ସୌଭାଗ୍ୟ । ସାନଭାଇ ପଡ଼ିଆ ପାଖ ବାଖରାବାଦସ୍ଥ ତାଙ୍କ ବାସଭବନ ଠାରୁ ରେଭେନ୍ସା କଲେଜ ଯାଏ ଯାତାୟାତରେ ପ୍ରାୟ ଆଠ କିଲୋମିଟର ପାଦରେ ଚାଲି ଅତିକ୍ରମ କରିବାର ସାଧନା କରିଛି । ଏହା ଅବଶ୍ୟ ନୂଆ ନୁହେଁ । ବାଟରେ ଦିନେ ଦିନେ ପୂଜନୀୟ ଶିକ୍ଷକ ସର୍ବଶ୍ରୀ ଶାରଦାକାନ୍ତ ଗାଙ୍ଗୁଲି, କୃତ୍ତିବାସ ସାମନ୍ତରାୟ, ବିପିନ ବିହାରୀ ରାୟ, ଜନାର୍ଥନ ମହାନ୍ତି ପ୍ରମୁଖଙ୍କ ଘୋଡ଼ାଗାଡ଼ିରେ ଆସିବାର ସୌଭାଗ୍ୟ ମିଳିଛି । ଦ୍ୱିତୀୟ ବର୍ଷରେ (୧୯୩୫-୩୬) ସକାଳେ ଉଦ୍ଭିଦ ବିଜ୍ଞାନ ପ୍ରାକ୍ଟିକାଲ କ୍ଲାସ୍ ପଢ଼ିବାରୁ ବାଧ ହୋଇ ପଶ୍ଚିମ ଛାତ୍ରାବାସରେ ଅନ୍ତେବାସୀ ଭାବରେ ଯୋଗ ଦେଇଛି । ପ୍ରଥମ ବର୍ଷର ଛାତ୍ରବୃତ୍ତି ୧୫+୧୨ ଟଙ୍କା=୧୮୦.୦୦ ଟଙ୍କା କୁ ପାଥେୟ କରିଛି । କ୍ଲାସ୍ ଉପ-ପରୀକ୍ଷାରେ ପ୍ରଥମ ହୋଇଥିବାରୁ ଛାତ୍ରାବାସରେ ଜଣକିଆ କୋଠରି ଓ ଅର୍ଥାଭାବ ହେତୁ କେତେକ ରିହାତି ପାଇଛି । ଡକ୍ଟର ଭୂଷଣ ସ୍ମୃତି ପୁରସ୍କାର ମଧ ମିଳିଛି । ଆମ ୱାର୍ଡେନ୍ ଥାନ୍ତି ଡକ୍ଟର ପରିଜା, ତତ୍ତ୍ୱାବଧାରକ ଶ୍ରୀ ନାରାୟଣ ମିଶ୍ର ଓ ସହକାରୀ ତତ୍ତ୍ୱାବଧାରକ ଶ୍ରୀ ଭୈରବ ନାଥ ରୋହାତଗୀ । ସକାଳ ଓ ସନ୍ଧ୍ୟାରେ ସ୍ୱାଧ୍ୟାୟର ସମୟ ମୋ ମନରେ ଅଭୁଲା ରହିଛି । ପ୍ରାୟ ସକାଳ ସ୍ୱାଧ୍ୟାୟ ସମୟରେ ୱାର୍ଡେନ୍ ବୁଲି ଆସନ୍ତି । ଆଜିର ଚପଲଚଳେଣି ଯୁଗ ଯେ ସେତେବେଳେ ନ ଥିଲା ।

ଚକଚକ କରୁଥିବା ପୂରାଜୋତା ପିନ୍ଧନ୍ତି ଡକ୍ଟର ପରିଚ୍ଛା । ସ୍ୱାଧ୍ୟାୟ ସମୟର ନିସ୍ତବ୍ଧତାକୁ ସମ୍ମାନିତ ଓ ସୁରକ୍ଷିତ କରିବା ପାଇଁ ସେପରି ଜୋତା ସେ ପିନ୍ଧନ୍ତି । ତାଙ୍କ ଗତି ଖୁବ୍ କ୍ଷିପ୍ର ହେଲେହେଁ ସେ ମନ୍ଥର ପାଦ ପକାଇ ଚାଲନ୍ତି । କୋଠରି ଆଡ଼କୁ ହଠାତ୍ ଚାହିଁନେଲେ ଓଦା ଗାମୁଛା ଉପରେ ଦୃଷ୍ଟିପଡ଼େ ଓ ସେ କାଢ଼ି ଆଣି ବାହାରେ ଶୁଖାଇ ଦିଅନ୍ତି । ଆମ ସ୍ୱାସ୍ଥ୍ୟରକ୍ଷା ପାଇଁ ସେ ଏପରି ଚେଷ୍ଟିତ । ଆମେ ତାଙ୍କୁ ଭୟ କରୁଁ ସତ, କିନ୍ତୁ ଏହା ପଛରେ ଅନୁପମ ଛାତ୍ରବାତ୍ସଲ୍ୟ ଥାଏ । ଆଜି ସେ ପ୍ରକାର ଶିକ୍ଷକ ଓ ନିଶ୍ଚଳ ସ୍ୱାଧ୍ୟାୟ ସାଂଶ୍ଳଷ୍ଟ ଯଦି ଥାନ୍ତା, ଯୁବସମ୍ପ୍ରଦାୟ ମଧ୍ୟରେ ଅଶାନ୍ତି ଓ ବିଦ୍ରୋହ ନିଶ୍ଚୟ ହ୍ରାସ ପାଇଥାନ୍ତା । ପକ୍ଷାନ୍ତରରେ ପ୍ରତିଭା ବିସ୍ଫୋରଣର ମାତ୍ରା ବହୁଗୁଣ ବୃଦ୍ଧି ପାଇଥାନ୍ତା । ଅଧିକନ୍ତୁ ଛାତ୍ରାବାସଗୁଡ଼ିକ ମହାବିଦ୍ୟାଳୟର ଲକ୍ଷ୍ୟାନୁକୂଳ ହୋଇଯାଆନ୍ତା ।

ସେତେବେଳର ମହାବିଦ୍ୟାଳୟ ଓ ଏହାର ଛାତ୍ରାବାସ ଶିକ୍ଷକମାନଙ୍କ ସଂକଳ୍ପବଦ୍ଧ ସହଯୋଗ ହେତୁ ଅଧ୍ୟବସାୟର କେନ୍ଦ୍ର ଥିଲା । ଆଜିକାଲି ପରି ପଠନର ସାମଗ୍ରୀ ପ୍ରବଳ ଓ ପ୍ରଚୁର ନ ଥିଲା ବରଂ ଏସବୁର ସ୍ୱଳ୍ପତା ଶିକ୍ଷକମାନଙ୍କୁ ଓ ଶିକ୍ଷାର୍ଥୀମାନଙ୍କୁ ଏକନିଷ୍ଠ ଓ ଚରିତ୍ରବାନ୍ କରି ଶିକ୍ଷାୟତନ ଓ ସମାଜରେ ଯଥାର୍ଥ ସ୍ଥାନିତ କରିଥିଲା । ଯାହାହେଉ ପରୀକ୍ଷାରେ ସାଫଲ୍ୟ ମିଳିଲା ଓ ପୂଜ୍ୟ ପରିଚ୍ଛାସାହେବଙ୍କ ପରାମର୍ଶରେ ସ୍ଥିର ହେଲା ଯେ ବିଜ୍ଞାନ ଛାଡ଼ି କଳାଶ୍ରେଣୀରେ ଗଣିତ (ଅନର୍ସ) ସହିତ ଅର୍ଥନୀତି (ପାଶ୍) ନେଇ ପଢ଼ିଲି । ଗ୍ରାଜୁଏସନ୍ ପରେ ପ୍ରଫେସର ପରିଚ୍ଛାଙ୍କ ଠାରୁ ଯେଉଁ ବ୍ୟକ୍ତିଗତ ପ୍ରମାଣପତ୍ର ମିଳିଛି ତାହାର ପ୍ରଥମ ଧାଡ଼ିଟି ହେଉଛି, "Shriman Satrughna who introduced to me by Raisahib Jadunath Mohapatra as a poor but meritorious student. I soon found both the statements is true." ଏହି ପ୍ରମାଣପତ୍ର ଅନେକ ସ୍ଥାନରେ ଦାଖଲ କରିଛି । କିଏ କଅଣ ପ୍ରତିକ୍ରିୟା ପ୍ରକାଶ କରିଛନ୍ତି ମୁଁ ଜାଣେ ନାହିଁ, କିନ୍ତୁ ଏହା ମୋ ପାଇଁ ଜୀବନବ୍ୟାପୀ ପ୍ରେରଣାଦାୟକ ଓ ସାଧନା ସହାୟକ ଅଭିବୃଦ୍ଧିର ଉତ୍ସ ହୋଇ ରହିଛି ଓ ରହିଥିବ ।

୧୯୫୫ ମସିହାରୁ ୧୯୬୪ ମସିହା ଯାଏଁ ଅନୁଗୁଳ ମୌଳିକ ଟ୍ରେନିଂ କଲେଜରେ ଅଧ୍ୟକ୍ଷ ଭାବରେ ଅବସ୍ଥାପିତ ହୋଇଛି । ଏହା ଓଡ଼ିଶାର ଦ୍ୱିତୀୟ ସରକାରୀ ଓ ଭାରତର ବିଶ୍ୱବିଦ୍ୟାଳୟ ସହସମନ୍ୱିତ । ଏ ପ୍ରକାର ପ୍ରଥମ ଟ୍ରେନିଂ କଲେଜ ହୋଇଥିବାରୁ ଯମଯନ୍ତ୍ରଣା ଭୋଗିବାକୁ ପଡ଼ିଛି । ଦୀର୍ଘଦିନରୁ ପ୍ରଚଳିତ ଗ୍ରାଜୁଏଟ୍ ଶିକ୍ଷକ ଶିକ୍ଷାର Diploma-in-Education(D.Ed.) course ଓ ଏହାର ପାଠ୍ୟକ୍ରମକୁ ବଦଳାଇ Bachelor of Education (B.Ed) course ଓ ସେହି ପାଠ୍ୟକ୍ରମରେ ରୂପାନ୍ତରିତ କରିବାର ଲକ୍ଷ୍ୟ ଥିଲେ ହେଁ ଉତ୍କଳ ବିଶ୍ୱବିଦ୍ୟାଳୟ ଏହାକୁ ପ୍ରତ୍ୟାଖ୍ୟାନ କରିଥିଲେ ଏବଂ ତହିଁ ପରବର୍ଷ କେତେକ ପରିବର୍ତ୍ତନ ପରେ ମଞ୍ଜୁରି ଦେଇଥିଲେ । ଅଧିକନ୍ତୁ ଅନୁଗୁଳ ମୌଳିକ ଟ୍ରେନିଂ କଲେଜରେ M.Ed. course ପ୍ରବର୍ତ୍ତନ ପାଇଁ

ଭାରତ ସରକାରଙ୍କ ଅନୁଦାନରେ ଛାତ୍ରାବାସ ଓ ଆନୁଷଙ୍ଗିକ ବ୍ୟବସ୍ଥା କରାଯାଇଥିଲା । ବିଶେଷ କରି ତତ୍କାଳୀନ ଶିକ୍ଷାନିର୍ଦ୍ଦେଶକ ତଥା ମୋ ପୂଜ୍ୟ ଶିକ୍ଷକ ଡକ୍ଟର ବଳଭଦ୍ର ପ୍ରସାଦଙ୍କ ଦ୍ୱାରା ଗ୍ରାମାଭିମୁଖୀ ଶିକ୍ଷା ସମ୍ବନ୍ଧୀୟ ଗବେଷଣା ଓ ସ୍ନାତକୋତ୍ତର ଶିକ୍ଷକ ଶିକ୍ଷା ପ୍ରତି ଲକ୍ଷ୍ୟ ରଖାଯାଇଥିଲା । ଏହା ସତ୍ତ୍ୱେ ବିଶ୍ୱବିଦ୍ୟାଳୟ ଏହି ପ୍ରସ୍ତାବକୁ ସମ୍ପୂର୍ଣ୍ଣ ଅଗ୍ରାହ୍ୟ କରିଥିଲେ । କିନ୍ତୁ କୁଳପତି ପ୍ରଫେସର ପରିଚ୍ଛା ନବପ୍ରବର୍ତ୍ତିତ B.Ed. course ର ସଫଳତା ପାଇଁ ସମସ୍ତ ପରାମର୍ଶ, ପ୍ରୋତ୍ସାହନ ଓ ପୃଷ୍ଠପୋଷକତା ବରାବର ନେଉଥିଲେ । ବୟନଶିଳ୍ପ, କୃଷିବିଜ୍ଞାନ ଓ କାଷ୍ଠକଳା ବିଭାଗକୁ ପରିଦର୍ଶନ କରି ଗ୍ରାମାଞ୍ଚଳରେ ପ୍ରଚଳିତ ପରିଭାଷାର ବ୍ୟବହାର ଓ ସମ୍ପୃକ୍ତ ବିଭାଗରେ ଦକ୍ଷତାର ମନୋନ୍ନତି ତଥା ଏଥିସହିତ ବୃତ୍ତିଗତ ଓ ସାଧାରଣ ଶିକ୍ଷାଦାନରେ ସମ୍ପୃକ୍ତୀକରଣ ଉପରେ ଗୁରୁତ୍ୱ ଦେଉଥିଲେ ।

୧୯୬୦ ମସିହାରେ ବିହାରର ରାଜ୍ୟପାଳ ତଥା ସେ ରାଜ୍ୟର ସମସ୍ତ ବିଶ୍ୱବିଦ୍ୟାଳୟର କୁଳାଧିପତି ତଥା ଗାନ୍ଧିଦର୍ଶନ ଆଧାରିତ ବୁନିଆଦି ଶିକ୍ଷାର ରୂପକାର ଡକ୍ଟର ଜାକୀର ହୁସେନ ହୀରାକୁଦ ନଦୀବନ୍ଧ ପରିଦର୍ଶନରେ ଆସି ବାଟରେ ରହଣି କରନ୍ତି ଅନୁଗୁଳରେ ଓ ସେଠା ଗ୍ରାଜୁଏଟ୍ ଶିକ୍ଷକ ଶିକ୍ଷା ତାଲିମ ଭବନ ପରିଦର୍ଶନ କରନ୍ତି, ପୂର୍ବ ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁସାରେ । ସ୍ୱଭାବତଃ ପଡ଼ୋଶୀ ରାଜ୍ୟର କୁଳାଧିପତିଙ୍କ ଯାତ୍ରାର ସଫଳତା ଆମ ରାଜ୍ୟର କୁଳପତି ଡକ୍ଟର ପରିଚ୍ଛାଙ୍କ ଉପରେ ଅର୍ପିତ ହୁଏ । ସେ ଦିନକ ଆଗରୁ ଆସି ସମସ୍ତ ବ୍ୟବସ୍ଥାର ତନ୍ନ ତନ୍ନ ନିରୀକ୍ଷଣ କରନ୍ତି । ମୂଳାଧାରର ସମ୍ମୁଖରେ ପର୍ଦ୍ଦା ଦେବା ଆଦି ବିଷୟରେ ପରାମର୍ଶ ଦିଅନ୍ତି । ତାଙ୍କ ଉପସ୍ଥିତ ଉତ୍ସାହପ୍ରଦ ହେବା ସଙ୍ଗେ ସଙ୍ଗେ କାର୍ଯ୍ୟକ୍ରମ—ସଫଳତାର ମୁଖ୍ୟ ଉତ୍ସ ହୋଇଥିଲା । ଏଠାରେ ଉଲ୍ଲେଖନୀୟ ଯେ ତାଲିମ ଭବନର ଅଧ୍ୟାପକ ଓ ଉପଦେଷ୍ଟାମାନଙ୍କ ସହଯୋଗରେ ଆମେ ନିଜ ଉଦ୍ୟମ ଭାବରେ ଗୋଟିଏ କୁକୁଡ଼ା ପାଳନ କେନ୍ଦ୍ର କଲେଜ ପରିସର ମଧ୍ୟରେ କରିଥିଲୁଁ । ଏହା କୁଳାଧିପତି ଜାକୀର ସାହେବ ଓ କୁଳପତି ପରିଜାସାହେବଙ୍କ ଦୃଷ୍ଟି ଆକର୍ଷଣ କରିଥିଲା, ଏହି ବେସରକାରୀ ଉଦ୍ୟମର ଉଚ୍ଚ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ଉଭୟେ ମନ୍ତବ୍ୟ ଦେଲେ ଯେ କୁକୁଡ଼ା ଓ ଅଣ୍ଡାର ସଂଖ୍ୟା କମ୍ ହେଉ ପଛକେ ଅଣ୍ଡାର ଆକାର ଓ ଗୁଣ ଏପରି ବଡ଼ ଓ ଭଲ ହେବ, ଯାହାକି ଗୁରୁଛାତ୍ର ଓ ସ୍ଥାନୀୟ ଜନସାଧାରଣଙ୍କ ପାଇଁ ଶିକ୍ଷାପ୍ରଦ ଓ ଆକର୍ଷଣୀୟ ହେବ । ଶିକ୍ଷା ଓ ସମାଜ ମଧ୍ୟରେ ପରସ୍ପର ପରିପୂରକତାର ଆଦର୍ଶ (ଯାହାକି ବୁନିଆଦି ଶିକ୍ଷାର ଧ୍ୟେୟ) ଏଠି ନିହିତ ଥିଲା ଆମ୍ରକୁଞ୍ଜ ଉନ୍ମୁକ୍ତ ମଞ୍ଚ । ଝିପିଝିପି ବର୍ଷା ଯୋଗୁଁ ଟପଟପ ପାଣି ପଡୁଥାଏ । ସେଥିରେ ଭିଜାଭିଜା ଭାଷଣକୁ ଜନସମୁଦ୍ର ଉପଭୋଗ କରୁଥାନ୍ତି । ଆମେ ଛତାର ବ୍ୟବସ୍ଥା କଲେ ହେଁ ମହାମାନ୍ୟ ଅତିଥି ଜାକୀରସାହେବ ଓ ସମ୍ମାନନୀୟ କୁଳପତି ପରିଜାସାହେବ ସମବେତ ଜନସାଧାରଣଙ୍କ ସହିତ ଏକାତ୍ମ ହୋଇ ବିନା ଛତାରେ ଅବିଚଳିତ ଭାବରେ ଭାଷଣ ଦେଉଛନ୍ତି । ଏହି

ଦୁର୍ଲଭ ମୁହୂର୍ତ୍ତ କଲେଜର ବାହ୍ୟାଭ୍ୟନ୍ତରକୁ ପ୍ରମୋଦିତ ଓ ପୁଲକିତ କରିଛି । ନିଜ ବିଷୟରେ ମୋ ପୂଜ୍ୟ ସାର୍ ନିଜକୁ ସଜାଗ ରଖିଛନ୍ତି । ଛୋଟରୁ ବଡ଼ କଥା ଯାଏଁ ସେ କାହା ଉପରେ ନିର୍ଭର କରନ୍ତି ନାହିଁ । ଦିନେ ସମ୍ବଲପୁର ଯିବାକୁ ସେ ଆମ ଘରେ ପ୍ରାତଃଭୋଜନ ପାଇଁ ନିମନ୍ତ୍ରିତ ହୋଇଥାନ୍ତି । ଠିକ୍ ସମୟରେ ଆମ ଟ୍ରେନିଂ କଲେଜ ବାସଭବନରେ ପଦାର୍ପଣ କଲାବେଳେ ତାଙ୍କ ହାତ ଦୁଇଟି ପଛପଟକୁ ରହିଥିବାର ଲକ୍ଷ୍ୟ କଲି । ପରେ ଦେଖିଲି ସେ ଗୋଟିଏ ଅଳ୍ପ ଉଚ୍ଚର ପେଟୁଆ ବୋତଲ ଧରିଛନ୍ତି । ପ୍ରସନ୍ନ ବଦନରେ କହି ପକାଇଲେ ଯେ ସେ ପ୍ରାତଃଭୋଜନ ସହିତ ଅଳ୍ପ ମହୁ ଔଷଧ ଭାବରେ ଘେନନ୍ତି ଓ ସବୁଠି ଦରକାର ବେଳେ ନ ମିଳିପାରେ ଭାବି ଏହାକୁ ଘେନନ୍ତି । ସଦ୍ୟ ଭଜା ଖଇ (ଲିଆ) ଧୋବ ଫରଫର ଓ ଅଳ୍ପ ଉଷୁମ ପତଳା ସର ପଡ଼ିଥିବା କ୍ଷୀର ପୂଜ୍ୟ ଅତିଥିଙ୍କୁ ଆନନ୍ଦର ସହ ଦେଇଛି ଓ ଅତିଥି ସରକାରଙ୍କ ମନର ଶାନ୍ତି ଓ ସନ୍ତୋଷ ଅବର୍ଣ୍ଣନୀୟ ହୋଇଛି । ଚା' ପାନର ସମୟ ଆସିଲା ଓ ସେ ବିନା ଚିନିରେ ଚା' ଗ୍ରହଣ କଲେ । କ୍ଷୀରରେ ଚିନି ଦିଆଯାଇଛି ଓ ଘର ତିଆରି ରସଗୋଲା ସେ ଖାଇଛନ୍ତି । ତେବେ ବିନା ଚିନିର ଚା' କାହିଁକି ? ସଦଗୁରୁ ଶିଷ୍ୟର ମନ ଜାଣିଲା ପରି ସେ କହିଲେ, ପ୍ରଥମ ବିଶ୍ୱଯୁଦ୍ଧ ବେଳରେ ସେ ଲଣ୍ଡନରେ ଅଧ୍ୟୟନ କରୁଥିଲେ । ଚିନିର ଅଭାବ ଓ ତେଣୁ ପଡ଼ିପ୍ରଥା ଥିବାରୁ ସେ ଏପର୍ଯ୍ୟନ୍ତ ବିନା ଚିନିରେ ଚା'ର ସ୍ୱାଦ ସେ ଚାଖିଛନ୍ତି ।

ଅନୁଗୁଳ ବେସିକ୍ ଟ୍ରେନିଂ କଲେଜରେ ଆରମ୍ଭ ବେଳେ ଅଧ୍ୟୟନ ସମୟ ଜୁଲାଇରୁ ପରବର୍ତ୍ତୀ ଜୁନ୍ ଯାଏ ବାରମାସ ବ୍ୟାପିଥିଲା । କଲେଜର ପାଠପଢ଼ା ସହିତ ଅଦ୍ୟାପି ଜଡ଼ିତ ଥିଲା ଗୋଷ୍ଠୀସେବା ଓ ସହଜ ଜୀବନ । ଜୁଲାଇ ଦ୍ୱିତୀୟ ସପ୍ତାହରୁ ପାଠପଢ଼ା ଆରମ୍ଭ କରାଯାଉଥିଲା । ପୂଜା ଛୁଟିରେ ଗୋଷ୍ଠୀ ସେବାର ପ୍ରକଳ୍ପ ଗୁରୁ ଛାତ୍ରମାନଙ୍କ ଗାଁରେ କରିବାର ଅବସ୍ଥା ଥିଲା । ପରବର୍ତ୍ତୀ ମଇ ମାସରେ ବିଶ୍ୱବିଦ୍ୟାଳୟ ପରୀକ୍ଷା କରାଯାଇ ଜୁନ୍ ମାସ ସାରା ଅଧ୍ୟାପକମାନଙ୍କ ତତ୍ତ୍ୱାବଧାନରେ କଲେଜ ସଂଲଗ୍ନ ଗାଁରେ ସଘନ ଗ୍ରାମସେବା କାର୍ଯ୍ୟ କରାଯାଉଥିଲା । ବିଶ୍ୱବିଦ୍ୟାଳୟ ସ୍ଥିରୀକୃତ ନିୟମ ଅନୁସାରେ ଅଧ୍ୟକ୍ଷ କାର୍ଯ୍ୟ ସମାପନ ପ୍ରମାଣପତ୍ର ପଠାଉଥିଲେ । ୧୯୫୭ ବା ୧୯୫୮ ମସିହା ହେବ । ଭାରତ ସରକାରଙ୍କ ନିର୍ଦ୍ଦେଶରେ ଜୁନ୍ ମାସ ସାରା ଗ୍ରୀଷ୍ମାବକାଶରେ ପ୍ରତି କଲେଜର କେତେକ ଛାତ୍ରଙ୍କୁ ନିର୍ବାଚନ କରି ବୁର୍ଲାଠାରେ ଗ୍ରୀଷ୍ମାବକାଶ ଶିବିର କରାଗଲା । ବିଶ୍ୱବିଦ୍ୟାଳୟ ଏଥିପାଇଁ ଆମକୁ ବାଧ୍ୟ କଲେ । ଏହା ବିଶ୍ୱବିଦ୍ୟାଳୟ ସ୍ଥିରୀକୃତ ନିୟମର ବିରୋଧାଚରଣ କରୁଥିବାରୁ ମୁଁ କୁଳପତି ମହୋଦୟଙ୍କ ଦୃଷ୍ଟି ଆକର୍ଷଣ କଲି । ଯାହାଙ୍କ ଜୀବନ ନିୟମରେ ଗଢ଼ା ସେ ନିୟମ ଛାଡ଼ିବେ କିପରି ? ମୋ ଆପତ୍ତିର ସମାଧାନ ସେ ନିଜ ହାତକୁ ନେଲେ । ଯେଉଁ କେତେଜଣ ଛାତ୍ର ଆମ କଲେଜରୁ ବୁର୍ଲା ଶିବିରରେ ଯୋଗ ଦେଲେ ସେମାନଙ୍କୁ ଆମ କଲେଜ ପ୍ରଦତ୍ତ କୋର୍ସ କମ୍ପ୍ଲିସନ୍ ସାର୍ଟିଫିକେଟରୁ ମୁକ୍ତ କରାଗଲା । ଶିକ୍ଷା ପ୍ରଶାସକ ଡକ୍ଟର ପରିଜା ଏହାର ସୁସମାଧାନ କରିବା ବିସ୍ମୟ ସୃଷ୍ଟି କରେ ।

ନିୟମ ଓ ସମୟ ପରିଜାସାହେବଙ୍କ ଜୀବନର ଦୁଇ ସ୍ତମ୍ଭ । ଏହି ଦୁଇଟିକୁ ସମାନୁପାତରେ ଧରିଥିବାରୁ ସେ ଯଥାର୍ଥତଃ ସେ ବେଳର ସମସ୍ତଙ୍କ ସଫଳ ଶିକ୍ଷକ । ୧୯୬୮ ମସିହାର କଥା । ଅଲ୍ ଇଣ୍ଡିଆ ରେଡିଓ, କଟକ ଦ୍ୱାରା ଗୋଟିଏ ଦଳଗତ ଆଲୋଚନାର ଆୟୋଜନ କରାଯାଇଥାଏ । ଜଣେ ନାରୀ ଆଇନଜ୍ଞ, ଜଣେ ରାଜନୀତିଜ୍ଞ ଓ ଜଣେ ଶିକ୍ଷକଙ୍କ ସହିତ ଡକ୍ଟର ପରିଜାଙ୍କୁ ପରିଚାଳକ ଭାବରେ ଗ୍ରହଣ କରାଯାଇଥାଏ । ବିଷୟ ହେଉଛି, ଶିକ୍ଷାୟତନର ପରିସର ମଧ୍ୟରେ ଛାତ୍ର ଅଶାନ୍ତି । ନିର୍ଦ୍ଧାରିତ ସମୟତକ ଥାଏ, ଅପରାହ୍ଣ ତିନିଟା । କଣ୍ଟେକଣ୍ଟା ତିନିଟା ବେଳେ ରିକ୍ସାଟିଏ ପ୍ରବେଶ କରେ ରେଡିଓ ଷ୍ଟେସନର ପରିସର ମଧ୍ୟରେ । ସେଥିରୁ ବାହାରି ଆସନ୍ତି ପରିଚାଳକ ପ୍ରଫେସର ପରିଜା । ପଛେ ପଛେ ଲାଗିଥାଏ ଆଉ ଗୋଟେ ରିକ୍ସା ଏବଂ ସେଥିରୁ ବାହାରନ୍ତି ସାର୍‌ଙ୍କ ପୁତ୍ର ଶିକ୍ଷକ-ଆଲୋଚକ । ପ୍ରାୟ ଅଧ ଘଣ୍ଟାଏ ପରେ ନାରୀ ଆଇନଜ୍ଞ ଏବଂ ଏହାର କିଛି ସମୟ ପରେ ରାଜନୈତିକ ନେତା । ଏଇଠି ଅସହ୍ୟ ନିସ୍ତବ୍ଧତାର ପରିସମାପ୍ତି ଘଟେ । ସମୟାନୁବର୍ତ୍ତିତାର ଏ ପ୍ରକାର ଉଦାହରଣ, ଗୋଟିଏ ନୁହେଁ, ସବୁଠି ତାଙ୍କୁ ସ୍ମରଣୀୟ କରିଛି । ଆମ୍ଭମାନଙ୍କୁ ଏହା ପ୍ରଭାବିତ କରିଛି । ଆଜି ଏହି ପରମ୍ପରାର ଭଙ୍ଗୀ ଡାକହାକରେ କରାଯାଉଥିଲେ ହେଁ ଆମ୍ଭମାନଙ୍କୁ ବିଦ୍ରୋହୀ କରୁଛି ସିନା, ତଥାପି ବିଚ୍ୟୁତି ଘଟୁ ନାହିଁ ।

ମୁଁ ଶୁଣିଛି, ଜାଣିଛି ଓ ଅନୁଭବ କରିଛି; ସେ କିପରି ଶୃଙ୍ଖଳାନିଷ୍ଠ । ଥରେ ଡକ୍ଟର ପରିଜା ଯାଉଥାନ୍ତି ନିଜ ଗାଡ଼ିରେ । କଟକ ବଡ଼ ଡାକ୍ତରଖାନା ପରିସର ମଧ୍ୟରେ ପଶିବା ମାତ୍ରେ ଚାଳକଙ୍କ ହାତ ଆଡ଼କୁ ସେ ଇଙ୍ଗିତ ଦିଅନ୍ତି । ତତ୍‌କ୍ଷଣାତ୍ ଗାଡ଼ିର ଗତି ମନ୍ଥର ହୋଇଯାଏ ଓ ହର୍ଣ୍ଣ ବାଜେ ନାହିଁ । ଏହା କାହିଁକି ହେଲା ଏହା ଏବେ ବି କେହି ବୁଝୁଛି କି ? ବର୍ତ୍ତମାନ ଚିକିତ୍ସାଳୟର ପରିସର ପ୍ରକମ୍ପିତ ହୋହଲାରେ ଓ ଗାଡ଼ିର ଗର୍ଜନରେ । ଏହି ପ୍ରକମ୍ପନଜନିତ ପ୍ରଦୂଷଣର ପ୍ରଭାବ ଚିକିତ୍ସକଙ୍କ ଉପରେ କିପରି ପଡୁଛି ଏହାର ଚେତନା ଏକ୍ଷଣି ଅଛିକି ? ସ୍ୱାଧୀନ ଦେଶରେ ଶୃଙ୍ଖଳା ସ୍ୱୟଂ ଆଲୋଚିତ ହେବା ଉଚିତ । ପ୍ରଫେସର ପରିଜା ସେହିହେତୁ ସ୍ମରଣୀୟ ହୋଇ ରହିବେ ଯେହେତୁ ସେ କର୍ତ୍ତବ୍ୟକୁ ଶୃଙ୍ଖଳିତ ଜୀବନର ଧାରା କରି ନେଇଥିଲେ ।

ଆଉ ଗୋଟିଏ ଦିଗ ସେହି ବହୁମୁଖୀ ବ୍ୟକ୍ତିତ୍ୱର । ଆଦବ କାଏଦାରେ ସେ ସଦା ସଜାଗ । ଅଫିସରେ ହେଉ, ବା ଡାକବଙ୍ଗଳାର ବାରଣ୍ଡାରେ ହେଉ ସେ ବସିଥିବା ବେଳେ ଯଦି କେହି ଭଦ୍ରମହିଳା କାର୍ଯ୍ୟୋପଲକ୍ଷେ ଆସିଯାଆନ୍ତି, ସେ ଠିଆ ହୋଇ ପଡ଼ନ୍ତି । ଅତିଥିଙ୍କୁ ବସିବାକୁ ଦେଇ ସେ ନିଜ ଆସନ ଗ୍ରହଣ କରନ୍ତି । ଭାରତୀୟ ପରମ୍ପରା ସହିତ ଉତ୍କଳୀୟ ସ୍ୱାଭିମାନର ପ୍ରତିଫଳନ ଘଟେ ପାଶ୍ଚାତ୍ୟଶିକ୍ଷାର ଦର୍ଶନରେ । ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ବୈଜ୍ଞାନିକ ହୋଇ ସୁଦ୍ଧା ତାଙ୍କ ମାତୃଭାଷା ପ୍ରୀତି, କଥା, କାମ ଓ ଚିନ୍ତାରେ ପ୍ରକାଶ ପାଏ । ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ ସଭାରେ ଗାଉଁଲିଆ ଢଗଢମାଳି ବୋଲି ଦିଅନ୍ତି ଯଥାସ୍ଥାନରେ ଓ କେତୋଟି ବିରଳ

ଲଘୁ ମୁହୂର୍ତ୍ତ ସୃଷ୍ଟି ହୋଇଥାଏ । ବେଳେ ବେଳେ ଓଡ଼ିଆ ଭାଗବତରୁ କେଇ ପଦ କହିପକାନ୍ତି, ଏହି ପ୍ରସଙ୍ଗରେ ସୂଚନା ଦିଆଯାଇପାରେ ଯେ ଉତ୍କଳ ଗୌରବ ମହିମାଧର୍ମ ପ୍ରତି ସେ ଆକୃଷ୍ଟ ହୋଇ ମହିମା ଧର୍ମାଲୋଚନା ସମିତି (ଅଧୁନା ମହିମାଧର୍ମାଲୋଚନା ପରିଷଦ, ରେଜିଷ୍ଟ୍ରୀକୃତ)ର ଅଧ୍ୟକ୍ଷ ରହିଛନ୍ତି । ତାଙ୍କ ପ୍ରଗାଢ଼ ପ୍ରଚେଷ୍ଟା ଫଳରେ ଦାର୍ଶନିକ ବିଶ୍ୱନାଥବାବାଙ୍କ ପ୍ରଣୀତ ସୁବୃହଦ୍ ଦର୍ଶନଗ୍ରନ୍ଥ (ଅଲେଖ ପରଂବ୍ରହ୍ମ ଦର୍ଶନମ୍) ଉତ୍କଳ ବିଶ୍ୱବିଦ୍ୟାଳୟ କର୍ତ୍ତୃକ ପ୍ରକାଶ ପାଇଛି ।

ଦିନକର କଥା । ମହିମା ଧର୍ମାଲୋଚନା ସମିତି କାର୍ଯ୍ୟକାରୀ କମିଟି ବୈଠକ ପାରିଜାତକ ଠାରେ (କଟକ କ୍ୟାଣ୍ଟନମେଣ୍ଟ ରୋଡ଼ସ୍ଥ ପରିଜାସାହେବଙ୍କ ବାସଗୃହ) ହେଉଥାଏ । ଲେଖକ ସମ୍ପାଦକ ଭାବରେ ଆଗରୁ ଚାଲିଯାଇଛି । ଫାଟକ ପାଖରେ ସଭାପତି ଡକ୍ଟର ପରିଜା ପାଣି ଡାଳଟିଏ ଧରି ଠିଆ ହୋଇଥାନ୍ତି । ସନ୍ଧ୍ୟାବେଳର ଇଲେକ୍ଟ୍ରିକ୍ ଆଲୁଅରେ ଡାଳଟି ଚକ୍‌ଚକ୍ ଦିଶୁଥାଏ । ପରିଜାସାହେବ ଧଳା ଧୋତିଟିଏ ଓ ଗଞ୍ଜି ପିନ୍ଧିଥାନ୍ତି । କାନ୍ଧରେ ନାଲି ଗାମୁଛାଟିଏ ପଡ଼ିଥାଏ । ମୋତେ ଦେଖି ପଚାରିଲେ, "କିହୋ, ତୁମ ବାବା କାହାନ୍ତି ?" ସେ ଏଇ ଆସୁଛନ୍ତି କହିବାର ପାଞ୍ଚ ମିନିଟ୍ ପରେ ନିଜର ସବୁଦିନିଆ ରିକ୍ସାରେ ବାବା ଆଜ୍ଞା ଓହ୍ଲାନ୍ତି । ବାବାଙ୍କୁ ଅଭ୍ୟର୍ଥନା ଜଣାଇ ବାବାଙ୍କୁ ପାଛୋଟି ନିଅନ୍ତି ମହିମାଧର୍ମାଲୋଚନା ସମିତିର କାର୍ଯ୍ୟକାରୀ କମିଟିର ସଭାପତି ପ୍ରଫେସର ପରିଜା । ବିଶିଷ୍ଟ ସଦସ୍ୟମାନଙ୍କ ମଧ୍ୟରେ ଥାନ୍ତି ତତ୍‌କାଳୀନ ଶିକ୍ଷା ସଚିବ ଶ୍ରୀ ଅନିରୁଦ୍ଧ ଦାଶ, ଶିକ୍ଷା ନିର୍ଦ୍ଦେଶକ ଡକ୍ଟର ସଦାଶିବ ମିଶ୍ର । ସବୁଦିନର ମିଟିଂ ପରି ସେଦିନ ସାଧୁମାନେ ପ୍ରଭୁନାମ ଭଜନ ଗାନ କଲେ ଓ ସମସ୍ତେ ଏହାକୁ ଆନନ୍ଦରେ ଗ୍ରହଣ କଲେ । ବାବା ମହୋଦୟଙ୍କ ପାଣ୍ଡୁଲିପି "ମହିମା ଧର୍ମ ସିଦ୍ଧ ସାଧୁ ଚରିତାମୃତ" ଗୃହୀତ ହୋଇ ପ୍ରକାଶନ ପାଇଁ ସୁପାରିସ କରାଗଲା । ମହିମା ଧର୍ମର ପ୍ରସାର ପାଇଁ କେତେଗୁଡ଼ିଏ ପ୍ରସ୍ତାବ ମଧ୍ୟ ଗ୍ରହଣ କରାଗଲା ।

ବାବାମହୋଦୟଙ୍କ ରଚିତ "ସଚ୍ଚିନ୍ମୟ ବ୍ରହ୍ମଗୀତା"ର ସାତପୃଷ୍ଠା ବ୍ୟାପୀ ଗ୍ରନ୍ଥ ପରିଚୟ ଅଧ୍ୟକ୍ଷ ପରିଜାସାହେବ (୪.୯.୩୯) ଲେଖିଛନ୍ତି । ଅନ୍ୟ ଏକ ଉଲ୍ଲେଖନୀୟ କଥା ଏହି ଯେ ଲେଖକ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗଙ୍କ କର୍ତ୍ତୃକ ନିଯୁକ୍ତ ଅଧ୍ୟାପକ ଥିବାବେଳେ (୧୯୭୫-୧୯୭୮) ଶିକ୍ଷାସ୍ନାତକୋତ୍ତର ଶ୍ରେଣୀରେ ଅଧ୍ୟାପନା ସହିତ Biswanath Baba-a saint, self realised"ର ପାଣ୍ଡୁଲିପି ପ୍ରସ୍ତୁତ କରି ଏହାର ମୁଖବନ୍ଧ ଲେଖିବାକୁ ପୂଜ୍ୟ ସାର୍ ପରିଜାସାହେବଙ୍କୁ ଅନୁରୋଧ ଜଣାଇଥିଲା । ସ୍ୱାସ୍ଥ୍ୟ ଦୃଷ୍ଟିରୁ ସାର୍ ପ୍ରଥମେ ଅନିଚ୍ଛା ପ୍ରକାଶ କରିଥିଲେ ହେଁ ଯେତେବେଳେ ସେ ଏହା ମହିମା ଧର୍ମ ସମ୍ବନ୍ଧୀୟ ପୁସ୍ତକ ଓ ମହିମାଧର୍ମର ବିଶିଷ୍ଟାଚାର୍ଯ୍ୟ ଓ ପ୍ରବକ୍ତା ବିଶିଷ୍ଟ ବାବାଙ୍କ ସଂକ୍ଷିପ୍ତ ଜୀବନଚରିତ ତଥା କେବଳ ତାଙ୍କ ରଚନାକୁ ଆଧାରିତ କରି ଗ୍ରନ୍ଥସୂଚୀ ବୋଲି ଜାଣିଲେ ଆନନ୍ଦରେ ମୁଖବନ୍ଧ ଲେଖି ଲେଖକଙ୍କୁ ବାଧିତ କରିଛନ୍ତି ।

ତାଙ୍କ ଅନନ୍ୟ ପ୍ରତିଭାର ଏଇ କେତୋଟି ସାମାନ୍ୟ ସ୍ମୃତିଚାରଣରେ ମୋର ଶ୍ରଦ୍ଧାସୁମନ ଅର୍ପଣ କରୁଛି ।

# କଲ୍ୟାଣକାମୀ ପରିଜାସାହେବ

**ଶୋଭା ରାୟ**

୧୯୪୨ ମସିହା ଜୁଲାଇ ମାସ ବି.ଏ. ପଢ଼ିବା କଥା, ସେଥିପାଇଁ ରେଭେନ୍ସା କଲେଜକୁ ଯିବାକୁ ହେବ । ଆମେ ଆଇ.ଏ. ପାସ୍ କରିଥାଉ, କଟକ ରେଭେନ୍ସା ଗାର୍ଲସ୍ ସ୍କୁଲ ସହିତ ସଂଲଗ୍ନ ଆଇ.ଏ. ଶ୍ରେଣୀରୁ ଅର୍ଥାତ୍ ସେ ସମୟରେ ରେଭେନ୍ସା ବାଳିକା ବିଦ୍ୟାଳୟରେ ମାତ୍ର ଗୋଟିଏ ଗ୍ରୁପ୍ ଇତିହାସ, ତର୍କଶାସ୍ତ୍ର ଓ ସଂସ୍କୃତ ନେଇ ଆଇ.ଏ. କ୍ଲାସ୍ ଖୋଲିଥାଏ ।

ରେଭେନ୍ସାର ବି.ଏ. ଥାର୍ଡ଼ ଇୟର ଆର୍ଟସ୍‌ରେ ଆମେ ତିନିଜଣ ଝିଅ ନାଁ ଲେଖେଇଲୁ । ନିର୍ଦ୍ଦିଷ୍ଟ ଦିନରେ କ୍ଲାସ୍ ଆରମ୍ଭ ହେଲା । ଆମେ ତ ଗୋଟିଏ ଭିନ୍ନ ପରିବେଶରୁ ଯାଇଛୁ । ଏତେ ବଡ଼ କଲେଜ ଆମ କ୍ଲାସ୍‌ରେ ଦେଢ଼ଶହ ପିଲା । ସବୁଥିରେ ଅଡୁଆ ଲାଗୁଥାଏ, ଯାହାହେଉ ଦଶ ପନ୍ଦର ଦିନ ପରେ ଦିନେ ପ୍ରିନ୍ସିପାଲ୍ ଡକ୍ଟର ପ୍ରାଣକୃଷ୍ଣ ପରିଜା—ପରିଜାସାହେବ ମତେ ଡକେଇ ପଠେଇଲେ, କ'ଣ ପାଇଁ ? ପ୍ରିନ୍ସିପାଲ୍ ମତେ କାହିଁକି ଡାକୁଛନ୍ତି ? ଗଲି । ପ୍ରିନ୍ସିପାଲ୍ ଖାଇବା ଟେବୁଲ୍ ପାଖେ ବସିଥାନ୍ତି । ସୌଦାମିନୀ (ପରିଜାଙ୍କର ସାନଝିଅ—ଆଇ.ଏସ୍‌ସି. କ୍ଲାସ୍‌ର ଛାତ୍ରୀ—କୁନି ପରିଜା ନାମରେ ଅଧିକାଂଶ ଲୋକ ତାଙ୍କୁ ଜାଣନ୍ତି) ମଧ୍ୟ ସେଇଠି । ପରିଜା କହିଲେ—"ଆସ, ଆମ ସାଙ୍ଗରେ ଖାଇବ" । ମୋର ତ୍ରସ୍ତ ଅବସ୍ଥା ଦେଖି ସେ ତ ଭଲରୂପେ ବୁଝି ପାରୁଥାନ୍ତି ଯେ ମୁଁ ଖାଇବା ଅବସ୍ଥାରେ ନାହିଁ । ସାଙ୍ଗେ ସାଙ୍ଗେ କହିଲେ, "ବାପା (ସ୍ୱର୍ଗତ ଦୁର୍ଗାଚରଣ ରାୟ ସେ ସମୟର ବଲାଙ୍ଗୀରରେ କାମ କରୁଥାନ୍ତି । ପରିଜାଙ୍କ ସହିତ ତାଙ୍କର ଭଲ ଜଣାଶୁଣା ଥିଲା) ଖଣ୍ଡେ ଚିଠି ଦେଇଛନ୍ତି । ଦୂରରେ ଅଛନ୍ତି ତ, ଚିନ୍ତା ହେବା ସ୍ୱାଭାବିକ । ଦେଖ ମୁଁ କହୁଚି ତୁମର କୌଣସି ଅସୁବିଧା ହେବ ନାହିଁ । ହେଲେ ମତେ କହିବ ।"

ଏ କଥା କହି ତାଙ୍କର ପିଅନକୁ କହିଲେ, "ଏ ଦିଦି ଯେତେବେଳେ ମୋ ସାଙ୍ଗରେ ଦେଖା କରିବାକୁ ଚାହିଁବେ, ଆସିପାରିବେ । ତାଙ୍କୁ ଅଟକେଇବ ନାହିଁ ।"

ସେତେବେଳର କଲେଜ, ସେ ସମୟର ଅଧ୍ୟକ୍ଷ, ସେବକାର ପରିବେଶ, ଅଧ୍ୟକ୍ଷଙ୍କର କେତେ କାମ କିନ୍ତୁ ତା'ଭିତରେ ମଧ୍ୟ ଗୋଟିଏ ତୃତୀୟ ବାର୍ଷିକ ଛାତ୍ରୀର ସୁବିଧା ଅସୁବିଧା କଥା ବୁଝିବାପାଇଁ ସେ ସମୟ ଦେଇପାରିବେ; ଜଣେ ଭଦ୍ରଲୋକ ଅନୁରୋଧ କରିଛନ୍ତି ପରା !

ସେଦିନର ଅଭିଭାବକ ଏବଂ ଅଧ୍ୟକ୍ଷ ପରସ୍ପର ପରସ୍ପରକୁ ବୁଝୁଥିଲେ । ଅଭିଭାବକ ଜାଣନ୍ତି, ଏ ଅନୁରୋଧ ଅଧ୍ୟକ୍ଷଙ୍କ ବିରକ୍ତିର କାରଣ ହେବ ନାହିଁ । ଅଧ୍ୟକ୍ଷ ମଧ୍ୟ ଅନୁରୂପ ମନୋଭାବାପନ୍ନ । କି ସହୃଦୟତା ! ଅନ୍ୟକୁ ବୁଝିବାର କି ଶକ୍ତି ! କି ସଂବେଦନଶୀଳତା ! ଆଜି ସେସବୁକୁ ଖୋଜିବା କେଉଁଠି ?

୧୯୪୨ରେ ଛାତ୍ର ଆନ୍ଦୋଳନ ଆରମ୍ଭ ହେଲା । କଲେଜ ପିଲା ଷ୍ଟ୍ରାଇକ୍ କଲେ । ଆମ୍ଭମାନଙ୍କୁ (ସେ ସମୟରେ ଆଇ.ଏ., ଆଇ.ଏସ୍‌ସି., ବି.ଏ., ବି.ଏସ୍‌ସି.ରେ ଯେତେ ଝିଅ ପଢୁଥିଲେ, ସେମାନଙ୍କର ସଂଖ୍ୟା ବାର ତେର ହେବ) କ୍ଲାସ୍‌କୁ ଯିବାପାଇଁ ପିଲାମାନେ ମନା କରୁଥାନ୍ତି । ଆମେ ଆଉ କରିବୁ କ'ଣ ? କମନ୍ ରୁମ୍‌ରେ ବସିରହୁ । ଦୁଇ ଚାରିଦିନ ପରେ ପିଲାମାନେ ପ୍ରସେସନ୍‌ରେ ବାହାରିବେ ବୋଲି ସ୍ଥିର କଲେ । ରାସ୍ତାରେ ସେମାନେ ଏକାଠି ହୋଇଥାନ୍ତି । କେତେଜଣ ଆସି ଆମ୍ଭମାନଙ୍କୁ କହିଲେ "ଆପଣମାନେ ଏଇଠି ବସିଥାନ୍ତୁ । ତେଣେ ପ୍ରିନ୍ସିପାଲ୍‌ଙ୍କ ଝିଅ ପ୍ରସେସନ୍‌ରେ ମିଶିଲେଣି ।"

ଆମେ ନିଜ ଭିତରେ କୁହାକୁହି ହେଲୁ "ସବୁଦିନ ତ କମନ୍‌ରୁମ୍‌ରେ ବସି ବସି ଘରକୁ ଫେରୁଛୁ । ଏଣେ କୁନି ଷ୍ଟ୍ରାଇକ୍‌ରେ ଯୋଗଦେଲାଣି । ଆମେ ବି ଯିବା ।" କିଛି ବାଟ ଚାଲିବା ପରେ ପଛକୁ ଚାହିଁ ଦେଖୁ—କେତେଜଣ ପ୍ରଫେସର (ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତି, ଗୁରୁଚରଣ ମହାନ୍ତି, ଗିରିଜାଶଙ୍କର ରାୟ, ବିପିନବିହାରୀ ରାୟ ପ୍ରଭୃତି) ଟିକେ ଦୂରତ୍ୱ ରଖି ଆମ ପଛେ ପଛେ ଆସୁଛନ୍ତି, ପରେ ଶୁଣିଲୁ—ପରିଚ୍ଛାସାହେବ ସେମାନଙ୍କୁ କହିଥିଲେ— "ଝିଅମାନେ ପ୍ରସେସନ୍‌ରେ ଗଲେଣି । ଆପଣମାନେ ସେମାନଙ୍କ ସାଙ୍ଗରେ ରହିଲେ ଭଲ ହବ ।"

ବ୍ରିଟିଶ୍ ଅମଳ । ପ୍ରଫେସରମାନେ ତ' ସରକାରଙ୍କ ଦପ୍ତରରେ କାମ କରନ୍ତି । ପିଲାଙ୍କର ଷ୍ଟ୍ରାଇକ୍ ପ୍ରସେସନ୍‌ରେ ସେମାନେ ଯିବେ ! ପରିଚ୍ଛାଙ୍କଠାରୁ ନିର୍ଭର ପ୍ରତିଶ୍ରୁତି ମିଳିଲା— "ଆପଣମାନେ କୁଣ୍ଠିତ ହେବାର କୌଣସି କାରଣ ନାହିଁ । ଏକ୍ସପ୍ଲାନେସନ୍ ମଗା ହେଲେ ମୁଁ ବୁଝିବି ।"

ପ୍ରତ୍ୟେକେ ନିଜ ନିଜ ଦାୟିତ୍ୱ ସମ୍ପର୍କରେ କେତେ ସଚେତନ ! ଅଭିଭାବକମାନଙ୍କ ଆଖିରେ ପିଲାମାନେ କେବେହେଲେ ବଡ଼ ହୋଇଯା'ନ୍ତି ନାହିଁ । ସେମାନେ ଚାହାନ୍ତି—ନିଜର କଲ୍ୟାଣଦୃଷ୍ଟି ସବୁବେଳେ ପିଲାଙ୍କ ଉପରେ ପଡୁଥାଉ । ଘରେ ଅଭିଭାବକ ଯଦି ବାପା, ମାଆ କିମ୍ବା ଅନ୍ୟ କେହି ଗୁରୁଜନ; ଶିକ୍ଷାନୁଷ୍ଠାନରେ ଅଭିଭାବକ କିଏ ? ଯେଉଁମାନେ ଅଧ୍ୟାପନା ଦାୟିତ୍ୱରେ ରହନ୍ତି ସେମାନେ ଏବଂ ସ୍ୱୟଂ ଅଧ୍ୟକ୍ଷ ମହୋଦୟ ।

ଏ ଘଟଣାରୁ ସ୍ପଷ୍ଟ ପରିଚୟ ମିଳୁ ନାହିଁ କି ଅଧ୍ୟକ୍ଷ ପରିଚ୍ଛାସାହେବ କେତେଦୂର କଲ୍ୟାଣକାମୀ ଥିଲେ ?

ପ୍ରସେସନ୍‌ରେ ଯିବାର ସାତଦିନ ପରର କଥା– କୁନି ଆମମାନଙ୍କୁ ମଝିରେ ମଝିରେ କ୍ଲାସ୍ ପରେ ତାଙ୍କ କ୍ୱାଟର୍ସକୁ ଡାକି ନେଉଥିଲା । ମାଉସୀ (କୁନିର ମା ଶ୍ରୀମତୀ ସୁନ୍ଦରମଣି ପରିଜା) ଆମମାନଙ୍କୁ ଖୁବ୍ ସ୍ନେହ କରନ୍ତି । ସେଦିନ ମଧ ଆମେ କୁନି ସାଙ୍ଗରେ ଯାଇଛୁ । ଖିଆପିଆ ସରିଲା, ମାଉସୀ କହିଲେ, ''ଯେ ଝିଅକୁ ଏତେ ଭଲ ପାଆନ୍ତି, କିନ୍ତୁ ସେଦିନ ଯେ ପ୍ରସେସନ୍‌ରେ ବାହାରିଗଲା– ତା' ପରଠାରୁ ଆଜିକି ସାତଦିନ ହେଲା, ତା' ସାଙ୍ଗେ କଥା କହୁ ନାହାନ୍ତି ।'' ଯାର ଅର୍ଥ ପରିଜା ଥିଲେ ''ପ୍ରଭୁ'' । ନାମ କା ୱାସ୍ତେ ନୁହେଁ– ଯଥାର୍ଥ ପ୍ରଭୁ । ପ୍ରଭୁ କିଏ ? ''ନିଗ୍ରହାନୁଗ୍ରହ ସମର୍ଥଃ ପ୍ରଭୁ'' ଯିଏ ଅନୁଗ୍ରହ ପ୍ରକାଶ କରିବେ, ପୁଣି ସମୟ ବିଶେଷରେ ନିଗୃହୀତ ମଧ କରିବେ । ଅନୁଗ୍ରହର ସ୍ୱରୂପ ତ ଆମେ ଦେଖିଲୁ, ଏବେ ନିଗ୍ରହ । ଝିଅ ନିଶ୍ଚିତ ରୂପେ ସ୍ନେହର ପାତ୍ରୀ, କିନ୍ତୁ ତା' ଆଚରଣରେ ମଧ ତ୍ରୁଟି ରହିବ କାହିଁକି ?

ସେ ଦିନଗୁଡ଼ିକରେ ପରିଜାସାହେବ ଆଚରଣ ମାଧମରେ ଯାହା ଶିଖାଇଥିଲେ, ପରବର୍ତ୍ତୀ ଜୀବନରେ ତାହା ବହୁଭାବରେ ସୁଫଳଦାୟକ ହୋଇଥିଲା, ଆଜି ତେସ୍ତରି ବର୍ଷ ବୟସରେ ମଧ ସେସବୁକୁ ସକୃତଜ୍ଞ ହୃଦୟରେ ସ୍ମରଣ କରି ବାରମ୍ବାର ତାଙ୍କୁ ପ୍ରଣାମ କରୁଛି ।

# ବ୍ୟକ୍ତିଗତ ସମ୍ପର୍କ

**ଶ୍ୟାମସୁନ୍ଦର ପରିଜା**

ସମସ୍ତେ ଡକ୍ଟର ପରିଜାଙ୍କୁ ବିଶ୍ୱବିଖ୍ୟାତ ବୈଜ୍ଞାନିକ, ପ୍ରଖ୍ୟାତ ଶିକ୍ଷାବିତ୍ ଏବଂ ଉଚ୍ଚକୋଟୀର ସମାଜସେବୀ ହିସାବରେ ଦେଖିଛନ୍ତି । ମୁଁ କେବଳ ଆମ ଗାଁ ପାଖ ବାଲିକୁଦାର ବାସିନ୍ଦା ହିସାବରେ ଏବଂ ତାଙ୍କ ଛାତ୍ର ହିସାବରେ ଏକ ସାଧାରଣ ସମ୍ପର୍କ ଦୃଷ୍ଟିରୁ ବେଶୀ ଅନୁଭବ କରିଛି ।

ମୁଁ ରେଭେନ୍ସା କଲେଜିଏଟ୍ ସ୍କୁଲରେ ପଢ଼ିଲା ବେଳକୁ ପ୍ରଫେସର ପରିଜା ଏକ ବିଖ୍ୟାତ ବ୍ୟକ୍ତି । ସେତେବେଳେ କୌଣସି ପ୍ରକାରେ ତାଙ୍କୁ ଦେଖା କରିବାକୁ ମନ ହେଉଥାଏ, କ୍ରମେ ମୁଁ ରେଭେନ୍ସା କଲେଜକୁ ଆସିଲି ଏବଂ ଦୁଇ ବର୍ଷ ଉଦ୍ଭିଦ ବିଜ୍ଞାନର ଛାତ୍ର ଥିଲି । ମୁଁ ରେଭେନ୍ସା କଲେଜ ପଶ୍ଚିମ ଛାତ୍ରାବାସରେ ଚାରିବର୍ଷ ସମୟ ଥିବାତକ ସେ ମଧ୍ୟ ସେଠାରେ ୱାର୍ଡ଼େନ୍ ଥିଲେ । ସେହି ସମୟରେ ୧୯୩୧ ମସିହାରେ ତାଙ୍କର ମୋତେ ଦେଇଥିବା ଏକ ବ୍ୟକ୍ତିଗତ ସାର୍ଟିଫିକେଟ୍ ଏବେ ଦେଖି ମୋ ଆଖିରେ ଲୁହ ଆସିଗଲା । ସେଥିରେ ସେ ଲେଖିଛନ୍ତି, "He is one of the few all-round youngmen I know. He was the central figure in all social actvities and won the love of all his fellow boarders."ଅର୍ଥାତ୍ "ମୁଁ ଜାଣିଥିବା ଖୁବ୍ ଅଳ୍ପ କେତେଜଣ ସର୍ବଗୁଣସମ୍ପନ୍ନ ଯୁବକଙ୍କ ମଧ୍ୟରେ ସେ ଜଣେ । ସମସ୍ତ ସାମାଜିକ କାର୍ଯ୍ୟରେ ସେ ନେତୃତ୍ୱ ନେଇଥାଆନ୍ତି ଏବଂ ସମଗ୍ର ଛାତ୍ରମାନଙ୍କର ସ୍ନେହଭାଜନ ହୋଇପାରିଛନ୍ତି ।"

ଆମେ କେତେଜଣ ପାଠପଢ଼ା ଅପେକ୍ଷା ସାମାଜିକ, ରାଜନୀତିକ କାର୍ଯ୍ୟରେ ଅଧିକ ସମୟ ଦେଉଥିଲୁ ଏବଂ ସେହି ଦୋଷରେ ୧୯୩୧ ମସିହାରେ ମୋତେ ହଷ୍ଟେଲରୁ ବହିଷ୍କାର କରାଯାଇଥିଲା, ସାହେବ ପ୍ରିନ୍ସପାଲ ମି: ଟି. ସି. ଅଗିଲଙ୍କ ଆଦେଶରେ । ମୋ ପ୍ରତି ପ୍ରଫେସର ପରିଜାଙ୍କ ଭିତିରି ଶ୍ରଦ୍ଧା ଥିବାରୁ ମୋତେ ପୁଣି ହଷ୍ଟେଲରେ ଗ୍ରହଣ କରିବା ପାଇଁ ସେ ଉଦ୍ୟମ କରିଥିବାରୁ ଏ ଗ୍ରହଣ ସମ୍ଭବପର ହୋଇପାରିଲା । କେଡ଼େ ମହାନ୍ ସେ !

ମୁଁ ପଶ୍ଚିମ ଛାତ୍ରାବାସରେ ଅନ୍ତେବାସୀ ଥିବାବେଳେ ପ୍ରଫେସର ପରିଜା ସେହି ଛାତ୍ରାବାସର ୱାର୍ଡ଼େନ୍ ଥିଲେ ଓ ମୋର ଅନେକ ସମୟରେ ତାଙ୍କ ସହିତ ମତଭେଦ ହେଉଥିଲା । କିନ୍ତୁ ସବୁ ବିଷୟରେ ପରେ ମୋ ମତ ଠିକ୍ ବୋଲି ଜାଣିବା ପରେ ସେ

ମୋତେ ପ୍ରଶଂସା କରୁଥିଲେ । ଏହା ତାଙ୍କର ଗୋଟିଏ ବିଶିଷ୍ଟ ଗୁଣ ଏବଂ ତାହା ଭୁଲି ହେଉ ନାହିଁ ।

ଚାକିରି ଜୀବନରେ ମୁଁ ପ୍ରତିଷ୍ଠିତ ହେଲା ପରେ ସେ ଅତି ଆନନ୍ଦିତ ହୋଇଥିଲେ ଏବଂ ସମୟେ ସମୟେ ହସି ହସି କହନ୍ତି, "ଶ୍ୟାମସୁନ୍ଦର, ତୁମର ଗଳ୍ପ ପ୍ରବଣତା ଓ ସାମାଜିକ କାର୍ଯ୍ୟକଳାପରୁ ମୋର ଧାରଣା ହୋଇଥିଲା ଯେ ତୁମେ ଜଣେ ସଫଳ ଇନ୍‌ସ୍ୟୁରାନ୍ସ ଅଫିସର ହେବ ବୋଲି । କିନ୍ତୁ ପ୍ରଶାସନିକ କ୍ଷେତ୍ରରେ ତୁମର କାର୍ଯ୍ୟ ବାସ୍ତବିକ ଆଶ୍ଚର୍ଯ୍ୟର କଥା ଓ ଏହା ଆମକୁ ଅଧିକ ଆନନ୍ଦ ଦେଉଛି ।"

ମୁଁ ଓଡ଼ିଶାର ଏମ୍‌ପ୍ଲୟମେଣ୍ଟ ଡିରେକ୍ଟର ଥିଲାବେଳେ ସେ ଥରେ ନିଜେ ଆସି ମୋ ଅଫିସ୍‌ରେ ପହଞ୍ଚିଲେ । ମୁଁ ବିସ୍ମିତ ହୋଇ କହିଲି, "ସାର୍, ଆପଣ ନିଜେ ନ ଆସି ଫୋନ୍ କରି ଦେଇଥିଲେ ହୋଇଥାଆନ୍ତା ।" ସେ କିନ୍ତୁ କହିଲେ, "ମୋର କାମ ଅଛି, ତେଣୁ ମୁଁ ଆସିବା କଥା ।" କେତେ ନିରହଙ୍କାର ସରଳ ବ୍ୟକ୍ତି ସେ ।

ତାଙ୍କର ମୋ ପ୍ରତି ଅନାବିଳ ଶ୍ରଦ୍ଧା ଯୋଗୁଁ ମୋର ବିଭାଘର ଦିନ ମୋତେ ଆଶୀର୍ବାଦ କରିବା ପାଇଁ ସେ ଆମ ଘରକୁ ଆସିଥିଲେ । ଏହା ତାଙ୍କର ମହାନୁଭବତାର ନିଦର୍ଶନ ।

ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କ ବିୟୋଗରେ ଗତ ୨ ତାରିଖ ଠାରୁ ମୁଁ ପ୍ରାୟ ମୂକ ହୋଇ ବସିଥିଲି ଏବଂ କେଉଁଠି ନିଜର ମନୋଭାବ ପ୍ରକାଶ କରିବା ଅବସ୍ଥାରେ ନ ଥିଲି । ମୋର ଏତେ ଆପଣାର ସମ୍ପର୍କ ଥିବା ମହାନ୍ ବ୍ୟକ୍ତିଙ୍କ ବିୟୋଗରେ ମୁଁ ସ୍ୱତଃ ଅନୁଭବ କରିବା କଥା ଯେ ମୋର ମୁରବି ଚାଲିଗଲେ । ତାଙ୍କର ଆତ୍ମା ଶାନ୍ତି ପାଉ, ଏତିକି ଭଗବାନ୍‌ଙ୍କ ନିକଟରେ ପ୍ରାର୍ଥନା ।

# ଛାତ୍ରସମାଜର ବନ୍ଧୁ ଡକ୍ଟର ପ୍ରାଣକୃଷ୍ଣ ପରିଜା

**ଶ୍ୟାମସୁନ୍ଦର ମିଶ୍ର**

ଡକ୍ଟର ପରିଜା ଏକ ନାମ, ତାହା ଉଚ୍ଚାରଣ କଲାମାତ୍ରେ ଦେହରେ ଏକ ପୁଲକ ଜାତ ହୁଏ । ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଜଣେ ବୈଜ୍ଞାନିକ ଓ ଶିକ୍ଷାବିତ୍ ହେଲେ ସୁଦ୍ଧା ସେ ଜଣେ ଅତି ସରଳ ଓ ସ୍ନେହୀ ଲୋକ । ୧୯୨୯ରୁ ୧୯୩୧ ମସିହା ମଧ୍ୟରେ ମୁଁ ରେଭେନ୍ସା କଲେଜ ୱେଷ୍ଟ୍ ହଷ୍ଟେଲରେ ଜଣେ ଅନ୍ତେବାସୀ ଥିଲି । ସେତେବେଳେ ପ୍ରଫେସର ପରିଜା ସେହି ଛାତ୍ରାବାସର ୱାର୍ଡେନ୍ ଥିଲେ । ସେତେବେଳେ ତାଙ୍କର ପ୍ରାୟ ଯୁବକ ଅବସ୍ଥା । କଲେଜ ହେଉ କିମ୍ବା ହଷ୍ଟେଲ ହେଉ ଛାତ୍ରମାନଙ୍କ ସବୁ ସଭାରେ ସେ ଉପସ୍ଥିତ ରହି ସଭା ମଣ୍ଡନ କରୁଥିଲେ ।

ପ୍ରଫେସର ପରିଜା ପଶ୍ଚିମ ଛାତ୍ରାବାସର ଅନ୍ତେବାସୀମାନଙ୍କର ସର୍ବାଙ୍ଗୀଣ ଉନ୍ନତିରେ ପ୍ରବଳ ଆଗ୍ରହ ପ୍ରକାଶ କରୁଥିଲେ ଏବଂ ଅଧିକାଂଶ ଦିନ ସନ୍ଧ୍ୟାବେଳେ ସେମାନଙ୍କୁ ଇଂରେଜ (ବ୍ରିଟିଶ) ଶିକ୍ଷାପଦ୍ଧତି ଓ ଇଂରେଜମାନଙ୍କର ଜୀବନଯାପନ ପ୍ରଣାଳୀ ସମ୍ବନ୍ଧରେ ନାନା କଥା କହୁଥିଲେ । ବ୍ୟକ୍ତିଗତ ଭାବରେ ମୋର ମନେ ପଡୁଛି ଯେ ପ୍ରଫେସର ପରିଜା ଯେଉଁସବୁ ଛାତ୍ରସଭାଗୁଡ଼ିକରେ ସଭାପତି ଆସନ ଅଳଙ୍କୃତ କରି ସଭାକାର୍ଯ୍ୟ ପରିଚାଳନା କରୁଥିଲେ ସେସବୁରୁ ମୁଁ ବିଧାନସଭା କାର୍ଯ୍ୟନିର୍ବାହ ପଦ୍ଧତି ସମ୍ବନ୍ଧରେ ଅନେକ ଶିକ୍ଷାଲାଭ କରିପାରିଥିଲି ।

ପ୍ରଫେସର ପରିଜା ଗରିବ ଛାତ୍ର ସମାଜର ଯେ ପ୍ରକୃତ ବନ୍ଧୁ ଥିଲେ ଏହା ତାଙ୍କ ସହିତ ପ୍ରଥମ ସାକ୍ଷାତରେ ହିଁ ମୁଁ ଭଲ ଭାବରେ ଅନୁଭବ କରିଥିଲି । ମୁଁ ଜଣେ ଗରିବ ଛାତ୍ର ହିସାବରେ କଲେଜରୁ ଓ ହଷ୍ଟେଲରୁ ସାହାଯ୍ୟ ପାଇଁ ଆବେଦନ କରିଥିଲି । ସେତେବେଳେ ୱେଷ୍ଟ ହଷ୍ଟେଲର ୱାର୍ଡେନ୍ ସହିତ ସେ କଲେଜର ଉଦ୍ଭିଦ ବିଜ୍ଞାନ ବିଭାଗର ପ୍ରଫେସର ଥିଲେ । ତାଙ୍କର ସୁପାରିସ କ୍ରମେ ମୁଁ କଲେଜରେ ଗରିବ ଛାତ୍ରବୃତ୍ତି ଓ ୱେଷ୍ଟ ହଷ୍ଟେଲରେ ଆର୍ଥିକ ସାହାଯ୍ୟ ପାଇବା ପାଇଁ ସମର୍ଥ ହୋଇଥିଲି ।

ମୋ ସହିତ କଥାବାର୍ତ୍ତା ହେଲାବେଳେ ସେ କହିଲେ ତୁମେ ଦେଇଥିବା ବିବରଣୀରୁ ଜଣାଯାଉଛି ତୁମେ ପ୍ରକୃତ ଗରିବ, ଅନ୍ୟମାନେ ଅଭିଭାବକ ଭାବରେ ମୋତେ ଅନୁରୋଧ କରି ଲେଖିଛନ୍ତି ଯେ ମୋର ପୁଅ ବର୍ତ୍ତମାନ ଅଭାବରେ ପଡ଼ିଛି, ଆପଣ ତାଙ୍କୁ ସାହାଯ୍ୟ ଦେଇ ତା'ର ଏହି ସମୟରେ ଅଭାବଟା ଦୂର କରି ଦିଅନ୍ତୁ । ଯେଉଁମାନେ ଏହି ଅନୁରୋଧ କରିଛନ୍ତି ସେମାନେ ନିଜେ ଭଲ ଚାକିରିରେ ଅଛନ୍ତି, ତେଣୁ ତାଙ୍କୁ ସାହାଯ୍ୟ କରିବା ଅର୍ଥ ଜଣେ ଭଲ ସରକାରୀ ଚାକିରିରେ ଥିବା ଲୋକଙ୍କୁ

ତା'ର ଅଭାବ ଦୂର କରିବା ପାଇଁ ସାହାଯ୍ୟ କରିବା । ଏହିପରି ଭାବରେ କହି ଯେଉଁ ଛାତ୍ରମାନେ ପ୍ରକୃତ ଗରିବ ନୁହନ୍ତି ସେମାନଙ୍କୁ ଛାତ୍ରବୃତ୍ତି ଦେଇ ନ ଥିଲେ । ମୋଟ ଉପରେ ତାଙ୍କ କଥାବାର୍ତ୍ତାରୁ ଜଣାପଡ଼ିଲା ଯେ ସେ ପ୍ରକୃତ ଗରିବ ଛାତ୍ର ଦେଖି ବୃତ୍ତି ଦେଉଥିଲେ । ଅଭିଭାବକମାନଙ୍କର ଅଭାବ ଦୂର କରିବା ତାଙ୍କର ଲକ୍ଷ୍ୟ ନ ଥିଲା । ସେହିଦିନୁ ପ୍ରଫେସର ପରିଚ୍ଛା ଗରିବ ଛାତ୍ରମାନଙ୍କ ପ୍ରତି ଶ୍ରଦ୍ଧା ଥିବା ମୁଁ ଭଲ ଭାବରେ ଉପଲବ୍ଧି କରିଥିଲି । ଯେତେବେଳେ କୌଣସି କ୍ଷେତ୍ରରେ ତାଙ୍କର ସୁପାରିସ ଦରକାର ପଡ଼େ ସେତେବେଳେ ଅକୁଣ୍ଠିତ ଚିତ୍ତରେ ମୁଁ ତାଙ୍କର ଦ୍ୱାରସ୍ଥ ହେଉଥିଲି ।

ରେଭେନ୍ସା କଲେଜର ଅଧ୍ୟାପକମାନଙ୍କ ମଧ୍ୟରେ ଜଣେ ଅତି ଲୋକପ୍ରିୟ ଅଧ୍ୟାପକ ହୋଇଥିବାରୁ ପ୍ରଫେସର ପରିଚ୍ଛା ନିଖିଳ ଓଡ଼ିଶା ଛାତ୍ର କନ୍‌ଫରେନ୍ସ ସହିତ ଘନିଷ୍ଠ ଭାବରେ ସଂପୃକ୍ତ ଥିଲେ । ମୋର ମନେ ପଡୁଛି ଯେ ଥରେ ନିଖିଳ ଓଡ଼ିଶା ଛାତ୍ର କନ୍‌ଫରେନ୍ସର ଏକ ଅଧିବେଶନ ଗଞ୍ଜାମ ଜିଲ୍ଲାର ବ୍ରହ୍ମପୁର ସହରରେ ସ୍ୱର୍ଗତ ଡକ୍ଟର ସି. ଆର୍. ରେଡିଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ଡକ୍ଟର ରେଡ୍ଡୀ ସେ ସମୟରେ କଂଗ୍ରେସର ଜଣେ ତୁଙ୍ଗ ନେତା ଥିଲେ ଓ ମାଡ୍ରାଜ ବ୍ୟବସ୍ଥାପକ ସଭା (ଲେଜିସ୍‌ଲେଟିଭ କାଉନ୍‌ସିଲ୍)ର ଜଣେ ଖ୍ୟାତିସମ୍ପନ୍ନ ସଦସ୍ୟ ଥିଲେ । ଓଡ଼ିଶାର ଅନେକ ବିଶିଷ୍ଟ ବ୍ୟକ୍ତିଙ୍କ ଗହଣରେ ପ୍ରଫେସର ପରିଚ୍ଛା ସେହି ଅଧିବେଶନରେ ଉପସ୍ଥିତ ଥିଲେ । ସ୍ୱର୍ଗତ ସି. ଆର୍. ରେଡ୍ଡୀ ଜଣେ ପ୍ରବୀଣ ବ୍ୟବସ୍ଥାପକ ଥିବାରୁ ତାଙ୍କର ଉଚ୍ଚ ପଦ ଓ ଖ୍ୟାତି ସମ୍ବନ୍ଧରେ ସେ ସଂପୂର୍ଣ୍ଣ ସଚେତନ ଥିଲେ । ସେ ସ୍ୱାଭିମାନୀ ଥିଲେ । ଅନ୍ୟମାନେ ତାଙ୍କ ପ୍ରତିଷ୍ଠା ସ୍ୱୀକାର କରନ୍ତୁ ଓ ତାଙ୍କୁ ଯଥାବିଧି ମାନ୍ୟତା ପ୍ରଦାନ କରନ୍ତୁ ବୋଲି ସେ ଚାହୁଁଥିଲେ ।

ବିହାର ଓ ଓଡିଶା ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ରେ ବେସରକାରୀ ସଦସ୍ୟମାନଙ୍କ ସଂଖ୍ୟା କେତେ ସେକଥା ଓଡ଼ିଶାର କେତେଜଣ ବ୍ୟବସ୍ଥାପକଙ୍କ ଠାରୁ ଜାଣିବାକୁ ଚାହିଁଲେ । କେହି ତାଙ୍କୁ ସଠିକ ସଂଖ୍ୟା ଦେଇ ପାରିଲେ ନାହିଁ । ପ୍ରଫେସର ପରିଚ୍ଛା ସ୍ୱତଃସ୍ଫୂର୍ତ୍ତ ଏହି ପ୍ରଶ୍ନର ଉତ୍ତର ପ୍ରଦାନ କରିବାକୁ ଇଚ୍ଛା ପ୍ରକାଶ କଲେ ଏବଂ ବିହାର ଓ ଓଡ଼ିଶା ଲେଜିସ୍‌ଲେଟିଭ୍ କାଉନ୍‌ସିଲରେ ବେସରକାରୀ ସଦସ୍ୟଙ୍କ ଠିକ୍ ସଂଖ୍ୟା କହିଥିଲେ । ଏହା ଡକ୍ଟର ରେଡ୍ଡୀଙ୍କୁ କିଛି ସମୟ ପାଇଁ ନୀରବ କରିଦେଇଥିଲା । କିନ୍ତୁ ଡକ୍ଟର ରେଡ୍ଡୀ ବାସ୍ତବରେ ଅଦମନୀୟ ପ୍ରକୃତିର ଥିଲେ । ସେ ତାଙ୍କ ବକ୍ତୃତାରେ ଏକ ତତ୍ତ୍ୱ ବାଢ଼ିଲେ ଯେ ଶିକ୍ଷା ଛାତ୍ରମାନଙ୍କ ଠାରେ ଆଗ୍ରହ (zeal) ସୃଷ୍ଟି କରେ । ପ୍ରଫେସର ପରିଚ୍ଛା ମତ ପ୍ରଦାନ କଲେ ଯେ ଆଗ୍ରହ ବ୍ୟତୀତ ଶିକ୍ଷା ମଧ ଛାତ୍ରମାନଙ୍କ ଠାରେ ଏକ ଅଭିଳାଷ (will) ଜାଗ୍ରତ କରେ । ଡକ୍ଟର ପ୍ରଫେସର ପରିଚ୍ଛାଙ୍କ ଠାରୁ ଜାଣିବାକୁ ଚାହିଁଲେ ଯେ ଏହା ସେ କିପରି ଜାଣିଲେ । ସେ କ'ଣ ଜଣେ ଜୀବବିଜ୍ଞାନୀ କି ? ପ୍ରଫେସର ପରିଚ୍ଛା ଉତ୍ତରରେ କହିଲେ, 'ହଁ, ସେ ଜୀବବିଜ୍ଞାନର ଏକ ଶାଖା ଉଦ୍ଭିଦ ବିଜ୍ଞାନର ଜଣେ ଛାତ୍ର ।'' ଏହିଭଳି ଭାବରେ ଓଡ଼ିଶାର ସଚଳ ଶିକ୍ଷାବିତ୍

ମହାନ୍ ଜ୍ଞାନୀ ଡକ୍ଟର ରେଞ୍ଜୀଙ୍କୁ ପ୍ରାୟ ନୀରବ କରି ଦେଇଥିଲେ ଏବଂ ତାଙ୍କର ଶ୍ରଦ୍ଧାଭାଜନ ହୋଇ ପାରିଥିଲେ ।

ଆଉ ଏକ ଘଟଣା ମୋର ମନେ ଅଛି । ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହେବାର ବହୁ ପୂର୍ବରୁ ୧୯୩୬ ମସିହାରେ ଯେତେବେଳେ ଓଡ଼ିଶା ଏକ ନୂତନ ପ୍ରଦେଶ ରୂପେ ଗଠିତ ହୋଇଥିଲା ସେତେବେଳେ ଗଞ୍ଜାମ ଜିଲ୍ଲାର ବ୍ରହ୍ମପୁର ସହରର ଡାଏମଣ୍ଡ ଜୁବୁଲି ଟାଉନ୍ ହଲରେ ସହରର ବହୁ ବୁଦ୍ଧିଜୀବୀଙ୍କର ଏକ ସାଧାରଣ ସଭାରେ ଶିକ୍ଷାଦାନୀ (teaching) ବିଶ୍ୱବିଦ୍ୟାଳୟ ଓ ଅଙ୍ଗୀକରଣୀ (affiliating) ବିଶ୍ୱବିଦ୍ୟାଳୟର ଏକ ତୁଳନାତ୍ମକ ମହତ୍ତ୍ୱ ସମ୍ବନ୍ଧରେ ଏକ ସାରଗର୍ଭକ ଓ ପାଣ୍ଡିତ୍ୟପୂର୍ଣ୍ଣ ଭାଷଣ ପ୍ରଦାନ କରିଥିଲେ । ଏହିଭଳି ଭାବରେ ଯଦିଓ ପ୍ରଫେସର ପରିଜା ମୁଖ୍ୟତଃ ଜଣେ ଉଦ୍ଭିଦ ବିଜ୍ଞାନୀ ଥିଲେ ତାଙ୍କର ଜ୍ଞାନ ପିପାସାର ପରିସର ବିସ୍ତୃତ ଥିଲା ।

ପ୍ରଫେସର ପରିଜା ଅନେକ ଦିନ ଧରି କଟକରେ "ଉତ୍କଳ ସାହିତ୍ୟ ସମାଜ"ର ସଭାପତି ଥିଲେ । ଏହି ସମାଜ ଓଡ଼ିଶାର ସାହିତ୍ୟିକମାନଙ୍କର ଏକ ମୁଖ୍ୟ ଅନୁଷ୍ଠାନ ଥିଲା ।

ମୁଁ ନିଜେ ଅର୍ଥନୀତି ଓ ରାଜନୀତି ବିଭାଗର ଛାତ୍ର ଥିଲି, ସେ ବିଷୟ ସହିତ ପ୍ରଫେସର ପରିଜାଙ୍କର ବାହ୍ୟ ଦୃଷ୍ଟିରୁ କୌଣସି ସାଧାରଣ ସମ୍ପର୍କ ନ ଥିଲା । କିନ୍ତୁ ତାଙ୍କ ଛାତ୍ରାବାସର ଅନ୍ତେବାସୀମାନଙ୍କର ଜୀବନ ଗଢ଼ିବାରେ ତାଙ୍କର ଏତେ ଆଗ୍ରହ ଥିଲା ଯେ ମୁଁ ଭାରତ ସେବକ ସଂଘ (Servants of India Society, ବର୍ତ୍ତମାନ ନାମ ହିନ୍ଦ୍ ସେବକ ସଂଘ)ରେ ଜଣେ ଆଜୀବନ ସଭ୍ୟ ରୂପେ ଯୋଗଦାନ କରିବାରେ ସେ ହିଁ ମୁଖ୍ୟତଃ ଦାୟୀ । ମୋର ଭାରତ ସେବକ ସଂଘ ସମ୍ବନ୍ଧରେ କୌଣସି ଜ୍ଞାନ ନ ଥିଲା, ସେ ମୋତେ ଏହାର କାର୍ଯ୍ୟାବଳୀ ବିଷୟରେ ବିଶଦ ଭାବରେ କହିଥିଲେ । ଥରେ ମୁଁ କଲିକତାରେ ରହି ଜଣେ ବିଶିଷ୍ଟ ଓଡ଼ିଆ ଧନୀ ଲୋକଙ୍କ ପୁଅମାନଙ୍କୁ ପଢ଼ାଉଥିଲି । ସେତେବେଳେ ପ୍ରଫେସର ପରିଜା ମୋତେ ଚିଠିଲେଖି ଜଣାଇଲେ ଯେ ସେ ଭାରତ ସେବକ ସଂଘର ତତ୍କାଳୀନ ସଭାପତି ସ୍ୱର୍ଗତ ଗୋପାଳକୃଷ୍ଣ ଦେବଧରଙ୍କୁ ଚିହ୍ନନ୍ତି, ମୁଁ ଯଦି ଚାହେଁ ସେ ମୋ ନାମ ଭାରତ ସେବକ ସଂଘର ସଭ୍ୟ ପଦ ପାଇଁ ଦେବଧରଙ୍କୁ ଅନୁରୋଧ କରିବେ । ଶ୍ରୀଯୁକ୍ତ ଦେବଧର ଓ ପ୍ରଫେସର ପରିଜା ଉଭୟେ ଭାରତର କୃଷିବିଭାଗର ବିଭିନ୍ନ ବିଷୟରେ ଆଲୋଚନା କରିବା ପାଇଁ କେନ୍ଦ୍ର ସରକାରଙ୍କ ଦ୍ୱାରା ମନୋନୀତ ହୋଇ ତତ୍କାଳୀନ ରାଜକୀୟ କୃଷି ଅନୁସନ୍ଧାନ ସଂସ୍ଥା (ଇମ୍ପିରିୟାଲ କାଉନ୍ସିଲ ଅଫ୍ ଏଗ୍ରିକଲଚରାଲ ରିସର୍ଚ୍ଚ)ରେ ସହଯୋଗୀ ସଦସ୍ୟ ରୂପେ କାର୍ଯ୍ୟ କରୁଥିଲେ । ସେଥିପାଇଁ ଦୁହେଁ ଘନିଷ୍ଠ ବନ୍ଧୁ ଥିଲେ ।

ମୋର ସମ୍ମତି ଗ୍ରହଣ କରି ପ୍ରଫେସର ପରିଜା ମୋ ନାମ ସୁପାରିସ କରି ଶ୍ରୀଯୁକ୍ତ ଦେବଧରଙ୍କୁ ଚିଠି ଦେଲେ । ମୋର ପରମ ସୌଭାଗ୍ୟକୁ ମୁଁ ଭାରତ ସେବକ ସଂଘର ଜଣେ ଆଜୀବନ ସଭ୍ୟ ହେବାକୁ ମନୋନୀତ ହେଲି । ସେବକ ସଂଘରେ

ଯୋଗଦେବା ପାଇଁ ଯେତେବେଳେ ମୁଁ ପୁନାରେ ଯାଇ ପହଞ୍ଚେ ମୋତେ କୁହାଗଲା ପଣ୍ଡିତ ହୃଦୟନାଥ କୁଞ୍ଜୁରୁ, ଶ୍ରୀଯୁକ୍ତ ଭଜେ ଏବଂ ଶ୍ରୀଯୁକ୍ତ ଭେଙ୍କଟସୁବାୟା ଏହି ତିନିଜଣ ବିଶିଷ୍ଟ ଆଜୀବନ ସଭ୍ୟଙ୍କ ସହିତ ସାକ୍ଷାତ କରିବାକୁ । ମୁଁ ସେମାନଙ୍କୁ ସାକ୍ଷାତ କଲି । ସେମାନେ ମୋତେ ନାନା ପ୍ରଶ୍ନ ପଚାରିଥିଲେ, ମୁଁ ମୋର ଜୀବନର, ଆଦର୍ଶର ଓ ଲକ୍ଷ୍ୟ ଦିଗରେ କେତେଦୂର ଅନୁରକ୍ତ ତାହା ସମୀକ୍ଷା କରି ସେମାନେ ସିଦ୍ଧାନ୍ତ ଗ୍ରହଣ କରିଥିଲେ । ପ୍ରଫେସର ପରିଚ୍ଛାଙ୍କ ଚେଷ୍ଟା ଫଳରେ ହିଁ ମୁଁ ମୋର ବନ୍ଧୁ ଶ୍ରୀଯୁକ୍ତ ଦିନକର ଦେଶାଇ ପ୍ରଭୃତିଙ୍କ ସହିତ ଭାରତ ସେବକ ସଂଘର ସଭ୍ୟ ରୂପେ ଯୋଗ ଦେଇଥିଲି । ଭାରତ ସେବକ ସଂଘ ଭିତରେ ରହି ବହୁ ବିଶିଷ୍ଟ ସଭ୍ୟମାନଙ୍କ ସହିତ ଏକା ସାଙ୍ଗରେ କାମ କରିବା ଏବଂ ବରିଷ୍ଠ ସଭ୍ୟମାନଙ୍କର ସହକାରୀ ଭାବରେ କାର୍ଯ୍ୟ କରିବାର ସୁଯୋଗ ମୁଁ ଲାଭ କରିଥିଲି ।

ମୁଁ ଭାରତ ସେବକ ସଂଘର ସଭ୍ୟ ରୂପେ ଯୋଗଦାନ କରିବା ପରେ ପ୍ରଫେସର ପରିଚ୍ଛା ମୋ ସହିତ ପ୍ରାୟତଃ ସମ୍ପର୍କ ସ୍ଥାପନ କରୁଥିଲେ । ଦିଲ୍ଲୀ, ବମ୍ବେ ଓ ପୁନା ପ୍ରଭୃତି ଭାରତର ଅନେକ ସ୍ଥାନରେ ମୁଁ ତାଙ୍କ ସହିତ ସାକ୍ଷାତ କରିବାର ସୁଯୋଗ ଲାଭ କରୁଥିଲି । ଆମ ଦେଶର ବଡ଼ ବଡ଼ ସହରରେ ତାଙ୍କର ବହୁ ବନ୍ଧୁ ଥିଲେ । ଭାରତର ଅନେକ ବିଶିଷ୍ଟ ଲୋକମାନଙ୍କ ସହିତ ମୁଁ ପରିଚିତ ହୋଇପାରିଛି କେବଳ ଏତିକି କହି ଯେ ମୁଁ ପ୍ରଫେସର ପରିଚ୍ଛାଙ୍କ ତତ୍ତ୍ୱାବଧାନରେ ପରିଚାଳିତ ଛାତ୍ରାବାସରେ ଜଣେ ଅନ୍ତେବାସୀ ଥିଲି ।

ଭାରତ ସେବକ ସଂଘର ସଭ୍ୟ ଥିବାରୁ ପରବର୍ତ୍ତୀ ଜୀବନରେ ମୁଁ ପଣ୍ଡିତ ହୃଦୟନାଥ କୁଞ୍ଜୁରୁ, ଶ୍ରୀଯୁକ୍ତ ଏନ୍.ଏମ୍. ଯୋଶୀ, ଶ୍ରୀଯୁକ୍ତ ଠକ୍କରବାପା ଏ ସମସ୍ତଙ୍କୁ ଚିହ୍ନିବାର ସୁଯୋଗ ପାଇଲି ଏବଂ ସେମାନଙ୍କର ଉଦାର ହୃଦୟ ଓ ଅଗାଧ ପାଣ୍ଡିତ୍ୟ ଜାଣିବା ପାଇଁ ସମର୍ଥ ହେଲି । ଭାରତ ସେବକ ସଂଘ ସହିତ ମୋର ନିବିଡ଼ ସଂପର୍କ ପ୍ରତିଷ୍ଠିତ ହେଲା ଏବଂ ପରବର୍ତ୍ତୀ କାଳରେ ମୁଁ ହିନ୍ଦ୍ ସେବକ ସଂଘର ସଭାପତି ଭାବରେ ମନୋନୀତ ହେଲି । ମୋ ଜୀବନର ଅଭିଳାଷ ପୂରଣ ହେଲା । ଏ ସଫଳତା ପାଇଁ ମୁଁ ପ୍ରଫେସର ପରିଚ୍ଛାଙ୍କ ନିକଟରେ ଚିରଋଣୀ ।

ଭାରତର ବରିଷ୍ଠ ଅର୍ଥନୀତିଜ୍ଞ ସ୍ୱର୍ଗତ ପ୍ରଫେସର ଡି. ଆର୍. ଗାଡ଼ଗିଲ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରୁଥିଲାବେଳେ ସେଠି ସେ ପ୍ରଫେସର ପରିଚ୍ଛାଙ୍କ ଠାରୁ କେତେ ବର୍ଷ କନିଷ୍ଠ ଥିଲେ । ସେ ଥରେ ମୋତେ କହିଥିଲେ ଯେ କେମ୍ବ୍ରିଜରେ ପରିଚ୍ଛା ଛାତ୍ରମାନଙ୍କ ମଧ୍ୟରେ ଜଣେ "ଅଗ୍ରଣୀ ନେତା (Big Gun)" ରୂପେ ଗଣ୍ୟ ହେଉଥିଲେ । ଯେଉଁମାନେ ପ୍ରଫେସର ଗାଡ଼ଗିଲଙ୍କୁ ଭଲରୂପେ ଜାଣନ୍ତି ସେମାନେ ହୃଦୟଙ୍ଗମ କରିପାରିବେ ଯେ ପ୍ରଫେସର ଗାଡଗିଲଙ୍କ ଠାରୁ ପ୍ରଶଂସାବାଚକ ପଦେ କଥା ଶୁଣିବା କେତେ କଷ୍ଟକର । କେବଳ ସେ ନୁହନ୍ତି ନେତାଜୀ ସୁଭାଷ ଚନ୍ଦ୍ର ବୋଷ ମଧ୍ୟ ତାଙ୍କର ବଡ଼ ଭାଇ ସ୍ୱର୍ଗତ ଶରତଚନ୍ଦ୍ର ବୋଷଙ୍କ ନିକଟକୁ ଲେଖିଥିବା

ପତ୍ରାବଳୀରେ (ମୁଦ୍ରିତ ହୋଇଛି) ପ୍ରଫେସର ପରିଜା କେମ୍ବ୍ରିଜରେ ଯାହାସବୁ ଭଲ କାମ କରିଥିଲେ ସେଥିପାଇଁ ପ୍ରଶଂସା କରିଛନ୍ତି ।

ଡକ୍ଟର ପରିଜା ଯେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ସମ୍ମାନିତ ଉପ-କୁଳପତି ଆସନ ଅଳଙ୍କୃତ କରିପାରିଲେ ଏଥିରୁ ସ୍ପଷ୍ଟ ସୂଚନା ମିଳୁଛି ଯେ ସେ ସ୍ୱର୍ଗତ ପଣ୍ଡିତ ମଦନମୋହନ ମାଲବ୍ୟ ଓ ତାଙ୍କ ସୁଯୋଗ୍ୟ ପୁତ୍ର ଶ୍ରୀଯୁକ୍ତ ଗୋବିନ୍ଦ ମାଲବ୍ୟଙ୍କ ପ୍ରଶଂସାର ପାତ୍ର ଥିଲେ । ପ୍ରଫେସର ପରିଜା ବହୁ ବର୍ଷ ଧରି ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଆସନରେ ଅଧିଷ୍ଠିତ ଥିବା ଯୋଗୁଁ ଭାରତର ଅନ୍ୟାନ୍ୟ ବିଶ୍ୱବିଦ୍ୟାଳୟଗୁଡ଼ିକର ଚକ୍ଷୁରେ ଉତ୍କଳ ବିଶ୍ୱବିଦ୍ୟାଳୟର ସମ୍ମାନ ଯେ ବିଶେଷ ବୃଦ୍ଧି ପାଇଥିଲା ଏଥିରେ ସନ୍ଦେହର ଅବକାଶ ନାହିଁ । ଡକ୍ଟର ପରିଜା ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଥିବାବେଳେ ମୁଁ ସିନେଟ୍ ସଭ୍ୟ ରୂପେ କାମ କରିଛି । ତାଙ୍କ ଭଳିଆ ଜଣେ ଚରିତ୍ରବାନ୍ ଶିକ୍ଷାବିତ୍ ମୁଁ କ୍ୱଚିତ୍ ଦେଖିଛି । ତାଙ୍କ ପ୍ରତି ମୋର ଅସାଧାରଣ ଶ୍ରଦ୍ଧା ଓ ସମ୍ମାନ । ଆମ ଦେଶର ଶିକ୍ଷିତ ଗୋଷ୍ଠୀରେ ସେ ଏକ ଅମୂଲ୍ୟ ରତ୍ନ ।

ପ୍ରଫେସର ପରିଜାଙ୍କ ବହୁବିଧ ଆଗ୍ରହ ମଧ୍ୟରେ ଡକ୍ଟର ପରିଜା ଓଡ଼ିଶା ବିଧାନସଭା ପାଇଁ ଜଣେ ସଭ୍ୟ ରୂପେ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ ଓ ଜଣେ ପ୍ରବୀଣ କଂଗ୍ରେସ ନେତାଙ୍କୁ ପରାସ୍ତ କରି ଜଣେ ସ୍ୱାଧୀନ ସଭ୍ୟ ରୂପେ ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ଓଡ଼ିଶା ବିଧାନସଭାରେ ତିନିଜଣ ଲବ୍ଧପ୍ରତିଷ୍ଠ ପଣ୍ଡିତ ଯଥା— ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର ଓ ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କୁ ଏକାଠି ବସିଥିବାର ଦେଖିବା ଓ ବିଧାନସଭାର ଆଲୋଚନାରେ ସେମାନଙ୍କର ମୂଲ୍ୟବାନ୍ ଆଲୋଚନା ଶୁଣିବା ଏକ ଅପୂର୍ବ ଦୃଶ୍ୟ । ଡକ୍ଟର ପରିଜା ଯେତେବେଳେ ଜଣେ ବ୍ୟବସ୍ଥାପକ ଥିଲେ ମୁଁ ତାଙ୍କର ଘନିଷ୍ଠ ସମ୍ପର୍କରେ ଆସିବାର ସୁଯୋଗ ଲାଭ କରିଥିଲି । ଜୀବନ ସାରା ସେ ଜଣେ ଶିକ୍ଷାବିତ୍ ଥିଲେ, ସେ କିପରି ଜଣେ ବ୍ୟବସ୍ଥାପକର ରୁକ୍ଷ, ବନ୍ଧୁର ଓ ଉଗ୍ର ଜୀବନ ସହିତ ନିଜକୁ ଖାପ ଖୁଆଇ ଚଳାଇ ପାରୁଥିଲେ ଏକଥା ଦେଖି ମୋତେ ଆଶ୍ଚର୍ଯ୍ୟ ଲାଗୁଥିଲା ।

ଅନେକ ଦୃଷ୍ଟିରୁ ପର୍ଯ୍ୟାଲୋଚନା କଲେ ଡକ୍ଟର ପରିଜା ଓଡ଼ିଶାର ଏକ ଜାଜ୍ୱଲ୍ୟମାନ ଦୀପଶିଖା ଥିଲେ, ଏହା ନିଃସନ୍ଦେହ । ତାଙ୍କ ପ୍ରଜ୍ୱଳିତ ବ୍ୟକ୍ତିତ୍ୱର ଜ୍ଞାନାଲୋକର ବର୍ତ୍ତିକା ଓଡ଼ିଶାର ଉତ୍ତର ପୁରୁଷର ଯୁବକଯୁବତୀମାନଙ୍କୁ ଆଶା ଓ ଅନୁପ୍ରେରଣାରେ ଉଦ୍ଭାସିତ କରୁ, ଏତିକି ହିଁ ପ୍ରାର୍ଥନା ।

(ଏହି ପ୍ରବନ୍ଧର ବହୁ ଅଂଶ ମୂଳ ଇଂରାଜୀ ଲେଖାରୁ ଡକ୍ଟର ଗଦାଧର ମିଶ୍ରଙ୍କ ଦ୍ୱାରା ଓଡ଼ିଆରେ ଅନୂଦିତ)

# ପରିଜାସାହେବ

**ଶ୍ରଦ୍ଧାକର ସୂପକାର**

(୧)

୧୯୨୮ ମସିହା । ବାଲେଶ୍ୱରରେ ନିଖିଳ ଉତ୍କଳ ଛାତ୍ର ସମ୍ମିଳନୀ ହେଉଥାଏ । ସେଥିରେ ସଭାପତି ହୋଇଥାନ୍ତି ସାର୍– ପ୍ରାଣକୃଷ୍ଣ ପରିଜା ଏମ୍. ଏସ୍‌ସି., ଆଇ. ଇ. ଏସ୍. । ମୁଁ ସେତେବେଳେ ସମ୍ବଲପୁର ଜିଲ୍ଲାସ୍କୁଲ ଉଚ୍ଚ ଶ୍ରେଣୀର ଛାତ୍ର । ସ୍କୁଲ ଛାତ୍ର ପ୍ରତିନିଧି ରୂପେ ମନୋନୀତ ହୋଇ ମୁଁ ଅନ୍ୟମାନଙ୍କ ସହିତ ଟ୍ରେନ୍‌ରେ ଝାରସୁଗୁଡ଼ା ଖଡ଼ଗପୁର ଦେଇ ବାଲେଶ୍ୱର ଯାଇଥିଲି । ସେ କାଳରେ ସମ୍ବଲପୁର ସହିତ କଟକ ଅଞ୍ଚଳର ଯୋଗାଯୋଗ କେବଳ ରେଳପଥରେ ହେଉଥିଲା । ମୁଁ ସେହି ସମୟରେ ପରିଜାସାହେବଙ୍କର ପ୍ରଥମ ଦର୍ଶନର ସୌଭାଗ୍ୟ ଲାଭ କରିଥିଲି । ଆମେ ମଫସଲୀ ଛାତ୍ର । ଏତେ ବଡ଼ ବିଦ୍ୱାନ୍‌ଙ୍କୁ ଦୂରରୁ ଦେଖି ପ୍ରଣତି ଜଣାଇଥିଲି । ସେ ସମୟରେ କଲେଜ ଛାତ୍ରମାନଙ୍କ ସହିତ ଓଡ଼ିଶାର ତଦାନୀନ୍ତନ ଏକମାତ୍ର କଲେଜ ରେଭେନ୍ସା କଲେଜକୁ ଯାଇ ଇଷ୍ଟ ହଷ୍ଟେଲରେ କିଛି ଦିନ ରହିଥିଲି । ସେତେବେଳେ କିଶୋରଚନ୍ଦ୍ର ମିଶ୍ର (ଚିଫ୍ ସେକ୍ରେଟାରୀ ଶ୍ରୀ ରମାକାନ୍ତ ମିଶ୍ରଙ୍କର ବାପା) ଓ ବାଞ୍ଛାନିଧି ବହିଦାର (ସମ୍ବଲପୁରର ଛାତ୍ର) ଇଷ୍ଟ ହଷ୍ଟେଲରେ ରହୁଥିଲେ । ବିଜୁଳିବତିର ଆଲୋକ, ବିଜୁଳି ପଙ୍ଖାର ଚମତ୍କାର, କ୍ଷୀରମୋହନର ସ୍ୱାଦରେ ନିଜକୁ ଧନ୍ୟ ମଣିଥିଲି ।

୧୯୩୧ ମସିହାରେ ମୁଁ ସମ୍ବଲପୁରର ପ୍ରାୟ ବାରଜଣ ସହପାଠୀଙ୍କ ସହ କଟକ ଯାଇ ରେଭେନ୍ସା କଲେଜରେ ନାମ ଲେଖାଇଲି । ମୁଁ ଅନ୍ୟ ସମ୍ବଲପୁରୀ ପିଲାମାନଙ୍କ ସହିତ ପଶ୍ଚିମ ଛାତ୍ରାବାସରେ ରହିଲି, କାରଣ ପ୍ରଫେସର ଘନଶ୍ୟାମ ଦାସ (ସେତେବେଳକୁ ସେ ବିଲାତ ଫେରନ୍ତା ମୁଷ୍ଟିମେୟ ପ୍ରଫେସରଙ୍କ ମଧ୍ୟରେ ଜଣେ) ପଶ୍ଚିମ ଛାତ୍ରାବାସର ସହକାରୀ ସୁପରିଣ୍ଟେଣ୍ଡେଣ୍ଟ ଥିଲେ ଓ ଆମ୍ଭମାନଙ୍କର ସାଧାରଣ ଅଭିଭାବକ ଥିଲେ କହିଲେ ଚଳେ । ପ୍ରଫେସର ନାରାୟଣ ମିଶ୍ର ଥା'ନ୍ତି ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟ ଓ ପରିଜାସାହେବ ଥା'ନ୍ତି ଆମର ୱାର୍ଡେନ୍ । ପ୍ରତିଦିନ ସକାଳେ ପରିଜାସାହେବ ହଷ୍ଟେଲରେ ଥରେ ବୁଲିଯାନ୍ତି । ଆମେ ପ୍ରଶଂସମାନ ଦୃଷ୍ଟିରେ ତାଙ୍କୁ ଅନାଉଁ । ଅନ୍ୟ ବହୁ ପ୍ରଫେସର ଘୋଡ଼ାଗାଡ଼ିରେ କଲେଜ ଆସନ୍ତି । ପରିଜାସାହେବଙ୍କର ଥାଏ ମୋଟର ଗାଡ଼ି । ସେ ଯୁଗରେ ଦୁର୍ଲଭ । ଦେଖିଲେ ଆମ

ମଫସଲୀ ପିଲାଙ୍କ ଆଖି ଖୋସି ହୋଇଯାଏ ।

ମୁଁ ମେଟ୍ରିକ୍‌ରେ ଖୁବ୍ ଭଲ କରିଥିଲି । ଆଇ. ଏସ୍‌ସି.ରେ ନାଆଁ ଲେଖାଇଥାଏଁ । ସେ ଯୁଗରେ ସାରା ବିହାର-ଓଡ଼ିଶାରେ ପାଟନା ବିଶ୍ୱବିଦ୍ୟାଳୟ ଅନ୍ତର୍ଭୁକ୍ତ ସବୁ କଲେଜ ମଧ୍ୟରୁ କେବଳ କଟକ ରେଭେନ୍ସା କଲେଜରେ ବଟାନି ଥାଏ ଚତୁର୍ଥ ଐଚ୍ଛିକ ବିଷୟ ରୂପେ । ସେଥିପାଇଁ ଓଡ଼ିଶା ବାହାରୁ ବିହାରରୁ ମଧ୍ୟ ପିଲାମାନେ ଆଇ. ଏସ୍‌ସି.ରେ ପ୍ରତିଯୋଗିତାମୂଳକ ସ୍ଥାନ ପାଇବା ଆଶାରେ ରେଭେନ୍ସା କଲେଜକୁ ଆସି ନାମ ଲେଖାନ୍ତି । ପୁଣି ବଟାନିରେ ବିଜ୍ଞାନ ଓ କଳା ଛାତ୍ରଙ୍କର ମଧ୍ୟ ପ୍ରବେଶ ଅଧିକାର ଥାଏ । ତେଣୁ ଆଇ. ଏସ୍‌ସି. ଉଦ୍ଭିଦ ବିଜ୍ଞାନରେ ସ୍ଥାନ ପାଇଁ ପ୍ରତିଯୋଗିତା ପ୍ରବଳ ଥିଲା । ମୋ ପକ୍ଷରେ କିନ୍ତୁ ସ୍ଥାନ ପାଇବା ସହଜ ଥିଲା– ଅବଶ୍ୟ ମୋତେ ଗୋଟିଏ ମୂଳାର ଚିତ୍ର ଆଙ୍କିବାକୁ ପଡ଼ିଥିଲା ।

ଆଇ. ଏସ୍‌ସି.ରେ ପରିଜାସାହେବ କୌଣସି କ୍ଲାସ ନେଉ ନ ଥିଲେ । ପ୍ରଫେସର ଦେବବ୍ରତ ମୁଖାର୍ଜି ଅଧିକାଂଶ କ୍ଲାସ୍ ନିଅନ୍ତି । ପ୍ରଫେସର ପରଶୁରାମ ମିଶ୍ର ଓ ବିରାଜମୋହନ ସେନାପତି କେତେ କ୍ଲାସ୍ ଓ ପ୍ରାକ୍ଟିକାଲ କ୍ଲାସ୍ ନେଉଥିଲେ । ସେ ସମୟରେ ଉଦ୍ଭିଦ ବିଜ୍ଞାନ ଉଦ୍ୟାନ ବେଶ୍ ଦର୍ଶନୀୟ ଥିଲା ।

ତାହା ପରେ ଅନେକ ଦିନ ଚାଲିଗଲା । ଆଇ. ଏସ୍‌ସି. ପରେ ମୁଁ ବି. ଏ. ପଢ଼ିଲି ଓ ପୂର୍ବ ଛାତ୍ରାବାସରେ ରହିଲି । ୧୯୩୫ରେ ଉଚ୍ଚଶିକ୍ଷା ପାଇଁ ପାଟନାକୁ ଗଲି ।

(୨)

୧୯୫୧ ମସିହା ସ୍ୱାଧୀନୋତ୍ତର ଭାରତବର୍ଷରେ ପ୍ରଥମ ସାଧାରଣ ନିର୍ବାଚନ ହେଲା ସାବାଳକ ଭୋଟ ପ୍ରଥାରେ । ପରିଜାସାହେବ ଚାକିରିରୁ ଅବସର ଗ୍ରହଣ କରିଥାନ୍ତି । ସେ ସ୍ୱାଧୀନ ପ୍ରାର୍ଥୀ ଭାବେ କଟକ ଜିଲ୍ଲା ବାଲିକୁଦା ନିର୍ବାଚନ ମଣ୍ଡଳୀରୁ ଓଡ଼ିଶା ବିଧାନସଭା ପାଇଁ ପ୍ରାର୍ଥୀ ହେଲେ । ଉଚ୍ଚ ଚାକିରିଆ ଜୀବନରୁ ଅବସର ନେଲା ପରେ ସାଧାରଣ ମଳିମୁଣ୍ଡିଆଙ୍କ ସହିତ ନିଜକୁ ସାମିଲ କରିବା ସହଜ କଥା ନୁହେଁ । ଅନେକେ ହାରିଯାନ୍ତି କେତେ ତିକ୍ତ ଅଭିଜ୍ଞତା ସହ । କିନ୍ତୁ ପରିଜାସାହେବ ଭିନ୍ନ ପ୍ରକୃତିର ଲୋକ– ପଙ୍କଜ ସହିତ ତୁଳନୀୟ । ସେ ଦୀର୍ଘ ମାସେ କାଳ ପଦଯାତ୍ରା କରି ଗାଁ ଗାଁ ବୁଲିଥିଲେ । ତାଙ୍କର ଛାତ୍ର ସଂଖ୍ୟା ଅଗଣିତ । ତେଣୁ ନିର୍ବାଚନରେ ସେ ଅକ୍ଳେଶରେ ଜୟଯୁକ୍ତ ହେଲେ ।

୧୯୫୨ ମସିହା ବିଧାନସଭାରେ କଂଗ୍ରେସ ଦଳ ପୂର୍ଣ୍ଣ ସଂଖ୍ୟାଗରିଷ୍ଠତା ଲାଭ କରିପାରିଲା ନାହିଁ । ଝାଡ଼ଖଣ୍ଡ ସମର୍ଥକ ଓ କେତେକ ସ୍ୱାଧୀନ ସଭ୍ୟଙ୍କ ସହଯୋଗରେ କମ୍ୟୁନିଷ୍ଟ ପାର୍ଟିର ପରୋକ୍ଷ ସମର୍ଥନରେ ନବକୃଷ୍ଣ ଚୌଧୁରୀ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ କଲେ । ୩୧ ସଭ୍ୟ ବିଶିଷ୍ଟ ଗଣତନ୍ତ୍ର ପରିଷଦ ଦଳର ଦଳପତି ହୋଇ ମୁଁ

ବିରୋଧୀ ଦଳର ନେତା ହେଲି । ୨୭ ଜଣ ସ୍ୱାଧୀନ ପ୍ରାର୍ଥୀ ମିଳିତ ହୋଇ ଡକ୍ଟର ପ୍ରାଣକୃଷ୍ଣ ପରିଚ୍ଛାଙ୍କୁ ନେତା ନିର୍ବାଚନ କଲେ । ପରିଚ୍ଛାସାହେବଙ୍କ ଆସନ ବିଧାନସଭାରେ ଠିକ୍ ମୋ ଆସନକୁ ଲାଗିଥିଲା ଓ ପଣ୍ଡିତ ନୀଳକଣ୍ଠ ଦାସ ମଧ୍ୟ ଆମ ଦୁହିଁଙ୍କ ଆସନ ଲାଗି ସମ୍ମୁଖ ଆସନରେ ବସୁଥିଲେ । ଗୁରୁଦେବଙ୍କର ଏତେ ନିକଟ ସାନ୍ନିଧ୍ୟ ମୋ ପକ୍ଷରେ ଅଖଣ୍ଡ ସୌଭାଗ୍ୟର ବିଷୟ ଥିଲା । ତାଙ୍କର ଅଭିଜ୍ଞତା ଓ ବିଦ୍ୱତ୍ତାରୁ ମୁଁ ସେସମୟରେ ଅନେକ କଥା ତାଙ୍କଠାରୁ ଶିଖିଥିଲି । ତାଙ୍କର ସମୟାନୁବର୍ତ୍ତିତା ବିଷୟରେ ଆଗରୁ ଅନେକ କଥା ଶୁଣିଥିଲି, ଏବେ ତାହା ପ୍ରତ୍ୟକ୍ଷ ଅନୁଭବର ବିଷୟ ହେଲା । ଓଡ଼ିଶାର ବହୁ ସମସ୍ୟା ବିଷୟରେ ସେ ବିଧାନସଭାର ସଭ୍ୟ ଥିଲାବେଳେ ଅତି ମୂଲ୍ୟବାନ୍ ପରାମର୍ଶ ଦେଇଛନ୍ତି । ପ୍ରତିବର୍ଷ ଶିକ୍ଷା ବିଭାଗର ବଜେଟ୍ ଆଲୋଚନା ବେଳେ ସେ ଆଲୋଚନା ଆରମ୍ଭ କରନ୍ତି । ତାଙ୍କର ସେସବୁ ଆଲୋଚନା ପୁସ୍ତକାକାରରେ ପ୍ରକାଶିତ ହେଲେ ଖୁବ୍ ଶିକ୍ଷାପ୍ରଦ ହୁଅନ୍ତା ।

ତା ପରେ ଅନେକ ଦିନ ବିତିଯାଇଛି । ମୁଁ କଟକ ଗଲେ ତାଙ୍କର ବାସଗୃହ ୧୦ ନମ୍ବର କାଣ୍ଟନ୍‌ମେଣ୍ଟ୍ ରୋଡ୍ ମୋ ପକ୍ଷରେ ଏକ ତୀର୍ଥସ୍ଥଳୀ ଥିଲା । ମୁଁ ବହୁବାର ତାଙ୍କ ଘରକୁ ଯାଇଛି ଓ ତାଙ୍କର ସ୍ନେହ ଓ ଆଶୀର୍ବାଦରେ ନିଜକୁ ଧନ୍ୟ ମନେ କରିଛି ।

(୩)

୧୯୬୪ ମସିହା । ମୋର ସହପାଠୀ ସ୍ୱର୍ଗତ ଅଶୋକ ଦାସଙ୍କର ପରାମର୍ଶ କ୍ରମେ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟ ସିନେଟ୍‌କୁ ପ୍ରାର୍ଥୀ ହେଲି ଓ ପରେ ସିଣ୍ଡିକେଟ୍‌କୁ ମଧ୍ୟ ନିର୍ବାଚିତ ହେଲି । ପରିଚ୍ଛାସାହେବ ସେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ବା ଭାଇସ୍‌ଚାନ୍‌ସେଲର । ସିଣ୍ଡିକେଟ୍ ବୈଠକ ଗୋଟିଏ ଲେଖାଏଁ କଟକ ବର୍ଦ୍ଧମାନ କୋଠିରେ ଓ ପରବର୍ତ୍ତୀ ବୈଠକ ବାଣୀବିହାରରେ ପର୍ଯ୍ୟାୟକ୍ରମେ ହେଉଥାଏ । ଡକ୍ଟର ସଦାଶିବ ମିଶ୍ର, ଅଶୋକ ଦାସ, ସୁରଜମଲ୍ଲ ସାହା, ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ, ପ୍ରଫେସର ପ୍ରହ୍ଲାଦ ପ୍ରଧାନ ଆଦି ସିଣ୍ଡିକେଟ୍ ସଭ୍ୟ ଥାଆନ୍ତି । ପରିଚ୍ଛାସାହେବଙ୍କୁ କେବେ କେବେ ଦିଲ୍ଲୀ, ବନାରସ ଆଦିରେ କାମ ଥିବାରୁ ଅନୁପସ୍ଥିତ ରହିବାକୁ ପଡୁଥାଏ ।

ଏପରି ଏକ ସମୟ । ୧୯୬୫ ମସିହା ମଧ୍ୟଭାଗ ବୋଧହୁଏ । ସମ୍ବଲପୁରରେ ଏକ ଆଇନ୍ ମହାବିଦ୍ୟାଳୟ ଖୋଲିବାକୁ ସମ୍ବଲପୁର କଲେଜ ଟ୍ରଷ୍ଟ ଫଣ୍ଡ କମିଟି ଦରଖାସ୍ତ କରିଥାଏ । ମୁଁ ଟ୍ରଷ୍ଟ ଫଣ୍ଡ କମିଟିର ସଭ୍ୟ ମଧ୍ୟ ଥିଲି । ଯେଉଁଦିନ ଏ ପ୍ରସ୍ତାବ ସିଣ୍ଡିକେଟ୍‌ରେ ବିଚାର ହେବାର କଥା, ଦୁର୍ଯୋଗକୁ ସେଦିନଟା ପରିଚ୍ଛାସାହେବ ଅନୁପସ୍ଥିତ ଥିଲେ । ବୋଧହୁଏ ଡକ୍ଟର ସଦାଶିବ ମିଶ୍ର ସିଣ୍ଡିକେଟ୍‌ରେ ସଭାପତିତ୍ୱ କରୁଥିଲେ । ଅପ୍ରତ୍ୟାଶିତ ଭାବେ ସିଣ୍ଡିକେଟ୍‌ରେ ଏ ପ୍ରସ୍ତାବର ପ୍ରବଳ ବିରୋଧ

ହେଲା । ଟ୍ରଷ୍ଟ ଫଣ୍ଡ ସମ୍ବଲପୁରରେ ଆଇନ୍ କଲେଜ ଚଳାଇବାରେ ଯଥେଷ୍ଟ ସଙ୍ଗତିସମ୍ପନ୍ନ ଓ ସମ୍ବଲପୁରରେ ଆଇନ୍ ଅଧ୍ୟାପନା ପାଇଁ ଯୋଗ୍ୟ ଓକିଲଙ୍କର ଅଭାବ ନ ଥିବା ଇତ୍ୟାଦି ବିଷୟରେ ମୁଁ ବହୁତ ଯୁକ୍ତି ବାଢ଼ିଥିଲି, ମାତ୍ର ଶେଷକୁ ପ୍ରସ୍ତାବଟି କାଟ ଖାଇଗଲା । ଆଇନ୍ ଶିକ୍ଷାର ମାନକୁ ତଳକୁ କରିବାକୁ ସିଣ୍ଡିକେଟ୍‌ର ସଂଖ୍ୟାଧିକ ସଭ୍ୟ ପ୍ରସ୍ତୁତ ନ ଥିଲେ । ସେତେବେଳେ କଟକରେ ସାରା ଓଡ଼ିଶା ପାଇଁ ଏକମାତ୍ର ଆଇନ୍ ଶିକ୍ଷାର ସୁଯୋଗ ଥିଲା ।

ମୁଁ ଅତ୍ୟନ୍ତ ବ୍ୟଥିତ ହେଲି । ମୁଁ ମାଛୁଆବଜାରରେ ମୋର ସଢୁ ଡାକ୍ତର ଶିଶିର କୁମାର ପଣ୍ଡାଙ୍କ ଘରେ ରହୁଥାଏଁ । ମୋର ମନଟା ଏତେ ଖରାପ ହେଲା ଯେ ମୁଁ ସିଣ୍ଡିକେଟ୍‌ରୁ ଇସ୍ତଫା ଦେବାକୁ ସିଦ୍ଧାନ୍ତ କଲି ଓ ଭାଇସ୍‌ଚାନ୍‌ସେଲର୍‌ଙ୍କୁ ତତ୍‌ପରଦିନ ବର୍ଦ୍ଧମାନ କୋଠି ବୈଠକକୁ ଇସ୍ତଫା ପତ୍ର ପଠାଇ ଦେବାର ସ୍ଥିର କଲି ।

ତହିଁଆରଦିନ ୩ଟା ବେଳେ କଟକ ବର୍ଦ୍ଧମାନ କୋଠିରେ ପରିଜାସାହେବଙ୍କ ସଭାପତିତ୍ୱରେ ସିଣ୍ଡିକେଟ୍ ବୈଠକ ଆରମ୍ଭ ହେଲା । ଡାକ୍ତର ଶିଶିର କୁମାର ପଣ୍ଡା ପୂର୍ବରୁ ମୋର ଇସ୍ତଫାପତ୍ର ପରିଜାସାହେବଙ୍କ ପାଖକୁ ପଠାଇ ଦେଇଥିଲେ ।

ପରିଜାସାହେବ ମୋତେ ମିଟିଂକୁ ଡକାଇଲେ । ସେ କହିଲେ, ‘‘ଶ୍ରଦ୍ଧାକର, ତୁମେ ଅନୁଗ୍ରହ କରି ଇସ୍ତଫା ଫେରସ୍ତ ନିଅ ।’’ ମୁଁ କହିଲି, ‘‘ସାର୍, ମୁଁ ବିନା ସର୍ତ୍ତରେ ଇସ୍ତଫା ଫେରସ୍ତ ନେଉଛି । ଆପଣଙ୍କର କଥା ନ ମାନିବାର ପ୍ରଶ୍ନ ହିଁ ଉଠି ନ ପାରେ ।’’

ସେହିଦିନ ସିଣ୍ଡିକେଟ୍‌ରେ ସମ୍ବଲପୁରରେ ଆଇନ୍ କଲେଜ ହେବାର ପ୍ରସ୍ତାବ ପାସ୍ ହେଲା । ସେ ବର୍ଷ ନଭେମ୍ବର ମାସରେ ସମ୍ବଲପୁର ନାରୀ ସେବା ସଙ୍ଘ ସଦନ କୋଠାରେ ଓଡ଼ିଶାର ରାଜ୍ୟପାଳ ଡକ୍ଟର ଅଯୋଧ୍ୟାନାଥ ଖୋସଲା ସମ୍ବଲପୁରରେ ଆଇନ୍ କଲେଜ ଉଦ୍‌ଘାଟନ କଲେ । ମନ୍ତ୍ରୀ ବନମାଳୀବାବୁ ସେ ଉତ୍ସବରେ ପୌରୋହିତ୍ୟ କରିଥିଲେ । ଲାଲା ଲଜପତ୍ ରାୟଙ୍କ ଜନ୍ମଶତବାର୍ଷିକୀ ଅବସରରେ କଲେଜର ପ୍ରତିଷ୍ଠା ହୋଇଥିବା ଯୋଗୁଁ କଲେଜର ନାମ ଲାଲା ଲଜ୍‌ପତ୍ ରାୟ ଆଇନ୍ କଲେଜ ହେଲା ।

ଶ୍ରୀ ଲଳାଟେନ୍ଦୁ ପରିଜା ଆଇ. ଏ.ଏସ୍. ସମ୍ବଲପୁରରେ ଉତ୍ତର ଡିଭିଜନ୍ ରାଜସ୍ୱ କମିଶନର୍ ଥିଲା ବେଳେ ପରିଜାସାହେବ ସମ୍ବଲପୁର ଆସିଥିଲେ । ସେତେବେଳେ ତାଙ୍କର ପଦରଜ ଆମ ଗୃହରେ ପଡ଼ିଥିବାରୁ ଆମେ ଧନ୍ୟ ହୋଇଛୁ ।

ତାଙ୍କର ଅଗଣିତ ଛାତ୍ରଛାତ୍ରୀ ତାଙ୍କର ଅସରନ୍ତି ଜ୍ଞାନଭଣ୍ଡାରରୁ ଯେତିକି ଜ୍ଞାନ ଲାଭ କରିଛନ୍ତି, ତହିଁରୁ ଅଧିକ ତାଙ୍କ ସ୍ନେହଭଣ୍ଡାରରୁ ବାତ୍ସଲ୍ୟ ରସ ଲାଭ କରିଛନ୍ତି ।

# ରହିମନ୍ତ ଅବିସ୍ମରଣୀୟ ବ୍ୟକ୍ତିତ୍ୱ

**ଶ୍ରୀନିବାସ ସାହୁ**

ମୋ ପରି ୧୯୪୪ ସାଲରେ ଯେଉଁ ଅଧ୍ୟାପକମାନେ ଓଡ଼ିଶାର ନୂତନ କଲେଜଗୁଡ଼ିକରେ ଯୋଗଦେଲେ ସେମାନେ ଦୁଇଜଣ "ସାହେବ"ଙ୍କୁ ଭଲଭାବରେ ଜାଣିଥିଲେ । ସେମାନେ ହେଲେ ତ୍ରିପାଠୀସାହେବ ଓ ପରିଜାସାହେବ । ସେତେବେଳକୁ ତ୍ରିପାଠୀସାହେବ ପ୍ରଥମ ଭାରତୀୟ ଶିକ୍ଷା ନିର୍ଦ୍ଦେଶକ ଭାବେ ଅବସ୍ଥାପିତ ହୋଇସାରିଥିଲେ ଓ ପରିଜାସାହେବ ନୂତନ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି ଭାବରେ କାର୍ଯ୍ୟଭାର ଗ୍ରହଣ କରିସାରିଥିଲେ । ଉଭୟେ ଭାରତୀୟ ଶିକ୍ଷା ସେବା (ଇଣ୍ଡିଆନ୍ ଏଡୁକେସନାଲ ସର୍ଭିସ୍)ର ସଭ୍ୟ ହୋଇ ସାରିଥିଲେ । ଏହି ପଦବୀ ଆଉ କେହି ଓଡ଼ିଆ ପାଇ ନ ଥିଲେ ।

ଯେହେତୁ ସେ ସମୟରେ ସମସ୍ତ ଉଚ୍ଚ କର୍ମକର୍ତ୍ତା ବିଲାତୀସାହେବ ଥିଲେ ଏମାନଙ୍କ ଭାବଭଙ୍ଗୀ, ଚାଲିଚଳଣ ସେମାନଙ୍କ ଜୀବନ ଶୈଳୀ ସହିତ ସମକକ୍ଷ ହେବାର ଆବଶ୍ୟକ ଥିଲା । ତେଣୁ ସେମାନଙ୍କ ପୋଷାକ, କାର୍ଯ୍ୟନିର୍ବାହ ଶୈଳୀ ଓ ଆମୋଦର ଅବକାଶ ପାଶ୍ଚାତ୍ୟ ରୀତିରେ ପ୍ରସ୍ତୁତ ହୋଇଥିଲା । କିନ୍ତୁ ସେମାନେ ତାହାଦ୍ୱାରା ବିମୋହିତ ହୋଇ ନ ଥିଲେ । ନିଜର ପ୍ରତିଭା ଓ ତୀକ୍ଷ୍ଣ ବୁଦ୍ଧି ସହିତ ସେ ସମ୍ମିଶ୍ରଣ କରିଥିଲେ ପାଶ୍ଚାତ୍ୟ ଶୃଙ୍ଖଳା, ସମୟାନୁବର୍ତ୍ତିତା ଏବଂ ସ୍ୱଚ୍ଛ ନିରପେକ୍ଷତା । ଶିକ୍ଷା ଜଗତରେ ତାଙ୍କର ସ୍ଥାନ ଏତେ ଉଚ୍ଚରେ ଥିଲା ଯେ, ସେମାନଙ୍କର ସମକକ୍ଷ ଆଉ କେହି ନ ଥିଲେ । ଓଡ଼ିଶାର ଉଚ୍ଚଶିକ୍ଷା ଏହି ଦୁଇ ମାର୍ଗଦର୍ଶକଙ୍କ ପ୍ରସ୍ତାବ କ୍ରମେ ହିଁ ପରିଚାଳିତ ହେଉଥିଲା ।

ମୁଁ ଡକ୍ଟର ପରିଜାଙ୍କ ସମ୍ବନ୍ଧରେ ବହୁତ କଥା ଶୁଣିଥିଲେ ମଧ୍ୟ ତାଙ୍କର ଅଧ୍ୟକ୍ଷତା କାଳରେ ଛାତ୍ର ହେବାର ସୌଭାଗ୍ୟ ମୋର ଜୁଟି ନ ଥିଲା, କାରଣ ମୋର ଉଚ୍ଚଶିକ୍ଷା ଦକ୍ଷିଣ ଭାରତରେ ସମ୍ପାଦିତ ହୋଇଥିଲା । ୧୯୪୪ ମସିହାରେ ମୁଁ ସମ୍ବଲପୁର କଲେଜ (ବର୍ତ୍ତମାନର ନାମ ଗଙ୍ଗାଧର ମେହେର କଲେଜ)ରେ ଅଧ୍ୟାପକ ରୂପେ ଯୋଗ ଦେବା ବେଳକୁ ସେ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି ରୂପେ ଯୋଗଦେଇ ସାରିଥିଲେ । ଆମ ଯୁବଅଧ୍ୟାପକମାନଙ୍କ ମହଲରେ ସେ ଜଣେ କିମ୍ବଦନ୍ତୀ ପୁରୁଷ ରୂପେ ପ୍ରତିଷ୍ଠା ଅର୍ଜନ କରିସାରିଥିଲେ । କେମ୍ବ୍ରିଜରେ ଉଦ୍ଭିଦ ବିଜ୍ଞାନରେ ତାଙ୍କ ଗବେଷଣା ଆମେ କେତେଜଣ ଅତି ଉଚ୍ଚକୋଟୀର ବୋଲି ବିବେଚନା କରୁଥିଲୁ (ଯଦିଓ ଆମ ଭିତରୁ ଅଧିକାଂଶ ସେ ପ୍ରକୃତରେ କେଉଁ ବିଷୟରେ ଗବେଷଣା

କରିଥିଲେ ସେ ବିଷୟରେ ଅଜ୍ଞ ଥିଲୁ ।) ତାଙ୍କର କର୍ତ୍ତବ୍ୟବୋଧ ଓ ଶୃଙ୍ଖଳା ପ୍ରତି ପ୍ରବଣତା ଆମ୍ଭମାନଙ୍କ ମନରେ ଏକ ଧାରଣା ସୃଷ୍ଟି କରିଥିଲା ଯେ, ସେ ନିଶ୍ଚୟ ଜଣେ କଡ଼ା କଠୋର, ଏକଜିଦିଆ ବ୍ୟକ୍ତି ହୋଇଥିବେ । ପରବର୍ତ୍ତୀ ସମୟରେ ମୁଁ ଯେତେବେଳେ ଡକ୍ଟର ପରିଜାଙ୍କ ସହିତ ସାକ୍ଷାତ ହେବାର ସୁଯୋଗ ଲାଭ କଲି ଓ ତାଙ୍କ ସହିତ ଅଳ୍ପ ସମୟ ପାଇଁ କଥାବାର୍ତ୍ତା ହୋଇଥିଲି ମୋର ସେ ପୂର୍ବ ମତ ସଂପୂର୍ଣ୍ଣ ବଦଳି ଯାଇଥିଲା ଓ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କ ବ୍ୟକ୍ତିତ୍ୱର ଏକ ଝଲକ ମୋ ମନରେ ଖେଳିଯାଇଥିଲା ।

ପରିଜାସାହେବଙ୍କ ସହିତ ମୋର ବିଶେଷ ବ୍ୟକ୍ତିଗତ ସମ୍ପର୍କ ନ ଥିଲା, କିନ୍ତୁ ଯେଉଁ କେତୋଟି ମୁହୂର୍ତ୍ତ ତାଙ୍କ ସଂସ୍ପର୍ଶରେ କଟାଇଛି ତାହା ମୋ ମନରେ ଅବିସ୍ମରଣୀୟ ହୋଇ ରହିଛି । ଗୋଟିଏ ଉଦାହରଣ, ମୁଁ ଭଦ୍ରକ ମହାବିଦ୍ୟାଳୟରେ ସରକାରୀ ଚାକିରିରୁ ଡେପୁଟେସନ୍‌ରେ ଯାଇ ଅଧ୍ୟକ୍ଷ ଭାର ଗ୍ରହଣ କରିଥିଲି । ସେତେବେଳେ ତାହା ବେସରକାରୀ ପରିଚାଳନାରେ ଚାଲୁଥିଲା । ଛାତ୍ରମାନଙ୍କ ଭିତରେ ଥିବା ଗଣ୍ଡଗୋଳ ଦୂର ହୋଇଗଲା ଏବଂ ସେମାନେ ଚାହିଁଲେ ଗୋଟିଏ ବଡ଼ ସଭା କରିବେ ଓ ଜଣେ ଗୁଣୀ ବ୍ୟକ୍ତିଙ୍କୁ ମୁଖ୍ୟ ଅତିଥି କରି ଆଣିବେ । ବିଶ୍ୱବିଦ୍ୟାଳୟର କୁଳପତିଙ୍କଠାରୁ ବଡ଼ ଅତିଥି ଆଉ କିଏ ହୋଇପାରିବେ । ଆମ ଭାଗ୍ୟକୁ ପରିଜାସାହେବ ଆମ ନିମନ୍ତ୍ରଣ ସ୍ୱୀକାର କରି ଭଦ୍ରକ ଆସିବାକୁ ରାଜି ହୋଇଗଲେ ।

ତାଙ୍କର କାର୍ଯ୍ୟକ୍ରମ ଅନୁସାରେ ସେ ରେଳଗାଡ଼ିରେ ଭଦ୍ରକ ଆସି କଲେଜ କାର୍ଯ୍ୟକ୍ରମ ସାରି ପୁଣି ସେହିଦିନ ରେଳଗାଡ଼ିରେ କଟକ ଫେରିଯିବାର ଥିଲା, କାରଣ କଟକରୁ ଭଦ୍ରକ ଜାତୀୟ ରାଜପଥ ନିତାନ୍ତ ଖରାପ ଅବସ୍ଥାରେ ଥିଲା । ତେଣୁ ସେ ମଟରଗାଡ଼ିରେ ଆସିବାକୁ ଇଚ୍ଛା କରି ନ ଥିଲେ । ଭଦ୍ରକ ଷ୍ଟେସନଠାରୁ ଭଦ୍ରକ କଲେଜ ବହୁତ ଦୂର । ତେଣୁ ମୁଁ ତାଙ୍କୁ ମୋ ଗାଡ଼ିରେ ଷ୍ଟେସନରୁ ଆଣି ସଭା ପରେ ପୁଣି ଷ୍ଟେସନରେ ଛାଡ଼ିବା ପାଇଁ ସ୍ଥିର କଲି । ପରିଜାସାହେବ ଠିକ୍ ସମୟରେ ଭଦ୍ରକ ଷ୍ଟେସନରେ ପହଞ୍ଚିଲେ ଓ ମୁଁ ତାଙ୍କୁ ମୋ ଗାଡ଼ିରେ ବସାଇ କଲେଜ ଆଣୁଥିଲି । ମୋର ଥିଲା ଗୋଟିଏ ପୁରୁଣା ଗାଡ଼ି । ଆମେ ଅଧା ବାଟରେ ପହଞ୍ଚିଲୁଣି, ହଠାତ୍ ଗାଡ଼ିଟି ଖରାପ ହୋଇଗଲା । ମୋର ଗାଡ଼ି ଇଞ୍ଜିନ୍ ବିଷୟରେ ବିଶେଷ କିଛି ଜ୍ଞାନ ନ ଥିଲା । ମୁଁ ଗାଡ଼ିର ବନେଟ୍ ଟେକି ଏ ନଟ୍‌ଟି ଟାଇଟ୍ କରୁଥାଏ ତ ଆଉ ଗୋଟିଏ ନଟ୍ ହୁଗୁଳୁ ଥାଏ । ଏଭଳି ଅସୁନ୍ଦର ଘଟଣାରେ ମୁଁ ଅଧୈର୍ଯ୍ୟ, ଅସ୍ଥିର, ଆତଙ୍କଗ୍ରସ୍ତ ହୋଇପଡ଼ିବା ସ୍ୱାଭାବିକ । ଡକ୍ଟର ପରିଜା ଧୀର ସ୍ଥିର ଭାବରେ ଗାଡ଼ିରେ ବସିଥାନ୍ତି ଓ ବ୍ୟସ୍ତ ନ ହେବା ପାଇଁ ଉପଦେଶ ଦେଉଥାନ୍ତି । କୌଣସି ପ୍ରକାରେ କିଛି ସମୟ ପରେ ଗାଡ଼ିଟି ଠିକ୍ ହୋଇଗଲା (ମୋର ଇଞ୍ଜିନିଅରିଂ କୌଶଳ ଯୋଗୁଁ ନୁହେଁ) ଓ ମୁଁ ତାଙ୍କୁ କଲେଜରେ ସଭାସ୍ଥଳରେ ଆଣି ପହଞ୍ଚାଇଲି । ସେ ଜଣେ କଠୋର ସମୟାନୁବର୍ତ୍ତି ଥିଲେ ମଧ୍ୟ ପ୍ରତିକୂଳ ପରିସ୍ଥିତିରେ ସୁବିଧା ଅସୁବିଧା ବୁଝି ଧୈର୍ଯ୍ୟର ସହିତ ବିଳମ୍ବକୁ

ମଧ୍ୟ ବରଦାସ୍ତ କରିପାରୁଥିଲେ । ସେ ତାଙ୍କର ପ୍ରତ୍ୟେକ କାର୍ଯ୍ୟକ୍ରମରେ, ଅଫିସରେ, ସିଣ୍ଡିକେଟ୍ ଏବଂ ସିନେଟ୍ ଅଧିବେଶନମାନଙ୍କରେ ଏବଂ ବ୍ୟକ୍ତିଗତ ଜୀବନରେ କଠୋର ସମୟାନୁବର୍ତ୍ତିତା ପାଳନ କରୁଥିଲେ ।

ଇଂରେଜୀରେ ଗୋଟିଏ କଥା ଅଛି "time is money" ଡକ୍ଟର ପରିଜା ସମୟ ନଷ୍ଟ କରିବା ଦେଖିଲେ ବିରକ୍ତ ହୁଅନ୍ତି । ବିଶ୍ୱବିଦ୍ୟାଳୟର ସଭାସମିତିମାନଙ୍କରେ ଅକାରଣ ବୃଥା ବାଗ୍‌ବିତଣ୍ଡା ସେ ସହ୍ୟ କରିପାରନ୍ତି ନାହିଁ । ମୋର ମନେ ଅଛି, ମୁଁ ଯେତେବେଳେ ଅଳ୍ପ କିଛି ମାସ ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟର ଆସିଷ୍ଟାଣ୍ଟ ରେଜିଷ୍ଟ୍ରାର୍ କାର୍ଯ୍ୟଭାର ସମ୍ଭାଳି ଥିଲି ମୋତେ ସିଣ୍ଡିକେଟ୍ ସଭାରେ ଉପସ୍ଥିତ ହେବାକୁ ପଡୁଥିଲା ।

ପରିଜାସାହେବଙ୍କ କାର୍ଯ୍ୟଶୈଳୀ ରୋକ୍‌ଠୋକ୍ ଥିଲା । ବେଶି ସମୟ କାହାକୁ ଅନାବଶ୍ୟକ କଥା କହିବାକୁ ଦିଅନ୍ତି ନାହିଁ । ଆଲୋଚ୍ୟ ବିଷୟବସ୍ତୁ ଛାଡ଼ି ଅବାନ୍ତର କଥା କହିଲେ କିମ୍ବା ଚର୍ବିତଚର୍ବଣ କଲେ ସେ ସଭ୍ୟମାନଙ୍କୁ ବସିଯିବାକୁ କହନ୍ତି । ସଭାକାର୍ଯ୍ୟ ଦକ୍ଷ ଓ ଗାମ୍ଭୀର୍ଯ୍ୟପୂର୍ଣ୍ଣ ହୋଇଥାଏ । ତେଣୁ ଗୋଟିଏ ଗୋଟିଏ ଅଧିବେଶନରେ ଚାଳିଶରୁ ପଚାଶଟି ପର୍ଯ୍ୟନ୍ତ ବିଷୟରେ ସିଦ୍ଧାନ୍ତ ଗ୍ରହଣ କରିହେଉଥିଲା । ନିହାତି ଆବଶ୍ୟକ ନ ହେଲେ କୌଣସି ବିଷୟ ସ୍ଥଗିତ ରଖାଯାଉ ନ ଥିଲା । ତାଙ୍କ ବ୍ୟକ୍ତିତ୍ୱ ଏପରି ପ୍ରଭାବଶାଳୀ ଯେ ପ୍ରତିବାଦ କରିବା ପାଇଁ କେହି ସାହସ କରୁ ନ ଥିଲେ । ତେଣୁ ବିଶ୍ୱବିଦ୍ୟାଳୟର କାର୍ଯ୍ୟକ୍ରମ ଯଥାଶୀଘ୍ର ହୋଇପାରୁଥିଲା ।

ପରିଜାସାହେବ ଦୀର୍ଘକାୟ ଥିଲେ ଓ ତାଙ୍କର କପାଳ ଅତି ଉନ୍ନତ । ତାଙ୍କ ଚାହାଣି ଗାମ୍ଭୀର୍ଯ୍ୟପୂର୍ଣ୍ଣ । ତାଙ୍କୁ ବେଳେ ବେଳେ ରାଗରେ ଦାନ୍ତ କାମୁଡ଼ିବା ମଧ୍ୟ ମୁଁ ଦେଖିଛି । ଆଳସ୍ୟ ଓ ଅପାରଗତା ସେ ସହ୍ୟ କରିପାରନ୍ତି ନାହିଁ । ତେଣୁ ଅଧିକାଂଶ କର୍ମଚାରୀ ତାଙ୍କୁ ଭୟ କରୁଥିଲେ । କିନ୍ତୁ ନିଷ୍ଠା ଓ ନିପୁଣତା ଦେଖିଲେ ସେ ସନ୍ତୁଷ୍ଟ ହୁଅନ୍ତି ଏବଂ ସୁବିଧା ମିଳିଲେ ସେପରି ବ୍ୟକ୍ତିଙ୍କୁ ସାହାଯ୍ୟ କରନ୍ତି ।

ଗୋଟିଏ ଉଦାହରଣ । ୧୯୬୪ ମସିହାରେ ଭାରତ ସରକାର ଏବଂ ଯୁକ୍ତରାଷ୍ଟ୍ର ଆମେରିକା ଏଡୁକେଶନ୍ ଫାଉଣ୍ଡେସନ୍ ଇଣ୍ଡିଆ ଏକ ସେମିନାରର ବ୍ୟବସ୍ଥା କରି ଆଠ ଜଣ ଅଧ୍ୟକ୍ଷଙ୍କୁ ଯୁକ୍ତରାଷ୍ଟ୍ର ଆମେରିକା ପଠାଇବାର ଏକ କାର୍ଯ୍ୟକ୍ରମ ପ୍ରସ୍ତୁତ କରି ବିଭିନ୍ନ ବିଶ୍ୱବିଦ୍ୟାଳୟର କୁଳପତିମାନଙ୍କୁ ଉପଯୁକ୍ତ ବ୍ୟକ୍ତିଙ୍କ ନାମ ସୁପାରିସ କରିବା ପାଇଁ ଅନୁରୋଧ କଲେ । ମୋର ଏ ବିଷୟରେ କୌଣସି ଜ୍ଞାନ ନ ଥିଲା । ମୁଁ ପରିଜାସାହେବଙ୍କ ସାଙ୍ଗରେ ଏ ବିଷୟରେ କେବେ କିଛି ଆଲୋଚନା କରି ନାହିଁ । କିନ୍ତୁ ଆପଣାଛାଏଁ ମୋର ନାମ ସେ ସୁପାରିସ କଲେ ଓ ଯୁକ୍ତରାଷ୍ଟ୍ର ଅମେରିକା ଏଡୁକେଶନ୍ ଫାଉଣ୍ଡେସନ୍ ଇଣ୍ଡିଆ ମଧ୍ୟ ଆଠଜଣଙ୍କ ମଧ୍ୟରେ ମୋତେ ଏହି କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ କଲେ । ପରିଜାସାହେବଙ୍କ ବଦାନ୍ୟତାରୁ ୧୯୬୪ ସାଲରେ ଯୁକ୍ତରାଷ୍ଟ୍ର ଆମେରିକା ଯାଇ ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ ପରିଚାଳନା ସମ୍ବନ୍ଧରେ ବହୁତ କିଛି ଜ୍ଞାନ ଆହରଣ କଲି । ସେତେବେଳେ ମୁଁ ଥିଲି ଭଦ୍ରକରେ ଓ

ପରିଜାସାହେବଙ୍କ ସାଙ୍ଗରେ ଉପରୋକ୍ତ ଆଗମନ ବେଳ ଛଡ଼ା ଅନ୍ୟ ସମୟରେ ମୋର ସାକ୍ଷାତ ମଧ ହୋଇ ନାହିଁ । କିନ୍ତୁ ଭଦ୍ରକ କଲେଜରେ ତାଙ୍କର ଏକମାତ୍ର ଛାତ୍ରସଭାର ଅନୁଭୂତି ହୁଏତ ତାଙ୍କୁ ମୋ' ପ୍ରତି ଆକୃଷ୍ଟ କରିଥିଲା ।

ପରିଜାସାହେବ ଶିକ୍ଷାବିତ୍ ଓ ବୈଜ୍ଞାନିକ ଭାବରେ ଏପରି ପରିଚିତ ଯେ ଅନେକ ତାଙ୍କର ଅନ୍ୟାନ୍ୟ କର୍ମକ୍ଷେତ୍ର ସମ୍ବନ୍ଧରେ କିଛି ଜାଣନ୍ତି ନାହିଁ । ଉଦାହରଣସ୍ୱରୂପ, ଅନେକେ ଜାଣନ୍ତି ନାହିଁ ଯେ ଓଡ଼ିଶାର ସର୍ବପ୍ରଥମ ରୋଟାରୀ କ୍ଲବ୍ ଯାହାକି ୧୯୪୫ ସାଲରେ ପ୍ରଥମେ କଟକ ସହରରେ ସଂଗଠିତ ହେଲା ତାହାର ସେ ଥିଲେ ଅନ୍ୟତମ ପ୍ରାରମ୍ଭିକ ସଭ୍ୟ (Charter Member) । ଅଠେଇଶ ଜଣ ପ୍ରାଥମିକ ସଭ୍ୟମାନଙ୍କ ମଧ୍ୟରେ ଥିଲେ ରାଜ୍ୟର ମୁଖ୍ୟ ଶାସନ ସଚିବ ଗୋଖ୍‌ଲେ ସାହେବ, ବିଚାରପତି ଲିଙ୍ଗରାଜ ପାଣିଗ୍ରାହୀ ଏବଂ ଆଡ଼ଭୋକେଟ୍ ହରିହର ମହାପାତ୍ର ପ୍ରମୁଖ । ପରିଜାସାହେବ ଏହାର ଉପ-ସଭାପତି ନିର୍ବାଚିତ ହୋଇଥିଲେ ।

ପରିଜାସାହେବଙ୍କ ଜୀବନ ଥିଲା କର୍ମମୁଖର । ଓଡ଼ିଶାର ଶିକ୍ଷା ଓ ସଂସ୍କୃତିକୁ ତାଙ୍କର ଅବଦାନ ଅବିସ୍ମରଣୀୟ । ବିଜ୍ଞାନ ଜଗତକୁ ମଧ ସେ ତାଙ୍କର ଗବେଷଣା ଦ୍ୱାରା ସମୃଦ୍ଧ କରିଛନ୍ତି । ପରବର୍ତ୍ତୀ ଜୀବନରେ ସେ ଅନ୍ୟ ବହୁତ କ୍ଷେତ୍ରରେ, ଓଡ଼ିଶା ଓ ଓଡ଼ିଶା ବାହାରେ ନିଜର ଦକ୍ଷତା ପ୍ରତିପାଦନ କରିଛନ୍ତି । ଅଫିସ କାମ ବ୍ୟତୀତ ଡକ୍ଟର ପରିଜାଙ୍କ ସହିତ କଥାବାର୍ତ୍ତା ହେଲେ ବହୁତ ଆନନ୍ଦ ମିଳେ । ଅଫିସ୍ ରୁମ୍‌ରେ ତାଙ୍କୁ ଦେଖିଲେ ସେ ଜଣେ କଡ଼ା ମିଜାଜର ଲୋକ ଭଳି ପ୍ରତୀୟମାନ ହୁଅନ୍ତି, କିନ୍ତୁ ଡ୍ରଇଂ ରୁମ୍‌ରେ ସେ ଜଣେ ସଂପୂର୍ଣ୍ଣ ଭିନ୍ନ ବ୍ୟକ୍ତିତ୍ୱ । କୌତୁକପ୍ରଦ ଚିତ୍ତାକର୍ଷକ ଗଳ୍ପ, କାହାଣୀ, କଥାର ସେ ଥିଲେ ଏକ ଗନ୍ତାଘର, କଥାବାର୍ତ୍ତା ବେଳେ ସେ ଏପରି ମଉଜିଆ ଗଳ୍ପ କହନ୍ତି ଯେଉଁଥିରେ କି ଜଣେ ହୋ ହୋ ହୋଇ ହସି ନ ଉଠି ମନେ ମନେ ଉଲ୍ଲସିତ ହେଉଥାଏ । ସେ ସତୁରି ବର୍ଷ ବୟସ ପାର ହୋଇ ସାରିଥିଲେ ବି ପ୍ରତିଦିନ ନିୟମିତ ପ୍ରାତଃଭ୍ରମଣ କରୁଥିଲେ, କଲେଜ ଓ ବିଭିନ୍ନ ଅନୁଷ୍ଠାନରେ ସାଂସ୍କୃତିକ କାର୍ଯ୍ୟକ୍ରମରେ ଯୋଗଦାନ କରୁଥିଲେ ଓ ତାଙ୍କର କଥୋପକଥନର ଶୈଳୀ ପୂର୍ବବତ୍ ନୂତନ ପିଢ଼ିର ଯୁବସମାଜକୁ ମନୋରଞ୍ଜନ, ଚିତ୍ତବିନୋଦନର ଖୋରାକ ଯୋଗାଉଥିଲା । ଡକ୍ଟର ପରିଜା ଥିଲେ ଏକ ସ୍ୱୟଂସମ୍ପୂର୍ଣ୍ଣ ବ୍ୟକ୍ତିତ୍ୱ । ବୈଜ୍ଞାନିକ ଗବେଷଣାରେ ପରାକାଷ୍ଠା ପ୍ରଦର୍ଶନ କରି ଶୀର୍ଷ ସ୍ଥାନରେ ଅଧିରୂଢ଼ ଜଣେ ବ୍ୟକ୍ତି କୌଣସି ରକମର ଅହଂ ଭାବରେ ଗର୍ବିତ ନ ହୋଇ ତାଙ୍କ ଭଳି ଜଣେ ବିବେକୀ ଓ ପୂର୍ଣ୍ଣାଙ୍ଗ ମଣିଷ ହୋଇ ରହିବା ଦୃଷ୍ଟାନ୍ତ ଅତି ବିରଳ । ମୋ ପାଖରେ ସେ ସବୁବେଳେ ଓଡ଼ିଶାର ସର୍ବପ୍ରଥମ ପ୍ରଖ୍ୟାତ ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି ହୋଇ ରହିଥିବେ ଓ ଋଦ୍ଧିମନ୍ତ ବ୍ୟକ୍ତିତ୍ୱର ପରିଚାୟକ ଭାବେ ମୋର ଆଦର୍ଶ ହୋଇ ମୋତେ ଦିଗ୍‌ଦର୍ଶନ ଦେଉଥିବେ । (ଏହି ପ୍ରବନ୍ଧର କିଛି ଅଂଶ ମୂଳ ଇଂରାଜୀ ଲେଖାରୁ ଡକ୍ଟର ଗଦାଧର ମିଶ୍ରଙ୍କ ଦ୍ୱାରା ଓଡ଼ିଆରେ ଅନୂଦିତ ।)

# ଆତ୍ମସଂଯମ ଓ ଶୃଙ୍ଖଳାର ପ୍ରତୀକ ଡକ୍ଟର ପ୍ରାଣକୃଷ୍ଣ ପରିଜା

**ଶ୍ରୀରାମଚନ୍ଦ୍ର ଦାଶ**

ବଡ଼ ଲୋକଙ୍କ ସ୍ମୃତିଚାରଣ କରି କେତେକ ନିଜକୁ ବଡ଼ ବୋଲି ପ୍ରମାଣ କରନ୍ତି ଓ ଆଉ କେତେକ କୃତଜ୍ଞତା ପ୍ରକାଶ କରି ନିଜର କ୍ଷୁଦ୍ରତ୍ୱ ସ୍ୱୀକାର କରନ୍ତି । ଡକ୍ଟର ପ୍ରାଣକୃଷ୍ଣ ପରିଜା ନିଶ୍ଚିତ ଭାବରେ ଜଣେ ବଡ଼ ଲୋକ ଥିଲେ । ପରାଧୀନ ଭାରତରେ ସେ ପରିଜାସାହେବ ନାମରେ ଖ୍ୟାତ ଥିଲେ । ସ୍ୱାଧୀନ ଭାରତରେ ଲୋକେ ତାଙ୍କୁ କେବଳ ଡକ୍ଟର ପରିଜା ବୋଲି ଜାଣିଲେ । ଯେଉଁ ନାମରେ ତାଙ୍କୁ ସ୍ମରଣ କରାଯାଉ ନା କାହିଁକି ପରିଜା କହିଲେ କେବଳ ତାଙ୍କୁ ହିଁ ବୁଝାଯାଉଥିଲା ।

ଟେଲିଫୋନ୍ ଗୋଟିଏ ଆଧୁନିକ ଯନ୍ତ୍ର । ବହୁ ଲୋକ ସମୟ ରକ୍ଷା କରିବାକୁ ଟେଲିଫୋନ୍ ମାଧ୍ୟମରେ କଥା କହିବାକୁ ବ୍ୟସ୍ତ । ପରିଜା ଥିଲେ ଟେଲିଫୋନ୍ ବିଷୟରେ ଜଣେ ପୁରୁଣାକାଳିଆ ବ୍ୟକ୍ତି । ତାଙ୍କୁ କିଏ ଟେଲିଫୋନ୍‌ରେ ଡାକିଲେ ସେ ବିରକ୍ତ ହୁଅନ୍ତି । ତଥାପି ଟେଲିଫୋନ୍ ଉଠାଇବା ମାତ୍ରକେ କହନ୍ତି, ‘‘ପରିଜା କହୁଛି’’ । ଏତିକି ଶୁଣିବା ମାତ୍ରକେ ଡାକୁଥିବା ଲୋକର ପିଳେହି ପାଣି । ସେ ଡରରେ ଟେଲିଫୋନ୍‌କୁ ରଖିଦିଅନ୍ତି । ସେଭଳି ଲୋକଙ୍କ ସ୍ମୃତିଚାରଣ କରି ମୋ ଭଳି ତାଙ୍କ ଅମଳର ଛାତ୍ରମାନେ କେବଳ କୃତଜ୍ଞତା ପ୍ରକାଶ କରନ୍ତି ସିନା, ବଡ଼ପଣିଆ ଜାହିର କରନ୍ତି ନାହିଁ ।

ଦୀର୍ଘ ୮୮ ବର୍ଷର ଜୀବନକାଳ ମଧ୍ୟରେ ଡକ୍ଟର ପ୍ରାଣକୃଷ୍ଣ ପରିଜା ଜାତୀୟ ଜୀବନରେ ବିଭିନ୍ନ ବିଭାଗରେ ନିଜ ଅବଦାନ ଦ୍ୱାରା ନିଜକୁ ଅମର କରିଯାଇଛନ୍ତି । ତାଙ୍କର ଅଗଣିତ ଛାତ୍ର, ଛାତ୍ରୀ ଓ ସହକର୍ମୀ ତାଙ୍କ ସ୍ମୃତିତର୍ପଣ କରିବାବେଳେ, କିଏ କେଉଁଟି ଦ୍ୱାରା ମୁଗ୍ଧ ଓ ଉପକୃତ ହୋଇଛନ୍ତି, ତାହା ବର୍ଣ୍ଣନା କରିବେ । ସେ ମୁଖ୍ୟତଃ ଜଣେ ଅଧ୍ୟାପକ ଓ ତତ୍‌ସହିତ ଉଦ୍ଭିଦ ବିଜ୍ଞାନ କ୍ଷେତ୍ରରେ ଜଣେ ଗବେଷକ ଓ ଉଦ୍ଭାବକ । ରେଭେନ୍ସା କଲେଜର ଅଧ୍ୟକ୍ଷ, କୃଷିବିଭାଗର ନିର୍ଦ୍ଦେଶକ, ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଓ ଉପ-କୁଳାଧିପତି (ପ୍ରୋ-ଚାନ୍‌ସେଲର୍) ଓ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ଉପ-କୁଳପତି (ପ୍ରୋ-ଭାଇସ୍‌ଚାନ୍‌ସେଲର୍) ଭାବରେ ତାଙ୍କର ଶାସନଗତ ଅବଦାନ ରହିଛି ।

୧୯୫୨ ମସିହାରୁ ୧୯୫୭ ପର୍ଯ୍ୟନ୍ତ ସେ ବାଲିକୁଦା ନିର୍ବାଚନମଣ୍ଡଳୀରୁ ସ୍ୱାଧୀନ ପ୍ରାର୍ଥୀ ଭାବରେ ନିର୍ବାଚିତ ହୋଇ ବୈଧାନିକ ଭାବରେ ମଧ୍ୟ ନିଜକୁ ସୁପ୍ରତିଷ୍ଠିତ କରି ଯାଇଛନ୍ତି । ଶତ ଶତ କମିଟିର ଅଧ୍ୟକ୍ଷ ଓ ସଭ୍ୟ ରୂପେ ତାଙ୍କ କୃତିତ୍ୱ ଲିପିବଦ୍ଧ ହୋଇ ରହିଛି । ଏହି ଦୀର୍ଘ ଓ ସୁବିସ୍ତୃତ କର୍ମ ଜୀବନ ମଧ୍ୟରେ ବହୁ ଲୋକ ତାଙ୍କଦ୍ୱାରା ଉପକୃତ ହୋଇଛନ୍ତି ଓ କେତେକ ବି ନିପୀଡ଼ିତ ହୋଇଥିବେ । କେବଳ ନିନ୍ଦା ବା ପ୍ରଶଂସା କୌଣସି ଲୋକର ପ୍ରାପ୍ୟ ନୁହେଁ । ପ୍ରକୃତ ମଣିଷ ଯୁଗପତ୍ ନିନ୍ଦା ଓ ପ୍ରଶଂସାର ସମ୍ମୁଖୀନ ହୁଏ । କେବଳ ପ୍ରଶଂସା ତୋଷାମଦ ନାମରେ ଅଭିହିତ, କେବଳ ନିନ୍ଦା କାପୁରୁଷର କାର୍ଯ୍ୟ । ଏହି ଦୃଷ୍ଟିରୁ ବିଚାର କଲେ ଡକ୍ଟର ପରିଜା ପ୍ରକୃତରେ ଜଣେ ଅତିମାନବ ଶ୍ରେଣୀର, କାରଣ ତାଙ୍କର ଆତ୍ମସଂଯମ ଓ ଶୃଙ୍ଖଳା ଜ୍ଞାନ ଭୁଲିବାର ନୁହେଁ ।

ଡକ୍ଟର ପରିଜା ବାଲିକୁଦା ଥାନା, ଇଚ୍ଛାପୁର ଗ୍ରାମର ଅଧିବାସୀ । ତାଙ୍କ ଘରଠାରୁ ମାତ୍ର ୧୦ କିଲୋମିଟର ଦକ୍ଷିଣରେ ସୁକିନ୍ଦା ବୀରନରସିଂହପୁରରେ ଆମ ଘର । ମୋର ସୌଭାଗ୍ୟକୁ ଆମେ ଦୁହେଁ ବାଲିକୁଦା ମଧ୍ୟ-ଇଂରାଜୀ ବିଦ୍ୟାଳୟର ହେଡ଼୍ ପଣ୍ଡିତ କୁଆଁପାଳର ଶ୍ରୀ ନନ୍ଦକିଶୋର ସେନ୍‌ଗୁପ୍ତଙ୍କ ଛାତ୍ର । ହେଡ଼୍‌ପଣ୍ଡିତେ ବେତ ଖଣ୍ଡିଏ ହାତରେ ଧରି ଶ୍ରେଣୀକୁ ଆସନ୍ତି । ତାଙ୍କର ଗର୍ବ ଯେ ସେ ପରିଜାସାହେବଙ୍କ ଶିକ୍ଷକ । ସେ ସର୍ବଦା ବେତ ହଲାଇ ଆମକୁ କହନ୍ତି, "ଏଇ ବେତରେ ମୁଁ ପ୍ରାଣକୃଷ୍ଣକୁ ମଣିଷ କରିଛି, ତୁମ ଦେହରେ ଏ ବେତ ନ ବାଜିଲେ ତୁମେ ମଣିଷ ହେବ ନାହିଁ ।"

୧୯୩୦ ମସିହାରେ ବାଲିକୁଦା ହାଟପାଳି ଦିନ ପରିଜାସାହେବ ବାଲିକୁଦା ମାଇନର ସ୍କୁଲକୁ ଯାଇଥିଲେ । ମୁଁ ସେତେବେଳେ ଷଷ୍ଠ ଶ୍ରେଣୀର ଛାତ୍ର । ଏହା ଥିଲା ଗ୍ରୀଷ୍ମ ଛୁଟି । ଆମେ ତ ତାଙ୍କୁ ଚିହ୍ନି ନ ଥିଲୁ । ତାଙ୍କୁ ଚିହ୍ନିଥିବା ଲୋକେ ବସିବାଲାଗି ତାଙ୍କୁ ଗୋଟିଏ କାଠ ଚୌକି ଦେଲେ । ସେ ବସିଲେ । ହେଡ଼୍‌ପଣ୍ଡିତ ନନ୍ଦକିଶୋର ସେନ୍‌ଗୁପ୍ତ ପ୍ରାଣକୃଷ୍ଣ ଆସିଛନ୍ତି ବୋଲି ଗଦ୍ ଗଦ୍ ହୋଇ ଆସି ପହଞ୍ଚିବା ମାତ୍ରକେ ପରିଜାସାହେବ ତାଙ୍କ ପଦସ୍ପର୍ଶ କରି ତାଙ୍କୁ ଆଣି ନିଜପାଇଁ ଥିବା ଚୌକିରେ ବସାଇଦେଲେ ଓ ବାରଣ୍ଡାରେ ପଡ଼ିଥିବା ଗୋଟିଏ ଡେସ୍କ ଉପରେ ନିଜେ ବସିଗଲେ । ତାଙ୍କ ପାଇଁ ଆଉ ଗୋଟିଏ ଚୌକି ଦେବାରେ ସେ ସାର୍‌ଙ୍କ ସମ୍ମୁଖରେ ଚୌକିରେ ବସିବାକୁ ମନା କଲେ । ପରିଜାସାହେବ ୨୫ ବର୍ଷ ତଳେ ପଣ୍ଡିତ ମହାଶୟଙ୍କ ଛାତ୍ର ଥିଲେ । ସେଦିନ ଆମେ ଜାଣିଲୁ ନନ୍ଦକିଶୋର ସେନ୍‌ଗୁପ୍ତଙ୍କ ଛାତ୍ର ହେବା ଆମର ସୌଭାଗ୍ୟ ଛଡ଼ା ଅନ୍ୟ କିଛି ନୁହେଁ । ଏ ଯୁଗରେ ଏଭଳି ଅଚଳା ଗୁରୁଭକ୍ତି ଆଶା କରିବା ବିଡ଼ମ୍ବନା ।

ଆମେ ସମସ୍ତେ ତାଙ୍କ ପାଖରେ ଗୁଣ୍ଡ ହୋଇଗଲୁ, ପରିଜାସାହେବଙ୍କୁ ଦେଖିବା ପାଇଁ ଓ ତାଙ୍କଠାରୁ ପଦେ ଦୁଇପଦ କଥା ଶୁଣିବା ପାଇଁ । ଆମେ ଶୁଣିଥିଲୁ ଯେ ସେ ମାସକୁ ୧୨୫୦ ଟଙ୍କା ଦରମା ପାଉଛନ୍ତି, ଯେତେବେଳେ କି ଆମେ ମାସକୁ ଏକ

ଟଙ୍କାରୁ କମ୍‌ରେ ଆମର ଗୁଜୁରାଣ ମେଣ୍ଟାଇପାରୁଛୁ । ତେଣୁ ଆମର ଏପରି ଏକ ଅଦ୍ଭୁତ ଧାରଣା ହୋଇଥିଲା ଯେ ଆମେ ଯେତେବେଳେ ଭାତ, ଡାଲି ଓ ତରକାରି ଖାଉଛୁ ସେ ନିଶ୍ଚୟ ସୁନା, ରୁପା ଓ ହୀରା ଖାଉଥିବେ । ଅନ୍ୟ ଛାତ୍ରମାନଙ୍କ ଚାପରେ ମୁଁ ପରିଜାସାହେବଙ୍କୁ ପଚାରିଲି, ''ସାର୍, ଆପଣ ମାସକୁ ୧୨୫୦ ଟଙ୍କା ଦରମା ପାଉଛନ୍ତି କି ?'' ସେ ''ହଁ'' ବୋଲି ଉତ୍ତର ଦେଲାରୁ, ମୁଁ ପୁଣି ପଚାରିଲି, ''ଆପଣ ସୁନା ରୁପା ଖାଆନ୍ତି କି ?'' ସେ ହସରେ ଉଚ୍ଛୁଳିପଡ଼ିଲେ ଓ କହିଲେ, ''ଜଣେ ଲୋକର ଆୟ ଯାହା ହେଉନା କାହିଁକି, ସେ ତୁମମାନଙ୍କ ଭଳି ଭାତ, ଡାଲି ଓ ତରକାରି ନ ଖାଇଲେ ବଞ୍ଚି ରହିପାରିବ ନାହିଁ ।'' ଏହା ହେଉଛି ଜଣେ ଭାରତ ବିଖ୍ୟାତ ଉଦ୍ଭିଦବିତ୍‌ଙ୍କଠାରୁ ଜୀବବିଜ୍ଞାନ ସମ୍ବନ୍ଧରେ ଆମର ପ୍ରଥମ ଜ୍ଞାନ । ବାଲିକୁଦା ସ୍କୁଲର ଭାଗ୍ୟ ଯେ ତତ୍କର ପ୍ରାଣକୃଷ୍ଣ ପରିଜାଙ୍କ ଭଳି ବିଶ୍ୱବିଖ୍ୟାତ ବୈଜ୍ଞାନିକ ଏହାର ଛାତ୍ର ଥିଲେ । ଆମେ ସବୁ ସେହି ମାଇନର ସ୍କୁଲର ଛାତ୍ର ହିସାବରେ ଗୌରବାନ୍ୱିତ ହୋଇଛୁ ।

୧୯୩୪ ମସିହାରେ ମୁଁ ଯେତେବେଳେ ରେଭେନ୍ସା କଲେଜିଏଟ୍ ସ୍କୁଲର ୧୦ମ ଶ୍ରେଣୀରେ ଛାତ୍ର ଥିଲି, ବିହାର ଓ ଓଡ଼ିଶା ଶିକ୍ଷା ବିଭାଗର ତଦାନୀନ୍ତନ ନିର୍ଦ୍ଦେଶକ ମିଷ୍ଟର ଜର୍ଜ ଅର୍ଣ୍ଣେଷ୍ଟ ଫକସ୍ ଆମ ସ୍କୁଲକୁ ସରକାରୀ ପରିଦର୍ଶନରେ ଆସିଥିଲେ ଓ ଆମ ପ୍ରଧାନ ଶିକ୍ଷକଙ୍କ ଅନୁରୋଧରେ ଆମ କ୍ଲାସ ନିରୀକ୍ଷଣ କରିଥିଲେ । ସେ ପ୍ରତ୍ୟେକ ଛାତ୍ରକୁ ପଚାରିଲେ, ''ତୁମ ଜୀବନର ଉଚ୍ଚ ଆକାଙ୍‌କ୍ଷା କ'ଣ ?'' ମୋର ଉତ୍ତର ଥିଲା, ''ଆଉ ଜଣେ ପରିଜାସାହେବ ହେବା ।'' ସେ ପଚାରିଲେ, ''ତୁମେ କିପରି ପ୍ରଫେସର ପରିଜାଙ୍କୁ ଜାଣିଲ ?'' ମୁଁ ଗର୍ବରେ ଉତ୍‌ଫୁଲ୍ଲ ହୋଇ କହିଲି, ''ସେ ଆମ ଗାଁ ପାଖର ଲୋକ ।'' ସେ ବୋଧେ ଏକଥା ପରିଜାସାହେବଙ୍କୁ କହିଦେଇଥିଲେ ଏବଂ ଯେତେବେଳେ ପ୍ରଫେସର ପରିଜା ଆମ ସ୍କୁଲର ପୁରସ୍କାର ବିତରଣୀ ସଭାରେ ମୁଖ୍ୟ ଅତିଥି ରୂପେ ଆସିଥିଲେ ସେ ମୋ ବିଷୟରେ ଅନୁସନ୍ଧାନ କରିଥିଲେ ।

ସେତେବେଳେ ଗରିବ ଓ ମେଧାବୀ ଛାତ୍ରମାନଙ୍କର ପୃଷ୍ଠପୋଷକ ରୂପେ ପ୍ରଫେସର ପରିଜାଙ୍କ ଖ୍ୟାତି ଥିଲା ଓ ମୁଁ ଜଣେ ଦରିଦ୍ର ଛାତ୍ର ରୂପେ ତାଙ୍କଠାରୁ ସାହାଯ୍ୟ ଭିକ୍ଷା କରି ଗୋଟିଏ ଦରଖାସ୍ତ ଲେଖି ତାଙ୍କୁ ଯାଇ ଦେଲି, କିନ୍ତୁ ଭୁଲବଶତଃ ମୁଁ ଲେଖିଥିଲି, ''Proffessor Parija'' । ସେ ଦରଖାସ୍ତଟି ପଢ଼ି ଉତ୍ତର ଦେଲେ ଯେ ଯେତେବେଳେ ''Proffessor'' ତାଙ୍କ ବନାନରୁ ଅଧିକା 'f'ଟି ହରାଇବ ସେତେବେଳେ ତୁମକୁ ଆବଶ୍ୟକ ମୁତାବକ ସାହାଯ୍ୟ ଦିଆଯିବ । ସେ ମୁହୂର୍ତ୍ତରେ ମୁଁ ନିରାଶ ହୋଇଥିଲି, କିନ୍ତୁ ଯେତେବେଳେ ମୁଁ ରେଭେନ୍ସା କଲେଜରେ ନାମ ଲେଖାଇବାକୁ ତାଙ୍କ ନିକଟକୁ ଯାଇଥିଲି, ମୁଁ ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲି ଯେ ସେତେବେଳକୁ ସେ ମୋ ପାଇଁ ଗୋଟିଏ ଚେମ୍ବର୍ସ ବିଂଶ ଶତାବ୍ଦୀ ଅଭିଧାନ କିଣି ରଖିଥିଲେ ଓ ମାଟ୍ରିକୁଲେସନ୍ ପରୀକ୍ଷାରେ ପ୍ରଶଂସନୀୟ କୃତିତ୍ୱପୂର୍ଣ୍ଣ ଫଳ ପାଇଁ ମୋତେ

ସେ ବହିଟିକୁ ଉପହାର ଦେଇଥିଲେ । ମୁଁ ବର୍ତ୍ତମାନ ସୁଦ୍ଧା ସେହି ଅଭିଧାନଟିକୁ ସ୍ନେହରେ ଯତ୍ନର ସହିତ ସାଇତି ରଖିଛି, ଯଦିଓ ବିଗତ ଷାଠିଏ ବର୍ଷ ମଧ୍ୟରେ ତାହା ଦୁଇଥର ବନ୍ଧା ହୋଇସାରିଲାଣି ଛିନ୍ନ ପୃଷ୍ଠାଗୁଡ଼ିକୁ ଏକତ୍ର ରଖିବାପାଇଁ । ମୁଁ ଜାଣେ ଯେ ପରିଜାସାହେବ ତାଙ୍କର ଜଣେ ଚାଟଶାଳୀ ଅବଧାନଙ୍କୁ ବହୁକାଳ ପର୍ଯ୍ୟନ୍ତ ଅର୍ଥ ସାହାଯ୍ୟ ଦେଉଥିଲେ ।

୧୯୩୬ ମସିହାରେ ମୁଁ ଯେତେବେଳେ ରେଭେନ୍ସା କଲେଜରେ ନାମ ଲେଖାଇଲି, ସେତେବେଳେ ସ୍ଥାୟୀ ଅଧ୍ୟକ୍ଷ ପ୍ରଫେସର ଶ୍ୟାମଚନ୍ଦ୍ର ତ୍ରିପାଠୀ ମୟୂରଭଞ୍ଜ ମହାରାଜା ପ୍ରତାପଚନ୍ଦ୍ର ଭଞ୍ଜଦେଓଙ୍କ ସହିତ ଇଂଲଣ୍ଡ ଭ୍ରମଣରେ ଯାଇଥିବାରୁ ପ୍ରଫେସର ପ୍ରାଣକୃଷ୍ଣ ପରିଜା (ଭାରପ୍ରାପ୍ତ) ଅଧ୍ୟକ୍ଷ ଥିଲେ । ମୁଁ ତାଙ୍କ ସହିତ ସାକ୍ଷାତ କଲି ଓ ତାଙ୍କ ପରାମର୍ଶରେ ଆଇ.ଏ. ପଢ଼ିବାପାଇଁ ସ୍ଥିର କଲି, ଯଦିଓ ମୁଁ ସେ ବର୍ଷ ପାଟନା ବିଶ୍ୱବିଦ୍ୟାଳୟର ମାଟ୍ରିକୁଲେସନ୍ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ରଖି ପାସ୍ କରିଥାଏ । ଯେହେତୁ ସେ ସମୟରେ ମେଧାବୀ ଛାତ୍ରମାନେ କ୍ୱଚିତ୍ ବିଜ୍ଞାନ ପାଠ ପଢ଼ିବାକୁ ସିଦ୍ଧାନ୍ତ କରୁଥିଲେ । ନଚେତ୍ ମୁଁ ବିତର୍କମୂଳକ ଅର୍ଥନୀତି ଓ ରାଜନୀତି ବିଜ୍ଞାନ ଅଧ୍ୟାପନା କରିବା ପରିବର୍ତ୍ତେ ନିଷ୍କ୍ରିୟ ପଦାର୍ଥବିଜ୍ଞାନ ବା ରସାୟନବିଜ୍ଞାନ କିମ୍ବା ସଚେତନ ଉଦ୍ଭିଦବିଜ୍ଞାନ ଅଧ୍ୟାପନା କରୁଥାନ୍ତି ।

ମୁଁ ରେଭେନ୍ସା କଲେଜରେ ୧୯୩୬ ମସିହାରୁ ୧୯୪୦ ମସିହା ପର୍ଯ୍ୟନ୍ତ ଛାତ୍ର ଥିଲି । ତା'ରି ଭିତରେ ସେ ୧୯୩୮ ଜାନୁୟାରୀ ୨୮ ତାରିଖଠାରୁ କଲେଜର ସ୍ଥାୟୀ ଅଧ୍ୟକ୍ଷ ହେଲେ ଓ ତତ୍କାଳୀନ ଅଧ୍ୟକ୍ଷ ପ୍ରଫେସର ଶ୍ୟାମଚନ୍ଦ୍ର ତ୍ରିପାଠୀ ପ୍ରଥମ ଭାରତୀୟ ଡି.ପି.ଆଇ. ରୂପେ ଓଡ଼ିଶାର ଶିକ୍ଷା ନିର୍ଦ୍ଦେଶକ ହେଲେ । ଶ୍ରୀଯୁକ୍ତ ବିଶ୍ୱନାଥ ଦାଶ ଓଡ଼ିଶାର ପ୍ରଧାନମନ୍ତ୍ରୀ ରୂପେ ଏଭଳି ସାହସିକ ପଦକ୍ଷେପ ନେଇପାରିଥିଲେ । ପ୍ରଫେସର ପରିଜା ତ୍ରିପାଠୀ ସାହେବଙ୍କଠାରୁ ବୟସରେ ବଡ଼ କିନ୍ତୁ ଚାକିରିରେ କନିଷ୍ଠ । ଏହି ପରିସ୍ଥିତି ଓଡ଼ିଶାର ଭବିଷ୍ୟତ ଶିକ୍ଷାଗତ ଇତିହାସକୁ କିୟତ୍ ପରିମାଣରେ ପ୍ରଭାବିତ କରିଥିଲା ସତ୍ୟ କିନ୍ତୁ ଏହା ଉଭୟଙ୍କ ବନ୍ଧୁତା ଉପରେ କୌଣସି ପ୍ରଭାବ ପକାଇପାରି ନ ଥିଲା ।

ମୁଁ ଛାତ୍ରାବସ୍ଥାରେ ଦେଖିଛି ଯେ ପରିଜାସାହେବ ବଡ଼ ଦାନଶୀଳ ଥିଲେ । ୧୯୩୬ ମସିହା ଅଗଷ୍ଟ ମାସରେ ତାଙ୍କର ଆପେଣ୍ଡିସାଇଟିସ୍ ଅସ୍ତ୍ର ଚିକିତ୍ସା ପରେ ଆସନ୍ନ ମୃତ୍ୟୁ ଆଶଙ୍କାରେ ତାଙ୍କ ଦାନଶୀଳତା ସାମାନ୍ୟ ସଙ୍କୁଚିତ ହୋଇଥିଲା, ତଥାପି ସେ ବହୁ ଛାତ୍ରଙ୍କୁ ଅର୍ଥ ସାହାଯ୍ୟ ଦେଉଥିଲେ ।

ମୁଁ ଦିନକର କଥା କହୁଛି । ୧୯୩୬ ମସିହା ନଭେମ୍ବର ମାସ । ମୁଁ ସେତେବେଳେ ପ୍ରଥମ ବାର୍ଷିକ ଶ୍ରେଣୀର ଛାତ୍ର । ସେ ସମୟରେ ରେଭେନ୍ସା କଲେଜରେ କଲେଜ ୟୁନିଅନ୍ ଗଠିତ ହୋଇ ନ ଥିଲା । ତର୍କସଭା ନାମକ ଗୋଟିଏ ଅନୁଷ୍ଠାନ ଥିଲା । ସେଥିପାଇଁ ସମ୍ପାଦକ ଓ ସହସମ୍ପାଦକ ଅଧ୍ୟକ୍ଷଙ୍କ ଦ୍ୱାରା ମନୋନୀତ

ହେଉଥିଲେ । ମୁଁ କଲେଜରେ ନାମ ଲେଖାଇବାବେଳେ ପରିଜାସାହେବ ଭାରପ୍ରାପ୍ତ ଅଧ୍ୟକ୍ଷ ଥିଲେ । ସେ ତୃତୀୟ ବାର୍ଷିକ ଶ୍ରେଣୀର ଛାତ୍ର ଶ୍ରୀ ମନମୋହନ ମିଶ୍ରଙ୍କୁ ତର୍କସଭାର ସମ୍ପାଦକ ଓ ପ୍ରଥମ ବାର୍ଷିକ ଶ୍ରେଣୀରୁ ମୋତେ ସହ-ସମ୍ପାଦକ ରୂପେ ମନୋନୟନ କରିଥିଲେ । ମାସର ପ୍ରଥମ ଓ ତୃତୀୟ ଶନିବାର ଦିନ ତର୍କସଭାର ଅଧିବେଶନ ହୁଏ । ସେ କାଳରେ ଶନିବାର ଦିନ ଅପରାହ୍ଣରେ ଦେଢ଼ଟାବେଳେ ଅଧ୍ୟାପନା କାର୍ଯ୍ୟ ଶେଷ ହେଉଥିଲା । ଅପରାହ୍ଣରେ ଅଧ୍ୟାପନା ହେଉ ନ ଥିଲା । କୌଣସି କାରଣରୁ ମନମୋହନବାବୁ ଅନୁପସ୍ଥିତ ଥିବାରୁ ମୁଁ ୧୯୩୬ ନଭେମ୍ବର ମାସର ତୃତୀୟ ଶନିବାର ଦିନ ତର୍କସଭାର ଅଧିବେଶନ ଡକାଇଥିଲି ଓ ଉକ୍ତ ସଭାରେ ପରିଜାସାହେବଙ୍କର ସଭାପତି ହେବାର ଥିଲା । ସେତେବେଳକୁ ତ୍ରିପାଠୀସାହେବ ବିଲାତରୁ ଫେରି ଅଧ୍ୟକ୍ଷ ଦାୟିତ୍ୱ ନେଇସାରି ଥାଆନ୍ତି ଓ ପରିଜାସାହେବ ଉଦ୍ଭିଦବିଜ୍ଞାନର ପ୍ରଫେସର ଥାଆନ୍ତି ।

ପ୍ରଫେସର ପରିଜା ଛାତ୍ରମାନଙ୍କ ମଧ୍ୟରେ ଏଭଳି ପ୍ରିୟ ଥିଲେ ଯେ ସେ ଉଦ୍ଭିଦବିଜ୍ଞାନ ପରୀକ୍ଷାଗାରକୁ ଯିବା ଆସିବା କରିବାବେଳେ ଛାତ୍ରମାନେ ଲୁଚିରହି ତାଙ୍କୁ ଦେଖିପକାଉଥିଲେ, କାରଣ ହିମାଳୟରୁ କୁମାରିକା ଓ ପେଶୱାରଠାରୁ ରେଙ୍ଗୁନ୍ ମଧ୍ୟରେ ବିଭିନ୍ନ ବିଶ୍ୱବିଦ୍ୟାଳୟର ପରୀକ୍ଷକ ରୂପେ ଓ ବୈଜ୍ଞାନିକ ସଭାସମିତିରେ ଯୋଗଦେବାକୁ ଘନ ଘନ ଯାଉଥିବାରୁ ସେ ମାସକରୁ କୋଡ଼ିଏ ଦିନ କଲେଜରୁ ଅନୁପସ୍ଥିତ ରହିବା ଯୋଗୁଁ ତାଙ୍କର ଦର୍ଶନାଭିଳାଷୀ ଛାତ୍ରଛାତ୍ରୀ ତାଙ୍କୁ ଦେଖିବାର ସୁଯୋଗ ପାଉ ନ ଥିଲେ ।

ତର୍କସଭାର ଅଧିବେଶନ ସମୟ ଥିଲା ଅପରାହ୍ଣ ଦୁଇଘଣ୍ଟା । ଆଜିକାଲି ଯେଉଁ ବଡ଼ ରୁମ୍‌ରେ କଲେଜ ଅଫିସ୍ ହେଉଛି, ତାହା ଥିଲା ଅଧ୍ୟାପକମାନଙ୍କ ପ୍ରକୋଷ୍ଠ ଓ ତା' ପଛଆଡ଼େ ଥିବା ପ୍ରକୋଷ୍ଠଟି ଛାତ୍ରମାନଙ୍କ କମନ୍ ରୁମ୍ ଥିଲା । ସେହିଠାରେ ସଭା ହେବାର ଥାଏ । ଦିନ ଗୋଟାଏ ପଇଁଚାଳିଶ ମିନିଟ୍ ବେଳେ ମୁଁ ଛାନିଆ ହୋଇଗଲି, କାରଣ ସଭାକକ୍ଷରେ ଜଣେ କେହି ଉପସ୍ଥିତ ନ ଥିଲେ । ମୁଁ ପିଲାମାନଙ୍କୁ ପଶ୍ଚିମ ଛାତ୍ରାବାସରୁ ଡାକିବାକୁ ଯିବାବେଳେ ଦେଖିଲି ଯେ ସଭାକକ୍ଷଠାରୁ ଉଦ୍ଭିଦ ବିଦ୍ୟା ବିଭାଗ ପର୍ଯ୍ୟନ୍ତ କଲେଜର ଅଧିକାଂଶ ଛାତ୍ର ଦୁଇଧାଡ଼ିରେ ଠିଆ ହୋଇଛନ୍ତି । ସେମାନଙ୍କୁ ସଭାକୁ ଡାକିବାରେ ଉତ୍ତର ମିଳିଲା, ସେମାନେ ପରିଜାସାହେବଙ୍କୁ ଦେଖିସାରି ସଭାକୁ ଯିବେ । ମୁଁ ସଭାକକ୍ଷକୁ ଫେରିଆସି ପରିଜାସାହେବଙ୍କୁ ଅପେକ୍ଷା କଲି ।

ଦୁଇଟା ବାଜିବାକୁ ଦୁଇ ତିନି ମିନିଟ୍ ମାତ୍ର ଥାଏ, ସଭାକକ୍ଷ ଶୂନ୍ୟ । ଯଦି ଛାତ୍ରମାନେ ନ ଆସନ୍ତି, ମୁଁ ଭାଣ୍ଡିଆ ହେବି ଏହି ଆଶଙ୍କାରେ ରହିଥାଏ । ପରିଜାସାହେବ ଆସ୍ତେ ଆସ୍ତେ ଚାଲୁ ନ ଥିଲେ । ସେ ଖୁବ୍ ଜୋର୍‌ରେ ଚାଲିବାରେ ଅଭ୍ୟସ୍ତ ଥିଲେ । ସେ ନିଜ ବିଭାଗୀୟ ପ୍ରକୋଷ୍ଠରୁ ବାହାରି ପ୍ରାୟ ଦୁଇମିନିଟ୍ ମଧ୍ୟରେ

ସଭାକକ୍ଷ ନିକଟରେ ପହଞ୍ଚିବା ମାତ୍ରକେ ତାଙ୍କୁ ଦେଖିବାଲାଗି ଅପେକ୍ଷା କରିଥିବା ଛାତ୍ରମାନଙ୍କ ଦ୍ୱାରା ସଭାକକ୍ଷ ଭରପୂର ହୋଇଗଲା । ମୋ ଇଜ୍ଜତ୍ ରହିଗଲା । ତର୍କସଭାର ଏଭଳି ଅଧିବେଶନ ଆଉ କେବେ ହୋଇ ନ ଥିଲା । ପ୍ରତି ଅଧିବେଶନରେ ଜଣେ ଲେଖାଏଁ ଅଧ୍ୟାପକ ସଭାପତି ହେଉଥିଲେ । ଡକ୍ଟର ପରିଜାଙ୍କ ଭଳି ଆଉ କେହି ଏତେ ପରିମାଣରେ ଛାତ୍ରମାନଙ୍କୁ ଆକୃଷ୍ଟ କରିପାରୁ ନ ଥିଲେ । ସେ ସମୟରେ ତାଙ୍କ ବ୍ୟକ୍ତିତ୍ୱର ଚୁମ୍ବକ ଶକ୍ତି ଏଭଳି ପ୍ରଖର ଥିଲା ।

ମୁଁ ୧୯୪୦ରୁ ୧୯୪୨ ପର୍ଯ୍ୟନ୍ତ ପାଟନା କଲେଜରେ ସ୍ନାତକୋତ୍ତର ଶ୍ରେଣୀର ଛାତ୍ର ଥିଲାବେଳେ ଆମ ଛାତ୍ରାବାସର ୱାର୍ଡେନ୍ ଥିଲେ ଜଣେ ପାର୍ସୀ ଅଧ୍ୟାପକ, ୱାଇ.ଜେ.ତାରାପୋରୱାଲା । ସେ ଇତିହାସ ପଢ଼ାଉଥିଲେ । ଆମେ ଅନ୍ତେବାସୀମାନେ ତାଙ୍କୁ ଚଳନ୍ତି ଘଣ୍ଟା କହୁଥିଲୁ । ସକାଳ ଆଠଟା ବାଜିବା ମାତ୍ରକେ ତାଙ୍କ ଗାଡ଼ି ଛାତ୍ରାବାସ ଭିତରେ ପ୍ରବେଶ କରିବ । ସେ ରବିବାର ଛଡ଼ା ପ୍ରତ୍ୟେକ ଦିନ ଆସୁଥିଲେ ଏବଂ କୌଣସି ଦିନ ସାତଟା ଅଣଷଠି ବା ଆଠଟା ଏକ ମିନିଟ୍ ହେଉ ନ ଥିଲା । ଠିକ୍ ଆଠଟାବେଳେ ଆସୁଥିଲେ । ସେ କେମ୍ବ୍ରିଜ୍ ଅମଳରୁ ପରିଚ୍ଛାସାହେବଙ୍କର ଘନିଷ୍ଠ ବନ୍ଧୁ ଥିଲେ । ପାଟନା ବିଶ୍ୱବିଦ୍ୟାଳୟ ସିନେଟ୍ ଓ ସିଣ୍ଡିକେଟ୍ ବୈଠକକୁ ପରିଜାସାହେବ ଗଲେ ତାଙ୍କ ଘରେ ରହୁଥିଲେ ଏବଂ ଓଡ଼ିଆ ଛାତ୍ରମାନେ ପରିଚ୍ଛାସାହେବଙ୍କୁ ତାଙ୍କ ଘରେ ସାକ୍ଷାତ କରୁଥିଲେ । ଠିକ୍ ଅଧ୍ୟାପକ ତାରାପୋରୱାଲାଙ୍କ ପରି ଡକ୍ଟର ପରିଚ୍ଛା ମଧ୍ୟ ଗୋଟିଏ ଚଳନ୍ତି ଘଣ୍ଟା ଥିଲେ । ତାଙ୍କ ଗତିବିଧି ଦେଖି ଜଣେ ନିଜ ଘଣ୍ଟାକୁ ସମୟ ମୁତାବକ ସମାୟୁକ୍ତ କରିପାରୁଥିଲା ।

ମୁଁ ଯେତେବେଳେ ରେଭେନ୍ସା କଲେଜରେ ରିଡ଼ର୍ ଥିଲି, ସେତେବେଳେ ଦିନେ ପଦାର୍ଥବିଜ୍ଞାନ ଲେକଚର ଥିଏଟରରେ ସନ୍ଧ୍ୟା ୬ଟା ବେଳକୁ ଗୋଟିଏ ସଭା ଆହୂତ ହୋଇଥାଏ ଏବଂ ନିର୍ଦ୍ଦିଷ୍ଟ ସମୟରେ କଲେଜର ଅଧ୍ୟକ୍ଷ, ଆଉ ଜଣେ ଭଦ୍ରଲୋକ ଓ ମୁଁ ଏପରି ମାତ୍ର ତିନିଜଣ ଲୋକ ଉପସ୍ଥିତ ଥିଲୁ । ଡକ୍ଟର ପରିଚ୍ଛା ସେ ସଭାରେ ସଭାପତିତ୍ୱ କରିବାର ଥିଲା । ସେ ଠିକ୍ ୬ଟାରେ ଆସି ପହଞ୍ଚିଲେ ଓ ସଭାର ବିଷୟ ସୂଚୀ ମାଗିଲେ । ଯେତେବେଳେ କଲେଜର ଅଧ୍ୟକ୍ଷ ତାଙ୍କୁ କହିଲେ ଯେ ସେ ଘ.୬.୩୦ ମିନିଟ୍ ବେଳକୁ ସଭାକୁ ବହୁସଂଖ୍ୟାରେ ଲୋକ ଆସିଯିବେ ବୋଲି ଆଶା କରୁଛନ୍ତି ପ୍ରଫେସର ପରିଜା ନମ୍ର ସହକାରେ ସେ ସ୍ଥାନ ଛାଡ଼ି ଚାଲିଗଲେ ।

କଥିତ ଅଛି ଯେ ୧୯୩୮ ମସିହାରେ ଥରେ ଓଡ଼ିଶାର ଶିକ୍ଷାମନ୍ତ୍ରୀ କଟକର ପୁରୁଣା ସେକ୍ରେଟାରିଏଟ୍‌ରେ ସକାଳ ୮ଟାରେ ଏକ ସଭା ଆହୂତ କରିଥିଲେ । ସେ ସଭାକୁ ଶିକ୍ଷା ନିର୍ଦ୍ଦେଶକ ଓ ଡକ୍ଟର ପରିଚ୍ଛା ଯିବା କଥା । ନିର୍ଦ୍ଧାରିତ ସମୟରେ ଡକ୍ଟର ପରିଚ୍ଛା ସଭାସ୍ଥଳରେ ଉପସ୍ଥିତ ହେଲେ ଓ ଦେଖିଲେ ଯେ ସଭାଗୃହରେ ତାଲା ପଡ଼ିଛି । ସେ ଧୈର୍ଯ୍ୟର ସହିତ ଅନ୍ୟମାନଙ୍କର ଆଗମନକୁ ଅପେକ୍ଷା କରି ରହିଲେ ଓ ନିମନ୍ତ୍ରିତ ଭଦ୍ରବ୍ୟକ୍ତିମାନେ ଦଶଟା ଭିତରେ ସମବେତ ହେଲେ । ଡକ୍ଟର ପରିଚ୍ଛା ଧୀରସ୍ଥିର

ଭାବରେ ଦଣ୍ଡାୟମାନ ହେଲେ ଓ ପ୍ରତିବାଦର ସ୍ୱର ଉତ୍ତୋଳନ କରି କହିଲେ ଯେ, ଯେହେତୁ ସକାଳ ୮ଟାରେ ସଭା ଡକାଯାଇଥିଲା ସେ ତାଙ୍କର ପ୍ରାତଃଭୋଜନ ନ କରି ସଭାକୁ ଆସିଥିଲେ ଓ ସେ ଆଉ ଅଧିକ ସମୟ ସଭାରେ ବସି ରହିବାକୁ ପ୍ରସ୍ତୁତ ନୁହନ୍ତି । ଏହା କହି ସେ ସଭାରୁ ଉଠି ନିଜ ବାସଭବନକୁ ଚାଲିଗଲେ ।

ଉତ୍କଳ ଗୌରବ ମଧୁସୂଦନ ଦାସ ଥରେ କେଉଁଝର ରାଜାଙ୍କୁ ଯାହା କହିଥିଲେ ତା' ସହିତ ଏହାକୁ ତୁଳନା କରାଯାଇପାରେ । ରାଜା ବିପଦରେ ପଡ଼ିଥିଲେ ଓ ମିଷ୍ଟର ଦାସଙ୍କ ସହିତ ପରାମର୍ଶ କରିବାକୁ ଚାହିଁଥିଲେ । ସନ୍ଧ୍ୟା ୭ଟା ବେଳକୁ ଆଲୋଚନା ସମୟ ସ୍ଥିର ହୋଇଥଲା, କିନ୍ତୁ ରାଜା ବାହାଦୁର ସନ୍ଧ୍ୟା ଘ ୭.୩୦ ମିନିଟ୍‌ରେ ଆସିଲେ । ସେ ଯେତେବେଳେ ମିଷ୍ଟର ଦାସଙ୍କ ଓକିଲାତିଖାନାରେ ପ୍ରବେଶ କଲେ, ମିଷ୍ଟର ଦାସ ସେହି ରୁମ୍‌ର ଏକ କାନ୍ଥଘଣ୍ଟାକୁ ଦେଖାଇ ରାଜାବାହାଦୁରଙ୍କୁ ପଚାରିଲେ, ''ଏହି କାନ୍ଥଘଣ୍ଟାର ଦାମ କେତେ ?'' ରାଜା କହିଲେ, ''ପ୍ରାୟ ୩୦ ଟଙ୍କା ହେବ ।'' ମିଷ୍ଟର ଦାସ କହିଲେ, ''ଯଦି ମାତ୍ର ୩୦ ଟଙ୍କାର ଗୋଟିଏ ଘଣ୍ଟା ରାଜାବାହାଦୁରଙ୍କ ପାଇଁ ଅପେକ୍ଷା କରିପାରିଲା ନାହିଁ ଓ ତା'ବାଟରେ ଯାଇ ଘ. ୭.୩୦ ମିନିଟ୍‌ରେ ପହଞ୍ଚିସାରିଲାଣି, ତା'ହେଲେ ମିଷ୍ଟର ଦାସଙ୍କ ମୂଲ୍ୟ କ'ଣ ଏ ଘଣ୍ଟାଠାରୁ ଏତେ କମ୍ ଯେ ସେ ରାଜା ବାହାଦୁରଙ୍କ ପାଇଁ ଅଧ ଘଣ୍ଟାଏ ପର୍ଯ୍ୟନ୍ତ ଅପେକ୍ଷା କରି ରହିବେ ?'' ରାଜା ବାହାଦୁର ନିଜ କର୍ମପାଇଁ ଲଜ୍ଜିତ ହେଲେ । ତେଣୁ ଉଭୟେ ଡକ୍ଟର ପରିଜା ଓ ମିଷ୍ଟର ଦାସ ଜାଣିଥିଲେ ଯେ ସମୟ ହେଉଛି ମୂଲ୍ୟବାନ୍ ଏବଂ 'ଭାରତୀୟ ସମୟାନୁବର୍ତ୍ତିତା' ଶବ୍ଦ ନିରର୍ଥକ ।

ଡକ୍ଟର ପରିଜା ଯେତିକି ସୁଶିକ୍ଷିତ ସେତିକି ମଧ୍ୟ ହାସ୍ୟରସିକ । ଅନେକ ସଂସ୍କୃତ ଶ୍ଳୋକ ଓ ଓଡ଼ିଆ ଢଗଢମାଳି ତାଙ୍କ ଜିଭ ଅଗରେ ଥିଲା । ସାଧାରଣ ସଭାମଞ୍ଚରୁ ସେ ପ୍ରଦାନ କରିଥିବା ଅସଂଖ୍ୟ ବକ୍ତୃତାରେ ଏହି ପଙ୍‌କ୍ତିଗୁଡ଼ିକର ଉଦ୍ଧାର ସ୍ୱତଃ ହାସ୍ୟରସ ସୃଷ୍ଟି କରେ । ୧୯୩୮ ମସିହାରେ ରେଭେନ୍ସା କଲେଜର ୱେଷ୍ଟ ହଷ୍ଟେଲ୍‌ର ସୁପରିଣ୍ଟେଣ୍ଡେଣ୍ଟ ଅଧ୍ୟାପକ ପରଶୁରାମ ମିଶ୍ର ଉଚ୍ଚତର ଶିକ୍ଷାପାଇଁ ଇଂଲଣ୍ଡକୁ ଯିବା ଉପଲକ୍ଷେ ତାଙ୍କୁ ବିଦାୟକାଳୀନ ଶୁଭକାମନା ଜଣାଇବା ଉଦ୍ଦେଶ୍ୟରେ ଆହୂତ ସଭାରେ ପ୍ରଫେସର ପରିଜା ତାଙ୍କୁ ଲାଲକୁଳୀ ଇଂରେଜ ଝିଅମାନଙ୍କଠାରୁ ଦୂରରେ ରହିବାକୁ ପରାମର୍ଶ ଦେଇ ଯେଉଁ ହାସ୍ୟରସପୂର୍ଣ୍ଣ ବକ୍ତୃତା ଦେଇଥିଲେ ତାହା କେହି ଭୁଲିପାରିବେ ନାହିଁ, ବିଶେଷତଃ ସେ ସଭାରେ ପରଶୁରାମ ବାବୁଙ୍କ ପୁଅ ଗତିକୃଷ୍ଣ ମିଶ୍ର (ପରବର୍ତ୍ତୀ କାଳରେ ଜିଲ୍ଲା ଓ ସେସନ୍ସ ଜଜ୍) ଉପସ୍ଥିତ ଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ୍ ଓ ଏକାଡେମିକ୍ କାଉନ୍‌ସିଲ୍‌ରେ ତୀବ୍ର ବାକ୍‌ଯୁଦ୍ଧ ଚାଲିଥିଲା ବେଳେ କୁଳପତି ଡକ୍ଟର ପରିଜାଙ୍କ ମୁଖନିଃସୃତ ହାସ୍ୟରସାତ୍ମକ ଚତୁର ବାକ୍ୟାବଳିରେ ଅଶାନ୍ତ ବାତାବରଣ ଶାନ୍ତ ହେଉଥିଲା ।

ଅତି ଦୁର୍ଭାଗ୍ୟର କଥା ଯେ ୧୯୩୮ରୁ ପ୍ରଫେସର ପରିଜା ରେଭେନ୍ସା କଲେଜର ଅଧ୍ୟକ୍ଷ ହେଲା ପରେ ଯେତେବେଳେ ଦିଂ ଭାରତରେ ପ୍ରଦେଶଗୁଡ଼ିକରେ ପ୍ରଥମ ନିର୍ବାଚିତ

ଦାୟିତ୍ୱପୂର୍ଣ୍ଣ ମନ୍ତ୍ରିମଣ୍ଡଳ ଶାସନଭାର ଗ୍ରହଣ କରିସାରିଥିଲେ । ଛାତ୍ରମାନେ ବିଶୃଙ୍ଖଳ ହୋଇ ଉଠିଥିଲେ ଓ ତାଙ୍କୁ ଚାରୋଟି ବଡ଼ ଧର୍ମଘଟର ସମ୍ମୁଖୀନ ହେବାକୁ ପଡ଼ିଥିଲା, ଯଥା—(କ) ୱେଷ୍ଟ ହଷ୍ଟେଲ୍‌ର ବୋର୍ଡ଼ରମାନଙ୍କର ଅନଶନ ଧର୍ମଘଟ, (ଖ) ୧୯୩୮ର ଜେ.ଏନ୍. ମୁଖାର୍ଜୀ କ୍ୱାଟର୍ସ ଧର୍ମଘଟ, (ଗ) ୧୯୪୦ର ପରୀକ୍ଷା ବର୍ଜନ ଧର୍ମଘଟ ଓ (ଘ) ୧୯୪୨ର ଭାରତ ଛାଡ଼ ଆନ୍ଦୋଳନ ଧର୍ମଘଟ । ଏସବୁ ଧର୍ମଘଟ ଯୋଗୁଁ ତାଙ୍କ ଲୋକପ୍ରିୟତା ହ୍ରାସ ପାଇଲା, କାରଣ ତାଙ୍କର ଶୃଙ୍ଖଳାନୁରକ୍ତି ଆତ୍ମପ୍ରକାଶ କଲା । ୧୯୩୮ ଜୁଲାଇ ମାସରେ ଆଇନ୍ ଅଧ୍ୟାପକ ଶ୍ରୀଯୁକ୍ତ ଜିତେନ୍ଦ୍ର ନାଥ ବାନାର୍ଜୀଙ୍କ ବସାଘର ବିଷୟରେ ଯେଉଁ ବିରାଟ ଧର୍ମଘଟ ହୋଇଥିଲା, ସେଥିରେ ଅଧ୍ୟକ୍ଷ ପରିଚ୍ଛା ଏଡୁକେସନ୍ କୋଡ୍ ଅନୁସାରେ ମିଳିମିଶି ୭୨ ଘଣ୍ଟାରୁ ବେଶି କ୍ଲାସରୁ ଅନୁପସ୍ଥିତ ରହିଥିବାରୁ ସବୁ ଛାତ୍ରଙ୍କ ନାମ କଲେଜ ରେଜିଷ୍ଟାରରୁ କାଟିଦେଲେ । ସେ କାଳର ଲୋକପ୍ରିୟ କଂଗ୍ରେସ ମନ୍ତ୍ରୀମାନେ ଓ ପାର୍ଲିଆମେଣ୍ଟାରୀ ସେକ୍ରେଟେରୀମାନେ ଏପରି କଠୋର ନ ହେବାଲାଗି ପରିଚ୍ଛାସାହେବଙ୍କୁ ପରାମର୍ଶ ଦେବାରୁ ସେ ରୋକ୍‌ଠୋକ୍ ଭାବରେ କହିଥିଲେ, ''ମୁଁ ପଛକେ ଅଧ୍ୟକ୍ଷ ପଦରୁ ଇସ୍ତଫା ଦେବି, କିନ୍ତୁ ଏଡୁକେସନ୍ କୋଡ୍ ସଂଶୋଧିତ ନ ହେବା ପର୍ଯ୍ୟନ୍ତ ତାକୁ ନିଶ୍ଚୟ କାର୍ଯ୍ୟକାରୀ କରିବି ।'' ଶିକ୍ଷାମନ୍ତ୍ରୀ ଶ୍ରୀଯୁକ୍ତ ବୋଧରାମ ଦୁବେ ନିଜ ସ୍ଥିତିରୁ ଓହରିଗଲେ ଓ ଛାତ୍ରମାନେ କ୍ଷମା ପ୍ରାର୍ଥନା କରିବା ପରେ ଯାଇ ସେମାନଙ୍କ ନାମ ପୁଣି କଲେଜ ରେଜିଷ୍ଟରରେ ଲେଖା ହେଲା । ସେତିକିବେଳେ ଆଜିକାଲିକାର ପ୍ରତିଶ୍ରୁତିପତ୍ର (ଅଣ୍ଡର୍‌ଟେକିଂ ଫର୍ମ) ପ୍ରବର୍ତ୍ତିତ ହୋଇଥିଲା ।

ଏକଥା ଏକ ନିରାଟ ସତ କଥା ଯେ ଛାତ୍ରବତ୍ସଳ ଅତି ପ୍ରିୟ ଅଧ୍ୟକ୍ଷମାନେ ଯେତେବେଳେ ବିଶୃଙ୍ଖଳା ପାଇଁ ଛାତ୍ରମାନଙ୍କୁ ଶାସ୍ତି ଦେବାକୁ ଆରମ୍ଭ କରନ୍ତି, ସେମାନେ ଅସମ୍ମାନିତ ହୋଇଯାନ୍ତି । ଗଣତନ୍ତ୍ର ଛାତ୍ରମାନଙ୍କୁ ଏତେଦୂର ରାଜନୀତିପ୍ରବଣ କରିଦେଇଛି ଯେ, ସେମାନେ ବର୍ତ୍ତମାନ ସେମାନଙ୍କର ସାମାନ୍ୟ ସ୍ୱାର୍ଥପାଇଁ ନଗଣ୍ୟ ଦାବି ହାସଲପାଇଁ ପୂର୍ବର ସବୁ ମୂଲ୍ୟବୋଧକୁ ଭୁଲିଯାନ୍ତି । ଜଣାପଡ଼େ ଯେପରିକି ''ଭଗବାନ୍ ମଧ୍ୟ ଅକୃତକାର୍ଯ୍ୟ ହେଲେ ।'' ଉକ୍ତ ପରିଚ୍ଛାଙ୍କ କ୍ଷେତ୍ରରେ ଏହା ମଧ୍ୟ ଥିଲା ସତ୍ୟ ।

୧୯୬୩ ମସିହାରୁ ୧୯୬୬ ମଧ୍ୟରେ ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ୍, ସିଣ୍ଡିକେଟ୍ ଓ ପାଠ୍ୟ ସଂସଦ (ଏକାଡେମିକ୍ କାଉନ୍‌ସିଲ୍)ର ସଭ୍ୟରୂପେ ପରିଚ୍ଛାସାହେବଙ୍କ ସହିତ କାମ କରିବାର ସୁଯୋଗ ମୋତେ ମିଳିଥିଲା । ଗୋଟିଏ ସଭାକୁ କିପରି ପରିଚାଳନା କରିବାକୁ ହୁଏ, ସେ ବିଷୟରେ ପରିଚ୍ଛାସାହେବଙ୍କ ଭଳି ସମଗ୍ର ଭାରତରେ ଆଉ କେହି ନ ଥିଲେ । ସିଣ୍ଡିକେଟ୍ ବୈଠକ ଅପରାହ୍ନ ସାଢ଼େ ପାଞ୍ଚଟାରେ ଆରମ୍ଭ ହୁଏ । ସେ କେବେ ୫ଟା ୨୯ ମିନିଟ୍ କିମ୍ବା ୫ଟା ୩୧ ମିନିଟ୍‌ରେ ସିଣ୍ଡିକେଟ୍ କକ୍ଷରେ ପ୍ରବେଶ କରିବାର ଦେଖାଯାଇ ନାହିଁ କିମ୍ବା କକ୍ଷରେ ପ୍ରବେଶ କରିବା ପରେ ନିର୍ଘଣ୍ଟ ଅନୁସାରେ

କାମ ଆରମ୍ଭ ନ କରି ଏଣୁତେଣୁ ଗପିବାର ଦେଖାଯାଇ ନାହିଁ । ସଭାରେ ସଭାପତିତ୍ୱ କରିବାପାଇଁ ଯେପରିକି ଡକ୍ଟର ପରିଜା ଜଣେ ଆଜନ୍ମ ଅଧ୍ୟକ୍ଷ (Born Chairman) । ସଭାକାର୍ଯ୍ୟ କେବେହେଲେ ଡେରିରେ ଆରମ୍ଭ ହୋଇ ନାହିଁ ଏବଂ ଅନାବଶ୍ୟକ ଓ ତିକ୍ତ ବାଦାନୁବାଦକୁ ସେ ସୁଯୋଗ ଦିଅନ୍ତି ନାହିଁ । ବିଷୟବସ୍ତୁ ଉପରେ ଆଲୋଚନା ହୁଏ ଓ ସିଦ୍ଧାନ୍ତ ଲିପିବଦ୍ଧ କରାଯାଏ ।

ଥରେ ସିଣ୍ଡିକେଟ୍ ଆଲୋଚନା ଶେଷ ହେଲା ପରେ ଗୋଟିଏ ଗଳ୍ପ କହିଲେ । ସେ ଆନ୍ତଃ-ବିଶ୍ୱବିଦ୍ୟାଳୟ ବୋର୍ଡ଼ର ସଭାପତି ଥାଆନ୍ତି । ବୈଠକ ଆରମ୍ଭ ହୋଇ ଆଲୋଚନା ଚାଲିଲା । କଲିକତା ବିଶ୍ୱବିଦ୍ୟାଳୟର ପ୍ରତିନିଧି ରୂପେ ଉକ୍ତ ବିଶ୍ୱବିଦ୍ୟାଳୟର କୁଳପତି ତଥା ସାର୍ ଆଶୁତୋଷ ମୁଖାର୍ଜୀଙ୍କ ବଡ଼ ପୁଅ ଓ ବିଶିଷ୍ଟ ରାଜନୀତିଜ୍ଞ ଡକ୍ଟର ଶ୍ୟାମପ୍ରସାଦ ମୁଖାର୍ଜୀଙ୍କ ବଡ଼ଭାଇ, କଲିକତା ହାଇକୋର୍ଟର ଅବସରପ୍ରାପ୍ତ ବିଚାରପତି ଶ୍ରୀଯୁକ୍ତ ରମାପ୍ରସାଦ ମୁଖାର୍ଜୀ ଏହି ବୈଠକରେ ଆଲୋଚନା କରୁ କରୁ ଟିକିଏ ଅବାନ୍ତର କଥା କହିବାରୁ ପରିଜାସାହେବ ତାଙ୍କୁ ତାଗିଦ୍ କରି ଦେଇଥିଲେ ଓ ସେ ଅଧ୍ୟକ୍ଷଙ୍କ ନିର୍ଦ୍ଦେଶ ନ ମାନିବାରୁ ପରିଜାସାହେବ କହିଲେ, "ଶ୍ରୀଯୁକ୍ତ ମୁଖାର୍ଜୀ, ଆପଣ ବସିପଡ଼ନ୍ତୁ", ଏହା ପରେ ଜଣେ ଶୃଙ୍ଖଳିତ ଶିକ୍ଷାବିତ୍ ରୂପେ ଶ୍ରୀଯୁକ୍ତ ମୁଖାର୍ଜୀ ବସିଗଲେ ସିନା, ଅଧିବେଶନ ଶେଷ ହେବା ପରେ ସେ କୁଆଡ଼େ ପରିଜାସାହେବଙ୍କୁ କହିଲେ, "ଶ୍ରୀଯୁକ୍ତ ପରିଜା, ସଭାର ଅଧ୍ୟକ୍ଷ ରୂପେ ଆପଣ ଜଣେ ପ୍ରଧାନ ଶିକ୍ଷକଙ୍କ ପରି କାର୍ଯ୍ୟ କରୁଛନ୍ତି ।" ପରିଜାସାହେବ ତାଙ୍କୁ ଉତ୍ତରରେ ଯାହା କହିଥିଲେ ତାହା ସର୍ବଥା ପ୍ରଣିଧାନଯୋଗ୍ୟ । ସେ କହିଥିଲେ, "ମୁଁ ସଭାପତି ଆସନରେ ବସିବା ମାତ୍ରକେ ମୋତେ କାହାରି ମୁହଁ ଦେଖାଯାଏ ନାହିଁ, ତେଣୁ କିଏ ଭାରୀ ଓ କିଏ ହାଲୁକା ଜାଣିବା ମୋ ପକ୍ଷରେ ସମ୍ଭବପର ନୁହେଁ ।" ପରିଜାସାହେବ ଏହି ନୀତିକୁ ତାଙ୍କ ଜୀବନସାରା ଅକ୍ଷରେ ଅକ୍ଷରେ ପାଳନ କରି ଆସିଛନ୍ତି ଏବଂ ସିନେଟ୍ ଓ ସିଣ୍ଡିକେଟ୍ ବୈଠକରେ ଓଡ଼ିଶାର ଶିକ୍ଷାବିଭାଗ ନିର୍ଦ୍ଦେଶକଙ୍କୁ ମଧ୍ୟ କକ୍ଷରୁ ବାହାରିଯିବା ଲାଗି ନିର୍ଦ୍ଦେଶ ଦେବାଲାଗି ସେ ପଶ୍ଚାତ୍‌ପଦ ହୋଇ ନାହାନ୍ତି ।

ଡକ୍ଟର ପରିଜା ମଧ୍ୟ ଆମ ବାଲିକୁଦା ନିର୍ବାଚନମଣ୍ଡଳୀରୁ ଓଡ଼ିଶା ବିଧାନସଭାକୁ ଜଣେ ସ୍ୱାଧୀନ ସଭ୍ୟ ରୂପେ ନିର୍ବାଚିତ ହୋଇ ରାଜନୀତି ମଧ୍ୟକୁ ପଥଭ୍ରଷ୍ଟ ହୋଇ ପଶିଯାଇଥିଲେ । ସରକାର ତାଙ୍କୁ ଭଲପାଉଥିଲେ ଓ ସମ୍ମାନ ପ୍ରଦର୍ଶନ କରୁଥିଲେ, କିନ୍ତୁ ସେ ଜଣେ ସ୍ୱାଧୀନ ସଭ୍ୟ ହୋଇଥିବାରୁ ଶକ୍ତିଶାଳୀ ଓ ଫଳପ୍ରଦ ହୋଇପାରିଲେ ନାହିଁ । ସେଥିପାଇଁ ସେ ସାଂସଦୀୟ ରାଜନୀତି ପ୍ରତି ବୀତସ୍ପୃହ ହୋଇଗଲେ ।

୧୯୫୫ ମସିହାରେ ଦଳେଇଘାଇ ଦୁର୍ଘଟଣା ଯୋଗୁଁ ପରିଜାସାହେବଙ୍କ ନିଜ ନିର୍ବାଚନ ମଣ୍ଡଳୀ ସମେତ କଟକ ସହର ସବ୍‌ଡିଭିଜନ୍‌ର ତିନି ଚତୁର୍ଥାଂଶ ଅଞ୍ଚଳ ଜଳପ୍ଳାବିତ ହୋଇଯାଇଥିଲା । ବନ୍ୟା ବିଧ୍ୱସ୍ତ ଅଞ୍ଚଳରେ କ୍ଷୟକ୍ଷତିର ପରିମାଣ ନିର୍ଣ୍ଣୟ

କରିବାକୁ ଉଦ୍‌ବେଗ ପ୍ରକାଶ କରି ଡକ୍ଟର ପରିଜା ଦଳେଇଘାଇଠାକୁ ପ୍ରକୃତ ଦୃଶ୍ୟ ଦେଖିବାକୁ ଯାଇଥିଲେ ଓ ଧୈର୍ଯ୍ୟହୀନ ହୋଇ ନଈ ଭିତରକୁ ଗଳିପଡ଼ିଲେ । କେତେକ ଅଧ୍ୟାପକ ଓ ଛାତ୍ର ନଈ ଭିତରକୁ ଡେଇଁପଡ଼ିଲେ ଓ ତାଙ୍କୁ ପାଣିରୁ ଉଠାଇ ଆଣିଲେ । ତାଙ୍କୁ ଗୋଟିଏ ଶାଢ଼ି ପିନ୍ଧାଇ ଦିଆଗଲା, ଯାହାକୁକି ବିଜ୍ଞତାର ସହିତ ଏକ ବଳକା ଶାଢ଼ି ରୂପେ ଶ୍ରୀମତୀ ସୁନ୍ଦରମଣି ପରିଜା ସାଙ୍ଗରେ ନେଇଥିଲେ ।

ଦିନକର ଘଟଣା ଆମ ସମସ୍ତଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିଥିଲା । ୧୯୬୫ ମସିହା ମାର୍ଚ୍ଚ ମାସ, ପରିଜାସାହେବ ଥାଆନ୍ତି ବିଶ୍ୱବିଦ୍ୟାଳୟର କୁଳପତି ଓ ମାନ୍ୟବର ଜଷ୍ଟିସ୍ ଗୋପାଳଚନ୍ଦ୍ର ଦାସ ଉପ-କୁଳାଧିପତି (ପ୍ରୋ-ଚାନ୍‌ସେଲର୍) । ବିଶ୍ୱବିଦ୍ୟାଳୟର ନିୟମାବଳୀ ଅନୁସାରେ ପାଠ୍ୟସଂସଦରେ କୁଳପତି ଅଧ୍ୟକ୍ଷତା କରନ୍ତି ଓ ସିନେଟ୍ ବୈଠକରେ ଉପ-କୁଳାଧିପତି ସଭାପତିତ୍ୱ କରନ୍ତି । ପାଠ୍ୟସଂସଦ ଅଧିବେଶନ ଦିନ ପରିଜାସାହେବଙ୍କ ବଡ଼ଝିଅ ଶ୍ରୀମତୀ ମନ୍ଦାକିନୀ ଦାସ ମହାପାତ୍ର କର୍କଟ ରୋଗାକ୍ରାନ୍ତ ହୋଇ ବହୁକାଳ ଯନ୍ତ୍ରଣା ଭୋଗିବା ପରେ ଇହଲୀଳା ସମ୍ବରଣ କରିଥାନ୍ତି । ପରିଜାସାହେବ କନ୍ୟାର ମୃତ୍ୟୁ ସତ୍ତ୍ୱେ ଅବିଚଳିତ ଭାବରେ ପାଠ୍ୟ ସଂସଦରେ ଅଧ୍ୟକ୍ଷତା କଲେ । ସକାଳ ଅଧିବେଶନ ମୁଲତବି ହେବା ଆଗରୁ ସେ ଘୋଷଣା କଲେ, "କେନ୍ଦ୍ର ସରକାରଙ୍କ ବୈଦେଶିକ ବ୍ୟାପାର ଉପମନ୍ତ୍ରୀ ଶ୍ରୀମତୀ ଲକ୍ଷ୍ମୀ ମେନନ୍ ଓଡ଼ିଶା ଆସିଛନ୍ତି ଏବଂ ରାଜ୍ୟପାଳ ତାଙ୍କୁ ମଧ୍ୟାହ୍ନ ଭୋଜିରେ ଆପ୍ୟାୟିତ କରୁଛନ୍ତି । ସେ ରାଜଭବନକୁ ଯାଉଥିବାରୁ ହୁଏତ ଅପରାହ୍ନ ଅଧିବେଶନକୁ ଠିକ୍ ସମୟରେ ଆସି ନ ପାରନ୍ତି", ତେଣୁ ତାଙ୍କ ଅନୁପସ୍ଥିତିରେ ସଭା ଆରମ୍ଭ କରିବାକୁ ସେ ଅନୁରୋଧ କଲେ ।

କିନ୍ତୁ ପ୍ରକୃତରେ ସେ ସାଢ଼େ ଦୁଇଟା ପୂର୍ବରୁ ଫେରିଆସି ଅଧ୍ୟକ୍ଷତା କରିଥିଲେ । ପାଞ୍ଚଟାବେଳେ ପାଠ୍ୟ ସଂସଦର ବୈଠକ ଶେଷ ହେଲା ଏବଂ ପରଦିନ ହେବାକୁ ଥିବା ସିନେଟ୍ ବୈଠକଲାଗି କେତେକ ଜରୁରି କାର୍ଯ୍ୟବାହୀ ନିମିତ୍ତ ସନ୍ଧ୍ୟା ସାଢ଼େ ପାଞ୍ଚଟାରେ ସିଣ୍ଡିକେଟ୍‌ର ସ୍ୱତନ୍ତ୍ର ବୈଠକ ଆରମ୍ଭ ହେଲା । ସେଥିରେ ବି ପରିଜାସାହେବ ଅଧ୍ୟକ୍ଷତା କଲେ । ପ୍ରାୟ ସାଢ଼େ ସାତଟାବେଳକୁ ପରିଜାସାହେବ କହିଲେ, "ଶୈଳବାଳା ମହିଳା କଲେଜରେ ଶ୍ରୀମତୀ ଲକ୍ଷ୍ମୀ ମେନନ୍‌ଙ୍କୁ ନୈଶଭୋଜି ଦିଆଯାଉଛି । ମୁଁ ସେଠାକୁ ଯିବି । ସଦାଶିବ (ସେ କାଳର ଡି.ପି.ଆଇ.) ମଧ୍ୟ ଯିବ, ତେଣୁ ମହେଶବାବୁ ସଭାପତି ହୁଅନ୍ତୁ ଓ ସିଣ୍ଡିକେଟ୍ ବୈଠକ ଚାଲୁ ।" ଏହା କହି ସେ ଚାଲିଗଲେ ।

ସେ ଯିବା ମାତ୍ରେ ରାଧାନାଥ ଟ୍ରେନିଂ କଲେଜର ସେ କାଳର ଅଧ୍ୟକ୍ଷ ଅଧ୍ୟାପକ ବୈଦ୍ୟନାଥ ରଥ ଦୁଇପାପୁଲିକୁ ମୁଣ୍ଡରେ ରଖି ବଡ଼ପାଟିରେ କହିଲେ, "ପରିଜାସାହେବ ମଣିଷ ନା ଦେବତା ।" ଆଜି ସକାଳେ ମୁଁ ଖାନନଗର ବାଟେ ଆସିବାବେଳେ ଦେଖିଆସିଲି ତାଙ୍କ ବଡ଼ଝିଅ ମନ୍ଦାକିନୀର ଶବ ଦାହ କରାଯାଉଛି ।

ଆଜି ଦିନକ ଭିତରେ ପାଠ୍ୟ ସଂସଦ ଓ ସିଣ୍ଡିକେଟ୍ ବୈଠକରେ ସେ ଅଧ୍ୟକ୍ଷତା କଲେ, ମଧ୍ୟାହ୍ନରେ ଓ ବର୍ତ୍ତମାନ କେନ୍ଦ୍ର ଉପମନ୍ତ୍ରୀଙ୍କ ଅଭ୍ୟର୍ଥନାରେ ଯୋଗ ଦେଲେ । କେହି କୌଣସି ଚିତ୍ତ ଚାଞ୍ଚଲ୍ୟ ଲକ୍ଷ୍ୟ କରିଛ କି ?'' ସକାଳୁ ପାଠ୍ୟସଂସଦ ଅଧିବେଶନକୁ ଯାଇଥିବାରୁ ଏ ଦୁଃସମ୍ବାଦ ଆମ ଭିତରୁ ଅନେକଙ୍କୁ ଜଣା ନ ଥିଲା । ବୈଦ୍ୟନାଥବାବୁଙ୍କ କଥା ଶୁଣିବାମାତ୍ରକେ, ଆଉ ସିଣ୍ଡିକେଟ୍ ବୈଠକ ଚାଲିବ କଅଣ ? ସମସ୍ତେ ତାଙ୍କ ଅତିମାନବିକ ଆତ୍ମସଂଯମ ସମ୍ବନ୍ଧରେ ଆଲୋଚନା କରିବାକୁ ଲାଗିଲେ । ଏହାହିଁ ଥିଲେ ପରିଜାସାହେବ ।

ଡକ୍ଟର ପରିଜା କୁଳପତି ଥିବା ସମୟରେ ବହୁ ଉଚ୍ଚ ପରମ୍ପରା ପ୍ରତିଷ୍ଠା କରିଥିଲେ । ଦିନକର କଥା, ଜଣେ ବଡ଼ଲୋକ ରାଜନୀତି ବିଜ୍ଞାନର ପାଠଚକ୍ରରେ ଭାଷଣ ଦେବାକୁ ଆସିଥାନ୍ତି । ମୁଁ ପାଠଚକ୍ରର ସମ୍ପାଦକଦ୍ୱୟଙ୍କୁ ସଭାରେ ସଭାପତିତ୍ୱ କରିବାଲାଗି ପରିଜାସାହେବଙ୍କୁ ନିମନ୍ତ୍ରଣ କରିବାଲାଗି ପଠାଇଲି । ପିଲା ଦୁହେଁ ଫେରିଆସି ମୋତେ ଯାହା କହିଲେ, ସେହି ଉପଦେଶ ମୁଁ ତାଙ୍କଠାରୁ ଟେଲିଫୋନ୍‌ରେ ବି ପାଇଲି । ସେ କହିଲେ, ''ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି । କେବଳ ବାଣୀବିହାରର ଶିକ୍ଷାଦାନୀ ବିଭାଗଗୁଡ଼ିକ ପାଇଁ ନୁହେଁ । ପ୍ରତ୍ୟେକ ଶିକ୍ଷାଦାନୀ ବିଭାଗ ନିଜକୁ ସ୍ୱୟଂଶାସିତ ବିବେଚନା କରିବା ଉଚିତ ଏବଂ ବିଭାଗୀୟ ମୁଖ୍ୟ ଅଧ୍ୟାପକ ଅଧ୍ୟକ୍ଷ ରୂପେ କାର୍ଯ୍ୟ କରିବା ଉଚିତ । ମୋତେ ଯେପରି ଆଉ କେହି ପାଠ୍ୟଚକ୍ର ଅଧିବେଶନକୁ ନ ଡାକ ।'' ପରବର୍ତ୍ତୀ ବର୍ଷମାନଙ୍କରେ ଏହି ପରମ୍ପରା ସୁରକ୍ଷିତ ହୋଇପାରି ନ ଥିଲା ।

ପରିଜାସାହେବଙ୍କ ତୁଙ୍ଗ ବ୍ୟକ୍ତିତ୍ୱ ବହୁ କ୍ଷେତ୍ରରେ ଉତ୍କଳ ବିଶ୍ୱବିଦ୍ୟାଳୟକୁ ଉପକୃତ କରିଛି । ତନ୍ମଧ୍ୟରୁ ନୈଶ କଲେଜ ବ୍ୟବସ୍ଥା ଏକତମ । କେନ୍ଦ୍ର ଶିକ୍ଷା ମନ୍ତ୍ରଣାଳୟ ପ୍ରତି ରାଜ୍ୟକୁ ଗୋଟିଏ ଲେଖାଏଁ ନୈଶ କଲେଜ ଦେବାକୁ ସ୍ଥିର କଲେ । ଏହା ୧୯୬୨ ମସିହାର କଥା । ପରିଜାସାହେବ କହିଥିଲେ, ''ଓଡ଼ିଶାର ରାଜଧାନୀ ଗୋଟିଏ ନୁହେଁ, ଦୁଇଟି । ଭୁବନେଶ୍ୱରରେ ସଚିବାଳୟ ଅଛି ସିନା, ବିଭାଗୀୟ ମୁଖ୍ୟ ଦପ୍ତରଗୁଡ଼ିକ କଟକରେ ରହିଛି । ଶିକ୍ଷାଲାଭରୁ ବଞ୍ଚିତ କର୍ମଚାରୀମାନଙ୍କୁ ଉଚ୍ଚଶିକ୍ଷାର ସୁବିଧା ଦେବାକୁ ହେଲେ, କଟକରେ ଗୋଟିଏ ଓ ଭୁବନେଶ୍ୱରରେ ଆଉ ଗୋଟିଏ ଏହିପରି ଦୁଇଟି ନୈଶ କଲେଜ ପ୍ରତିଷ୍ଠା କରିବାକୁ ହେବ ।'' ତାହାହିଁ ହୋଇଥିଲା । ପ୍ରତ୍ୟେକ ରାଜ୍ୟ ଗୋଟିଏ ଲେଖାଏଁ ନୈଶ କଲେଜ ପାଇଥିବା ସ୍ଥଳେ ଓଡ଼ିଶାକୁ ଦୁଇଟି କଲେଜ ମିଳିଥିଲା । ଠିକ୍ ସେହିପରି ବିଶ୍ୱବିଦ୍ୟାଳୟର ତୃତୀୟ ପଞ୍ଚବାର୍ଷିକ ଯୋଜନା କାଟଛାଣ୍ଟ ନ ହୋଇ ମଞ୍ଜୁରି ପାଇଥିଲା ।

କଟକ ଜିଲ୍ଲାର ଏକ ସୁଦୂର କୃଷିଭିତ୍ତିକ ପଲ୍ଲୀ ଗ୍ରାମରେ ଏକ ମଧ୍ୟବିତ୍ତ ପରିବାରରେ ଜନ୍ମଗ୍ରହଣ କରି ତାଙ୍କର ବନ୍ଧୁବାନ୍ଧବ ଓ ଗ୍ରାମବାସୀମାନଙ୍କ ବଦାନ୍ୟତା ଯୋଗୁଁ ଏବଂ ତାଙ୍କ ନିଜର ଅସାଧାରଣ ଧୀଶକ୍ତି, କଠୋର ଅଧ୍ୟବସାୟ ଓ ଦୃଢ଼ ଅଭିନିବେଶ ଯୋଗୁଁ

ସେ ବିଜ୍ଞାନ କ୍ଷେତ୍ରରେ, ବିଦ୍ୱତ୍ତାରେ ଓ ପ୍ରଶାସନିକ କ୍ଷେତ୍ରରେ ଯେଉଁ ଉତ୍ତୁଙ୍ଗ ଶିଖରକୁ ପହଞ୍ଚିପାରିଥିଲେ, ତାହାକୁ ଆଜି ପର୍ଯ୍ୟନ୍ତ କେହି ଅତିକ୍ରମ କରି ଯାଇ ନାହାନ୍ତି ।

ଡକ୍ଟର ପରିଚ୍ଛା ସାଧୁତା, ସଚ୍ଚୋଟତା ଓ କାର୍ଯ୍ୟଦକ୍ଷତାର ଏକ ମୂର୍ତ୍ତିମନ୍ତ ପ୍ରତୀକ ଥିଲେ ଓ ସେ ଯେଉଁଥିରେ ହାତ ଦେଉଥିଲେ, ତାହାକୁ ସେ ବିଭୂଷିତ କରିଦେଉଥିଲେ । ଉଦ୍ଭିଦ ବିଜ୍ଞାନ କ୍ଷେତ୍ରର ତାଙ୍କର ମହନୀୟ ଅବଦାନ ପାଇଁ ରେଭେନ୍ସା କଲେଜ ତା'ର ସ୍ନାତକୋତ୍ତର ଉଦ୍ଭିଦବିଜ୍ଞାନ ବିଭାଗକୁ 'ପରିଚ୍ଛା ସ୍ନାତକୋତ୍ତର ଉଦ୍ଭିଦବିଜ୍ଞାନ ବିଭାଗ'' ରୂପେ ନାମିତ କରିଛନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟ ତା'ର ଉଦ୍ଭିଦବିଜ୍ଞାନ ବିଭାଗର ସେମିନାର୍‌କୁ ତାଙ୍କର ବାସଭବନ ନାମାନୁସାରେ 'ପାରିଜାତକ' ବୋଲି ନାମିତ କରିଛନ୍ତି । ଓଡ଼ିଶା ସରକାର ଉତ୍କଳ ବିଶ୍ୱବିଦ୍ୟାଳୟର ଉଦ୍ଭିଦବିଜ୍ଞାନ ବିଭାଗରେ 'ପରିଚ୍ଛା ପ୍ରଫେସର' ଚେୟାର ସୃଷ୍ଟି କରି ଏକ ଅଧିକା ପ୍ରଫେସର ପଦବୀ ପ୍ରତିଷ୍ଠା କରିଛନ୍ତି । ୧୯୪୩ ମସିହାରୁ ୧୯୪୮ ମସିହା ପର୍ଯ୍ୟନ୍ତ ଏବଂ ପୁନର୍ବାର ୧୯୫୫ ମସିହାରୁ ୧୯୬୬ ମସିହା ପର୍ଯ୍ୟନ୍ତ ଆମର କୁଳପତି ରୂପେ ଉତ୍କଳ ବିଶ୍ୱବିଦ୍ୟାଳୟ ସହିତ ତାଙ୍କର ବହୁ ବର୍ଷ ବ୍ୟାପୀ ଘନିଷ୍ଠ ସମ୍ପର୍କକୁ ସ୍ମରଣ କରିବାପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଉଦ୍ଭିଦବିଜ୍ଞାନ ବିଭାଗ ସମ୍ମୁଖରେ ଡକ୍ଟର ପରିଚ୍ଛାଙ୍କର ଏକ ପୂର୍ଣ୍ଣାବୟବ ମୂର୍ତ୍ତି ସ୍ଥାପନ କରିବାକୁ ଉତ୍କଳ ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷ ଗୁରୁତ୍ୱର ସହିତ ବିଚାର କରିବା ଉଚିତ ।

ପରିଚ୍ଛାସାହେବଙ୍କ ଗୁଣାବଳୀ ପର୍ଯ୍ୟାଲୋଚନା କରିବା ଯାହା, ଅନ୍ଧମାନେ ହାତୀ ଦେଖିବା ସେଇଆ । ବିରାଟ ଓ ସୁଦୀର୍ଘ ଜୀବନର ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ ଲାଗି ଗୋଟିଏ ପ୍ରବନ୍ଧ ନୁହେଁ, ଗୋଟିଏ ବିରାଟ ପୁସ୍ତକ ଆବଶ୍ୟକ । ସେ ବର୍ତ୍ତମାନ ସ୍ୱର୍ଗରେ, ତେଣୁ ଆମ ନିନ୍ଦା ଓ ପ୍ରଶଂସାଠାରୁ ଉର୍ଦ୍ଧ୍ୱରେ ।

(ଏହି ପ୍ରବନ୍ଧର କେତେକ ଅଂଶ ମୂଳ ଇଂରାଜୀ ରଚନାରୁ ଡକ୍ଟର ଗଦାଧର ମିଶ୍ରଙ୍କ ଦ୍ୱାରା ଓଡ଼ିଆରେ ଅନୂଦିତ ହୋଇଅଛି । ଏତଦ୍‌ବ୍ୟତୀତ ଶ୍ରୀ ବିବେକାନନ୍ଦ ପଟ୍ଟନାୟକଙ୍କ ମୁଖ୍ୟ ସଂପାଦନାରେ ପ୍ରକାଶିତ 'ଉତ୍କଳ ପ୍ରସଙ୍ଗ' ସ୍ୱତନ୍ତ୍ର ସଂଖ୍ୟା, ୧୯୭୮ରୁ ବହୁ ଅଂଶ ଗୃହୀତ ।)

# ଶିକ୍ଷାଗୁରୁ ଡକ୍ଟର ପ୍ରାଣକୃଷ୍ଣ ପରିଜା

**ସଚ୍ଚିଦାନନ୍ଦ ରାଉତରାୟ**

୧୯୩୭ ମସିହାରେ ମୁଁ କଲିକତା ସି.ଟି. କଲେଜରୁ ଆଇ. ଏ. ପାସ୍‌କରି କଟକ ରେଭେନ୍ସା କଲେଜରେ ବି. ଏ. ତୃତୀୟ ବାର୍ଷିକ ଶ୍ରେଣୀରେ ନାମ ଲେଖାଇଲି । ମୁଁ କଲିକତାରେ ଆଇ.ଏ. ପରୀକ୍ଷା ଦେବାପୂର୍ବରୁ ପ୍ରାୟ ଦୁଇମାସ ଏକ ରାଜନୈତିକ ମୋକଦ୍ଦମାରେ ଗିରଫ ହୋଇ କଲିକତା ଜେଲ୍‌ରେ ଥିଲି । ତେଣୁ ରେଭେନ୍ସାରେ ଭର୍ତ୍ତି ହେବା ମୋ ପକ୍ଷରେ ସହଜ ନ ଥିଲା, କାରଣ ମୋ ବିରୋଧରେ ବହୁତ ସି. ଆଇ. ଡି. ରିପୋର୍ଟ ପ୍ରଭୃତି ଥିଲା । ମୁଁ କଟକ ରେଭେନ୍ସା କଲେଜରେ ଭର୍ତ୍ତି ହେବାର କିଛିମାସ ପରେ ପ୍ରିନ୍ସିପାଲ୍ ଏସ୍. ତ୍ରିପାଠୀ କାର୍ଯ୍ୟରୁ ଅବସର ନିଅନ୍ତି ଏବଂ ତାଙ୍କ ସ୍ଥାନରେ ଡଃ ପ୍ରାଣକୃଷ୍ଣ ପରିଜା ନୂତନ ପ୍ରିନ୍ସିପାଲ ରୂପେ କାର୍ଯ୍ୟଭାର ଗ୍ରହଣ କରନ୍ତି । ପ୍ରିନ୍ସିପାଲ ଭାବରେ ତାଙ୍କ ସହିତ ଆମର କେତେକ ବିଷୟରେ ମତଭେଦ ଥିଲା । ମାତ୍ର ଜଣେ ବରେଣ୍ୟ ଶିକ୍ଷାବିତ୍ ଭାବରେ ସେ ଆମ ସମସ୍ତଙ୍କର ଭକ୍ତିଭାଜନ ଥିଲେ । ମୁଁ ରେଭେନ୍ସାରେ ପଢୁଥିଲା ବେଳେ ଏବଂ ତା'ପରେ ଛାତ୍ର ଆନ୍ଦୋଳନରେ ସକ୍ରିୟ ଭାଗ ନେଇଥିଲି । କଟକ ମେଡିକାଲ ସ୍କୁଲ ଧର୍ମଘଟ ସଂକ୍ରାନ୍ତରେ ଏବଂ ପରେ ରେଭେନ୍ସା କଲେଜ ଛାତ୍ର ଧର୍ମଘଟରେ ମୁଁ ପ୍ରାୟ ଏକ ମାସ ଜେଲ୍‌ରେ ଥିଲି । ଏହିସବୁ କାରଣରୁ ଜଣେ ପ୍ରିନ୍ସିପାଲ ଭାବେ ତାଙ୍କ ସହିତ କେତେକ କ୍ଷେତ୍ରରେ ମୋତେ ବିରୋଧୀ ଭୂମିକା ନେବାକୁ ପଡ଼ିଥିଲା ।

ମୁଁ ରେଭେନ୍ସା କଲେଜରୁ ୧୯୩୯ ମସିହାରେ ବି. ଏ. ପାସ୍ କରି ସେହି କଲେଜରେ ଏମ୍. ଏ. ଏବଂ ଆଇନ୍ ଉଭୟ କ୍ଲାସ୍‌ରେ ପଢ଼ିବା ପାଇଁ ଦରଖାସ୍ତ କରିଥିଲି । ମାତ୍ର ମୁଁ ଜଣେ ରାଜନୈତିକ ଚରମପନ୍ଥୀ ବୋଲି ମନ୍ତବ୍ୟ କରି ସେ ମୋ ଦରଖାସ୍ତକୁ ନାମଞ୍ଜୁର କରିଦେଇଥିଲେ । ସେତେବେଳେ ଓଡ଼ିଶାରେ କେବଳ ରେଭେନ୍ସା କଲେଜରେ ହିଁ ସ୍ନାତକୋତ୍ତର ଶ୍ରେଣୀ ଥାଏ । ରେଭେନ୍ସା କଲେଜ ସେତେବେଳେ ପାଟନା ବିଶ୍ୱବିଦ୍ୟାଳୟର ଅନ୍ତର୍ଗତ ଥାଏ । ଫଳରେ ମୁଁ ଏମ୍. ଏ. ପଢ଼ିବା ପାଇଁ ସୁଯୋଗ ପାଇ ନ ଥିଲି ।

ଏହାର କେତେବର୍ଷ ପରେ ମୁଁ କଲିକତା କେଶୋରାମ କଟନ୍ ମିଲ୍‌ରେ ମୁଖ୍ୟ ଲେବର ୱେଲ୍‌ଫେୟାର ଅଫିସର ରୂପେ କାର୍ଯ୍ୟ କରୁଥିବାବେଳେ ତାଙ୍କ ସହିତ ପୁଣି ଯୋଗାଯୋଗ ସ୍ଥାପିତ ହୁଏ । ସେ ସେତେବେଳକୁ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଥା'ନ୍ତି । ସେଇ ଉତ୍କଳ ବିଶ୍ୱବିଦ୍ୟାଳୟରେ ସୋସିଆଲ୍ ୱେଲ୍‌ଫେୟାର ପୋଷ୍ଟ ପ୍ରବର୍ତ୍ତନ

କରିବାକୁ ଚାହୁଁଥାନ୍ତି । ସେ ମୋତେ ପରାମର୍ଶଦାତା କମିଟିରେ ସଦସ୍ୟ ଭାବେ ରଖିଥିଲେ । ଏହି କମିଟିର ଏକାଧିକ ବୈଠକରେ ତାଙ୍କ ସହିତ ମିଶିବାର ଏବଂ ଆଲୋଚନା କରିବାର ସୌଭାଗ୍ୟ ଘଟିଥିଲା । ସେ ମୋ ଗଳ୍ପଗୁଡ଼ିକ ପଢ଼ି ବିଶେଷ ଆନନ୍ଦିତ ହୋଇଥିଲେ । ମୋର ଗଳ୍ପଗୁଡ଼ିକ ଉପରେ ଇଂରାଜୀରେ ଏକ ସମୀକ୍ଷାମୂଳକ ପ୍ରବନ୍ଧ ଲେଖିଥିଲେ । ତାହାର ଶୀର୍ଷକ ଥିଲା –

"An Evening with Sachi Rout-Roy" ଏ ପ୍ରବନ୍ଧଟିକୁ କଲିକତା ମଡର୍ଣ୍ଣଗିଭ୍ୟୁ ପ୍ରେସ୍ ଦ୍ୱାରା ୧୯୫୫ ମସିହାରେ ପ୍ରକାଶିତ ଇଂରାଜୀ ବହି "Sachi Rout-Roy— A Poet of the people" ପୁସ୍ତକରେ ସଂକଳନ କରି ଶ୍ରୀ ବସୁଧା ଚକ୍ରବର୍ତ୍ତୀ ସ୍ଥାନ ଦେଇଥିଲେ । ଏହି ପୁସ୍ତକରେ ତାଙ୍କ ସହିତ ଅନ୍ୟ ଯେଉଁ ମନୀଷୀମାନେ ମୋ ସାହିତ୍ୟକୃତି ଉପରେ ମୂଲ୍ୟାୟନସୂଚକ ପ୍ରବନ୍ଧମାନ ଲେଖିଥିଲେ ସେମାନେ ହେଲେ—ଡଃ କାଳିଦାସ ନାଗ, ହୁମାୟୁନ୍ କବୀର, ଡଃ କେ. ଆର୍. ଶ୍ରୀନିବାସ ଆୟଙ୍ଗାର, ପ୍ରଫେସର ବିଶ୍ୱନାଥ ସତ୍ୟନାରାୟଣା ପ୍ରଭୃତି । ଡଃ ପରିଜାଙ୍କ ପ୍ରବନ୍ଧର ଗୋଟିଏ ପଙ୍‌କ୍ତି ଏଠାରେ ଉଦ୍ଧାର କରାଗଲା—

"The short stories of Shri Satchi Rautroy deserve special mention. They portray the inner conflicts and the subtle tremors of the mind of average man in our country and stand unsurpassed in many ways for their clever delineation and humanistic approach. They depict the free life of the people in the context of the present day environs and multifarious problems and bear glaring evidence to his deep insight into the human nature vis-a-vis the socio-political reality."

ଡକ୍ଟର ପ୍ରାଣକୃଷ୍ଣ ପରିଜା ଥିଲେ ଜଣେ ଅମାୟିକ ଏବଂ କୃତବିଦ୍ୟ ମନୀଷୀ । ନିୟମାନୁବର୍ତ୍ତିତା ତାଙ୍କର ଗୋଟିଏ ପ୍ରଧାନ ଗୁଣ ଥିଲା । କୌଣସି ସଭାସମିତିକୁ ତାଙ୍କୁ ଡାକିଲେ ସେ ଠିକ୍ ସମୟରେ ଯାଇ ପହଞ୍ଚୁଥିଲେ । ଅନେକ ସମୟରେ ଦେଖାଯାଇଛି ଯେ ଡକ୍ଟର ପରିଜା ସଭାସ୍ଥଳରେ ପହଞ୍ଚିଲା ବେଳକୁ ଅନ୍ୟ କେହି ଲୋକ ପ୍ରାୟ ଆସି ନ ଥାନ୍ତି । ତାଙ୍କୁ ଅନେକ ସମୟ ଅପେକ୍ଷା କରିବାକୁ ପଡ଼େ ସଭାରେ ଲୋକ ସମାଗମ ହୋଇ ସଭା କାର୍ଯ୍ୟ ଆରମ୍ଭ ହେବା ପର୍ଯ୍ୟନ୍ତ ।

କଲିକତାରେ କେତୋଟି ସଭାସମିତିକୁ ଆମେ ତାଙ୍କୁ ଡାକିଥିଲୁ ଏବଂ ସମ୍ବର୍ଦ୍ଧନା ଜ୍ଞାପନ କରିଥିଲୁ । ସେ ଆନନ୍ଦର ସହିତ ଆମର ଆମନ୍ତ୍ରଣ ରକ୍ଷା କରିଥିଲେ । ତାଙ୍କଭଳି ଉଦ୍ଭିଦବିଦ୍ୟାରେ ପ୍ରବୀଣ ବିଦ୍ୱାନ ଖାଲି ଭାରତରେ କାହିଁକି ସମଗ୍ର ପୃଥିବୀରେ ବିରଳ ।

ମୁଁ ତାଙ୍କର ପୁଣ୍ୟ ସ୍ମୃତି ଉଦ୍ଦେଶ୍ୟରେ ନମସ୍କାର କରୁଛି ।

# ସେ ଏକ ବିରାଟ ବ୍ୟକ୍ତିତ୍ୱ

ସଦାଶିବ ମିଶ୍ର

ଅଧ୍ୟାପକ ପ୍ରାଣକୃଷ୍ଣ ପରିଜାଙ୍କର ପରଲୋକ ହୋଇଯାଇଛି । ଏ ଜାତିର ଜୀବନ ପ୍ରବାହରେ ଏକ ମହନୀୟ ଅଧ୍ୟାୟ ଅବସନ୍ନ ହୋଇ ଆସିଥିଲା । ସେ ଅଧ୍ୟାୟର ଅବସାନ ହୋଇଯାଇଛି ।

ବିଭିନ୍ନ କ୍ଷେତ୍ରରେ, ବିଭିନ୍ନ ପଦବୀରେ ଅନେକେ ଅଧିଷ୍ଠିତ ହୁଅନ୍ତି । ସେମାନେ ବହୁ ଲୋକଙ୍କଠାରୁ ପାଆନ୍ତି ସମ୍ମାନ, ସମ୍ବର୍ଦ୍ଧନା । ପାଆନ୍ତି ପଦବୀର ମର୍ଯ୍ୟାଦା ହିସାବରେ, ଲୌକିକତାର ପ୍ରବାହରେ, କ୍ଷମତାର ପ୍ରଭାବରେ କିମ୍ବା ପ୍ରସାଦର ଅଧିକାରୀ ଭାବରେ । ମାତ୍ର ଆଉ କେତେକ ଅଛନ୍ତି ଯାହାଙ୍କ ପାଖକୁ ଗଲେ ସ୍ୱତଃ ହାତ ଯୋଡ଼ି ହୋଇଯାଏ, ମସ୍ତକ ଅବନତ ହୋଇପଡ଼େ, ଅନ୍ତର ଆନନ୍ଦରେ ଉତ୍‌ଫୁଲ୍ଲ ହୋଇ ଆସେ । ଏଭଳି ବ୍ୟକ୍ତିତ୍ୱ ଅତି ବିରଳ । ଡକ୍ଟର ପରିଜା ଏହି ବିରଳ ଶ୍ରେଣୀର ଅନ୍ତର୍ଭୁକ୍ତ । ତାଙ୍କଠାରେ ଥିଲା ଏକ ବିରାଟ ଅସାଧାରଣ ବ୍ୟକ୍ତିତ୍ୱ ।

୧୯୬୮ ମସିହା ସେପ୍ଟେମ୍ବର ମାସ ୪ ତାରିଖ ଦିନ ରେଭେନ୍ସା କଲେଜର ଶତବାର୍ଷିକୀ ଉତ୍ସବରେ ଗୋଟିଏ ନୂଆ ଲାଇବ୍ରେରୀ ସୌଧର ଭିତ୍ତିପ୍ରସ୍ତର ସ୍ଥାପନ କରିବା ଲାଗି ଆସିଥିଲେ କେନ୍ଦ୍ର ସରକାରଙ୍କ ଶିକ୍ଷାମନ୍ତ୍ରୀ ଡକ୍ଟର ତ୍ରିଗୁଣା ସେନ୍ । ବହୁ ଲୋକ ସମବେତ ହୋଇଥିଲେ । ସେମାନଙ୍କ ମଧ୍ୟରେ ଥିଲେ ଡକ୍ଟର ପରିଜା । ଭିତ୍ତିପ୍ରସ୍ତର ସ୍ଥାପନ କରିବା ପାଇଁ ଯିବା ବେଳକୁ ଡକ୍ଟର ତ୍ରିଗୁଣା ସେନ୍‌ଙ୍କର ହଠାତ୍ ଆଖି ପଡ଼ିଗଲା ଡକ୍ଟର ପରିଜାଙ୍କ ଉପରେ । ସଙ୍ଗେ ସଙ୍ଗେ ତାଙ୍କ ନିକଟକୁ ଯାଇ ତାଙ୍କର ପାଦ ସ୍ପର୍ଶ କରି ଗଲେ ଭିତ୍ତିପ୍ରସ୍ତର ନିକଟକୁ ।

ଭାରତବର୍ଷର ପ୍ରତ୍ୟେକ ବିଶ୍ୱବିଦ୍ୟାଳୟରେ ପରିଜାଙ୍କ ନାମ ଅତି ସୁପରିଚିତ । ପଣ୍ଡିତ ଏବଂ ନିଷ୍ଠାପର ଶିକ୍ଷାବିତ୍ ଭାବରେ ସେ ଅଶେଷ ଖ୍ୟାତି ଅର୍ଜନ କରିଥିଲେ । ଓଡ଼ିଶାରେ ସର୍ବତ୍ର ତାଙ୍କର ଅଗଣିତ ଛାତ୍ର, ସହକର୍ମୀ ଏବଂ ଗୁଣମୁଗ୍ଧ ଆହୁରି ଅନେକେ ଯେଉଁଭଳି ଭାବରେ ତାଙ୍କର ସାନ୍ନିଧ୍ୟ ଲାଭ କରିଛନ୍ତି, ସେ ସମସ୍ତ ହୋଇଛି ସେମାନଙ୍କର ଅଲିଭା ଆହରଣ ।

ଅଧ୍ୟାପକ ପରିଜା ଅଧ୍ୟାପକ । ଜୀବନବ୍ୟାପୀ ଅଧ୍ୟାପକ । ଶିକ୍ଷକତା ତାଙ୍କର ମହନୀୟତା । ଶିକ୍ଷକଙ୍କର କର୍ତ୍ତବ୍ୟ ଛାତ୍ରଙ୍କୁ ଶିକ୍ଷାଦାନ କରିବେ ଏବଂ ନୂତନ ଜ୍ଞାନର

ସନ୍ଧାନରେ ନିମଗ୍ନ ରହିବେ । ଏ ଉଭୟ କ୍ଷେତ୍ରରେ ଅଧ୍ୟାପକ ପରିଜା ଖ୍ୟାତି ଲାଭ କରିଥିଲେ । ଆନ୍ତର୍ଜାତିକ କ୍ଷେତ୍ରରେ ଉଦ୍ଭିଦବିଜ୍ଞାନରେ କୃତିତ୍ୱ ଅର୍ଜନ କରିଥିଲେ । ଭାରତୀୟ ବିଜ୍ଞାନ କଂଗ୍ରେସର ସଭାପତି ହୋଇଥିଲେ । ମାତ୍ର ଏତିକିରେ ଶିକ୍ଷକତା ପରିପୂର୍ଣ୍ଣ ହୁଏ ନାହିଁ । ରବୀନ୍ଦ୍ରନାଥ ଠାକୁର ଲେଖିଛନ୍ତି, ଶିକ୍ଷକ ଛାତ୍ରମାନଙ୍କୁ କେବଳ ବିଦ୍ୟାଦାନ କଲେ 'ମାଷ୍ଟର ମଶାୟ' ହୋଇପାରନ୍ତି, ମାତ୍ର ସେଥିରେ ଅନ୍ତରର ବିନିମୟ ପ୍ରତିଷ୍ଠିତ ହୋଇପାରେ ନାହିଁ । ଅଧ୍ୟାପକ ପରିଜାଙ୍କର ଶିକ୍ଷକତାରେ ଥିଲା ଏହି ଅନ୍ତର ବିନିମୟର ମହତ୍ତ୍ୱ । ସେଥିରେ ସେ ଛାତ୍ରମାନଙ୍କୁ ଅନୁପ୍ରାଣିତ କରୁଥିଲେ । ଶିକ୍ଷାନୁଷ୍ଠାନରେ ଏକ ଜୀବନ୍ତ ସ୍ପନ୍ଦନ ସୃଷ୍ଟି କରିପାରୁଥିଲେ । ମୁଁ ଯେତେବେଳେ ଭାରତବର୍ଷର ବିଭିନ୍ନ ବିଶ୍ୱବିଦ୍ୟାଳୟକୁ କାର୍ଯ୍ୟ ଉପଲକ୍ଷେ ଯାଇଛି ସେଠାରେ ବୟୋଜ୍ୟେଷ୍ଠ ବିଜ୍ଞ ବ୍ୟକ୍ତିମାନେ ସବୁବେଳେ ମତେ ପଚାରନ୍ତି, "ଡକ୍ଟର ପରିଜା କିପରି ଅଛନ୍ତି ?" ସମସ୍ତେ ତାଙ୍କୁ ପ୍ରଶଂସା କରନ୍ତି ।

କୃତୀ ଛାତ୍ର ଭାବରେ ବୃତ୍ତି ଉପାର୍ଜନ କରି ପରିଜା ଗଲେ ବିଲାତ । କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କଲେ । ଡିଗ୍ରୀ ପାଇସାରି ଗବେଷଣା କଲେ । ୧୯୧୪ ଠାରୁ ୧୯୨୧ ପର୍ଯ୍ୟନ୍ତ ସେଠାରେ ରହିଲେ । ଏହି ସାତ ବର୍ଷ ରହଣି କାଳ ମଧ୍ୟରେ ସେ କେମ୍ବ୍ରିଜର ବାତାବରଣରେ ପରିପୁଷ୍ଟ ହୋଇଥିଲେ । କେମ୍ବ୍ରିଜର ଶୃଙ୍ଖଳିତ ଜୀବନରେ ପରିପ୍ଳୁତ ହୋଇଥିଲେ । ପୂର୍ବରୁ ଛାତ୍ର ଜୀବନରେ ଯେଉଁ ନିଷ୍ଠା ଏବଂ ବିନିଯୋଗ ତାଙ୍କୁ ବିଦେଶରେ ଅଧ୍ୟୟନ ଲାଗି ଉପଯୁକ୍ତ କରିଥିଲା, ତାହାର ପରିଣତି ସାଧନ ପାଇଁ ଉପଯୁକ୍ତ କ୍ଷେତ୍ର ମିଳିଲା କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ।

ଡକ୍ଟର ପରିଜା ନୀତି, ଚରିତ୍ର କିମ୍ବା ଆଚାର ପଦ୍ଧତି ବିଷୟରେ କୌଣସି ପ୍ରବନ୍ଧ ଲେଖି ନାହାନ୍ତି; କୌଣସି ଭାଷଣ ଦେଇ ନାହାନ୍ତି । ମାତ୍ର ତାଙ୍କର କୌଣସି ଛାତ୍ର ଛାତ୍ରଜୀବନ ପରେ ପରିଣତ ବୟସରେ ମଧ୍ୟ ତାଙ୍କ ସମ୍ମୁଖରେ ପାନ, ସିଗାରେଟ୍ ଖାଇବାର ସାହସ କରିପାରି ନାହାନ୍ତି ।

ପୂର୍ବେ ଭାରତୀୟ ଛାତ୍ରମାନେ ବିଲାତରେ ପଢ଼ିବା ପାଇଁ ଗଲେ ସେମାନଙ୍କୁ ଆଚାର ପଦ୍ଧତି ସମ୍ବନ୍ଧରେ ଏକ ନିର୍ଦ୍ଦେଶପତ୍ର ମିଳୁଥିଲା । ସେଥିରୁ ଗୋଟିଏ ନିର୍ଦ୍ଦେଶ ସେ ଅନେକଥର ପ୍ରକାଶ କରିଛନ୍ତି । ସେଥିରେ ଥିଲା – ଘନ ଘନ ବୃଷ୍ଟି କିମ୍ବା ତୁଷାର ବୃଷ୍ଟି ଲାଗି କୌଣସି କାର୍ଯ୍ୟକ୍ରମରେ ଅନୁପସ୍ଥିତି କ୍ଷମଣୀୟ ବିବେଚିତ ହେବ ନାହିଁ ।

କଥାରେ ଅଛି, ଜର୍ମାନୀର ବିଖ୍ୟାତ ଦାର୍ଶନିକ ଇମାନୁଏଲ୍ କାଣ୍ଟ ତାଙ୍କର ଦୈନନ୍ଦିନ କର୍ମରେ ଏଭଳି ସମୟାନୁବର୍ତ୍ତିତା ଆଚରଣ କରୁଥିଲେ ଯେ ତାଙ୍କୁ ବୁଲିଯିବାର ଦେଖିଲେ ଲୋକେ ଘଡ଼ିର ସମୟ ମିଳାଇ ଦେଉଥିଲେ । କୌଣସି ସଭାସମିତି ଉତ୍ସବ ଅନୁଷ୍ଠାନରେ ଡକ୍ଟର ପରିଜାଙ୍କୁ କେବେ ଗୋଟିଏ ମିନିଟ୍ ବିଳମ୍ବ ହେବାର କେହି ଦେଖି

ନାହିଁ । ତାଙ୍କର ସମୟାନୁବର୍ତ୍ତିତା ଜାତୀୟ ସ୍ତରରେ ଏକ ବହୁଚର୍ଚ୍ଚିତ ବିଷୟ ଥିଲା । ଅନୁଶାସନର କୃତିତ୍ୱରେ ଏହା ଥିଲା ଏକ ଅପରିହାର୍ଯ୍ୟ ଚାବିକାଠି ।

ଥରେ ଡକ୍ଟର ପରିଜା ଗୋଟିଏ ଘଟଣା ବର୍ଣ୍ଣନା କରିଥିଲେ । ସେ ରେଭେନ୍ସା କଲେଜର ଅଧ୍ୟକ୍ଷ ଥିଲେ । କଲେଜର ଗ୍ରୀଷ୍ମାବକାଶ ହୋଇଥାଏ । ତାଙ୍କର ଜଣେ ଉପରିସ୍ଥ ପ୍ରଭୁ ତାଙ୍କୁ ସକାଳ ୭ଟାରେ ତାଙ୍କ ବାସଭବନକୁ ଆସିବାକୁ କହିଥିଲେ । ସେ ତାଙ୍କ ବାସଭବନରେ ଠିକ୍ ୭ଟାରେ ଯାଇ ପହଞ୍ଚିଥିଲେ । ସେଠି କୌଣସି ଲୋକ ତାଙ୍କୁ ସ୍ୱାଗତ କରିବାକୁ ନ ଥିଲେ । ସେ ଅପେକ୍ଷା କଲେ । ଅଧଘଣ୍ଟାଏ ପରେ ଉପରିସ୍ଥ ପ୍ରଭୁ ବାହାରକୁ ଆସିଲେ ଓ ପ୍ରଫେସର ପରିଜାଙ୍କୁ ଦେଖି କହିଲେ, ‘‘ପରିଜାସାହେବ, ଆପଣ ଏତେ ସକାଳୁ ଆସି ପହଞ୍ଚି ଯାଇଛନ୍ତି ! ମୁଁ ଅଳ୍ପ କେତେ ମିନିଟ୍ ମଧ୍ୟରେ ପ୍ରସ୍ତୁତ ହୋଇ ଆସୁଛି ।’’ ପ୍ରଫେସର ପରିଜା ଉତ୍ତର ଦେଲେ, ‘‘ବ୍ୟସ୍ତ ହବାର କିଛି ନାହିଁ, ମୁଁ ଅପେକ୍ଷା କରୁଛି ।’’ ତତ୍‌ପରେ ପ୍ରଭୁଙ୍କ ସହ କଥାବାର୍ତ୍ତା ସମୟରେ ତାଙ୍କୁ ଗୋଟିଏ ଗଳ୍ପ କହିଲେ । ‘‘ଜଣେ ଇଂରେଜ ଭଦ୍ରବ୍ୟକ୍ତି ଏକଦା ତାଙ୍କର ଜଣେ ବନ୍ଧୁ ଫ୍ରାନ୍ସ ଦେଶର ଅଧିବାସୀଙ୍କୁ ରାତ୍ରିଭୋଜନ ପାଇଁ ରାତ୍ରି ୭ ଘଣ୍ଟା ବେଳକୁ ନିମନ୍ତ୍ରଣ କରିଥିଲେ । ଫରାସୀ ଭଦ୍ରବ୍ୟକ୍ତି ରାତ୍ରି ୮ ଘଣ୍ଟାରେ ବନ୍ଧୁଙ୍କ ଘରେ ଆସି ପହଞ୍ଚିଲେ, ଦେଖିଲେ ଯେ ରାତ୍ରିଭୋଜନ ଶେଷ ହୋଇଯାଇଛି । ତତ୍‌ପରେ ବିରକ୍ତ ହୋଇ କହିଲେ, ‘‘ହତଭାଗ୍ୟ ଇଂରେଜ ଲୋକ ! ଯେତେବେଳେ ସେ ୭ ଘଣ୍ଟା କହନ୍ତି, ସେ ନିର୍ଦ୍ଦିଷ୍ଟ ୭ ଘଣ୍ଟା ବୋଲି ବୁଝନ୍ତି ।’’

ସେ କାଳରେ ଯେଉଁମାନେ ବିଲାତ ଯାଉଥିଲେ, ବହୁବର୍ଷ ସେ ଦେଶରେ ରହୁଥିଲେ, ସେମାନେ ବିଲାତ ଚାଲିଚଳନ, ଆଚାର ବ୍ୟବହାର ସମସ୍ତ ପୂର୍ଣ୍ଣମାତ୍ରାରେ ଆହରଣ କରି ଆସୁଥିଲେ । ଡକ୍ଟର ପରିଜା ଏହାର ଏକ ବିଲକ୍ଷଣ । କୌଣସି ମାଦକ ଦ୍ରବ୍ୟ ତ ଦୂରର କଥା, ଧୂମପାନ ମଧ୍ୟ ସେ କେବେହେଲେ କରି ନାହାନ୍ତି । ସେଠାରେ ଯେଉଁ ବିଧି, ନିୟମ, ନୀତି, ଶୃଙ୍ଖଳା ସେ ଶୁଦ୍ଧ ସଂଯତ ବୋଲି ବିବେଚନା କରିଛନ୍ତି, ତାହାକୁ ସେ ନିଜସ୍ୱ କରିଛନ୍ତି । ଭାରତୀୟ ସଂସ୍କୃତିର ନିକିତିରେ ଯାହାକୁ ସେ ବର୍ଜନୀୟ ବୋଲି ବିଚାର କରିଛନ୍ତି, ତାହାକୁ ସେ ବହୁ ଦୂରରୁ ପରିହାର କରିଛନ୍ତି ।

ବ୍ରହ୍ମପୁର ଖଲିକୋଟ କଲେଜର ପୂର୍ବତନ ଅଧ୍ୟକ୍ଷ ସ୍ୱର୍ଗତ ନରସିଂହ ପାଢ଼ୀ ଏକ କୌତୂହଳୋଦ୍ଦୀପକ ଗଳ୍ପ କେତେଥର କହିଛନ୍ତି । ଯେତେବେଳେ ପ୍ରଫେସର ପରିଜା ବିଲାତରୁ ଫେରି କଟକରେ ଭାରତୀୟ ଶିକ୍ଷା ସେବା (Indian Educational Service) ରେ ଯୋଗଦାନ କରିଥିଲେ ସେତେବେଳେ ଗୋଟିଏ ଉଚ୍ଚ ଇଂରାଜୀ ସ୍କୁଲରେ ସେ ଶିକ୍ଷକ ଥିଲେ । ଗ୍ରୀଷ୍ମାବକାଶ ହୋଇଥାଏ ଓ ପ୍ରଫେସର ପରିଜା ଗୋପାଳପୁରରେ

ଅବସ୍ଥାନ କରୁଥାନ୍ତି । ଶ୍ରୀ ପାଢ଼ୀଙ୍କ ମନରେ କୌତୂହଳ ଜାଗ୍ରତ ହେଲା, ଜଣେ ଆଇ. ଇ. ଏସ୍. ଲୋକ ଦେଖିବାକୁ କିପରି ହୋଇଥିବେ । ସେ ପ୍ରଫେସର ପରିଜାଙ୍କୁ ଦେଖିବାକୁ ଗୋପାଳପୁର ଗଲେ । ଆଶ୍ଚର୍ଯ୍ୟାନ୍ୱିତ ହୋଇ ଦେଖିଲେ ଯେ ଏହି ବରେଣ୍ୟ ଆଇ. ଇ. ଏସ୍. ଅଫିସରଜଣକ ଅନ୍ୟ ଯେ କୌଣସି ସାଧାରଣ ଭଦ୍ରବ୍ୟକ୍ତିଙ୍କ ଭଳି ଜଣେ ଲୋକ । ଶ୍ରୀ ପାଢ଼ୀ ତାଙ୍କ ସହିତ ସାକ୍ଷାତ କରିଥିଲେ, ପ୍ରଫେସର ପରିଜା ସହୃଦୟତାର ସହିତ ତାଙ୍କ ସହିତ ବେଶ୍ ଦୁଇ ଚାରିପଦ କଥାବାର୍ତ୍ତା ହୋଇଥିଲେ । ପ୍ରଫେସର ପରିଜାଙ୍କର କେବେହେଲେ ବୃଥା ଆଡ଼ମ୍ବରପୂର୍ଣ୍ଣ ଛଳନା ନ ଥିଲା ।

ପ୍ରଫେସର ପରିଜା ସକାଳୁ ଚା' ଖାଆନ୍ତି । ନିଜେ ସେ ଚା ତିଆରି କରନ୍ତି । ଜୋତା ପ୍ରତିଦିନ ପରିଷ୍କାର କରାଯିବ । ଚା' ଖାଇସାରି ଜୋତା ପାଲିସ୍ କରନ୍ତି । ସକାଳ ୭ଟା ବେଳକୁ ପୋଷାକପତ୍ର ପିନ୍ଧି ପ୍ରସ୍ତୁତ । ଠିକ୍ ନଅଟା ବେଳେ ଲାବୋରେଟୋରୀରେ ଉପସ୍ଥିତ । ଷୋହଳ ବର୍ଷ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ରହି ଅବସର ଗ୍ରହଣ କଲାପରେ ପୁଣି ରେଭେନ୍ସା କଲେଜରେ ଗବେଷଣାରେ ଲାଗିଲେ । ସେ ବୟସରେ ମଧ୍ୟ ଠିକ୍ ନଅଟା ବେଳେ ଉଦ୍ଭିଦବିଜ୍ଞାନ ଗବେଷଣାଗାରରେ ଉପସ୍ଥିତ । ଏଥିରେ ପ୍ରତିଭାତ ହୋଇଛି ଛାତ୍ର ଓ ସହକର୍ମୀମାନଙ୍କ ସହିତ ଅନ୍ତରର ବିନିମୟ । ବକ୍ତୃତାରେ ନୁହେଁ, ଉପଦେଶରେ ନୁହେଁ, ନିଜର ବ୍ୟକ୍ତିଗତ ଅନୁଶୀଳନରେ ।

ସମୟ ମିଳିଲେ ପ୍ରଫେସର ପରିଜା ଗଳ୍ପ କରନ୍ତି । ସେ ସୁଯୋଗ ଯେ ପାଇଛି ସେ ସବୁ ଗଳ୍ପର ତାତ୍ପର୍ଯ୍ୟ ସବୁବେଳେ ମନେ ରଖିଥିବ । ଡକ୍ଟର ପରିଜା ଉଦ୍ଭିଦବିଜ୍ଞାନୀ । ମାତ୍ର ତାଙ୍କର ଜ୍ଞାନର ପରିସର ବିସ୍ତୀର୍ଣ୍ଣ । ରାମାୟଣ, ମହାଭାରତ, ପୁରାଣ, ଇତିହାସ, ଢଗଢମାଳୀ, କଥାକଥନୀ – ଏ ସକଳ ବିଷୟରେ ଏଭଳି ପ୍ରବେଶ, ନ ଶୁଣିଲେ ବିଶ୍ୱାସ କରିହେବ ନାହିଁ । ଯେ କୌଣସି କଥା ପଡ଼ିଥିବା ବେଳେ ଠିକ୍ ଗୋଟିଏ ଖାପିବାଭଳି ପ୍ରବାଦ ବା କଥନୀଟିଏ ଉଦ୍ଧାର କରିଦେବେ । ସାତବର୍ଷ କେମ୍ବ୍ରିଜ ଅଧିବାସ ପରେ ଭାରତୀୟ ସଂସ୍କୃତି, ଉତ୍କଳୀୟ ପରମ୍ପରା ସମ୍ବନ୍ଧରେ ତାଙ୍କର ଥିଲା ଗଭୀର ଅଭିନିବେଶ । ଭାରତୀୟ ଓ ପାଶ୍ଚାତ୍ୟ ସଂସ୍କୃତିର ଏ ଅପୂର୍ବ ସଂଯୋଗ ପ୍ରସ୍ତୁତ କରିଥିଲା ଅନ୍ତର ବିନିମୟର ଏକ ସଞ୍ଚାର ମାର୍ଗ । ଏହି ବିନିମୟ ସୃଷ୍ଟି କରିଥିଲା ଏକ ଅସାଧାରଣ ବ୍ୟକ୍ତିତ୍ୱ ।

ଏ ସକଳ ସିଦ୍ଧିର ସମ୍ମିଶ୍ରଣରେ ଯେଉଁ ବିରାଟ ବ୍ୟକ୍ତିତ୍ୱ ପରିସ୍ଫୁଟ ହୋଇଥିଲା ସେ ବ୍ୟକ୍ତିତ୍ୱର ଶାରୀରିକ ଅବସାନ ହୋଇଯାଇଛି । ମାତ୍ର ସେ ମହନୀୟ ଆଦର୍ଶର କ'ଣ ଅବସାନ ହୋଇପାରେ ?

(ଶ୍ରୀ ବିବେକାନନ୍ଦ ପଟ୍ଟନାୟକଙ୍କ ମୁଖ୍ୟ ସଂପାଦନାରେ ପ୍ରକାଶିତ 'ଉତ୍କଳ ପ୍ରସଙ୍ଗ' ସ୍ୱତନ୍ତ୍ର ସଂଖ୍ୟା ୧୯୭୮ରୁ ଗୃହୀତ । ତତ୍ ସହିତ ଏହି ପ୍ରବନ୍ଧର କିୟଦଂଶ ଅନ୍ୟ ଏକ ମୂଳ ଇଂରାଜୀ ଲେଖାରୁ ଡକ୍ଟର ଗଦାଧର ମିଶ୍ରଙ୍କ ଦ୍ୱାରା ଓଡ଼ିଆରେ ଅନୂଦିତ ।)

# ସାହିତ୍ୟିକ ଶ୍ରୀଯୁକ୍ତ ପରିଜା

**ସରଳା ଦେବୀ**

ଆମ ପଡ଼ିଶା ଗାଁର ଗରିବ କିନ୍ତୁ ଅତି ବଡ଼ ପାଠୁଆ ଲୋକ ଭାବେ ଏବଂ ମୋର ପିତା ବାସୁଦେବ କାନୁନଗୋଙ୍କ ସ୍ନେହ ପୁତ୍ର ଭାବେ ପ୍ରାଣକୃଷ୍ଣ ପରିଜାଙ୍କୁ ମୁଁ ବାଲ୍ୟାବସ୍ଥାରୁ ଜାଣିଥିଲି । ତାହା କିନ୍ତୁ ଘନିଷ୍ଠତର ହେଲା ଯେତେବେଳେ ବିଲାତରୁ ଫେରି କଟକରେ ଆମ ଘରକୁ ସବୁବେଳେ ଯିବାଆସିବା କଲେ, କାରଣ ମୋର ସ୍ୱାମୀ ଭାଗୀରଥି ମହାପାତ୍ର ଥିଲେ ଦୀର୍ଘ ବାରବର୍ଷ ଧରି ତାଙ୍କର ସହପାଠୀ ଏବଂ ଅନ୍ତରଙ୍ଗ ବନ୍ଧୁ । ତା' ପରେ ସେ ବିବାହ କଲେ ମୋର ଜଣେ ଆତ୍ମୀୟାଙ୍କୁ ଯାହାଙ୍କୁ କି ଆମ ସାମାଜିକ କୁସଂସ୍କାରମାନ ଛାଡ଼ି ନବାଲୋକ ପ୍ରତି ଆକୃଷ୍ଟ କରିବା ଦାୟିତ୍ୱ ମୋତେ ସେ ଦେଇଥିଲେ ।

ମନେପଡ଼େ ତାଙ୍କର ପ୍ରଥମ ସାମାଜିକ ଭେଟ ଆମମାନଙ୍କ ସହିତ ୧୯୨୧ରେ ସ୍ୱରାଜ ଆଶ୍ରମରେ । ଧୋତି, ପଞ୍ଜାବି, ଚାଦର ପିନ୍ଧି ସେ ଆସିଥାନ୍ତି ସେଠାକୁ, ସାହେବ ରହଣି, ଚଳଣି, ଖାଦ୍ୟ, ପୋଷାକ ପିନ୍ଧି ସାହେବ ବୋଲାଇ, ସାହେବ ସରକାରଙ୍କ ଦ୍ୱାରା ସମ୍ମାନିତ ପଦବୀ O.B.E. ପାଇ ମଧ୍ୟ ସେ ଓଡ଼ିଆ, ସଂସ୍କୃତ ସାହିତ୍ୟ ଏବଂ ଭାଷାର ଏକ ପ୍ରବୀଣ ପୃଷ୍ଠପୋଷକ ତଥା ଅନୁଗାମୀ ଥିଲେ । ବିଦେଶୀ ସଭ୍ୟତାର ସଦ୍‌ଗୁଣ ସେ ଗ୍ରହଣ କରି ବଦ୍‌ଗୁଣ ସବୁକୁ ପରିତ୍ୟାଗ କରିଥିଲେ । ଘଣ୍ଟା ମିନିଟ୍‌ର ସମୟାନୁବର୍ତ୍ତିତା ସେ ଆଜୀବନ ପାଳନ କରୁଥିଲେ ମଧ୍ୟ ସିଗାରେଟ୍‌ଟିଏ ବି ପିଉ ନ ଥିଲେ । ଇମ୍ପିରିଆଲ ଚାକିରିରେ ଥାଇ ମଧ୍ୟ ସେ ସଦାସର୍ବଦା ଭାରତର ସ୍ୱାଧୀନତା ଆନ୍ଦୋଳନକୁ ଅକୁଣ୍ଠିତ ସାହାଯ୍ୟ କରୁଥିଲେ ।

କଲିକତାରେ ପଢ଼ିବା କାଳରୁ ସେ ଓଡ଼ିଆ ପତ୍ରପତ୍ରିକାରେ ବିଜ୍ଞାନ ବିଷୟରେ ଲେଖାଲେଖି କରୁଥିଲେ । ବିଲାତରୁ ଫେରି "ଉତ୍କଳ ସାହିତ୍ୟ", "ମୁକୁର", "ସହକାର", "ଆଲୋକ" ତଥା ଅନ୍ୟାନ୍ୟ ପତ୍ରପତ୍ରିକାରେ ବରାବର ବିଜ୍ଞାନ ବିଷୟରେ ନାନା ପ୍ରବନ୍ଧମାନ ସରଳ ଓ ସହଜ ଭାଷାରେ ଲେଖୁଥିଲେ । ଓଡ଼ିଆରେ ସାହିତ୍ୟରେ ବିଜ୍ଞାନ ବିଭାଗର ଅଗ୍ରଣୀ ସେ ଥିଲେ । ଏଥିଯୋଗୁଁ ଉତ୍କଳ ସାହିତ୍ୟ ସମାଜ ତାଙ୍କୁ ସଭ୍ୟରୂପେ ଗ୍ରହଣ କଲା । ଦୁଇଥର ସଭାପତି, ବର୍ଷ ବର୍ଷ ଧରି କାର୍ଯ୍ୟକାରୀ କମିଟିର ସଭ୍ୟଭାବେ ସେ ସମାଜରେ ରହିଥିଲେ । ଲକ୍ଷ୍ମୀନାରାୟଣ ସାହୁ ଥାଆନ୍ତି ସମ୍ପାଦକ, ମୁଁ ବି କାର୍ଯ୍ୟକାରୀ କମିଟିର ସଭ୍ୟ ଥାଏ ।

ସଂସ୍କୃତ ଭାଷାରେ ଗଭୀର ଜ୍ଞାନ, ପ୍ରାଚୀନ ଓଡ଼ିଆ ସାହିତ୍ୟ ଉପରେ ଦଖଲ ଓ ଚର୍ଚ୍ଚା ଫଳରେ ସେ ସାହିତ୍ୟସମାଜ ସହ ସଂପୃକ୍ତ ହେଲେ । ମାସକୁ ମାସ ସାହିତ୍ୟ ଆଲୋଚନା ସଭା ସମାଜରେ ହୁଏ । ବିଭିନ୍ନ ସାହିତ୍ୟିକମାନେ ଓଡ଼ିଆ ସାହିତ୍ୟ, ସଂସ୍କୃତି, ଭାଷା ବିଷୟରେ ଗବେଷଣାତ୍ମକ ପ୍ରବନ୍ଧମାନ ପଢ଼ନ୍ତି, ଆଲୋଚନା ହୁଏ । ସଭାପତି ଭାବେ ସେ ତାଙ୍କର ଭାଷଣ ମଧ ଦିଅନ୍ତି । ଖାଣ୍ଟି ଓଡ଼ିଆ ଗାଉଁଲି ଭାଷାରେ, ଗୋଟିଏ ହେଲେ ବି ଇଂରାଜୀ ଶବ୍ଦ ଭୁଲକ୍ରମେ ତାଙ୍କ ଭାଷଣରେ ସ୍ଥାନ ପାଏନା । କି ଆଶ୍ଚର୍ଯ୍ୟ !

ବିଲୁପ୍ତ ପ୍ରାୟ ପ୍ରାଚୀନ ଓଡ଼ିଆ ସାହିତ୍ୟ ଏବଂ ସଂସ୍କୃତିର ପୁନରୁଦ୍ଧାର ପାଇଁ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଓ ଶ୍ରୀ ବିଚ୍ଛନ୍ଦ ଚରଣ ପଟ୍ଟନାୟକ ପ୍ରଭୃତିଙ୍କ ଉଦ୍ୟମରେ ଯେଉଁ "ପ୍ରାଚୀ ସମିତି" ଗଠିତ ହୋଇଥିଲା, ତହିଁରେ ପ୍ରଫେସର ପରିଜା ଜଣେ ମୁଖ୍ୟ ଅଂଶୀଦାର ଥିଲେ । ଅନେକ ପ୍ରାଚୀନ ଓଡ଼ିଆ ଲେଖା ସେ ଇଂରାଜୀରେ ଅନୁବାଦ କରି ଭାରତ ବାହାର ପତ୍ରିକାମାନଙ୍କରେ ଛପାଇ ଓଡ଼ିଆ ପ୍ରାଚୀନ ସାହିତ୍ୟର ମହତ୍ତ୍ୱକୁ ବିଶ୍ୱଲୋକଲୋଚନକୁ ଆଣିଥିଲେ ।

ଓଡ଼ିଆ ଭାଷାକୁ ପରିପୁଷ୍ଟ ଓ ଅଭିବୃଦ୍ଧି କରିବା ପାଇଁ ସେ ବିଦେଶୀ ଭାଷାର ବୈଜ୍ଞାନିକ ଶବ୍ଦ ତଥା ସଂଜ୍ଞାମାନଙ୍କର ଓଡ଼ିଆ ପରିଭାଷା ଉଦ୍ଭାବନ ଏବଂ ପ୍ରଚଳନ ପାଇଁ ପ୍ରଗାଢ଼ ଉଦ୍ୟମ କେବଳ ଯେ ନିଜ ଲେଖା ଓ ବକ୍ତବ୍ୟମାନଙ୍କରେ କରୁଥିଲେ, ତା ନୁହେଁ, ଅନ୍ୟାନ୍ୟ ଓଡ଼ିଆ ବୈଜ୍ଞାନିକମାନଙ୍କୁ ଏ କାର୍ଯ୍ୟରେ ପ୍ରେରଣା ଓ ନିର୍ଦ୍ଦେଶ ଦେଇ କରାଉଥିଲେ । ଓଡ଼ିଶା ବିଜ୍ଞାନ ପ୍ରଚାର ସମିତି, ଉତ୍କଳ ବିଶ୍ୱବିଦ୍ୟାଳୟର ପରିଭାଷା କମିଟି ସ୍ଥାପନ କରି ତାଙ୍କର ଏତାଦୃଶ ଉଦ୍ୟମକୁ ସଫଳକାମୀ ସେ କରିଥିଲେ ।

ଉତ୍କଳ ସାହିତ୍ୟସମାଜର କେନ୍ଦ୍ର କାର୍ଯ୍ୟାଳୟ ଶ୍ରୀରାମଚନ୍ଦ୍ର ଭବନ ନିର୍ମାଣରେ, ତହିଁରେ ପାଠାଗାର ସ୍ଥାପନରେ, ସାହିତ୍ୟସମାଜ ଆନୁକୂଲ୍ୟରେ ବିଭିନ୍ନ ସାହିତ୍ୟିକ ପ୍ରତିଯୋଗିତା ଅୟୋଜନରେ, ତାଙ୍କର କାର୍ଯ୍ୟ ଓ ଦାନ ଏବେ ମଧ ଲିପିବଦ୍ଧ । ସାହିତ୍ୟସମାଜର ପୁରାତନ କାଗଜପତ୍ର ଖାତା ଆଦି ଖୋଜିଲେ ତାହା ବାହାରିବ । ଧର୍ମଧ୍ୱଜି ନ ହୋଇ ମଧ ନୀତି, ନିୟମ, ଆଦର୍ଶ, ଅଧ୍ୟବସାୟ, ସ୍ୱାବଲମ୍ବନ, ତ୍ୟାଗ, ଅନାଶକ୍ତ କର୍ମଯୋଗ ତାଙ୍କ ଚରିତ୍ରର ମୂଳଭିତ୍ତି ଥିଲା ।

ଓଡ଼ିଆ ଭାଷା ଓ ସାହିତ୍ୟ ଏବଂ ସଂସ୍କୃତିକୁ ତାଙ୍କର ଦାନ ଅତୁଳନୀୟ । ତାଙ୍କର ପ୍ରଜ୍ଞା ଓଡ଼ିଆ ଜାତିର ମଥା ଉନ୍ନତ କରିଛି । ପ୍ରଫେସର ପରିଜା ଓଡ଼ିଶାର, ଓଡ଼ିଆର, ଭାରତୀୟ ସଂସ୍କୃତିର କାଳକାଳକୁ ଦେଶର ଓ ଜାତିର ଏକ ଅବିସ୍ମରଣୀୟ, ଜାଜ୍ୱଲ୍ୟମାନ ଆଦର୍ଶ ପୁରୁଷ ହୋଇ ରହିବେ ।

(ଶ୍ରୀ ବିବେକାନନ୍ଦ ପଟ୍ଟନାୟକଙ୍କ ମୁଖ୍ୟ ସଂପାଦନାରେ ପ୍ରକାଶିତ 'ଉତ୍କଳ ପ୍ରସଙ୍ଗ' ସ୍ୱତନ୍ତ୍ର ସଂଖ୍ୟା, ୧୯୭୮ରୁ ଗୃହୀତ)

# ଏକ ସ୍ଥିତଧୀ କର୍ମଯୋଗୀ

**ସାମୁଏଲ ଦାସ**

ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କୁ ଜଣେ ପ୍ରସିଦ୍ଧ ବୈଜ୍ଞାନିକ ଓ ମହାନ୍ ଶିକ୍ଷାବିତ୍ ହିସାବରେ ଉଚ୍ଚପ୍ରଶଂସା କଲାବେଳେ ସେ ଯେ ଜଣେ ଅତି ଉଚ୍ଚକୋଟୀର ମଣିଷ ଥିଲେ ଏକଥାକୁ ନ୍ୟୂନ କରି ଦେଖିବା ଉଚିତ ନୁହେଁ । କେତେକ ଲୋକ ବଡ଼ ହୋଇ ଜନ୍ମ ହୁଅନ୍ତି ଆଉ କେତେକ ନିଜ ଉଦ୍‌ଯୋଗ ବଳରେ ବଡ଼ମଣିଷ ହୁଅନ୍ତି ।

ସଭ୍ୟ ସୁଶିକ୍ଷିତ ସମାଜଠାରୁ ସୁଦୂର ଏକ ପଲ୍ଲୀ ଗ୍ରାମରେ ଗୋଟିଏ ଗରିବ ପରିବାରରେ ଜନ୍ମଗ୍ରହଣ କରି ଏବଂ ଶୈଶବ ଓ କୈଶୋର ବିଶେଷ କରି ଉଜ୍ଜ୍ୱଳ ଭବିଷ୍ୟତ୍ ସମ୍ପନ୍ନ ନ ଥିବା ବାତାବରଣରେ କଟାଇ ଜୀବନରେ ସୁବିଧା ସୁଯୋଗ ଲାଭ କରିବା ପାଇଁ ପ୍ରାଣକୃଷ୍ଣଙ୍କୁ ବାଲ୍ୟାବସ୍ଥାରୁ ହିଁ ସଂଗ୍ରାମ କରିବାକୁ ପଡ଼ିଥିଲା । ସେ ହେଉଛନ୍ତି ଏକ ଅନନ୍ୟ ସାଧାରଣ ବ୍ୟକ୍ତିତ୍ୱର ପ୍ରତୀକ ଯେ କି ନିଜର ଜନ୍ମଗତ ଗୁଣ ଓ ଶୃଙ୍ଖଳିତ ମନର ସମ୍ପୂର୍ଣ୍ଣ ସଦୁପଯୋଗ କରି ଏବଂ ନିଜର ଅଧ୍ୟବସାୟ ବଳରେ ବିଜ୍ଞାନ, ଶିକ୍ଷା ଓ ମାନବିକ ସେବା କ୍ଷେତ୍ରରେ ଅତ୍ୟୁଚ୍ଚ ସ୍ଥାନ ଅଧିକାର କରିପାରିଥିଲେ (ଶୀର୍ଷ ସ୍ଥାନକୁ ଉଠି ପାରିଥିଲେ) ।

ଉଦ୍ଭିଦ ବିଦ୍ୟା ଅଧିକାଂଶ ଲୋକଙ୍କ ଦ୍ୱାରା ଏକ ଆକର୍ଷଣୀୟ ବିଷୟ ରୂପେ ବିବେଚିତ ହୁଏ ନାହିଁ ଏବଂ ଚଳିତ ଶତାବ୍ଦୀର ପ୍ରାକ୍ ଦଶନ୍ଧିଗୁଡ଼ିକରେ ଏହା ଏକ ଲୋକପ୍ରିୟ ବିଷୟ ନ ଥିଲା, ଯେତେବେଳେ କି ପ୍ରାଣକୃଷ୍ଣ ଏହି ବିଷୟକୁ ନିଜର ଅଗ୍ରାଧିକାର ପ୍ରଦାନ କରିଥିଲେ । ଏହି ବିଷୟ ତାଙ୍କ ମନରେ ଗଭୀରଭାବେ କୌତୂହଳୋଦ୍ଦୀପକ ଆକର୍ଷଣ ସୃଷ୍ଟି କରିଥିଲା ଏବଂ ସେ ଯେତେ ଗଭୀରଭାବେ ଏହାକୁ ଅଧ୍ୟୟନ କରିଥିଲେ ଏହା ସେତେ ଆକର୍ଷଣୀୟ ହୋଇ ପ୍ରତିଭାତ ହୋଇଥିଲା । ଅକଳନ୍ତ ବିରାଟ ବିଶ୍ୱବ୍ରହ୍ମାଣ୍ଡର ଏକ ଅଖଣ୍ଡ ଅଙ୍ଗ ଏହି ଭୌତିକ ପୃଥିବୀର ସମସ୍ତ ସଜୀବ ବସ୍ତୁମାନଙ୍କ ପୃଷ୍ଠଭୂମିରେ ଉଦ୍ଭିଦମାନଙ୍କର ଜୀବନର ବିବିଧତା ଓ ଦୁର୍ବୋଧତା ତାଙ୍କର ଅଧ୍ୟୟନରୁ ପରିସ୍ଫୁଟ ହୋଇ ଉଠିଥିଲା । ସେ ପ୍ରାୟ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟ (ଯୁକ୍ତରାଜ୍ୟ)ରେ ରହିଥିଲେ ଏବଂ ତାଙ୍କର ଅକ୍ଳାନ୍ତ ପରିଶ୍ରମ ଅସାମାନ୍ୟ ଫଳପ୍ରସୂ ହୋଇଥିଲା । ବିଜ୍ଞାନର ଏହି ଶାଖାରେ ତାଙ୍କର କୃତକାର୍ଯ୍ୟତା (ସଫଳତା) ଓଡ଼ିଶାରେ ଅନେକ କୃତୀ ଛାତ୍ରଙ୍କୁ ଏହି ବିଷୟରେ ଉଚ୍ଚତର ଜ୍ଞାନ ଆହରଣ କରିବା ପାଇଁ ପ୍ରେରଣା ଯୋଗାଇଥିଲା । ଓଡ଼ିଶାର ବିଶ୍ୱବିଦ୍ୟାଳୟଗୁଡ଼ିକରେ ଏହି ବିଷୟରେ ଉଚ୍ଚରେ

ଶିକ୍ଷାଦାନର ବ୍ୟବସ୍ଥା ଓ ଅଧିକ ସୁଯୋଗ ସୃଷ୍ଟି କରିବା ପାଇଁ ଡକ୍ଟର ପ୍ରାଣକୃଷ୍ଣ ପରିଚ୍ଛାଙ୍କ ଅବଦାନ ଅତୁଳନୀୟ ।

ବିଜ୍ଞାନର ଅନ୍ୟ ଶାଖାଗୁଡ଼ିକରେ ହେଉଥିବା ଉଦ୍ଭାବନ ସମ୍ବନ୍ଧରେ ଡକ୍ଟର ପରିଚ୍ଛା ସତ୍ ଜ୍ଞାନ ଆହରଣ କରୁଥିଲେ ଏବଂ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ହୁଏ ଯେ ସେ କେବଳ ଉଦ୍ଭିଦବିଜ୍ଞାନ ନୁହେଁ ଅନ୍ୟାନ୍ୟ ବିଜ୍ଞାନରେ ମଧ୍ୟ ତାଙ୍କର ଜ୍ଞାନ ସମୟ ଉପଯୋଗୀ ଆଧୁନିକ ଥିଲା । ସେ କହୁଥିଲେ ଯେ ତାଙ୍କର ମନ ସବୁ ସତ୍ୟ ଘଟଣା ପ୍ରତି ସର୍ବଦା ଉନ୍ମୁକ୍ତ ଏବଂ ଜଣେ କୃତୀ ଶିକ୍ଷକ ତାର ଜୀବନସାରା ଜଣେ ଅଧ୍ୟବସାୟୀ କଠିନ ପରିଶ୍ରମୀ ଛାତ୍ର ରୂପେ ରହିବା ଉଚିତ । ଏଥିଯୋଗୁଁ ଯେତେବେଳେ ତାଙ୍କୁ କେତେକ ବର୍ଷ ପାଇଁ ଓଡ଼ିଶାର ସର୍ବପ୍ରଥମ କୃଷି ନିର୍ଦ୍ଦେଶକର ଗୁରୁଦାୟିତ୍ୱ ବହନ କରିବା ପାଇଁ ଡାକରା ଆସିଥିଲା ସେ ବିଭିନ୍ନ ଉତ୍ସରୁ ସଂଗ୍ରହ କରିଥିବା ତାଙ୍କର ବ୍ୟାପକ ଓ ଦୂରଦୃଷ୍ଟି ସମ୍ପନ୍ନ ଜ୍ଞାନ ବଳରେ କୃଷିଜାତ ଦ୍ରବ୍ୟଗୁଡ଼ିକର ଅଧିକ ଉପଜ ଓ ଉନ୍ନତି ପାଇଁ କୃଷି ବିଭାଗରେ ଫଳପ୍ରଦ ପ୍ରଶାସନ ପ୍ରବର୍ତ୍ତନ କରିବାରେ କ୍ଷମ ହୋଇଥିଲେ ।

୧୯୩୮ ମସିହାରେ ଯେତେବେଳେ ଡକ୍ଟର ପରିଚ୍ଛା ରେଭେନ୍ସା କଲେଜର ପ୍ରଶାସନ ଦାୟିତ୍ୱ ଗ୍ରହଣ କଲେ ସେ କଲେଜର ପ୍ରତ୍ୟେକ ବିଷୟ ପ୍ରତି ତନ୍ନ ତନ୍ନ ଧ୍ୟାନ ଦେଇଥିଲେ । ରେଭେନ୍ସା କଲେଜର ଅଧ୍ୟକ୍ଷ ପଦରେ ଅଧିଷ୍ଠିତ ଥିବାବେଳେ ସେ ଅନେକ କମିଟିରେ ସଦସ୍ୟ ରୂପେ କାର୍ଯ୍ୟ କରିବା ପାଇଁ ଓ ଭାରତବର୍ଷର ବିଭିନ୍ନ ଅଞ୍ଚଳର ବହୁ ଅନୁଷ୍ଠାନରେ ଉପଦେଷ୍ଟା ରୂପେ କାର୍ଯ୍ୟ କରିବା ପାଇଁ ନିମନ୍ତ୍ରିତ ହେଉଥିଲେ । ସେ କଲେଜର ଅଧ୍ୟକ୍ଷ ରୂପେ ଅଫିସର ସବୁ କାର୍ଯ୍ୟର ଚିକିନିଖି ପର୍ଯ୍ୟାଲୋଚନା କରିବାରେ ତାଙ୍କର କର୍ତ୍ତବ୍ୟ ସାଧନ କରିପାରୁ ନ ଥିବାରୁ ବଡ଼ ଅସ୍ୱସ୍ତି ଅନୁଭବ କରୁଥିଲେ । ମୁଁ ୧୯୩୯ରୁ ୧୯୪୪ ପର୍ଯ୍ୟନ୍ତ ଓଡ଼ିଶା ସରକାରଙ୍କର ଶିକ୍ଷାବିଭାଗ ସମେତ କେତେଗୁଡ଼ିଏ ବିଭାଗର ଶାସନ ସଚିବ ଥିଲି । ଆମେ ରେଭେନ୍ସା କଲେଜ ଅଫିସରେ ଗୋଟିଏ ବର୍ସାର (Bursar) ପଦ ସୃଷ୍ଟି କରିଥିଲୁ, ଯାହା ଫଳରେ କି ସେ ଆର୍ଥିକ ବିଷୟ ଓ ସାଧାରଣ କେତେକ ଗତାନୁଗତିକ ବିଷୟରେ ଡକ୍ଟର ପରିଚ୍ଛାଙ୍କୁ ସାହାଯ୍ୟ କରି ତାଙ୍କୁ କଠିନ କାର୍ଯ୍ୟଭାରରୁ ସାମୟିକ ଉପଶମ ଦେଇପାରିବ ।

୧୯୪୩ ମସିହାରେ ପାରଳାଖେମୁଣ୍ଡି ମହାରାଜ—ଗୋଦାବରୀଶ ମନ୍ତ୍ରିମଣ୍ଡଳ ଓଡ଼ିଶାରେ ପ୍ରଥମ କରି ଏକ ବିଶ୍ୱବିଦ୍ୟାଳୟ, ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ଥାପନ କରିବା ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ସିଦ୍ଧାନ୍ତ ଗ୍ରହଣ କରିଥିଲେ । ଓଡ଼ିଶାରେ ଥିବା ଦେଶୀୟ ରାଜ୍ୟଗୁଡ଼ିକର ସେତେବେଳେ ଓଡ଼ିଶା ପ୍ରଦେଶ ସହିତ ମିଶ୍ରଣ ହୋଇ ନ ଥାଏ । ଦେଶୀୟ ରାଜ୍ୟର ରାଜା ମହାରାଜାମାନଙ୍କ ସମ୍ମତି ଗ୍ରହଣ କରି ଓଡ଼ିଶା ସରକାରଙ୍କ ଗୃହୀତ ନୀତିକୁ ତୁରନ୍ତ କାର୍ଯ୍ୟକାରୀ କରିବା ପାଇଁ ସେକ୍ରେଟେରିଏଟକୁ କଡ଼ା ନିର୍ଦ୍ଦେଶ ଦିଆଯାଇଥାଏ । ଓଡ଼ିଶାର ଦେଶୀୟ ରାଜ୍ୟ ସମୂହର ଓଡ଼ିଶା ପ୍ରଦେଶ ସହିତ ମିଶ୍ରଣ

ହୋଇ ନ ଥିବା ଯୋଗୁଁ ଏହାର କେତେକ ଅଞ୍ଚଳ ଇଂରେଜ ଶାସନାଧୀନ ଓ ଅନ୍ୟ କେତେକ ଅଞ୍ଚଳ ଗଡ଼ଜାତ ରାଜା ମହାରାଜାଙ୍କ ଶାସନାଧୀନ ଏହିପରି ଦ୍ୱୈତ ଶାସନରେ ରହିଥିଲା । ରାଜା ମହାରାଜାମାନଙ୍କ ସହିତ ହୋଇଥିବା ଚୁକ୍ତି ସର୍ତ୍ତାବଳୀକୁ ଆଖି ଆଗରେ ରଖି ବିଧାନସଭାରେ ଗୃହୀତ ଆଇନ ଅନୁଯାୟୀ ପ୍ରଣୀତ ବିଶ୍ୱବିଦ୍ୟାଳୟର ବିଶଦ ରେଗୁଲେସନ୍ ଓ ନିୟମଗୁଡ଼ିକୁ ପୁଙ୍ଖାନୁପୁଙ୍ଖରୂପେ କାର୍ଯ୍ୟକାରୀ କରିବାର ଆବଶ୍ୟକତା ଥିଲା । ଡକ୍ଟର ପରିଜା ଯେ କି ପ୍ରଥମ କୁଳପତି ମନୋନୀତ ହୋଇଥିଲେ ସେ ପ୍ରତ୍ୟେକ ବିଷୟକୁ ସୂକ୍ଷ୍ମ ଭାବେ ବିଚାର କରିବାକୁ ବ୍ୟକ୍ତିଗତ ଧ୍ୟାନ ଦେଇଥିଲେ ଓ ଉପାଦେୟ ପରାମର୍ଶ ପ୍ରଦାନ କରୁଥିଲେ । ୧୯୪୩ ମସିହା ନଭେମ୍ବର ୧୭ ତାରିଖରେ ଓଡ଼ିଶାର ତଦାନୀନ୍ତନ ରାଜ୍ୟପାଳ ଓ ବିଶ୍ୱବିଦ୍ୟାଳୟର କୁଳପତି ସାର୍ ହଥର୍ଣ୍ଣ ଲୁଇସ୍‌ଙ୍କ ଦ୍ୱାରା ଉତ୍କଳ ବିଶ୍ୱବିଦ୍ୟାଳୟ ଆନୁଷ୍ଠାନିକଭାବେ ଉଦ୍‌ଘାଟିତ ହୋଇଥିଲା ।

ଜଣେ ଶିକ୍ଷାବିତ୍‌ରୂପେ ଡକ୍ଟର ପରିଜାଙ୍କର ବ୍ୟାପକ ଅଭିଜ୍ଞତା ଏବଂ ପାଟନା ଓ ଅନ୍ୟାନ୍ୟ ବିଶ୍ୱବିଦ୍ୟାଳୟ ଓ ଅନୁଷ୍ଠାନଗୁଡ଼ିକ ସହିତ ଘନିଷ୍ଠ ସମ୍ପର୍କ ଯୋଗୁଁ ଅର୍ଜିତ ଅନୁଭୂତି ଓ ଜ୍ଞାନ ଦ୍ୱାରା ସେ ନୂତନ ବିଶ୍ୱବିଦ୍ୟାଳୟର ପରିଚାଳନାରେ ଉପଯୁକ୍ତ ନିର୍ଦ୍ଦେଶ ପ୍ରଦାନ କରିବାରେ କ୍ଷମ ହୋଇଥିଲେ । ପ୍ରାଥମିକ ଅବସ୍ଥାରେ ଯଥେଷ୍ଟ ସୁବିଧା ନ ଥିବା ଯୋଗୁଁ ବିଶ୍ୱବିଦ୍ୟାଳୟରେ ଶିକ୍ଷାଦାନ ବିଭାଗଗୁଡ଼ିକରେ ଯଥାରୀତି ଅସନ୍ତୋଷ ସୃଷ୍ଟି ହୋଇଥିଲା ଓ ଶୀଘ୍ର ଶୀଘ୍ର ବିଭାଗୀୟ ସୁବିଧା ସୁଯୋଗର ପ୍ରସାର ପାଇଁ ଦାବି ଉପସ୍ଥାପିତ ହୋଇଥିଲା । ଜଣେ କୁଳପତିର ଆସ୍ଥାନ ଗୋଲାପ ଫୁଲର ଶଯ୍ୟା ନୁହେଁ ଏବଂ ଡକ୍ଟର ପରିଜାଙ୍କୁ ଅପରିହାର୍ଯ୍ୟ ସମସ୍ୟାଗୁଡ଼ିକର ସମ୍ମୁଖୀନ ହେବାକୁ ପଡ଼ିଥିଲା ଓ ତଦ୍ୱାରା ସେ ସମାଲୋଚନାର ଶରବ୍ୟ ମଧ୍ୟ ହୋଇଥିଲେ । ବିଶ୍ୱବିଦ୍ୟାଳୟର କର୍ମକର୍ତ୍ତା ଓ କର୍ମଚାରୀବୃନ୍ଦ ମଧ୍ୟ ଯଥେଷ୍ଟ କାର୍ଯ୍ୟଦକ୍ଷ ନ ଥିଲେ ଓ ସମାଲୋଚନାର ଊର୍ଦ୍ଧ୍ୱରେ ନ ଥିଲେ । ଏଭଳି ପରିସ୍ଥିତିରେ ପରିଜା ନିଜକୁ ଯଥାସମ୍ଭବ ଊର୍ଦ୍ଧ୍ୱରେ ରଖି ମର୍ଯ୍ୟାଦା ସହକାରେ କର୍ତ୍ତବ୍ୟ କରି ଚାଲିଥିଲେ । ଯେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟ କଟକରୁ ସ୍ଥାନାନ୍ତରିତ ହୋଇ ଭୁବନେଶ୍ୱରସ୍ଥିତ ବାଣୀବିହାରରେ ସ୍ଥାପିତ ହେଲା ସେ ବିସ୍ତୃତ ଲାଭ କରିଥିବା ଅଫିସ୍ ଓ ଶିକ୍ଷାଦାନୀ ବିଭାଗଗୁଡ଼ିକ ପାଇଁ ଅଧିକ ଅଫିସର ଓ ଅଧ୍ୟାପକ ପଦବୀ ସୃଷ୍ଟି ପାଇଁ ଦାବି ଉପସ୍ଥାପିତ କରିଥିଲେ ।

ସମୟ ସମୟରେ ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ୍ ସଭାରେ ବାଦାନୁବାଦ ଜନିତ ପ୍ରବଳ ବିଶୃଙ୍ଖଳା ସୃଷ୍ଟି ହେଉଥିଲା ଏବଂ ଡକ୍ଟର ପରିଜା ଯେ କି ସଭାପତିର ଆସନ ମଣ୍ଡନ କରିଥାନ୍ତି ସେ ନିଜର ପ୍ରତ୍ୟୁତ୍ପନ୍ନମତିତା, ତୀକ୍ଷ୍ଣ ଚାତୁର୍ଯ୍ୟ ଓ ରହସ୍ୟପ୍ରିୟତା ବଳରେ ପରିସ୍ଥିତିକୁ ଶାନ୍ତ କରୁଥିଲେ । ସେ ବିଭିନ୍ନ ବୈଠକରେ ସଭାପତି ଆସନର ପଦମର୍ଯ୍ୟାଦା ଅକ୍ଷୁଣ୍ଣ ରଖୁଥିଲେ । ବିଶ୍ୱବିଦ୍ୟାଳୟର ସିନେଟ୍, ସିଣ୍ଡିକେଟ୍ ଓ କମିଟିଗୁଡ଼ିକର ସଭାରେ ସେ ଜଣେ ସର୍ବଗୁଣାନ୍ୱିତ ଭଦ୍ରବ୍ୟକ୍ତି ଥିଲେ ଏବଂ ଜଣେ

ସମ୍ଭ୍ରାନ୍ତ ଲୋକ ସର୍ବଦା ସମ୍ଭ୍ରାନ୍ତ ହୋଇ ହିଁ ରହୁଥିଲେ । ଅନ୍ୟମାନଙ୍କ ସହିତ ତାଙ୍କର ମତଦ୍ୱୈଧ ହେଉଥିଲା ସତ, କିନ୍ତୁ କାହା ପ୍ରତି ସେ ବଦ୍‌ମେଜାଜୀ ଓ କ୍ରୋଧୀ ହେଉ ନ ଥିଲେ । ଜଣେ ବିଶିଷ୍ଟ ରାଜନୀତିଜ୍ଞ ଡିସ୍‌ରେଲି କହିଛନ୍ତି, ''ଉଚିତ ଶିଷ୍ଟାଚାର ଓ ଅନ୍ୟମାନଙ୍କ ପ୍ରତି ବିଚାରବନ୍ତ ବ୍ୟବହାର ପ୍ରଦର୍ଶନ ହେଉଛି ଜଣେ ସମ୍ଭ୍ରାନ୍ତ ଲୋକର ଦୁଇଟି ପ୍ରଧାନ ଗୁଣ ।'' ଡକ୍ଟର ପରିଜାଙ୍କ ଠାରେ ଏହି ସଦ୍‌ଗୁଣଗୁଡ଼ିକ ପ୍ରଚୁର ଭାବରେ ପରିସ୍ଫୁଟ ହେଉଥିଲା ।

ସ୍ୱାଧୀନତାର ପରବର୍ତ୍ତୀ ସମୟରେ ଭୂତ ଗ୍ରାସିଲା ଭଳି ରାଜନୀତି ଛାତ୍ରସମାଜକୁ ଆବେଶ କରିଥିଲା ଏବଂ ଏହା ଶିକ୍ଷାନୁଷ୍ଠାନର ବାତାବରଣକୁ କଳୁଷିତ କରିଦେଇଥିଲା । ରାଜନୈତିକ ଦଳମାନଙ୍କ ମଧ୍ୟରେ ପ୍ରତିଯୋଗିତା ଓ ଯୁବଶକ୍ତିକୁ ସେମାନଙ୍କ ସ୍ୱାର୍ଥସାଧନରେ ନିୟୋଜିତ କରିବାର ପ୍ରବୃତ୍ତି ବିଶୃଙ୍ଖଳା ସୃଷ୍ଟି କରିବାର ଏକ ପ୍ରଧାନ କାରଣ ଥିଲା । ବିଶୃଙ୍ଖଳା, ଆନ୍ଦୋଳନ, ବିକ୍ଷୋଭ, ଉତ୍ତେଜନା ଆମ ଜାତୀୟ ଜୀବନର ପ୍ରତ୍ୟେକ ସ୍ତରରେ ବ୍ୟାପକ ଭାବରେ ପ୍ରସାର ଲାଭ କରିଛି, ଶ୍ରମିକମାନଙ୍କ ମଧ୍ୟରେ, କର୍ମଜୀବୀମାନଙ୍କ ମଧ୍ୟରେ, ଚାଷୀମାନଙ୍କ ମଧ୍ୟରେ, ଯୁବ ସମ୍ପ୍ରଦାୟ ମଧ୍ୟରେ, ଛାତ୍ରମାନଙ୍କ ମଧ୍ୟରେ ଏବଂ ସରକାରୀ କର୍ମଚାରୀମାନଙ୍କ ମଧ୍ୟରେ । ରାଜନୈତିକ ଚଳଣିରେ ଏହା ଏକ ନୀତିକଥା ଯେ ଯେତେବେଳେ ''ଦାବି'' ଓ ''ଅଧିକାର'' ପାଇଁ ବିରାଟ ଆନ୍ଦୋଳନ ହୋଇଛି, ଅଥଚ ଅନ୍ୟମାନଙ୍କର ଅଧିକାର ପାଇଁ କିମ୍ବା ଏପରିକି ସମଗ୍ର ଜାତିର ଦାୟିତ୍ୱ ପ୍ରତି ଅନୁରୂପ ଦୃଷ୍ଟିପାତ କରାଯାଇ ନାହିଁ, ସେଠି ସବୁ କ୍ଷେତ୍ରରେ ବିଶୃଙ୍ଖଳା, ଅରାଜକତା ଓ ରାଷ୍ଟ୍ରବିପ୍ଳବ ଆରମ୍ଭ ହୋଇଯାଏ ଏବଂ ଶକ୍ତିଶାଳୀ ବ୍ୟକ୍ତିଗଣ ବା ଦଳ ଏକଛତ୍ରଶାସନ ଭଳି କ୍ଷମତାକୈନ୍ଦ୍ରିକ ସରକାର ଦେଶରେ ସ୍ଥାପନ କରିବା ପାଇଁ ଏପରି ଅବସ୍ଥାକୁ ନିଜ ସ୍ୱାର୍ଥରେ ଲଗାଇବା ପାଇଁ ଚେଷ୍ଟିତ ହୁଅନ୍ତି । ସେତେବେଳେ ଲୋକମାନେ କର୍ତ୍ତବ୍ୟବୋଧର ଗୋଟିଏ ଗୋଟିଏ ବିଡ଼ା ଭଳି କାର୍ଯ୍ୟ କରନ୍ତି ଓ ସେମାନଙ୍କର ନିଜର ଅଧିକାର ବୋଲି ପ୍ରାୟତଃ କିଛି ନ ଥାଏ । ପ୍ରକୃତ ଗଣତନ୍ତ୍ରରେ ଲୋକମାନଙ୍କର ଅଧିକାର ଓ ଦାୟିତ୍ୱ ମଧ୍ୟରେ ଏକ ସମତୁଲ ଦୃଷ୍ଟି ରହିଥାଏ । ଆମ ଲୋକମାନଙ୍କ ମଧ୍ୟରେ ରାଜନୈତିକ ଶିକ୍ଷାର ଏକାନ୍ତ ଅଭାବ ରହିଛି, ଯାହାଯୋଗୁଁ ବିଷମୟ ପରିଣାମ ଘଟିଛି । ବିଶେଷତଃ ଗୋଟିଏ ଜାତିରେ ଯେଉଁଠି ସ୍ତ୍ରୀଲୋକମାନଙ୍କ ମଧ୍ୟରେ ନିରକ୍ଷରତା ହାର ଶତକଡ଼ା ୯୦ ଶତାଂଶ ଓ ସାଧାରଣ ଲୋକମାନଙ୍କ ମଧ୍ୟରେ ନିରକ୍ଷରତା ହାର ୭୦ ଶତାଂଶ । ସମ୍ପ୍ରତି ସାଧାରଣ ପ୍ରବୃତ୍ତି ଏପରି ପରିଲକ୍ଷିତ ହୋଇଛି ଯେ ଅଧିକାଂଶ ଲୋକ ଯୁକ୍ତି ଓ ବିଚାରସମ୍ମତ କାରଣ ଅପେକ୍ଷା ଭାବପ୍ରବଣତାରେ ବିଶେଷ ଭାବରେ ଭାସିଯାଇଛନ୍ତି ।

ଡକ୍ଟର ପରିଜା ତାଙ୍କର ବିଶ୍ଳେଷଣାତ୍ମକ ମାନସପଟରେ ରାଜନୈତିକ ପ୍ରବୃତ୍ତିର ରୂପରେଖ ଉପଲବ୍ଧି କରିପାରିଥିଲେ । ସେ ୧୯୫୧ ମସିହାରେ ଓଡ଼ିଶା ବିଧାନସଭାକୁ ଜଣେ ସ୍ୱାଧୀନ ସଭ୍ୟ ରୂପେ ନିର୍ବାଚିତ ହୋଇ ପ୍ରବେଶ କରିଥିଲେ । ସେ ତାଙ୍କର ମତ

ପ୍ରଦାନ କରିବାରେ ସଚ୍ଚୋଟ, ଆନ୍ତରିକ, ଅକୃତ୍ରିମ, ସ୍ପଷ୍ଟବାଦୀ ଓ ନିର୍ଭୀକ ଥିଲେ—କେବେହେଲେ ସେ ନୈତିକ ମୂଲ୍ୟବୋଧ ଓ ନ୍ୟାୟସଙ୍ଗତ ନୀତି ସଂପୃକ୍ତ ବିଷୟରେ ସାଲିସ କରି ନାହାନ୍ତି । ଆମେ ବାହାରେ କ'ଣ ପ୍ରକାଶ କରୁ ତା ଅପେକ୍ଷା ଆମ ଅନ୍ତର ଭିତରେ କ'ଣ ଅଛି ତା ହେଉଛି ଅଧିକ ଗୁରୁତ୍ୱପୂର୍ଣ୍ଣ । ଆମର ବାହ୍ୟ ବାକ୍‌ସ୍ଫୂର୍ତ୍ତି ଆମ ଅନ୍ତରାତ୍ମାର ପ୍ରତିଧ୍ୱନି କରିବା ଉଚିତ । ଯଦି ଏଥିରେ ବ୍ୟତିକ୍ରମ ହୁଏ ତାହାହେଲେ ଏହା କପଟତା, କୃତ୍ରିମ, ଆନ୍ତରିକତାବିହୀନ ଛଳନା ଆଡ଼କୁ ଝୁଙ୍କି ପଡ଼ିବ ଏବଂ ଦୋମୁହାଁ ଶଠ ଲୋକ ଭଳି ବ୍ୟବହାର କରିବାକୁ ପଛାଇବ ନାହିଁ । ଏଭଳି ଏକ ବ୍ୟକ୍ତିତ୍ୱ ସାଧାରଣ ଜୀବନରେ ଦୁର୍ନୀତିପରାୟଣତା, ଅସାଧୁତା ଓ ସୁବିଧାବାଦ ନୀତିକୁ ପ୍ରଶ୍ରୟ ଦେବ ଏବଂ ସେଭଳି ଏକ ଚରିତ୍ର କେବଳ ରାଜନୈତିକ କ୍ଷେତ୍ରରେ ନୁହେଁ, ଜାତୀୟ ଜୀବନରେ ମଧ୍ୟ ଏକ ଅନିଷ୍ଟକାରୀ କୀଟ ଭଳି କ୍ଷୟକାରକ ହୋଇ ରହିବ । ଡକ୍ଟର ପରିଜା ନିଜର ସହଜାତ ସାଧୁତା ଯୋଗୁଁ ଏଭଳି ଦୋମୁହାଁ ଅନୀତିଠାରୁ ନିଜକୁ ଊର୍ଦ୍ଧ୍ୱରେ ରଖୁଥିଲେ । ଅଳ୍ପ କେତେକ ନିଃସଙ୍ଗ ତାରକାମାନଙ୍କ ମଧ୍ୟରେ ସେ ଥିଲେ ଏକ ଦେଦୀପ୍ୟମାନ ଉଜ୍ଜ୍ୱଳ ଜ୍ୟୋତିଷ୍କ ।

ଡକ୍ଟର ପରିଜାଙ୍କର ଉତ୍ସର୍ଗୀକୃତ ଚୈତନ୍ୟ କେବଳ ବାହ୍ୟ ଜଗତ ମଧ୍ୟରେ ସୀମିତ ନ ଥିଲା । ନିଜର ପରିବାର ପ୍ରତି ମଧ୍ୟ ତାଙ୍କର କର୍ତ୍ତବ୍ୟବୋଧ ରହିଥିଲା । ୧୯୨୧ ମସିହାରେ ଇଂଲଣ୍ଡରେ ସେ ଭାରତୀୟ ଶିକ୍ଷା ଚାକିରିରେ ନିଯୁକ୍ତି ପାଇ ଭାରତକୁ ପ୍ରତ୍ୟାବର୍ତ୍ତନ କଲା ପରେ ରେଭେନ୍ସା କଲେଜରେ ଉଦ୍ଭିଦବିଜ୍ଞାନରେ ମୁଖ୍ୟ ଅଧ୍ୟାପକ ପଦରେ ଆସୀନ ହୋଇଥିଲେ । ସେ ଗ୍ରାମାଞ୍ଚଳର ପରିବେଶରୁ ସୁନ୍ଦରମଣୀ ନାମ୍ନୀ କନ୍ୟାଙ୍କୁ ବିବାହ କରିଥିଲେ ଯିଏକି ମାତ୍ର ପ୍ରାଥମିକ ଶିକ୍ଷା ଲାଭ କରିଥିଲେ । ସେ କେବଳ ଉଚ୍ଚଇଂରାଜୀ ବିଦ୍ୟାଳୟର ଦ୍ୱାରଦେଶରେ ପଦ ପ୍ରକ୍ଷେପ କରି ନ ଥିଲେ, କାରଣ ସେତେବେଳେ କେବଳ କଟକରେ ହିଁ ଏକମାତ୍ର ରେଭେନ୍ସା ବାଳିକା ଉଚ୍ଚ ଇଂରାଜୀ ବିଦ୍ୟାଳୟ ଅବସ୍ଥାପିତ ଥିଲା । ସେ କାଳରେ ବାଳକମାନଙ୍କ ସହିତ ସହଶିକ୍ଷା ଏକ ଅଭିଶାପ ବୋଲି ବିବେଚିତ ହେଉଥିଲା ।

ଡକ୍ଟର ପରିଜା ତାଙ୍କ ସହଧର୍ମିଣୀଙ୍କୁ ଘରେ ଜଣେ ଗୃହଶିକ୍ଷୟିତ୍ରୀ ନିଯୁକ୍ତ କରି ସାମାନ୍ୟ ପରିମାଣ ଶିକ୍ଷା ପ୍ରଦାନ କରାଇଥିଲେ, ତତ୍‌ସହ ସିଲାଇ ଓ ଉଲ୍‌ବୁଣା କଳା ମଧ୍ୟ ଶିକ୍ଷା ଦିଆଇଥିଲେ । ଏତଦ୍ୱାରା ଶ୍ରୀମତୀ ପରିଜା ଘରେ ଜଣେ ସୁଗୃହିଣୀ ରୂପେ ଘରସଂସାର କରିବା ବ୍ୟତୀତ ସମାଜରେ ଜଣେ ସଦ୍‌ଗୁଣବତୀ ମହିଳା ରୂପେ ପ୍ରତିଷ୍ଠା ଲାଭ କରିଥିଲେ । ସେ ତତ୍‌କାଳୀନ ଉଚ୍ଚ ଶିକ୍ଷାପ୍ରାପ୍ତ ନାରୀମାନଙ୍କ ସହିତ ସହଯୋଗ କରି ମହିଳା ଓ ଶିଶୁମାନଙ୍କର ମଙ୍ଗଳ ପାଇଁ କାର୍ଯ୍ୟକ୍ରମରେ ନିଜକୁ ଜଡ଼ିତ ରଖିଥିଲେ । ଡକ୍ଟର ପରିଜା ତାଙ୍କର ପୁତ୍ର କନ୍ୟାମାନଙ୍କୁ ସର୍ବୋତ୍କୃଷ୍ଟ ଶିକ୍ଷା ପ୍ରଦାନ କରିଥିଲେ, ଯାହା ବଳରେ ସେମାନେ ଜୀବନରେ ଉପଯୁକ୍ତ ସ୍ଥାନ ପ୍ରାପ୍ତ ହୋଇ ପାରିଥିଲେ । ବର୍ତ୍ତମାନ ସମୟରେ ଯେତେବେଳେ ନିରକ୍ଷରତା ଦୂରୀକରଣ ପାଇଁ, ବିଶେଷତଃ ଗ୍ରାମାଞ୍ଚଳର

ଅଧିବାସୀମାନଙ୍କ ମଧ୍ୟରେ ଡାକରା ଆସିଛି ଡକ୍ଟର ପରିଜାଙ୍କ ଉଦାହରଣ ଏକ ଆଲୋକ ବର୍ତ୍ତିକା ରୂପେ କାର୍ଯ୍ୟ କରିବ ।

ଡକ୍ଟର ପରିଜାଙ୍କ ଜୀବନରେ ପ୍ରବଳ ଦୁଃଖର ଝଡ଼ଝଞ୍ଜା ବୋହିଯାଇଛି । ତାଙ୍କର ଜ୍ୟେଷ୍ଠା କନ୍ୟା ଓ କନିଷ୍ଠ ପୁତ୍ର ଯେ କି ଜଣେ ଆଇ. ଏ. ଏସ୍. ଥିଲେ ସେମାନଙ୍କର ତିରୋଧାନରେ ତାଙ୍କୁ ଦାରୁଣ ଦୁଃଖ ସହ୍ୟ କରିବାକୁ ପଡ଼ିଥିଲା । ଏଭଳି ଦୁଃସମୟରେ ଯେତେବେଳେ ତାଙ୍କ ପୁତ୍ରର ଦେହତ୍ୟାଗର ପରଦିନ ମୁଁ ତାଙ୍କୁ ସାକ୍ଷାତ କରିବା ପାଇଁ ଯାଇଥିଲି ସେ ସ୍ଥିତଧୀ ଥିଲେ ଓ ତାଙ୍କର ମାନସିକ ଅବସ୍ଥା ସାଧାରଣ ଥିଲା । ଅଧଘଣ୍ଟାଏ ତାଙ୍କ ସହିତ ବାର୍ତ୍ତାଳାପ କଲା ପରେ ମୁଁ ଯେତେବେଳେ ତାଙ୍କଠାରୁ ବିଦାୟ ନେବାକୁ ବାହାରିଲି ସେ ତାଙ୍କ ଘର ଭିତରକୁ ଗଲେ ଓ ଗୋଟିଏ ବହି ଆଣି ମତେ ଉପହାର ଦେଲେ, ଯେଉଁ ବହିଟିକୁ ସେ ମୋ ପାଇଁ ପଠନ ଉପଯୁକ୍ତ ହେବ ବୋଲି ବିବେଚନା କଲେ । ବାସ୍ତବିକ ସେ ବହିଟି ମୋ ପାଇଁ ଅତିଶୟ ହୃଦୟଗ୍ରାହୀ ହୋଇଥିଲା, ଯିଶୁଖ୍ରୀଷ୍ଟ ଯେଉଁ ରାଜ୍ୟରେ ଜନ୍ମଗ୍ରହଣ କରିଥିଲେ, ଧର୍ମ ଶିକ୍ଷା ପ୍ରଦାନ କରିଥିଲେ ଓ ଶେଷରେ କ୍ରୁଶବିଦ୍ଧ ହୋଇଥିଲେ ସେ ରାଜ୍ୟର ବିଶଦ ବର୍ଣ୍ଣନା ଏଥିରେ ପ୍ରଦତ୍ତ ହୋଇଥିଲା—ଡକ୍ଟର ପରିଜାଙ୍କ ଅଧ୍ୟୟନର ପରିସର ଏପରି ପ୍ରଶସ୍ତ ଥିଲା ।

ସେ ବାଲ୍ୟକାଳରୁ ହିଁ ନିଜ ଜୀବନକୁ ଶୃଙ୍ଖଳିତ କରି ଗଢ଼ିଛନ୍ତି, ତେଣୁ ଜୀବନରେ ଝଡ଼ଝଞ୍ଜାକୁ ଧୈର୍ଯ୍ୟର ସହିତ ଅଟଳ ରହି ସହ୍ୟ କରି ପାରିଛନ୍ତି । ଜଣେ ଶିକ୍ଷକ ରୂପେ, ଜଣେ ଗବେଷକ ଛାତ୍ରରୂପେ ଏବଂ ଜଣେ ନାଗରିକ ରୂପେ ଶୃଙ୍ଖଳା ତାଙ୍କ ଜୀବନର ଚାରିତ୍ରିକ ଲକ୍ଷଣ ଥିଲା । ସେ ଅନେକ ସମୟରେ ଛାତ୍ରମାନଙ୍କ ମଧ୍ୟରେ ବର୍ତ୍ତମାନ ବିଶୃଙ୍ଖଳା ଦେଖି ଶୋଚନା କରିଛନ୍ତି । ରାଜନୀତି ଅଧିକାଂଶ ଛାତ୍ରମାନଙ୍କ ମଧ୍ୟରେ ଭୂତ ଲାଗିଲା ଭଳି ଏକ ପାଗଳାମି ସୃଷ୍ଟି କରିଛି । ରାଜନୀତି ଆମ ଜୀବନର ଏକମାତ୍ର ଦିଗ ନୁହେଁ । ଯେଉଁ ପିଲାର ରାଜନୀତି ହେଉଛି ଜୀବନର ପ୍ରଧାନ ଆଗ୍ରହ କିମ୍ବା ଆନ୍ଦୋଳନ କରିବା ଯାହାର ଜୀବନର ବୃତ୍ତି ସେ ଶିକ୍ଷାନୁଷ୍ଠାନରେ ନାମ ଲେଖାଇଥିଲେ ମଧ୍ୟ ଛାତ୍ର ହବାର ଯୋଗ୍ୟତା ଅର୍ଜନ କରେ ନାହିଁ, ଠିକ୍ ଯେପରି ମଟରଗାଡ଼ି ଗ୍ୟାରେଜ୍‌ରେ ଗୋଟିଏ ପିଲାମାନଙ୍କ ପାଇଁ ଉଦ୍ଦିଷ୍ଟ ଟ୍ରାମ୍ ଗାଡ଼ି ରଖିଦେଲେ ତାହା ଏକ ମଟରଗାଡ଼ି ବା ପେଟ୍ରୋଲଚାଳିତ ଯାନ ହୋଇଯାଏ ନାହିଁ । ଧର୍ମଗ୍ରନ୍ଥରେ ଯେପରି ଲେଖା ଅଛି, ''ସାମାନ୍ୟ ଟିକିଏ ଖମୀର ବା ସୁରାଫେଣ ସମଗ୍ର ବସ୍ତୁକୁ ବିକାରଗ୍ରସ୍ତ କରିଦିଏ ।''

ବିଶ୍ୱବିଖ୍ୟାତ ବୈଜ୍ଞାନିକ ଆଲବର୍ଟ ଆଇନ୍‌ଷ୍ଟାଇନ୍‌ଙ୍କୁ ଥରେ ହାର୍ଭାର୍ଡ଼ ବିଶ୍ୱବିଦ୍ୟାଳୟର ଗବେଷକ ଛାତ୍ରମାନେ ଗୋଟିଏ ଉପଦେଶ ଦେବାକୁ ଅନୁରୋଧ କରିଥିଲେ, ଯାହାକି ସେମାନଙ୍କୁ ଭବିଷ୍ୟତରେ ପଥପ୍ରଦର୍ଶନ କରିବ । ସେ ତତ୍‌କ୍ଷଣାତ୍ ଉତ୍ତରରେ କହିଥିଲେ, ''ଯୁବକମାନେ, ତୁମର ପୂର୍ବ ସଞ୍ଚିତ କଳ୍ପନାପ୍ରସୂତ ଧାରଣାଗୁଡ଼ିକ ସମ୍ବନ୍ଧରେ କିମ୍ବା ତୁମେ ଯାହା ଶିକ୍ଷା ଲାଭ କରିଛ ତତ୍‌ସମ୍ବନ୍ଧରେ

ପ୍ରତିଦିନ ଏକ ଘଣ୍ଟା ଲେଖାଏଁ ଚିନ୍ତା କରି ସେଗୁଡ଼ିକୁ ପରୀକ୍ଷା ନିରୀକ୍ଷା କର, ଏଥିପାଇଁ ତୁମର ଯେଉଁ ସମୟ ଅତିବାହିତ ହେବ ତାହା ଫଳପ୍ରସୂ ହେବ ।'' ଏକ ନିୟମନିଷ୍ଠ ସୁଶୃଙ୍ଖଳିତ ଜୀବନ ଛାତ୍ରର ଗୁଣ ଓ ବିଶୁଦ୍ଧତାର ଚିହ୍ନ ଏବଂ ପ୍ରକୃତପକ୍ଷେ ତାହା ଯେ କୌଣସି ଲୋକର ଲକ୍ଷଣ ଯେ କି ଜୀବନରେ କିଛି ପ୍ରତିଷ୍ଠା ଲାଭ କରିପାରିଛି ।

ଡକ୍ଟର ପରିଜା ଜୀବନରେ ପ୍ରତିଷ୍ଠା ଲାଭ କରିଥିଲେ । ବନ୍ଧୁ ହିସାବରେ ସେ ଥିଲେ ମେଳାପୀ, ସଙ୍ଗପ୍ରିୟ; ତାଙ୍କର ପ୍ରତିଦ୍ୱନ୍ଦ୍ୱୀ, ବିରୋଧୀ ଲୋକମାନଙ୍କ ନିକଟରେ ସେ ଥିଲେ ଭଦ୍ର, ଶିଷ୍ଟ; ଜଣେ ଉତ୍ତମ ଶିକ୍ଷକରୂପେ ସେ ଛାତ୍ରମାନଙ୍କ ମଧ୍ୟରେ ଦୁର୍ବଳ ଛାତ୍ରମାନଙ୍କୁ ପାଠପଢ଼ାରେ ସାହାଯ୍ୟ କରି ସେମାନଙ୍କର ଜ୍ଞାନଭଣ୍ଡାରକୁ ଋଦ୍ଧିମନ୍ତ କରିବା ପାଇଁ ଚେଷ୍ଟା କରୁଥିଲେ । ଜଣେ ଗୁରୁ ରୂପେ ସେ ସଦୁପଦେଶ ଦେବାରେ ଥିଲେ ମୁକ୍ତହସ୍ତ; ନିଜର ଦୁଃଖକଷ୍ଟକୁ ସେ ବୀରୋଚିତ ସହକାରେ ସହ୍ୟ କରୁଥିଲେ; ଜଣେ ପିତାରୂପେ ସେ ସରଳତା ଓ ନିସ୍ୱାର୍ଥପର ସ୍ନେହର ଆଦର୍ଶ ସ୍ଥାପନ କରିଥିଲେ; ଏବଂ ସାଧାରଣ ଲୋକମାନଙ୍କ ମଧ୍ୟରେ ସେ ଥିଲେ ଜଣେ ଅମାୟିକ, ଶିଷ୍ଟ ଓ ସୌଜନ୍ୟଶୀଳ ଭଦ୍ରଲୋକ । ସେ ବିଜ୍ଞାନଚର୍ଚ୍ଚା, ଶିକ୍ଷାପ୍ରସାର ଓ ଦେଶବାସୀଙ୍କ ସେବାରେ ନିଜକୁ ଉତ୍ସର୍ଗ କରିଦେଇଥିଲେ । ତାଙ୍କର ସ୍ଥାନ ବର୍ତ୍ତମାନ ଶୂନ୍ୟ ପଡ଼ିଗଲା । ଏହା କେବଳ ପୂରଣ ହୋଇପାରିବ ଏପରି ମନୀଷୀମାନଙ୍କ ଦ୍ୱାରା ଯେଉଁମାନେକି ନିଜ ନିଜ କର୍ମ କ୍ଷେତ୍ରରେ କର୍ତ୍ତବ୍ୟ ସାଧନାରେ ଉତ୍ସର୍ଗୀକୃତ, ବିଶ୍ୱସ୍ତ ଓ ଏକନିଷ୍ଠ ମନୋଭାବ ପ୍ରଦର୍ଶନ କରିପାରିବେ ।

ମୁଁ ଯେତେବେଳେ ଶେଷଥର ପାଇଁ ଡକ୍ଟର ପରିଜାଙ୍କ ସହିତ ସାକ୍ଷାତ କରିଥିଲି, ସେ କହିଲେ, ''ବର୍ତ୍ତମାନ ଆମ୍ଭେମାନେ ରେଳ ପ୍ଲାଟଫର୍ମରେ ଅପେକ୍ଷା କରି ରହିଛୁ, କେତେବେଳେ ଆମ ରେଳଗାଡ଼ି ଆସି ପହଞ୍ଚିବ ଓ ଆମକୁ ନେଇ ଚାଲିଯିବ । ତାଙ୍କର ମହୀୟସୀ ସହଧର୍ମିଣୀଙ୍କର ତିରୋଧାନରେ ମୁଁ ତାଙ୍କୁ ଯେଉଁ ଶୋକବାର୍ତ୍ତା ପ୍ରେରଣ କରିଥିଲି ସେଥିରେ ଲେଖିଥିଲି, ''ଆମର ଏକମାତ୍ର ସାନ୍ତ୍ୱନା ଯେ ଆମେ ଏ ଜୀବନରେ ସହନଶୀଳତାର ଶେଷ ସୀମାରେ ଆସି ପହଞ୍ଚିଗଲୁଣି ।'' ଏହିପରି ଭାବରେ ସମୟ ଗଡ଼ି ଚାଲିଛି ଏବଂ ଯେଉଁମାନେ ସମୟର ମୂଲ୍ୟ ଆଗରୁ ହୃଦୟଙ୍ଗମ କରି ତାର ପୂର୍ଣ୍ଣ ସଦୁପଯୋଗ କରିଥାନ୍ତି ସେମାନେ ସୂର୍ଯ୍ୟାସ୍ତ ସମୟରେ ବିଷାଦର କାଳିମାରେ ଶୋକାଭିଭୂତ ହେବେ ନାହିଁ ।

(ଶ୍ରୀ ବିବେକାନନ୍ଦ ପଟ୍ଟନାୟକଙ୍କ ମୁଖ୍ୟ ସଂପାଦନାରେ ପ୍ରକାଶିତ 'ଉତ୍କଳ ପ୍ରସଙ୍ଗ' ସ୍ୱତନ୍ତ୍ର ସଂଖ୍ୟା ୧୯୭୮ରେ ସ୍ଥାନିତ ମୂଳ ଇଂରାଜୀ ଲେଖାରୁ ଡକ୍ଟର ଗଦାଧର ମିଶ୍ରଙ୍କ ଦ୍ୱାରା ଓଡ଼ିଆରେ ଅନୂଦିତ ।)

# ସ୍ୱର୍ଗତ ଡକ୍ଟର ପରିଜାଙ୍କ ଉଦ୍ଦେଶ୍ୟରେ ଓଡ଼ିଶା ରାଜ୍ୟ ସରକାରଙ୍କ ଶ୍ରଦ୍ଧାଞ୍ଜଳି

**ସୀତାକାନ୍ତ ମହାପାତ୍ର**

ଓଡ଼ିଶାର ଅନ୍ୟତମ ଶିକ୍ଷାବିତ୍ ଓ ବିଶ୍ୱବିଖ୍ୟାତ ବୈଜ୍ଞାନିକ ଡକ୍ଟର ପ୍ରାଣକୃଷ୍ଣ ପରିଜା ୧୮୯୧ ମସିହା ଅପ୍ରେଲ ପହିଲା ତାରିଖ ଦିନ କଟକ ସହରଠାରୁ ୫୦ କିଲୋମିଟର ଦୂରବର୍ତ୍ତୀ ବାଲିକୁଦା ନିକଟବର୍ତ୍ତୀ ଇଛାପୁର ନାମକ ଗୋଟିଏ ଛୋଟ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ବାଲ୍ୟକାଳରୁ ସେ ଜଣେ ମେଧାବୀ ଛାତ୍ର ଥିଲେ । ୧୯୧୩ ମସିହାରେ ସେ କଲିକତା ବିଶ୍ୱବିଦ୍ୟାଳୟରୁ ଗଣିତ ଅନର୍ସ ନେଇ ବି. ଏସ୍‌ସି. ପାସ୍ କରିଥିଲେ ।

ତା'ପରେ ବିହାର ଓ ଓଡ଼ିଶା ପ୍ରାଦେଶିକ ସରକାରଙ୍କ ଦ୍ୱାରା ମନୋନୀତ ହୋଇ ଉଚ୍ଚ ଶିକ୍ଷା ପାଇଁ ୧୯୧୪ ମସିହାରେ ସେ ବିଲାତ ଯାତ୍ରା କରିଥିଲେ । ସେଠାରେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟ ଅଧୀନସ୍ଥ କ୍ରାଏଷ୍ଟ କଲେଜରେ ପ୍ରଫେସର ଏ.ସି.ସିୱାର୍ଡ ଏବଂ ପ୍ରଫେସର ଏଫ୍. ଏଫ୍. ବ୍ଲାକ୍‌ମ୍ୟାନଙ୍କ ପାଖରେ ଉଦ୍ଭିଦବିଜ୍ଞାନ ଅଧ୍ୟୟନ କଲେ । ୧୯୧୮ ମସିହାରେ ଯେଉଁ ଶେଷ ପରୀକ୍ଷା ହେଲା, ସେଥିରେ ଡକ୍ଟର ପରିଜା ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କଲେ । ତା' ଫଳରେ ଉଦ୍ଭିଦବିଜ୍ଞାନରେ ଅଧିକ ଗବେଷଣା ପାଇଁ ତାଙ୍କୁ 'ଫ୍ରାଙ୍କ୍ ସ୍ମାର୍ଟ' ପୁରସ୍କାର ଓ ଛାତ୍ରବୃତ୍ତି ମିଳିଥିଲା । ପ୍ରଫେସର ବ୍ଲାକ୍‌ମ୍ୟାନଙ୍କ ସାନ୍ନିଧ୍ୟରେ ଆସି ତାଙ୍କର ସହଯୋଗିତାରେ ଉଦ୍ଭିଦବିଜ୍ଞାନ କ୍ଷେତ୍ରରେ ସେ ଉଚ୍ଚଧରଣର ଗବେଷଣା ଚଳାଇଲେ । ଦୁଇ ବର୍ଷ ପରେ ବିଲାତ ସରକାର ତାଙ୍କୁ ସେଓ ଫଳକୁ ସୁରକ୍ଷିତ କରିବାର ସର୍ବୋତ୍ତମ ଉପାୟ ଆବିଷ୍କାର କରିବା ପାଇଁ ନିଯୁକ୍ତ କଲେ ।

କେମ୍ବ୍ରିଜର କ୍ରାଏଷ୍ଟ କଲେଜରେ ସାତ ବର୍ଷ ରହିବା ଭିତରେ ସେ ସେଠାକାର ଭାରତୀୟ ଛାତ୍ର ମଜଲିସ୍‌ର ପ୍ରଥମେ ସମ୍ପାଦକ ଏବଂ ପରେ ସଭାପତିର ଆସନ ଅଳଙ୍କୃତ କରିଥିଲେ । ସେତେବେଳେ କେମ୍ବ୍ରିଜରେ ତାଙ୍କର ସମକାଳୀନ ବନ୍ଧୁ ରୂପେ ଥିଲେ ବୀରବଳ ସାହାଣୀ, ଚିନ୍ତାମନ ଦ୍ୱାରକାନାଥ ଦେଶମୁଖ, ଆଫଜଲ୍ ହୋସେନ୍, ହନୁମନ୍ତ ରାଓ, ରାମାନୁଜନ୍, ଜନ୍ ମାଥାଇ ଏବଂ ଅନ୍ୟ କେତେଜଣ ।

୧୯୨୦ ମସିହା ଅଗଷ୍ଟରେ ସେ ଯେତେବେଳେ ଓଡ଼ିଶାକୁ ଫେରିଲେ ସେତେବେଳେ ସେ ଭାରତୀୟ ଶିକ୍ଷାବିଭାଗରେ ଉଦ୍ଭିଦବିଜ୍ଞାନରେ ପ୍ରଫେସର ହିସାବରେ ରେଭେନ୍ସା କଲେଜରେ ଯୋଗ ଦେଲେ । ସର୍ବସାଧାରଣରେ ସେ

ପରିଜାସାହେବ ନାମରେ ଲୋକପ୍ରିୟ ଥିଲେ । ତାଙ୍କର ଗଭୀର ଜ୍ଞାନ ଓ ଅଧ୍ୟୟନ ପ୍ରବଣତା ଯୋଗୁଁ ସେ ଛାତ୍ରମାନଙ୍କର ଶ୍ରଦ୍ଧା, ଭକ୍ତି ଓ ଆସ୍ଥାଭାଜନ ହୋଇପାରିଥିଲେ । ତାଙ୍କର ଅକ୍ଲାନ୍ତ ପ୍ରଚେଷ୍ଟା ଫଳରେ ୧୯୩୦ ମସିହାରେ ରେଭେନ୍ସା କଲେଜରେ ଉଦ୍ଭିଦବିଜ୍ଞାନରେ ଅନର୍ସ ପାଠ୍ୟ କାର୍ଯ୍ୟକ୍ରମ ଆରମ୍ଭ ହୋଇଥିଲା ଏବଂ ସମଗ୍ର ଦେଶରେ ଉଦ୍ଭିଦବିଜ୍ଞାନର ଏକ ବିଶେଷ ଶିକ୍ଷା ଓ ଗବେଷଣା କେନ୍ଦ୍ର ରୂପେ ରେଭେନ୍ସା କଲେଜ ସୁନାମ ଅର୍ଜନ କରିଥିଲା ।

ଜଳାଶୟରେ ଜାତ ବିଭିନ୍ନ ଦଳ ଉପରେ ସେ ଅନେକ ତଥ୍ୟ ପ୍ରକାଶ କରିଥିଲେ । ବନ୍ୟା ପ୍ରଭାବରୁ, ମରୁଡ଼ି ପ୍ରଭାବରୁ ଏବଂ ଲୁଣି ପ୍ରଭାବରୁ ଧାନକୁ ରକ୍ଷା କରିବା ପାଇଁ ସେ ଯେଉଁସବୁ ଗବେଷଣା କରିଥିଲେ ସେଗୁଡ଼ିକ ତାଙ୍କର ମହନୀୟ କୀର୍ତ୍ତି ରୂପେ ଚିରଦିନ ଘୋଷିତ ହେଉଥିବ । ୧୯୩୮ ମସିହା ଫେବୃଆରୀ ଠାରୁ ୧୯୪୫ ମସିହା ଅପ୍ରେଲ ପର୍ଯ୍ୟନ୍ତ ସେ ରେଭେନ୍ସା କଲେଜରେ ଅଧ୍ୟକ୍ଷ ଥିଲେ । ଏହି ଦୀର୍ଘକାଳ ଭିତରେ ସେହି କଲେଜରେ ସେ ଅନେକ ଶିକ୍ଷାଗତ ସଂସ୍କାର ଆଣିବାରେ ଅଗ୍ରଣୀ ହୋଇଥିଲେ ।

ତାଙ୍କରି ସମୟରେ ଛାତ୍ରାବାସରେ ସାଧାରଣ ମେସ୍ ସ୍ଥାପିତ ହୋଇଥିଲା, ଟ୍ୟୁଟୋରିଆଲ ପଦ୍ଧତି ପ୍ରଚଳିତ ହେଲା ଏବଂ କଲେଜ ୟୁନିୟନ୍ ପାଇଁ ଛାତ୍ର ସଭାପତି ନିର୍ବାଚନ ପଦ୍ଧତି ପ୍ରଚଳିତ ହେଲା । ଏହାଦ୍ୱାରା ଛାତ୍ରମାନେ ନିଜ ଉପରକୁ ଦାୟିତ୍ୱ ନେବା ପାଇଁ ଆଗ୍ରହାନ୍ୱିତ ହୋଇଥିଲେ । ସେ କଲେଜରେ ବାହାରର ବିଶିଷ୍ଟ ବ୍ୟକ୍ତିମାନଙ୍କ ଦ୍ୱାରା ସାଂସ୍କୃତିକ ଓ ବୈଜ୍ଞାନିକ ବକ୍ତୃତାମାଳା ଦେବା ଲାଗି ଆୟୋଜନ କରିଥିଲେ ଏବଂ ଗୋଟିଏ ଛାତ୍ର ଶ୍ରମ ଶିବିର ଖୋଲିଥିଲେ, ଯାହା ଫଳରେ କି ଛାତ୍ରମାନେ ଦୈହିକ ଶ୍ରମର ମର୍ଯ୍ୟାଦା ବୁଝିବା ସଙ୍ଗେ ସଙ୍ଗେ ନିଜ ପାଇଁ କିଛି ଅର୍ଥ ଉପାର୍ଜନ କରିବାକୁ କ୍ଷମ ହେଉଥିଲେ । ଏ ଶତାବ୍ଦୀର ବହୁ ମେଧାବୀ ବ୍ୟକ୍ତି, ବୈଜ୍ଞାନିକ, ରାଜନୀତିଜ୍ଞ ଏବଂ ଯେଉଁମାନେ ଜୀବନର ବିଭିନ୍ନ କ୍ଷେତ୍ରରେ ବିଶେଷ ପ୍ରତିଷ୍ଠା ଅର୍ଜନ କରିଛନ୍ତି ସେମାନେ ସମସ୍ତେ ଏହି ମହାନ୍ ଶିକ୍ଷାବିତ୍‌ଙ୍କର ଜୀବନ୍ତ କୀର୍ତ୍ତି ରୂପେ ପରିଗଣିତ ହେବେ ।

ପ୍ରଫେସର ପରିଜା ୧୯୪୩ରୁ ୧୯୪୮ ପର୍ଯ୍ୟନ୍ତ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି ଆସନ ଅଳଙ୍କୃତ କରିଥିଲେ । ସେତେବେଳେ ଏହି ବିଶ୍ୱବିଦ୍ୟାଳୟଟି ଶୈଶବ ଅବସ୍ଥାରେ ଥିଲା । ଡକ୍ଟର ପରିଜା ହିଁ ଏହାକୁ ପାଳନ କରି ଏହି ପରିଣତ ଅବସ୍ଥାକୁ ଆଣିବା ଦିଗରେ ପ୍ରଗାଢ଼ ଅଧ୍ୟବସାୟ କରିଥିଲେ । ୧୯୪୫ରେ ଓଡ଼ିଶା ସରକାରଙ୍କ ନୂତନ ଭାବେ ସଂସ୍ଥାପିତ ଉନ୍ନୟନ ବିଭାଗରେ ତାଙ୍କୁ କୃଷି ଉପସଂସ୍ଥାର ପ୍ରଥମ ନିର୍ଦ୍ଦେଶକ ରୂପେ କାର୍ଯ୍ୟ କରିବାକୁ ପଡ଼ିଥିଲା ଏବଂ ଏହି ସ୍ଥାନରେ ରହି ଓଡ଼ିଶାରେ କୃଷିର ଉନ୍ନତି ପାଇଁ ସେ ବହୁ କ୍ରାନ୍ତିକାରୀ ଦିଗ୍‌ଦର୍ଶନ ଦେଇଥିଲେ ଏବଂ "ଅଧିକ ଖାଦ୍ୟ ଉପୁଜାଅ" ଅଭିଯାନକୁ ସେ ଗତିଶୀଳ କରାଇଥିଲେ ।

୧୯୪୮ ମସିହାରେ ଶ୍ରୀ ଗୋବିନ୍ଦ ମାଳବ୍ୟଙ୍କ ଦ୍ୱାରା ଅନୁରୁଦ୍ଧ ହୋଇ ଡକ୍ଟର ପରିଜା ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ପ୍ରୋ-ଭାଇସ୍‌ଚାନସେଲର ଦାୟିତ୍ୱ ଗ୍ରହଣ କରିଥିଲେ ଓ ୧୯୫୧ ପର୍ଯ୍ୟନ୍ତ ଅତି ଦକ୍ଷତାର ସହିତ ସେ ସେହି ଦାୟିତ୍ୱକୁ ତୁଲାଇଥିଲେ । ୧୯୫୨ ମସିହାରେ ସେ ଓଡ଼ିଶା ବିଧାନସଭାକୁ ସ୍ୱାଧୀନ ସଭ୍ୟ ଭାବେ ନିର୍ବାଚିତ ହୋଇ ଆସିଲେ ଏବଂ କଟକ ଉନ୍ନୟନ ଟ୍ରଷ୍ଟ ପରିକଳ୍ପନାର ସେ ଥିଲେ ପ୍ରଥମ ସୂତ୍ରଧର । ତାଙ୍କର ସେଦିନର ସ୍ୱପ୍ନ ଦୁଇଟି ଦଶନ୍ଧି ପରେ ଆଜି ବାସ୍ତବ ହେବାକୁ ଯାଉଛି ।

୧୯୫୫ ସେପ୍ଟେମ୍ବର ମାସରେ ସେ ପୁନର୍ବାର ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲେ ଏବଂ ସେହି ପଦରେ ଦୀର୍ଘ ଦଶବର୍ଷ ରହି ଦକ୍ଷତାର ସହ କର୍ତ୍ତବ୍ୟ ସଂପାଦନ କରିଥିଲେ । ଏହି ସମୟ ଭିତରେ ଉତ୍କଳ ବିଶ୍ୱବିଦ୍ୟାଳୟ ଗୋଟିଏ ପୂର୍ଣ୍ଣାଙ୍ଗ ଅନୁଷ୍ଠାନ ଭାବେ ଗଢ଼ିଉଠିଥିଲା ଏବଂ ଏହି କାଳ ଭିତରେ ବିଭିନ୍ନ ପାଠ୍ୟକ୍ରମରେ ବିଭିନ୍ନ ବିଭାଗ ମଧ୍ୟ ଖୋଲିଥିଲା । ବହୁ ବିଷୟରେ ଗବେଷଣା କେନ୍ଦ୍ରମାନ ଖୋଲିଥିଲା । ୧୯୫୮ ମସିହାରେ ଜାନୁଆରୀ ପହିଲାରେ ଭାରତର ତତ୍‌କାଳୀନ ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ରପ୍ରସାଦ ବାଣୀବିହାର ଠାରେ ବର୍ତ୍ତମାନର୍ ବିଶ୍ୱବିଦ୍ୟାଳୟର ହତା ଲାଗି ଭିତ୍ତି ପ୍ରସ୍ତର ସ୍ଥାପନ କରିଥିଲେ । ୧୯୬୩ ମସିହା ଜାନୁଆରୀ ୨ ତାରିଖରେ ସ୍ୱର୍ଗତ ରାଷ୍ଟ୍ରପତି ଡକ୍ଟର ସର୍ବପଲ୍ଲୀ ରାଧାକ୍ରିଷ୍ଣନ ବିଶ୍ୱବିଦ୍ୟାଳୟର କ୍ୟାମ୍ପସ୍ ଉଦ୍‌ଘାଟନ କରିଥିଲେ ।

୧୯୬୦ ଜାନୁଆରୀରେ ଭାରତୀୟ ବିଜ୍ଞାନ କଂଗ୍ରେସର ବମ୍ବେ ଅଧିବେଶନରେ ଡକ୍ଟର ପରିଜା ସଭାପତିତ୍ୱ କରିଥିଲେ ଏବଂ ଭାରତୀୟ ଜାତୀୟ ବିଜ୍ଞାନ କଂଗ୍ରେସ ସଂସଦର ସାଧାରଣ ସଭାପତି ରୂପେ ସେ ନିର୍ବାଚିତ ହେବା ପରେ ତାଙ୍କର ସୁଖ୍ୟାତି ଶୀର୍ଷକୁ ଉଠିଥିଲା । ଇତିପୂର୍ବରୁ ଏହି ଭାରତୀୟ ବିଜ୍ଞାନ କଂଗ୍ରେସର ସେ ପାଞ୍ଚବର୍ଷ ପର୍ଯ୍ୟନ୍ତ ସମ୍ପାଦକ ଥିଲେ । ୧୯୬୨-୬୩ ମସିହା ଭିତରେ ଭାରତ ଓ ଶ୍ରୀଲଙ୍କାର ଆନ୍ତର୍ବିଶ୍ୱବିଦ୍ୟାଳୟ ବୋର୍ଡର ସ୍ଥାୟୀ କମିଟିରେ ସେ ଚେୟାରମ୍ୟାନ୍ ଥିଲେ ।

ତାଙ୍କର ସମର୍ଥ ନିର୍ଦ୍ଦେଶରେ ଭାରତୀୟ ବିଜ୍ଞାନ କଂଗ୍ରେସର ସାଧାରଣ ଅଧିବେଶନ ୧୯୬୨ ମସିହାରେ କଟକ ଠାରେ ଅନୁଷ୍ଠିତ ହୋଇଥିଲା । ଆଜିପର୍ଯ୍ୟନ୍ତ ବି ସେହି ଅଧିବେଶନର ସ୍ମୃତି ଓଡ଼ିଶାବାସୀଙ୍କ ମନରେ ଜାଗ୍ରତ ରହିଛି । ୧୯୬୩ ମସିହାରେ ବିଶ୍ୱବିଦ୍ୟାଳୟ ମଞ୍ଜୁରି କମିସନ୍‌ର ସାଧାରଣ ଶିକ୍ଷା କମିଟିର ସେ ଚେୟାରମ୍ୟାନ୍ ଥିଲେ । ୧୯୬୬ରୁ ୧୯୭୦ ପର୍ଯ୍ୟନ୍ତ ସେ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର ପରିଚାଳନା ବୋର୍ଡ଼ର ଜଣେ ସକ୍ରିୟ ସଭ୍ୟ ଭାବେ କାର୍ଯ୍ୟ କରିଥିଲେ ଏବଂ ଉକ୍ତ ବିଶ୍ୱବିଦ୍ୟାଳୟ ୧୯୭୬ ଜାନୁଆରୀରୁ ତାଙ୍କୁ ଡକ୍ଟର ଅଫ୍ ସାଇନ୍ସ ଉପାଧିରେ ଭୂଷିତ କରି କୃତଜ୍ଞତା ଜ୍ଞାପନ କରିଥିଲେ ।

ସେଓ ଫଳର ଶ୍ୱାସକ୍ରିୟା ସଂପର୍କରେ ତାଙ୍କର ଗବେଷଣାରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ଅଙ୍ଗାରକାମ୍ଳ ହ୍ରାସରେ ଅମ୍ଳଜାନର ସଂରକ୍ଷଣ ପ୍ରଭାବ ରହିଛି ଏବଂ ତା'ପରେ ସେ 'ଅକ୍ସିଡେଟିଭ୍ ଆନାବୋଲିଜମ୍' ସିଦ୍ଧାନ୍ତରେ ଉପନୀତ ହୋଇଥିଲେ । ସେ ଏହିସବୁ ଗବେଷଣା କେମ୍ବ୍ରିଜରେ ଥିବା ସମୟରେ କରିଥିଲେ । କଟକ ରେଭେନ୍ସା କଲେଜରେ ଉଦ୍ଭିଦ ବିଦ୍ୟା ସମ୍ପର୍କିତ ବିଭିନ୍ନ ଗବେଷଣା କାର୍ଯ୍ୟ ପାଇଁ ସେ କେନ୍ଦ୍ର ପ୍ରତିଷ୍ଠା କରିଥିଲେ । ତାଙ୍କର ଗବେଷଣା (କ) ଜଳଜ ଗୁଳ୍ମ ଏବଂ ପାଣିରେ ଜନ୍ମୁଥିବା ଦଳ, (ଖ) ଧାନଗଛର ଶରୀରତତ୍ତ୍ୱ, (ଗ) ବୀଜର ଅଙ୍କୁରୋଦ୍‌ଗମ ପ୍ରକ୍ରିୟା, (ଘ) କଟକର ନୀଳ ସବୁଜ ଶୈବାଳ ଓ (ଙ) ସମଗ୍ର ଭାବେ ଶୈବାଳ ଉତ୍ପାଦନ ଗବେଷଣା ଉପରେ ପର୍ଯ୍ୟବସିତ ଥିଲା । ଅନେକ ପାଠ୍ୟପୁସ୍ତକରେ ଓ ଭାରତ ତଥା ବିଦେଶୀ ରାଷ୍ଟ୍ରର ଗବେଷଣା ପତ୍ରିକାରେ ତାଙ୍କର ଗବେଷଣାମୂଳକ ସିଦ୍ଧାନ୍ତ ଉଦ୍ଧାର କରାଯାଇଥିବା ଦେଖିବାକୁ ମିଳେ । ଚିଲିକା ହ୍ରଦର ଜଳଜାତ ଗୁଳ୍ମରୁ ଅଗର ଅଗର ପ୍ରସ୍ତୁତି ଉପରେ ଏବଂ ଧାନର ବନ୍ୟା ପ୍ରତିରୋଧ, ମରୁଡ଼ି ପ୍ରତିରୋଧ ଓ ଲବଣ ପ୍ରତିରୋଧ ଶକ୍ତି ଉପରେ ତାଙ୍କର ଗବେଷଣା ଖୁବ୍ ଫଳପ୍ରଦ ଓ ଉପାଦେୟ ହୋଇପାରିଛି ।

ଡକ୍ଟର ପରିଜାଙ୍କ ବ୍ୟକ୍ତିତ୍ୱରେ ବୈଜ୍ଞାନିକର କୁଶଳୀ ସିଦ୍ଧାନ୍ତ ଏବଂ ଜଣେ ଶିଳ୍ପୀର ସୌନ୍ଦର୍ଯ୍ୟବୋଧ ଓ ମାନବିକତା ମିଶି ରହିଥିଲା । ବିଶ୍ୱର ଉଦ୍ଭିଦବିଜ୍ଞାନକୁ ତାଙ୍କର ଦାନ ଅତୁଳନୀୟ । ସେ ଜାତୀୟ କ୍ଷେତ୍ରରେ, ରାଜ୍ୟ କ୍ଷେତ୍ରରେ ଓ ବିଶ୍ୱବିଦ୍ୟାଳୟ କ୍ଷେତ୍ରରେ ବିଭିନ୍ନ ଶିକ୍ଷା ନୀତିରେ ଅଂଶ ଗ୍ରହଣ କରି ସେ ଦିଗରେ ଯଥେଷ୍ଟ ଆଲୋକପାତ କରିଅଛନ୍ତି । ଜଣେ ଉଦାର ହୃଦୟ ଛାତ୍ରବତ୍ସଳ ଗୁରୁ ହିସାବରେ ସେ ତାଙ୍କ ଜୀବନକାଳ ମଧ୍ୟରେ ଶତ ଶତ ଦରିଦ୍ର ଛାତ୍ରଙ୍କୁ ବିଭିନ୍ନ ପ୍ରକାର ସାହାଯ୍ୟ କରିଅଛନ୍ତି ।

ମୃତ୍ୟୁ ପୂର୍ବରୁ ତାଙ୍କର ଅନ୍ତିମ ଇଚ୍ଛା ଲେଖାଟି ଭିତରେ ତାଙ୍କର ଦରିଦ୍ରମାନଙ୍କ ପ୍ରତି ଗଭୀର ସହାନୁଭୂତିର କଥା ସ୍ପଷ୍ଟ ପ୍ରତିଫଳିତ ହୋଇଛି । ମୋ ଭଳି ଯେଉଁମାନେ ବେଶୀ ସମୟ ତାଙ୍କର ନିକଟ ସମ୍ପର୍କରେ ଆସିଛନ୍ତି, ଯେଉଁମାନେ ଜାତୀୟ ଜୀବନର ବିଭିନ୍ନ କ୍ଷେତ୍ରରେ ତାଙ୍କର ସହକର୍ମୀ ରୂପେ କାର୍ଯ୍ୟ କରିଛନ୍ତି ସେମାନେ ତାଙ୍କୁ ଚିରଦିନ ପାଇଁ ଏକ ମହାନ୍ ଆତ୍ମାରୂପେ ଏବଂ ଏକ ପବିତ୍ର ହୃଦୟ ବ୍ୟକ୍ତିରୂପେ ଚିରଦିନ ସ୍ମରଣ ରଖିବେ । ଆଜିର ଯୁବସମାଜ ଡକ୍ଟର ପରିଜାଙ୍କ ଆଦର୍ଶ ଜୀବନରୁ ବହୁ ଶିକ୍ଷା କରିବାକୁ ପାଇବେ । ମାନବିକତା, କରୁଣା ଓ ନୀତିପୂର୍ଣ୍ଣ ଜୀବନ ପଥରେ ଗତିକରି ଜାତୀୟ ଜୀବନର ଲକ୍ଷ୍ୟ ସାଧନ କରିବା ଦିଗରେ ଏହି ମହାନ୍ ବ୍ୟକ୍ତିଙ୍କ ଜୀବନ ଚରିତ ଓ କୀର୍ତ୍ତିମାନ ଆମମାନଙ୍କ ଆଗରେ ଆଲୋକ ସ୍ତମ୍ଭରୂପେ କାର୍ଯ୍ୟ କରୁ, ଏତିକି ହିଁ ପ୍ରାର୍ଥନା ।

(ଓଡ଼ିଶା ଗେଜେଟ୍ ସ୍ୱତନ୍ତ୍ର ସଂଖ୍ୟା ୭୧୫ ନମ୍ବର, କଟକ, ଶୁକ୍ରବାର, ସ୍ୱରାଷ୍ଟ୍ର ବିଭାଗ ବିଜ୍ଞାପନ, ଜୁନ୍ ୨, ୧୯୭୮)

# ପ୍ରଫେସର ପ୍ରାଣକୃଷ୍ଣ ପରିଜାଙ୍କ ବିଷୟରେ କେତେପଦ

**ହରିହର ପଟ୍ଟନାୟକ**

ପୂର୍ବାଭାସ – ବହୁଦିନ ତଳର କଥା । ବୋଧହୁଏ ୧୯୩୬ ମସିହା ହେବ । ମୁଁ କଟକ ରେଭେନ୍ସା କଲିଜିଏଟ୍ ସ୍କୁଲର ଛାତ୍ର ଥାଏ ।

ମୋର ଜଣେ ସଙ୍ଗୀ ଥିଲେ । ତାଙ୍କ ନାମ ଶ୍ରୀ ରାଧାକାନ୍ତ ବାଇ । ସେ ପରିଜାସାହେବଙ୍କ ଗାଁ ଆଡ଼ର ଲୋକ । ବାଇ ରେଭେନ୍ସା କଲିଜିଏଟ୍ ସ୍କୁଲ ହଷ୍ଟେଲରେ ରହୁଥିଲେ । ଥରେ ମୁଁ ରାଧାକାନ୍ତ ବାଇଙ୍କ କୋଠରିରେ ପରିଜାସାହେବଙ୍କର ଗୋଟିଏ ଫଟୋ ଦେଖିଲି । କୋଟ-ପ୍ୟାଣ୍ଟ ପିନ୍ଧା ଏକ ସୁପୁରୁଷ । ମୋତେ ପରିଜାସାହେବଙ୍କ ସଙ୍ଗେ ଚିହ୍ନା କରାଇଦେବା ପାଇଁ ବାଇଙ୍କୁ କହିଲି ।

ପରିଜାସାହେବଙ୍କୁ ଦେଖିଲି – ଆଗେ ରୀତିମତ ଫେବୃଆରୀମାସରେ ରେଭେନ୍ସା କଲେଜର ପ୍ରତିଷ୍ଠା ଦିବସ ପାଳିତ ହୁଏ । ସେହିଦିନ ବାଇ, ମୁଁ ଓ ଆଉ କେତେଜଣ ସଙ୍ଗୀ ରେଭେନ୍ସା କଲେଜ ଯିବାର ସ୍ଥିର ହେଲା । ପ୍ରତିଷ୍ଠା ଦିବସରେ କଲେଜରେ ପ୍ରଦର୍ଶନୀ ହୁଏ । ବିଜ୍ଞାନ ବିଭାଗର ପ୍ରଦର୍ଶନୀ ଅତି ଚିତ୍ତାକର୍ଷକ ହୁଏ । ୧୯୩୮ରେ ପ୍ରଦର୍ଶନୀ ଦେଖା ସଙ୍ଗେ ସଙ୍ଗେ ପରିଜାସାହେବଙ୍କୁ ସଶରୀରେ ଦେଖିବାର ସୁଯୋଗ ପାଇଲି ।

ପ୍ରିନ୍ସପାଲ ପରିଜାସାହେବ – କିଛିଦିନ ଚାଲିଗଲା । ମୁଁ ମାଟ୍ରିକ ପାସ୍ କଲାପରେ ରେଭେନ୍ସା କଲେଜରେ ବିଜ୍ଞାନ ଶ୍ରେଣୀରେ ନାମ ଲେଖାଇଲି । ସେତେବେଳେ ଉଦ୍ଭିଦବିଜ୍ଞାନ ଅପ୍‌ସନାଲ (ଇଚ୍ଛାଧୀନ) ବିଷୟ ଭାବେ ନିଆଯାଉଥିଲା । ମୁଁ ଉଦ୍ଭିଦବିଜ୍ଞାନ ଅପ୍‌ସନାଲ ନେଲି ।

ଆଇ.ଏସ୍‌ସି. ପାସ୍ ପରେ ବି.ଏସ୍‌ସି.ରେ ଅନର୍ସ (ସମ୍ମାନ) କଅଣ ନେବି ସ୍ଥିର କରିପାରିଲି ନାହିଁ । ବାପାଙ୍କୁ ପଚାରିଲି । ବାପା ମୋତେ ଜଣେ ମଉସାଙ୍କ ପାଖକୁ ନେଇଗଲେ । ସେହି ମଉସା ପରିଜାସାହେବଙ୍କର ବନ୍ଧୁ । ମଉସାଙ୍କୁ ଅନର୍ସ କଥା ପଚାରିଲୁ । ସେ କହିଲେ, "ଚାଲ, ପରିଜାସାହେବଙ୍କୁ ପଚାରିବା । ମଉସା ମୋ ସଙ୍ଗେ ଗଲେ । ଆମେ ଗଲାବେଳକୁ ସେ ତାଙ୍କ କ୍ୱାର୍ଟରର ବାରଣ୍ଡାରେ ବସି ଖବରକାଗଜ ପଢ଼ୁଥିଲେ । ମଉସା ମତେ ଚିହ୍ନା କରାଇ ଦେଲେ ଓ ଅଭିପ୍ରାୟ ଜଣାଇଲେ ।" "ତୁମେ ଆସନ୍ତାକାଲି ଏହି ସମୟରେ ତୁମ 'ମାର୍କସିଟ୍' ଧରି

ଆସିବ ।'' ପରଦିନ ମୁଁ ଗଲି ଏବଂ ତାଙ୍କୁ 'ମାର୍କସିଟ୍'ଟି ଦେଖାଇଲି । ସେ ସବୁ ଦେଖିସାରି କହିଲେ,'' ତୁମେ ଉଦ୍ଭିଦବିଜ୍ଞାନ (ବଟାନୀ)ରେ ଅନର୍ସ ନିଅ । ସେଥିରେ ଖୁବ୍ ଭଲ ନମ୍ବର ରଖିଛ ।'' ମୁଁ ରସାୟନ ବିଦ୍ୟାରେ ଅନର୍ସ ନେବି ବୋଲି ଭାବିଥିଲି । ପରିଜାସାହେବଙ୍କ ପରାମର୍ଶ ଅନୁସାରେ ମୁଁ ଉଦ୍ଭିଦବିଜ୍ଞାନରେ ଅନର୍ସ ନେଇ ବି.ଏସ୍‌ସି. ପଢ଼ିଲି । ମୋର ଗତିପଥ ବଦଳିଗଲା । ସେ ବର୍ଷରେ ଥରେ ସବୁ ଛାତ୍ରମାନଙ୍କୁ ଭେଟୁଥିଲେ । କେବଳ ବିଜ୍ଞାନ ଛାତ୍ର ନୁହେଁ, କଳା ଛାତ୍ରମାନଙ୍କୁ ମଧ୍ୟ ସେ ଏକ ଚାହାଭୋଜିରେ ଭେଟନ୍ତି । ସମସ୍ତଙ୍କ ନାଁ, ଗାଁ, ବାପାଙ୍କ ନାଁ ଆଦି ବୁଝିରଖନ୍ତି । ଥରେ ଶୁଣିଗଲେ ସେ ସବୁଦିନ ପାଇଁ ଛାତ୍ରଙ୍କୁ ମନେରଖନ୍ତି । ତେଣୁ ଛାତ୍ର-ଶିକ୍ଷକ ସୁସମ୍ପର୍କ ରହୁଥିଲା । ତାଙ୍କର ସ୍ମରଣଶକ୍ତି ଖୁବ୍ ପ୍ରଖର ଥିଲା । ତେଣୁ ସେ ସବୁ ଛାତ୍ରଙ୍କ ନାଁ ମନେରଖି ପାରୁଥିଲେ । ଏପରି ସ୍ମରଣଶକ୍ତି ଖୁବ୍ କମ୍ ଲୋକଙ୍କର ଥାଏ ।

ପରିଜାସାହେବଙ୍କ ସାନ୍ନିଧ— ବି.ଏସ୍‌ସି. ଅନର୍ସ ଶ୍ରେଣୀରେ ପଢ଼ିଲା ବେଳେ ପ୍ରଫେସର ପରିଜା ରେଭେନ୍ସା କଲେଜର ପ୍ରିନ୍ସିପାଲ ଓ ପରେ କୃଷିବିଭାଗର ଡାଇରେକ୍ଟର ହେଲେ । ଏତେ କାର୍ଯ୍ୟବ୍ୟସ୍ତ ଥାଇ ମଧ୍ୟ ସେ ଆମର ଅନର୍ସ ଥିଓରି ଓ ପ୍ରାକ୍ଟିକାଲ କ୍ଲାସ ନେବାକୁ ଭୁଲୁ ନ ଥିଲେ । ସକାଳଓଳି ଅନର୍ସ ଥିଓରି କ୍ଲାସ ନିଅନ୍ତି ।

ଥିଓରିକ୍ଲାସରେ ସେ ଉଦ୍ଭିଦର ଶରୀରତତ୍ତ୍ୱ ବିଷୟ ପଢ଼ାନ୍ତି । ସେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ବ୍ଲାକ୍‌ମ୍ୟାନଙ୍କ ସଙ୍ଗେ ଉଦ୍ଭିଦରେ ଶ୍ୱାସକ୍ରିୟା ବିଷୟ ପ୍ରାଞ୍ଜଳ ଭାବେ ବୁଝାଇ ଦିଅନ୍ତି । ପ୍ରଥମ ପୃଥିବୀ ମହାସମର ସମୟରେ ସେ ବିଲାତରେ ଥିଲେ । ''ସେଉ''କୁ ସାଇତି ରଖିବା ପାଇଁ ଏକ ଗବେଷଣା କରିବାକୁ ଇଂରେଜ ସରକାର ବ୍ଲାକ୍‌ମ୍ୟାନ୍‌ସାହେବଙ୍କୁ (F.F. Blackman) ନିର୍ଦ୍ଦେଶ ଦେଇଥିଲେ । ସେଉକୁ ସାଇତି ରଖିବାକୁ ହେଲେ ତା'ର ଶ୍ୱାସକ୍ରିୟା ଟିକେ ଶିଥିଳ କରିବା ଆବଶ୍ୟକ । ତାହା ହେଲେ ସେଉକୁ ବହୁତ ଦିନ ସାଇତି ରଖିହେବ । ଏହି ଐତିହାସିକ ଗବେଷଣା ସେଉ ଓ ଚେରି ଥିରେଲ୍ ପତ୍ର ଉପରେ ମଧ୍ୟ ବ୍ଲାକ୍‌ମ୍ୟାନ୍‌ଙ୍କ ସଙ୍ଗେ ମିଶି ପରିଜାସାହେବ କଲେ । ସେଥିପାଇଁ ସେ ପୃଥିବୀରେ ଆଦୃତ ହେଲେ । ତାଙ୍କର ପାଠ ପଢ଼ାଇବା ପ୍ରଣାଳୀ ଅତି ଉଚ୍ଚକୋଟୀର ଥିଲା । ପ୍ରତିଦିନ କ୍ଲାସକୁ ଆସିବା ଆଗରୁ ସେ ଘଣ୍ଟାଏ ନିଜେ ପ୍ରସ୍ତୁତ ହେଉଥିଲେ । ପିଲାମାନଙ୍କୁ ବୁଝାଇବା ପାଇଁ ଚିତ୍ର କରି ଆଣୁଥିଲେ । କ୍ଲାସରେ ମଧ୍ୟ ନାନା ପରୀକ୍ଷା (experiment) ସାହାଯ୍ୟରେ ପାଠ ବୁଝାଇ ଦେଉଥିଲେ । କେବଳ ଉଦ୍ଭିଦର ଶରୀର ତତ୍ତ୍ୱ ନୁହେଁ, ଜୀବାଶ୍ମ (Fossil) ବିଷୟରେ ମଧ୍ୟ ସେ ଖୁବ୍ ଭଲ ଭାବରେ ବତାଉଥିଲେ । ତାଙ୍କ ପଢ଼ା ଟିପାଖାତାଟି ମଧ୍ୟ ମୁଁ ଏପର୍ଯ୍ୟନ୍ତ ସାଇତି ରଖିଛି । ପାଠପଢ଼ା ପରେ ସେ କେତୋଟି ପ୍ରଶ୍ନ ଦେଇ ତାର ଉତ୍ତର ଲେଖି ଆଣିବାକୁ କହୁଥିଲେ । ଆମେ ସମସ୍ତେ ଉତ୍ତର ଲେଖିଆଣୁ ଓ ସେଗୁଡ଼ିକ ସେ ଆଗ୍ରହର ସହିତ

ସଂଶୋଧନ କରି ଦେଉଥିଲେ । ଥରେ ସେ ଯାହା ପଢ଼ାଉଥିଲେ, ତାହା ଆମ ମନରେ ରହିଯାଉଥିଲା । Plant of axonomy (ଉଦ୍ଭିଦ ବର୍ଗୀକରଣ) ମଧ୍ୟ ସେ ଭଲ ଭାବରେ ଜାଣିଥିଲେ । ବାହାରକୁ ଗଲେ କେଉଁଠାରେ ନୂଆଗଛ ଦେଖିଲେ, ସେ ତାହା ଆଣି ଆମମାନଙ୍କୁ ଦେଖାଉଥିଲେ । ସେ ଶେଷ ଜୀବନ ପର୍ଯ୍ୟନ୍ତ ଏହିପରି ବହୁ ଗଛ ବିଷୟରେ ଜାଣିବାକୁ ନାନା ଚେଷ୍ଟା କରିଛନ୍ତି । ଅନେକ ଗଛର ଡାଳ, ଫୁଲ ଓ ପତ୍ର ସେ ମୋ ପାଖକୁ ପଠାଇଛନ୍ତି, ଓଡ଼ିଶା ପାଇଁ ଅଲଗା ଏକ Flora (ପୁଷ୍ପାଳି) ପ୍ରସ୍ତୁତି ପାଇଁ ସେ ଇଚ୍ଛୁକ ଥିଲେ । ତାହା ତାଙ୍କ ଜୀବଦ୍ଦଶାରେ ପୂରଣ ହୋଇପାରିଲା ନାହିଁ ।

ଉଦ୍ଭିଦବିଜ୍ଞାନ ବିଭାଗ ଉଦ୍ୟାନ— କାର୍ଯ୍ୟବ୍ୟସ୍ତ ଥାଇ ମଧ୍ୟ ପରିଜାସାହେବ ଉଦ୍ଭିଦବିଜ୍ଞାନକୁ ଭୁଲି ନ ଥିଲେ । ତାଙ୍କରି ତିଆରି ଏହି ଉଦ୍ୟାନରେ ସେ କେତେଆଡୁ କେତେ ନୂଆ ନୂଆ ଗଛ ଆଣି ଲଗାଉଥିଲେ । ସେତେବେଳେ ସେ ବ୍ରହ୍ମଦେଶ (ମିଆଁମାର), ଶ୍ରୀଲଙ୍କା ଓ ଆଜିର ପାକିସ୍ଥାନ, ବାଂଲାଦେଶ, ନେପାଳ, ଆଫଗାନିସ୍ଥାନ ଆଦିକୁ ନାନା କାର୍ଯ୍ୟରେ ଯାଇ ସେଠାରୁ ନୂଆ ନୂଆ ଗଛ ସବୁ ଆଣି ବଟାନି ବିଭାଗର ବଗିଚାରେ ଠୁଳ କରିଥିଲେ । ଆମେ ବଗିଚାରେ ବୁଲିଲା ବେଳେ ସେ ବେଳେ ବେଳେ ଆସନ୍ତି ଓ ଆମକୁ ଗଛର ନାଁ ସବୁ ପଚାରନ୍ତି । ଗୋଟିଏ ଗଛ ଦେଖାଇ ସେହି ବଂଶର ଅନ୍ୟ ଗଛ ନାଁ କହିଯିବାକୁ କହନ୍ତି । ଆମେ ନ କହିପାରିଲେ ସେ ଆମକୁ କହିଦିଅନ୍ତି ଓ ଟିପାଖାତାରେ ଟିପିରଖିବାକୁ କହନ୍ତି । ଅନେକ ସମୟରେ ସେ ବହୁ ଢଗଢମାଳି ଆବୃତ୍ତି କରନ୍ତି । ଛୋଟ ଛୋଟ ମଜା ଗପ ମଧ୍ୟ କହନ୍ତି । ବାହାରୁ ଦେଖିଲେ ଜାଣି ହୁଏ ନାହିଁ ଯେ, ସେ ଏତେ ସରସ ଲୋକ । ବାହାରକୁ ଗମ୍ଭୀର ଭିତରେ ସେ ସରଳ । ଅନେକ ତାଙ୍କୁ ନଡ଼ିଆ ସଙ୍ଗେ ତୁଳନା କରନ୍ତି । ବାହାରେ କଠିନ ଓ ଭିତରେ ରସାଳ ।

ଗୋଟିଏ ଦିନର କଥା । ଆମେ ବଗିଚାରେ ବୁଲୁଥିଲୁ । ପରିଜାସାହେବ କୁଆଡୁ ଚାଲିଆସିଲେ । ଆମେ ସବୁ ଶଙ୍କିଗଲୁ । ଗୋଟିଏ ଛୋଟ ଗଇସ ଗଛ ବଗିଚାରେ ଉଠିଥିଲା । ସେ ପଚାରିଲେ "ଏହାର ବଟାନିକାଲ ନାଁ କହିଲ ?" ବଟାନିକାଲ ନାଁ ହେଉଛି, ଲାଟିନ୍ ନାଁ । ଜଣେ ପିଲା ଭୁଲ ନାଁଟି କହିଦେଲା । ସେ କହିଲେ ତମେ ଲିଉକାସ ଅସ୍ପେରା (Leucas aspera) ଚିହ୍ନି ନାହଁ ? ସେ ପିଲାଟି ସଙ୍ଗେ ସଙ୍ଗେ ଉତ୍ତର ଦେଲା "ସାର୍, ମୁଁ ଏ ଗଛ ବଡ଼ ବଡ଼ ଦେଖିଛି । ଛୋଟ ବୋଲି ଚିହ୍ନିପାରିଲି ନାହିଁ ।" ଏକଥା ଶୁଣି ସେ ଗୋଟିଏ ଗପ କହିଲେ । "ଥରେ ଜଣେ ଅପାଠୁଆ ଜୋଇଁ ଶଶୁର ଘରକୁ ଯାଇଥିଲେ । ଜ୍ୱାଇଁମାନେ ଗଲେ ତାଙ୍କ ପାଠପଢ଼ା ଜାଣିବା ପାଇଁ ଶଶୁର ଘର ଲୋକେ ସେତେବେଳେ ଜ୍ୱାଇଁମାନଙ୍କୁ 'ଭାଗବତ', 'କେଶବ କୋଇଲି', 'ମଥୁରା ମଙ୍ଗଳ' ଆଦି ନାନା ପୁରାଣ ପଢ଼ିବାକୁ ଦେଉଥିଲେ । ଜ୍ୱାଇଁ

କେବଳ 'ଅ, ଆ' ପଢ଼ାରୁ ଚାଟଶାଳୀରୁ ବିଦା ହୋଇଛନ୍ତି । ଆଉ ବେଶୀ ପଢ଼ି ନାହାନ୍ତି । ବହି ନ ପଢ଼ି କାନ୍ଦିବାକୁ ଲାଗିଲେ । ଶାଶୁ, ଶଶୁର ବ୍ୟସ୍ତ ହୋଇଗଲେ । କାନ୍ଦିବାର କାରଣ ପଚାରିଲେ । ସ୍ବାଇଁ କହିଲେ ଯେ ଆମ ସମୟରେ ଭଲ ଖାଇପିଇ ଅକ୍ଷରଗୁଡ଼ିକ ବେଶ୍ ବଡ଼ ବଡ଼ ଥିଲେ । ଏବେ ଖାଇବାକୁ ନ ପାଇ ବୋଧେ ଏତେ ଛୋଟ ଛୋଟ ହୋଇଛନ୍ତି । ପୋଥିରେ ଏଗୁଡ଼ିକ ଆଖିକୁ ମଧ ଦିଶୁ ନାହାନ୍ତି ।" ଏହାର ଅର୍ଥ ହେଲା ଯେ ସ୍ବାଇଁ ପ୍ରଥମେ ଚାଟଶାଳୀରେ ବଡ଼ ବଡ଼ 'ଅ, ଆ' ପରେ ଆଉ ପାଠ ପଢ଼ି ନାହାନ୍ତି । ଏ କଥାଶୁଣି ଆମେ ସବୁ ହସିଲୁ ।

ଏହିପରି ବହୁ ମଜା କଥା ତାଙ୍କ ଠାରୁ ଆମେ ଶୁଣିଛୁ । ଥରେ ପ୍ରାକ୍ଟିକାଲ କ୍ଲାସରେ ଥିଲେ । ଆମେ ସବୁ ସବୁଜକଣା (chlorophyll)ର ବିଭିନ୍ନ ଅଙ୍ଗ separating funnel (ପୃଥକକାରୀ କାହାଳୀ) ସାହାଯ୍ୟରେ ଅଲଗା ଅଲଗା କରୁଥିଲୁ । ଏସବୁ ଦେଖି ଆଉଜଣେ ଛାତ୍ର ପରିଜାସାହେବଙ୍କୁ ପଚାରିଲା, "ସାର୍ ! ଏହା କିପରି ହୋଇପାରୁଛି ?" ସେ ସଙ୍ଗେ ସଙ୍ଗେ କହିଲେ, "କିହୋ, ତୁମେ ତଳହଟିରୁ ଆସିଛ କି ?" ସେ ବିଷୟରେ ପୁଣି ଗୋଟେ ଗପ । "ଥରେ ଜଣେ କୋଟ-ପ୍ୟାଣ୍ଟ ପିନ୍ଧା ବାବୁ ତଳହଟିକୁ ଯାଉଥିଲେ । (ତଳହଟି କହିଲେ ନଦୀମୁହାଣର ସମୁଦ୍ରପାଖ ଅଞ୍ଚଳ ବୁଝାଏ) କୋଟ-ପ୍ୟାଣ୍ଟ ପିନ୍ଧା ବାବୁଟିକୁ ଦେଖି ଜଣେ ତାଙ୍କୁ ପଚାରିଲେ, "ଆଜ୍ଞା ଆପଣ ଏ କୋଟ ପ୍ୟାଣ୍ଟ ଭିତରେ କିମିତି ପଶିଲେ ?" ଆମେ ସମସ୍ତେ ହସିଉଠିଲୁ । ସେ ମଧ ତଳହଟି ବା ତଳମାଳ ବିଷୟରେ ଆଉ ଗୋଟିଏ ଗପ କହିଲେ । "ଥରେ ଜଣେ ତଳହଟି ଲୋକକୁ ଗୋଟିଏ ମଣ୍ଡାପିଠା ଖାଇବାକୁ ଦିଆଗଲା । ମଣ୍ଡାପିଠାରୁ ପୁରାଏ କାମୁଡ଼ିଦେଇ ଲୋକଟି ଆଶ୍ଚର୍ଯ୍ୟ ହୋଇଗଲା । ସେ କହିଲା, "ଏହା ଭିତରେ ନଡ଼ିଆକୋରା ପଶିଲା କିମିତି ? "ତଳହଟି ସେତେବେଳେ ଅତି ଅନୁନ୍ନତ ଥାଏ । ଏହିପରି ବହୁ ନିଖୁଣ ଗାଁ ଚିତ୍ର ପରିଜାସାହେବ ଦେଉଥିଲେ । ଢଗଢମାଳି ସେ ବହୁତ କହନ୍ତି । ବହୁ ଶିକ୍ଷଣୀୟ ବିଷୟ ଢଗଢମାଳି ଦ୍ୱାରା ସେ ଅତି ,ସରଳ ଭାବରେ କହୁଥିଲେ ।

ଗାଉଁଲି କଥା ସେ ଭଲ ଭାବରେ ଜାଣିଥିଲେ । ଅତି ଉଚ୍ଚଶିକ୍ଷିତ ହୋଇ ମଧ ସେ ଗାଁର ଚାଲିଚଳଣ, ପିଠାପଣା, ପର୍ବପର୍ବାଣି ବିଷୟ ଭଲଭାବେ ଜାଣିଥିଲେ । ଏପରି କି ଠା' ଭଙ୍ଗା, ଝୋଟିପକା, ଆରିସା, କାକରା ତିଆରି ବିଷୟରେ ନାନା କଥା ସେ କହନ୍ତି । ତାଙ୍କଠୁଁ ଛୋଟ ଛୋଟ ଗପ ଶୁଣିବାକୁ ଖୁବ୍ ଭଲ ଲାଗେ ।

ଆଉ ଗୋଟିଏ କଥା ସେସମୟରେ ସମସ୍ତଙ୍କର ମନେଥିବ । ଥରେ ପ୍ରସିଦ୍ଧ ଜୀବାଶ୍ମ ବିଜ୍ଞାନୀ ବୀରବଲ ସାହାଣୀ ରେଭେନ୍ସା କଲେଜକୁ ମହାଦେଶୀୟ ଚଳନ (Continental drift) ବିଷୟରେ ବକ୍ତୃତା ଦେବାକୁ ଆସିଥିଲେ । ସେ କେମ୍ବ୍ରିଜରେ

ପରିଜ୍ଜାସାହେବଙ୍କ ଦୁଇତିନିବର୍ଷ ଉପର କ୍ଲାସରେ ପଢୁଥିଲେ । 'ଭୂଟଳନ' ପରି ଏକ ନିରସ ବିଷୟକୁ ସେ ଖୁବ୍ ସରସ କରି ବୁଝାଇଦେଲେ । ଆମ ଭାରତ ସମେତ ଆଫ୍ରିକା, ଅଷ୍ଟ୍ରେଲିଆ ଆଦି ମହାଦେଶମାନେ ଆଗେ ଏକତ୍ର ଗୋଟିଏ ଦେଶ ହୋଇଥିଲେ । ସମୟକ୍ରମେ ତାହା କିପରି ଅଲଗା ଅଲଗା ହୋଇ ନୂଆ ମହାଦେଶମାନ ସୃଷ୍ଟି ହେଲା, ତାହା ସେ ପ୍ରାଞ୍ଜଳ ଭାବେ ବୁଝାଇଦେଲେ । ଶେଷରେ ପରିଜ୍ଜାସାହେବ ତାଙ୍କ ମତ ଗୋଟିଏ ଢଗରେ ଶେଷକଲେ ।

''ସ୍ୱର୍ଗରୁ ଅଇଲା କେଉଁ ବିନ୍ଧାଣି,
ଶୁଖିଲା କାଠରୁ ବୁହାଇଲା ପାଣି ।।''

ଏହାର ଅର୍ଥ ହେଲା, ସାହାନୀସାହେବ ଏପରି ନିରସ ବିଷୟକୁ କିପରି ସରସ କରି ବୁଝାଇ ଦେଲେ । ଏପରି ସେ ବହୁ କଥା କହନ୍ତି ।

ସମୟାନୁବର୍ତ୍ତିତା – ପରିଜ୍ଜାସାହେବଙ୍କ ସମୟାନୁବର୍ତ୍ତିତା ବିଷୟ ସମସ୍ତେ ଜାଣନ୍ତି । ଯେଉଁ ସମୟରେ ସେ ପହଞ୍ଚିବାକୁ କହିଥିବେ, ସେହି ସମୟରେ ନିଶ୍ଚୟ ଆସିବେ, ମିନିଟିଏ ଏପଟ ସେପଟ ହେବ ନାହିଁ । ସେ ଯେତେବେଳେ ଆମ କ୍ଲାସ ନେଉଥିଲେ, ସକାଳ ନଅଘଣ୍ଟାର ଯଥେଷ୍ଟ ପୂର୍ବରୁ ଆସି ତାଙ୍କ ରୁମ୍‌ରେ ବସି କ୍ଲାସ୍ ପାଇଁ ପ୍ରସ୍ତୁତ ହେଉଥାନ୍ତି । ଠିକ୍ ନଅଟା ବାଜିଲା ତ ସେ କ୍ଲାସ୍ ଭିତରକୁ ଆସନ୍ତି ଏବଂ ଘଣ୍ଟା ମଧ ମିଳାଇ ହେଉଥିଲା ।

ପରୀକ୍ଷକ ପରିଜ୍ଜାସାହେବ – ଥରେ ଆମେ ବି.ଏସ୍‌ସି. ଅନର୍ସ ପରୀକ୍ଷା ଦେଉଥାଉଁ । ପ୍ରାକ୍ଟିକାଲ ପରୀକ୍ଷା । ବହିଃ-ପରୀକ୍ଷକ ଭାବେ (External Examiner କଲିକତା ପ୍ରେସିଡେନ୍ସି କଲେଜର ଅଧ୍ୟାପକ ଡକ୍ଟର ଜି. ପି. ମଜୁମ୍‌ଦାର ଆସିଥାନ୍ତି । ପରିଜ୍ଜାସାହେବ ଆମର ଆନ୍ତଃ-ପରୀକ୍ଷକ (Internal Examiner) ଥାଆନ୍ତି । ଏହି ପରୀକ୍ଷା ଲଗାତର ଛଅ ଘଣ୍ଟା ହୁଏ । ଦଶଟାରେ ପରୀକ୍ଷା ଆରମ୍ଭ ହେଲା ୧ ଦିନ ଦୁଇଟା ବେଳକୁ ସବୁ ପରୀକ୍ଷାର୍ଥୀଙ୍କ ପାଖରେ ପ୍ଲେଟରେ କିଛି କିଛି ଜଳଖିଆ ରଖା ହେଲା । ଜଣେ ପରୀକ୍ଷାଗାର ସହକାରୀ କହିଲେ ଯେ, ପରିଜ୍ଜାସାହେବ ଦେଇଛନ୍ତି । ଆମେ ସବୁ କାମରେ ବ୍ୟସ୍ତ ଥାଉ । ପରିଜ୍ଜାସାହେବ ଓ ଡକ୍ଟର ମଜୁମଦାର କହିଲେ, ''ପିଲାଏ, ତୁମେ ସବୁ ଖାଇଦିଅ । ସକାଳୁ ଖାଇ ଆସିଥିବ । ଭୋକ ହେବଣି । ''ଆମେ ସମସ୍ତେ ଖାଇସାରି ପୁଣି ପରୀକ୍ଷାରେ ବସିଲୁ । ସେ କିପରି ସବୁ ଆଡ଼କୁ ନଜର ଦିଅନ୍ତି, ତାହା ଲକ୍ଷ୍ୟ କରିବାର କଥା ।

ଆଲ୍ଲାହାବାଦ ବିଶ୍ୱବିଦ୍ୟାଳୟର ବଟାନି ମୁଖ୍ୟ ଅଧ୍ୟାପକ ଶ୍ରୀରଞ୍ଜନଙ୍କ ସଙ୍ଗେ ସମ୍ପର୍କ – ଭାରତବର୍ଷର ସବୁ ବିଶ୍ୱବିଦ୍ୟାଳୟର ବଟାନି ବିଭାଗ ଅଧ୍ୟାପକମାନଙ୍କ ସଙ୍ଗେ ତାଙ୍କର ସୁସମ୍ପର୍କ ଥିଲା ।

ମୁଁ ବି.ଏସ୍‌ସି. ପାସ୍ କଲାପରେ ଏମ୍.ଏସ୍‌ସି. ପଢ଼ିବା ପାଇଁ ୧୯୪୬ ମସିହାରେ ପରିଜାସାହେବଙ୍କଠାରୁ ସୁପାରିସପତ୍ର ନେଇ ଆଲ୍ଲାହାବାଦ ଗଲି. । ସେଠାର ମୁଖ୍ୟ ଅଧ୍ୟାପକ ଡକ୍ଟର ଶ୍ରୀରଞ୍ଜନଙ୍କ ପାଖକୁ ପତ୍ର ନେଇଥିଲି । ଶ୍ରୀରଞ୍ଜନ ପରିଜାସାହେବଙ୍କ ବନ୍ଧୁ । ତାଙ୍କରି ନିର୍ଦ୍ଦେଶକ୍ରମେ ଏମ୍.ଏସ୍‌ସି. କ୍ଲାସରେ ଓ ହଷ୍ଟେଲରେ ନାମ ଲେଖାଇଲି ।

୧୯୪୮ରେ ଏମ୍.ଏସ୍‌ସି. ପାସ୍ କରି ସଙ୍ଗେ ସଙ୍ଗେ ରେଭେନ୍ସା କଲେଜରେ ବଟାନି ବିଭାଗରେ ଅଧ୍ୟାପକ ଭାବେ ଯୋଗଦେଲି । ସେତେବେଳକୁ ପରିଜାସାହେବ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି । ଡକ୍ଟର ପରଶୁରାମ ମିଶ୍ର ଆମ ବିଭାଗୀୟ ମୁଖ୍ୟ ଥାଆନ୍ତି ।

ବିଲାତରେ ପରିଜାଙ୍କ ନାମ – ମୁଁ କଲମ୍ବୋ ପ୍ଲାନ ଫେଲୋସିପ ପାଇ ବିଲାତ ଗଲି । ଲଣ୍ଡନ ବିଶ୍ୱବିଦ୍ୟାଳୟରେ ପ୍ରଫେସର ଜି. ଇ. ଫଗ୍ (G. E. Fogg)ଙ୍କ ନିର୍ଦ୍ଦେଶନାରେ ନୀଳହରିତ୍ ଶୈବାଳର ଯବକ୍ଷାରଜାନ ବିବନ୍ଧନକାରୀ ଗୁଣ ବିଷୟରେ ଗବେଷଣା କଲି । କେତେବାର କେମ୍ବ୍ରିଜ ବିଶ୍ୱବିଦ୍ୟାଳୟ ବଟାନି ବିଭାଗକୁ ଯାଇଛି । ପରିଜାଙ୍କ କଥା ଶୁଣି ସେଠାର ପୁରୁଣା ଅଧ୍ୟାପକମାନେ ଖୁସି ହୁଅନ୍ତି । ପରିଜାସାହେବ ଯେଉଁଠି ବସି କାମ କରୁଥିଲେ, ତାହା ଦେଖାଇ ଦିଅନ୍ତି ।

ପରିଜାସାହେବଙ୍କ ଶେଷଜୀବନରେ ଗବେଷଣା – ପରିଜାସାହେବ କୁଳପତି ପଦରୁ ଅବସର ଗ୍ରହଣ ପୂର୍ବରୁ ଅମରୀଗଛ ଉପରେ ଗବେଷଣା ଚଳାଇଥିଲେ । ତାଙ୍କରି ନିର୍ଦ୍ଦେଶନାରେ ବାଞ୍ଛାନିଧି ମିଶ୍ର ପିଏଚ୍. ଡି. ଡିଗ୍ରୀ ପାଇଲେ ।

କୁଳପତି ପଦରୁ ଅବସର ଗ୍ରହଣ କଲାପରେ ଡକ୍ଟର ପରିଜା I.C.A.R.ରୁ (Indian Council of Agricultural Research) ଆର୍ଥିକ ସାହାଯ୍ୟ ପାଇ ନୀଳହରିତ୍ ଶୈବାଳର ବ୍ୟାପକ ସଂବର୍ଦ୍ଧନା ବା ପାଳନ (mass culture) ଉପରେ ଗବେଷଣା ଚଳାଇଲେ । ରେଭେନ୍ସା କଲେଜର ତାଙ୍କରି ପୁରୁଣା କୋଠରିରେ ବସି ସେ ଗବେଷଣା କଲେ । ମୁଁ ଓ ରସାୟନ ବିଭାଗର ସ୍ୱର୍ଗତ ପ୍ରଫେସର ଡକ୍ଟର ମହେନ୍ଦ୍ର କୁମାର ରାଉତ ତାଙ୍କୁ ସାହାଯ୍ୟ କଲୁଁ । ବର୍ତ୍ତମାନର ଅଧ୍ୟାପକ ଧର୍ମାଦା ରାଓ, ଅଧ୍ୟାପିକା ଉତ୍ତରା ରାୟ ଓ ଅଧ୍ୟାପକ ରବୀନ୍ଦ୍ରନାଥ ମିଶ୍ର ରିସର୍ଚ୍ଚ ସ୍କଲାର ଭାବେ ଯୋଗଦେଲେ । ପରିଜାସାହେବ ଠିକ୍ ସକାଳ ନଅଟାରେ ଆସନ୍ତି । ଗବେଷଣାର ତଦାରଖ କରନ୍ତି । ସେତିକିବେଳେ ବାଡ଼ିରେ ଉଠୁଥିବା କଣ୍ଟାମାରିଷ (Amaranth spinorus) ଚେରରେ ନୀଳହରିତ୍ ଶୈବାଳ ଥିବା କଥା ଆବିଷ୍କୃତ ହେଲା । ଓଡ଼ିଶାର ନାନା ସ୍ଥାନରୁ ମାଟି ଆଣି ସେଥିରେ ଥିବା ନୀଳ-ହରିତ୍ ଶୈବାଳ ଉପରେ ଗବେଷଣା ଚାଲିଲା । କେତେକ ନୂତନ ତଥ୍ୟ ମଧ୍ୟ ମିଳିଲା । ଏହି କାମ ସବୁ ନାନା ବୈଜ୍ଞାନିକ

ପତ୍ରପତ୍ରିକାରେ ପ୍ରକାଶିତ ହୋଇଛି । କହିବାର କଥା ଯେ ଅଶୀତିତମ ବର୍ଷରେ ମଧ୍ୟ ପରିଚ୍ଛାସାହେବ ଆଗ୍ରହର ସହ ଗବେଷଣା କାର୍ଯ୍ୟ କରିଚାଲିଥିଲେ ।

ଶେଷ ଜୀବନ— ୧୯୭୮ ମସିହାରେ ତାଙ୍କ ସ୍ତ୍ରୀଙ୍କର ପରଲୋକ ପରେ ସେ ଭାଙ୍ଗିପଡ଼ିଲେ । ଅଳ୍ପ କେଇଦିନ ପରେ ୧୯୭୮ ଜୁନ୍ ମାସ ୨ ତାରିଖରେ ସେ ଆମମାନଙ୍କୁ ଛାଡ଼ି ଚାଲିଗଲେ ।

ମୁଁ ସେହିଦିନ ବ୍ରହ୍ମପୁରରୁ ଆସି କଟକରେ ପହଞ୍ଚିଲା ବେଳକୁ ତାଙ୍କ ଶବ ଶୋଭାଯାତ୍ରା ଶ୍ମଶାନ ଆଡ଼େ ଚାଲିଥିଲା । ଶ୍ମଶାନକୁ ଯାଇ ମରଶରୀରକୁ ପ୍ରଣାମ ଜଣାଇଲି ।

କବିଙ୍କ ଉକ୍ତି ମନେପଡ଼ିଲା—

''ତୁମ ମର ଦେହ ଗ୍ରାସିଛି ଶ୍ମଶାନ
ମାତ୍ର ଯଶୋଦେହେ, ତୁମେ ଆୟୁଷ୍ମାନ''

ଏ କ୍ଷତି ଆମ ଓଡ଼ିଶା ତଥା ଭାରତ ପକ୍ଷେ ଅପୂରଣୀୟ । ସେ ସ୍ୱଶରୀରେ ନାହାନ୍ତି ସତ, କିନ୍ତୁ ତାଙ୍କ କାର୍ଯ୍ୟାବଳୀ ସବୁ ଅଗଣିତ ଛାତ୍ରମାନଙ୍କ ମନରୁ ପୋଛି ହେବ ନାହିଁ । ତାଙ୍କ କୀର୍ତ୍ତି ସବୁ ଆଡ଼େ ରହିଛି । ଉତ୍ତରପିଢ଼ିକୁ ତାଙ୍କ କୀର୍ତ୍ତି ନିଶ୍ଚୟ ଉଦ୍‌ବୁଦ୍ଧ କରିବ, ଏଥିରେ ସନ୍ଦେହ ନାହିଁ ।

# ପରିଜାଙ୍କ ବ୍ୟକ୍ତିତ୍ୱ

**ଡକ୍ଟର ହରେକୃଷ୍ଣ ମହତାବ**

ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କ ବ୍ୟକ୍ତିତ୍ୱର ବିଭିନ୍ନ ଦିଗର ପରିଚୟ ବହୁ ଲେଖକ ଦେଇ ସାରିଲେଣି । କିନ୍ତୁ ତାଙ୍କର ବ୍ୟକ୍ତିତ୍ୱର ଅନ୍ୟ ଏକ ଦିଗ ଯାହା ଅନେକ ପକ୍ଷରେ ଅଜଣା-ଅଶୁଣା ତାହାର କିଞ୍ଚିତ୍ ପରିଚୟ ଆଜି (ସୋମବାର) ସନ୍ଧ୍ୟାରେ ଅନୁଷ୍ଠିତ ହେଉଥିବା ପ୍ରାର୍ଥନା ସଭାବସରରେ ଦେବା ସମୀଚୀନ ମନେହେଉଛି । ବିଶେଷତଃ ଯେତେବେଳେ ରାଜନୈତିକ କ୍ଷେତ୍ରରେ ତୀବ୍ର ଅସହନଶୀଳତା, ବିରୁଦ୍ଧ ମତବାଦୀଙ୍କ ପ୍ରତିହିଂସାଚରଣ କରିବାରେ ତିଳେମାତ୍ର କୁଣ୍ଠାବୋଧ ନ କରିବା ଯେପରି ଏକ ଆଚରଣ ବିଧିରେ ପରିଣତ ହେବାକୁ ଯାଉଛି, ସେତେବେଳେ ପରିଜାଙ୍କ ବ୍ୟକ୍ତିତ୍ୱର ସେହି ଦିଗଟି ପ୍ରତି ଆଲୋକପାତ କରିବା ପ୍ରାସଙ୍ଗିକ ହେଉଛି । କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କଲାବେଳେ ଡକ୍ଟର ପରିଜାଙ୍କ ସହାଧ୍ୟାୟୀ ଥିଲେ ସୁଭାଷ ବୋଷ । ସେ ସମୟରେ ବିଲାତରେ ପଢୁଥିବା ଛାତ୍ରମାନଙ୍କ ମଧ୍ୟରେ ଜାତୀୟତାର ଭାବ ପ୍ରବଳ ବେଗରେ କାର୍ଯ୍ୟ କରୁଥାଏ । ସ୍ୱାଧୀନତା ସଂଗ୍ରାମର ଆହ୍ୱାନ ସମସ୍ତଙ୍କ ହୃଦୟକୁ ସ୍ପର୍ଶ କରୁଥାଏ । ଅଧ୍ୟୟନ ଶେଷରେ ସମସ୍ତେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେବେ ଏହିପରି ମନୋଭାବ ସମସ୍ତଙ୍କର । କିନ୍ତୁ ଛାତ୍ରାବସ୍ଥାରେ ଥିବା ସମୟରେ ପାରିବାରିକ ଓ ଅନ୍ୟାନ୍ୟ ସାମାଜିକ ପରିବେଶର ପ୍ରଭାବ କାହାରି ଉପରେ ପଡ଼େ ନାହିଁ । ଛାତ୍ରାବସ୍ଥାକୁ ଅତିକ୍ରମ କରି ଆସି ଜୀବନର ରାଜପଥରେ ପହୁଞ୍ଚିଗଲା ପରେ ଚାରିଆଡୁ ନାନା ସମସ୍ୟାର ଘାତ-ପ୍ରତିଘାତରେ ପଥିକକୁ କୌଣସି ଗୋଟିଏ ପାଖ ଧରି ଚାଲିବାକୁ ହେବ । ଅନ୍ୟଥା ଆକସ୍ମିକ ଦୁର୍ଘଟଣାର ସମ୍ମୁଖୀନ ହେବାକୁ ହେବ । ସୁଭାଷ ବୋଷଙ୍କ ପାରିପାର୍ଶ୍ୱିକ ଅବସ୍ଥା ତାଙ୍କୁ ସ୍ୱାଧୀନତା ସଂଗ୍ରାମରେ ଝାସ ଦେବାରେ ସହାୟକ ଥିଲା । କିନ୍ତୁ ଡକ୍ଟର ପରିଜାଙ୍କ ପକ୍ଷରେ ତାହା ସେପରି ନ ଥିଲା । କିନ୍ତୁ ଡକ୍ଟର ପରିଜା ସ୍ୱାଧୀନତା ସଂଗ୍ରାମରେ ଯୋଗ ନ ଦେଲେ ମଧ୍ୟ ତାଙ୍କର ସେ ସଂଗ୍ରାମ ପ୍ରତି ସହାନୁଭୂତି ଏପରି ଅନ୍ତଃସଲିଳା ହୋଇ ଜୀବନସାରା କାର୍ଯ୍ୟ କରିଥିଲା ଯାହା ସେ ଲୋକଲୋଚନକୁ ଆଣିବାକୁ ଦେଉ ନ ଥିଲେ । ଏହି ଥିଲା ତାଙ୍କ ବ୍ୟକ୍ତିତ୍ୱର ମହତ୍ତ୍ୱ । ସାମାନ୍ୟ ସାହାଯ୍ୟ କରି ଯେପରି ନିଜର ଡିଣ୍ଡିମ ବଜାଇବା ଅନେକଙ୍କ ପକ୍ଷରେ ହୋଇଥାଏ, ସେପରି ପରିଜାଙ୍କ ପକ୍ଷରେ ନ ଥିଲା । ବହୁ ଦୁଃସ୍ଥ କଂଗ୍ରେସ କର୍ମୀଙ୍କୁ ସେ ମାସିକ ସାହାଯ୍ୟ ଦେଉଥିଲେ । କେବଳ ଜଣକ ଉଦାହରଣ ଦେଲେ ଜଣାଯିବ

ପରିଜା କେଡ଼େ ମହାନ୍ ଥିଲେ । କଟକ ଜିଲ୍ଲା କଂଗ୍ରେସ ନେତା ପ୍ରାଣକୃଷ୍ଣ ପଢ଼ିହାରୀଙ୍କୁ ଡକ୍ଟର ପରିଜା ମାସିକ ପଚାଶଟଙ୍କା ହିସାବରେ ପ୍ରତି ମାସ ଦେଉଥିଲେ । ଏପରିକି ପରିଜା ଯେତେବେଳେ ଥରେ ନିର୍ବାଚନରେ ପ୍ରାର୍ଥୀ ହେଲେ ସେତେବେଳେ ପଢ଼ିହାରୀ ତାଙ୍କ ବିରୋଧରେ କାର୍ଯ୍ୟ କରୁଥିଲେ ମଧ୍ୟ ସେ ସାହାଯ୍ୟରୁ ବଞ୍ଚିତ ହୋଇ ନ ଥିଲେ । ପଢ଼ିହାରୀ ତାଙ୍କ କର୍ତ୍ତବ୍ୟ କରୁଥିଲେ । ପରିଜା ତାଙ୍କ କର୍ତ୍ତବ୍ୟ ସମ୍ପାଦନ କରୁଥିଲେ । ଏ ପ୍ରକାର ସହନଶୀଳତା ଓ ଉଦାରତା ଆଜି ରାଜନୀତି କ୍ଷେତ୍ରରେ ଅଛି କି ?

ପରିଜା ଯେତେବେଳେ କୃଷିବିଭାଗର ନିର୍ଦ୍ଦେଶକ ହେଲେ ସେତେବେଳେ ଯୁଦ୍ଧକାଳୀନ ପରିସ୍ଥିତି । ସେ ସମୟରେ ମଧ୍ୟ ସେ ଅନେକ ଦୁଃସ୍ଥ କଂଗ୍ରେସ କର୍ମୀଙ୍କୁ ତାଙ୍କ ବିଭାଗରେ ନିଯୁକ୍ତି ଦେଇଥିଲେ । ୧୯୪୫ ସାଲରେ କଂଗ୍ରେସ ଏକ ବେଆଇନ ସଂସ୍ଥା । ଲୁଚି ଲୁଚି କଂଗ୍ରେସ ନେତା ଓ କର୍ମୀ କାର୍ଯ୍ୟ କରୁଥାନ୍ତି । କିନ୍ତୁ ସେତେବେଳେ ପରିଜାଙ୍କ ଘର ଥିଲା କଂଗ୍ରେସ ନେତାମାନଙ୍କ ଏକତ୍ର ହୋଇ ଆଲୋଚନା କରିବାର ସ୍ଥାନ । ଆଜି ରାଜନୈତିକ ମତଭେଦ ଯୋଗୁଁ ଯେପରି ଅବାଞ୍ଛନୀୟ ପରିସ୍ଥିତି ଉପୁଜିଛି ଏବଂ ରାଜନୀତିରେ ସହାନୁଭୂତି ଓ ସୌଜନ୍ୟର ସ୍ଥାନ ନାହିଁ ବୋଲି ଯେପରି ମନେ ହେଉଛି, ସେତେବେଳେ ପରିଜାଙ୍କ ବ୍ୟକ୍ତିତ୍ୱ ପ୍ରତି ରାଜନୈତିକ ବ୍ୟକ୍ତି ଓ ସଂସ୍ଥାମାନଙ୍କ ଦୃଷ୍ଟି ଆକର୍ଷଣ ହେଉ ଏହାହିଁ ତାଙ୍କ ଶ୍ରାଦ୍ଧଦିବସରେ ଶତ ଶତ ଗୁଣମୁଗ୍ଧ ଜନତାର, ସାଙ୍ଗରେ 'ପ୍ରଜାତନ୍ତ୍ର'ର ଆନ୍ତରିକ ପ୍ରାର୍ଥନା ।

ପ୍ରଜାତନ୍ତ୍ର ପ୍ରଚାର ସମିତି ଯେତେବେଳେ ଶାସନର ଚାପରେ ଗଳଦ୍‌ଘର୍ମ ସେତେବେଳେ ଡକ୍ଟର ପରିଜା ଥିଲେ ଟ୍ରଷ୍ଟବୋର୍ଡର ଜଣେ ସଭ୍ୟ ଏବଂ ଲୋକଲୋଚନ ଅଗୋଚରରେ ସେ ତାଙ୍କ ନୈତିକ ସାହାଯ୍ୟ ଯେପରି ପ୍ରଜାତନ୍ତ୍ର ଅନୁଷ୍ଠାନକୁ ଦେଇଥିଲେ ଏପରି ଅନ୍ୟ କେହି ଦେଇ ନାହାନ୍ତି । ବାସ୍ତବିକ ସେ ଥିଲେ ପ୍ରଜାତନ୍ତ୍ର ଅନୁଷ୍ଠାନର ଜଣେ ମୁରବି ।

# ମନୀଷୀ ପରିଜା, ଏକ ଅଲିଭା ଧ୍ରୁବତାରା

**ହୃଦାନନ୍ଦ ରାୟ**

ଯେଉଁ ବ୍ୟକ୍ତିମାନଙ୍କ ଜୀବନ କାହାଣୀ ଅନେକ ଦିନ ଧରି ଅନେକଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇ ରହେ ସେମାନଙ୍କୁ ଆମେ ମହାପୁରୁଷ କହୁ । ସେମାନେ ଯେଉଁ ବାଟରେ ଚାଲିଯାଇଥାନ୍ତି, ହାତୀ ଚାଲିଲେ ଜଙ୍ଗଲରେ ବାଟ ଫିଟିଗଲା ପରି ଜୀବନ ଜଙ୍ଗଲର ଅନେକ ଅନାବିଷ୍କୃତ ଅଞ୍ଚଳରେ ନୂଆ ବାଟମାନ ଫିଟିଯାଏ । ସେମାନଙ୍କଠାରୁ ଉତ୍ସାହ ଓ ପ୍ରେରଣା ଲାଭ କରି ଦୀପରୁ ଅନ୍ୟ ଦୀପ ଜଳିଉଠିଲା ପରି ଅନେକ ବ୍ୟକ୍ତିଙ୍କ ଭବିଷ୍ୟତ ଉଜ୍ଜ୍ୱଳ ହୋଇଉଠେ ।

ଉତ୍କଳ ଗୌରବ କୁଳବୃଦ୍ଧ ମଧୁସୂଦନ ଦାସଙ୍କ ନାମରେ ପ୍ରଚଳିତ ପଦଟିଏ ପିଲାଦିନେ ଆମ କାନରେ ବାରମ୍ବାର ପଡ଼ି ଆମକୁ ଉତ୍ସାହ ପ୍ରେରଣା ଯୋଗାଉଥିଲା ।

"ପାଠ ପଢ଼ିବି, ପାଠ ପଢ଼ିବି,
କାଳିଆ ଘୋଡ଼ାରେ ଚଢ଼ିବି,
ମଧୁବାବୁ ସଙ୍ଗେ ଲଢ଼ିବି ।"

ପରିବାରର ବୟୋଜ୍ୟେଷ୍ଠା ନାରୀମାନେ ଏହି ପଦକୁ ବାରମ୍ବାର ଆଉଡ଼ାଇ ଶିଶୁ ମନରେ ବିଦ୍ୟାନୁରାଗ ତଥା ବିଦ୍ୟାବୁଦ୍ଧିର ଅବଧି, ମଧୁବାବୁଙ୍କ ସହ ବୌଦ୍ଧିକ ପ୍ରତିଦ୍ୱନ୍ଦ୍ୱିତା ଲାଗି ରାଜସ୍ୱ ଅନୁରାଗ ସୃଷ୍ଟି କରୁଥିଲେ । ପାଠ ପଢ଼ିବାକୁ ହେବ, ମଧୁବାବୁ ସଙ୍ଗେ ଲଢ଼ିବାକୁ ହେବ । ଯେ ମଧୁବାବୁ ସଙ୍ଗେ ଲଢ଼ି ନାହିଁ, ବୁଝିବାକୁ ହେବ ସେ ପାଠ ପଢ଼ି ନାହିଁ । ପାଠ ପଢ଼ିବାର ଚୂଡ଼ାନ୍ତ ପରୀକ୍ଷା ହେଉଛି ମଧୁବାବୁ ସଙ୍ଗେ ଲଢ଼ିବା ଓ ଜିଣିବା । ସତରେ କେହି ମଧୁବାବୁ ସଙ୍ଗେ ଲଢ଼ୁ କି ନ ଲଢ଼ୁ, ମଧୁବାବୁ କିନ୍ତୁ ଓଡ଼ିଶାର ପିଢ଼ି ପରେ ପିଢ଼ି ଶିଶୁ ମନର ଆରାଧ୍ୟ ଜାତୀୟ ପୁରୁଷ ରୂପେ ସ୍ୱୀକୃତ ହୋଇ ଯାଉଥିଲେ । ଏ ଜାତିର ଅବଚେତନରେ ତାହା ଲିପିବଦ୍ଧ ହୋଇଯାଉଥିଲା । ଆମର ବଡ଼ ଦେଉଳ ଅଛି, ଆମର ମଧୁବାବୁ ଅଛି । ଆମକୁ ବଡ଼ ହେବାକୁ ହେବ, ବଡ଼କୁ ଅତିକ୍ରମ କରିଯାଇ ଆହୁରି ବଡ଼ ହେବାକୁ ହେବ । ଏ ଭାବନାରେ ଗୋଟାଏ ଉଦ୍ଦୀପନା ଅଛି ।

ମଧୁବାବୁଙ୍କ ଭଳି ଆଉ ଜଣେ ବ୍ୟକ୍ତିଙ୍କ କଥା ମୁଁ ପିଲାଦିନେ ଶୁଣିଥିଲି । ତାଙ୍କୁ ଆମ ଗାଁ ଲୋକେ ପରିଜାସାହେବ ବୋଲି କହୁଥିଲେ । ଆମ ଗ୍ରାମବାସୀମାନେ

କୃତକୃତ୍ୟ ହୋଇ କହୁଥିଲେ ଯେ ପରିଚ୍ଛାସାହେବ ବିଲାତରୁ ଆସିଲେ ଓ ସାହେବମାନେ ଯେଉଁ ଆସନରେ ବସନ୍ତି ସେ ଆସନରେ ବସିଲେ । ଉଚ୍ଚ ପଦ ପଦବୀରେ ବସିବା ସେତେବେଳେ ଦେଶୀ ଲୋକଙ୍କ ପକ୍ଷରେ ସମ୍ଭବ ହେଉ ନ ଥିଲା । ବେଳେବେଳେ ଆମେ ପଦପଦବୀ ମଣ୍ଡନ କରିପାରୁ ନାହିଁ, କାରଣ ଆମର ସେ ଯୋଗ୍ୟତା ନ ଥାଏ । କିନ୍ତୁ ବେଳେ ବେଳେ ଆମେ ଦେଖୁ ଯେ ଆମର ଯୋଗ୍ୟତା ଅଛି, କିନ୍ତୁ ପଦପଦବୀ ନାହିଁ । ଇଂରେଜ ଶାସନ ଅମଳରେ ଦେଶୀ ଲୋକଙ୍କ ପାଇଁ ଏହି ଦ୍ୱିତୀୟ କଥାଟି ଘଟିଥିଲା ।

ଡିପୋଟି ଚାକିରିକୁ କଳା ଲୋକମାନଙ୍କର କୋଟୀ ବା ସୀମା ବୋଲି ଲୋକଙ୍କ ଧାରଣା ଉପୁଜିଥିଲା । ସ୍ୱାଧୀନତା ପରେ ଆମେ ଦେଶୀ ଲୋକମାନେ ଡିପୋଟିରୁ ହିଁ ପଦପଦବୀ ଆରୋହଣ ଆରମ୍ଭ କରୁଛନ୍ତି । ପରିଚ୍ଛାସାହେବ ବିଲାତରୁ ଆସି ସାହେବଙ୍କ ଆସନରେ ବସିଗଲେ; ଏହା କହିଲାବେଳେ ଆମ ଗାଁର ବହୁ ନିରକ୍ଷର ବ୍ୟକ୍ତିମାନଙ୍କ ଛାତି କୁଣ୍ଢେମୋଟ ହୋଇଯାଉଥିଲା । ସତେଯେପରି କେଉଁ ଏକ ବେଗଗାମୀ ଆଲୋକପିଣ୍ଡ ଅନନ୍ତ ଗଗନରୁ ଆସି ଆମ ସୀମିତ ଦିଗ୍‌ବଳୟର ପରିସୀମାକୁ ଭାଙ୍ଗି ଚୂରମାର କରିଦେଉଥିଲା । ଦେଶୀ ଲୋକଙ୍କ ପାଇଁ ଯେ ଭବିଷ୍ୟତରେ ଅନେକ ସମ୍ଭାବନା ଅଛି, ତାହା ଯେପରି ପରିଚ୍ଛାସାହେବ ପ୍ରମାଣ କରିଦେଇଗଲେ ।

ସେ ଏହା କଲେ କେଉଁ ବଳରେ ? ସେ ଏହା କଲେ ବିଦ୍ୟା ବଳରେ । ବିଦ୍ୟା ଯେ ଏକ ବଳ ହୁଏତ ଆଜିର ଯୁବଶକ୍ତି ତାହା ବିଶ୍ୱାସ କରିପାରୁ ନାହିଁ; ବରଂ ପଚାରୁଛି, ବିଦ୍ୟା ପଢ଼ିଲେ କ'ଣ ହେବ ? କିନ୍ତୁ ମୋ ପିଲାଦିନେ ମଧୁବାବୁ ଓ ପରିଚ୍ଛାସାହେବ ଉଭୟଙ୍କ ଜୀବନୀରୁ ଉତ୍ସାହ ବାଣୀ ମିଳୁଥିଲା, ପାଠ ପଢ଼, ପାଠ ପଢ଼, ତୁମେ ବଳବାନ୍ ହେବ ।

ପରିଚ୍ଛାସାହେବ ବିଲାତରୁ ଆସିଲେ ବୋଲି ମୁଁ ଜାଣିଥିଲି, କିନ୍ତୁ କେଉଁଠାରୁ ସେ ବିଲାତ ଯାଇଥିଲେ ତାହା ମୁଁ ଜାଣି ନ ଥିଲି; ବରଂ ଭାବିଥିଲି ଯେ ପରିଚ୍ଛାସାହେବ ପରି ଦୁର୍ଲ୍ଲଭ ଫଳଟିଏ ଫଳିବାକୁ ହେଲେ ବିଲାତର ମାଟି, ପାଣି, ପବନ ଓ ଜଳବାୟୁ ଏକାନ୍ତ ଆବଶ୍ୟକ । ଆମ ଦେଶୀ ମାଟିରେ ବୋଧେ ସେଭଳି ଫଳ ଫଳେ ନାହିଁ ।

ମୋର ବିସ୍ମୟର ସୀମା ରହିଲା ନାହିଁ, ଯେଉଁଦିନ ମୁଁ ଜାଣିଲି ଯେ ପରିଚ୍ଛାସାହେବ ଆମ ଦେଶରୁ ହିଁ ବିଲାତ ଯାଇଥିଲେ ଓ ତା'ପରେ ବିଲାତରୁ ଆମ ଦେଶକୁ ଆସିଲେ । ସେ ତ ଖାଲି ଆମ ଦେଶୀ ଲୋକ ନ ଥିଲେ, ଆମ ଜିଲ୍ଲା ଲୋକ ଥିଲେ । ଆମ ସବ୍‌ଡିଭିଜନ୍ ଲୋକ ଥିଲେ । ଆମେ ପୁଣି ଏକା ଥାନାର ଲୋକ ଓ ଆମ ଛୋଟ ଗାଁଟିକୁ ଲାଗି ତାଙ୍କ ଗାଁଟି ହେଉଛି ଇଚ୍ଛାପୁର ! ଏ କ'ଣ ମୋ ପାଇଁ କମ୍

ଉତ୍ସାହପୂର୍ଣ୍ଣ ଖବର ଥିଲା ! ମୋ କିଶୋର ବୟସରେ ମୁଁ ଭାବିଥିଲି ଏଣିକି ଆଉ ଦେଶୀ ଲୋକଙ୍କର ହତୋତ୍ସାହିତ ହେବାର ଆଉ କିଛି ନାହିଁ । ପରିଜାଙ୍କ ପଦାଙ୍କ ଅନୁସରଣ କଲେ ହୁଏତ ଆମ ଗାଉଁଲି ଜୀବନର ଭାଗ୍ୟ ଫିଟିଯାଇପାରିବ ।

ପରିଜାସାହେବ ଓଡ଼ିଶାର ଏକମାତ୍ର ମହାବିଦ୍ୟାଳୟ ବାଣୀ-ସାଧନାର-କ୍ଷେତ୍ର ରେଭେନ୍ସା କଲେଜର ପ୍ରିନ୍ସିପାଲ୍ ଥିଲେ । ସେତେବେଳକୁ ମୁଁ କଟକ ଆସିଗଲିଣି । ପରିଜାସାହେବଙ୍କ ପ୍ରତି ମୋ ବାପାଙ୍କର ପ୍ରଗାଢ଼ ଭକ୍ତି ଥିଲା ଓ ସେ ପରିଜାଙ୍କ ନାମ ଉଚ୍ଚାରଣ କଲାବେଳେ ଯେଉଁ ସମ୍ଭ୍ରମର ସହିତ ନାମୋଚ୍ଚାରଣ କରୁଥିଲେ, ଆଜି କୌଣସି କ୍ଷେତ୍ରରେ କେହି କାହାରି ନାମୋଚ୍ଚାରଣ କଲେ ସେଭଳି କରିବା ଦେଖିବାକୁ ମିଳୁ ନାହିଁ । ବରଂ ତାଚ୍ଛଲ୍ୟ ଭାବରେ ପ୍ରତିଷ୍ଠିତ ବ୍ୟକ୍ତିଙ୍କର ନାମୋଚ୍ଚାରଣ କରିବା ଏବେ ଗୋଟିଏ ଧରାବନ୍ଧା ରୀତିରେ ପରିଣତ ହୋଇଗଲାଣି ।

ମୁଁ ପ୍ରଫେସର ପରିଜାଙ୍କୁ ରେଭେନ୍ସା କଲେଜରେ ଦେଖିଛି । ସେ ସର୍ବମୟ କର୍ତ୍ତା ପ୍ରିନ୍ସିପାଲ ହୋଇ ଗୋଟିଏ ଛୋଟ ଘରେ ବସୁଥିଲେ । ତାଙ୍କ ଚାଲିରେ ଖୁବ୍ କ୍ଷିପ୍ରତା ଥିଲା । ତାଙ୍କ ଚାହାଣିରେ ଗାମ୍ଭୀର୍ଯ୍ୟ ଭରି ରହିଥିଲା । ସେ ସ୍ୱଳ୍ପଭାଷୀ ଥିଲେ, କିନ୍ତୁ ତାଙ୍କ ଚକ୍ଷୁର ପଲକ ବଳୟରେ ତଥା କଥାର ଧାରେ ଧାରେ ସ୍ନେହ, ଆଦର ଓ ସହନଶୀଳତାର ଅଞ୍ଜନ ସ୍ପର୍ଶ ଲାଖି ରହିଥିଲା । ଲୋକ ତାଙ୍କୁ ମାନ୍ୟ କରୁଥିଲେ । ତାଙ୍କ ପଦଧ୍ୱନିକୁ ମଧ୍ୟ ମାନ୍ୟ କରୁଥିଲେ । ଜାତୀୟ ଉଚ୍ଚଶିକ୍ଷା ନାବର ମଙ୍ଗୁଆଙ୍କ ମର୍ଯ୍ୟାଦାରେ ପ୍ରତିଷ୍ଠିତ ହୋଇଥିଲେ ଡକ୍ଟର ପରିଜା । ଏବେ ସେ ମର୍ଯ୍ୟାଦାର କାଣିଚାଏ କାହାକୁ ମିଳୁଛି ସେ କଥା ମୋତେ ଜଣାଯାଉ ନାହିଁ । ମୁଁ ମଧ୍ୟ ତାଙ୍କୁ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ରୂପେ ଦେଖିଛି । କୌଣସି ଅଦୃଶ୍ୟ ମୁକୁଟ ଯେ ତାଙ୍କ ଶିର ମଣ୍ଡନ କରୁଥିଲା ଓ ସେ ଏକ ସହଜ ରାଜ-ମର୍ଯ୍ୟାଦାରେ ଅଭିଷିକ୍ତ ଥିଲେ ଏହା ତାଙ୍କୁ ଦେଖିଲେ ଜଣା ପଡୁଥିଲା ।

ପରିଜାସାହେବଙ୍କୁ ମୁଁ ବିଦ୍ୱାନ ବୋଲି ଜାଣିଥିଲି । ସେ କଳାରେ ବିଦ୍ୱାନ୍ କି ବିଜ୍ଞାନରେ ବିଦ୍ୱାନ୍ ମୋତେ ଜାଣିବାର ଅବସର ନ ଥିଲା । ପରବର୍ତ୍ତୀ କାଳରେ ମୁଁ ଜାଣିଲି ଯେ ସେ ଉଦ୍ଭିଦବିଜ୍ଞାନୀ ଥିଲେ । ଉଦ୍ଭିଦ ସହିତ କୃଷିର ଘନିଷ୍ଠ ସମ୍ପର୍କ ଓ କୃଷିର କୃଷ୍ଟି ସହିତ ଘନିଷ୍ଠ ସମ୍ପର୍କ ଜାଣିବା ଦିନଠାରୁ ମୁଁ ଡକ୍ଟର ପରିଜାଙ୍କୁ ଜଣେ କୃଷ୍ଟିସମ୍ପନ୍ନ ବିଦ୍ୱାନ ଭାବରେ ଗ୍ରହଣ କରିସାରିଥିଲି । ଯାହା ପରିବେଶକୁ ଭେଦ କରି ଉଠେ ତାହାର ନାମ ଉଦ୍ଭିଦ । କଥିତ ଅଛି ପଥରକୁ ଫଟାଇ ଶାଳ ଗଛ ଉପରକୁ ଉଠେ । ଊର୍ଦ୍ଧ୍ୱଗାମୀ ଚେତନା ଓ ଆସ୍ପୃହାର ପଥରୋଧ କରିବା ପ୍ରତିକୂଳ ପରିବେଶ ପକ୍ଷରେ ସମ୍ଭବ ନୁହେଁ ବୋଲି ବିଶ୍ୱର ମନୀଷୀମାନେ ଘୋଷଣା କରିଆସିଛନ୍ତି ।

ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରିବା ପାଇଁ ଭାରତର ସୁପ୍ରାଚୀନ ବିଦ୍ୟାନଗରୀ କାଶୀରେ ରହିବା ଓ ଦର୍ଶନଶାସ୍ତ୍ର ପଢ଼ିବାପାଇଁ ମୋ ପ୍ରାଣରେ ଚରମ ଆକୁଳତା ଥିଲା । ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଆଡ୍‌ମିସନ ନେବାଲାଗି ମୁଁ ଡକ୍ଟର ପରିଜାଙ୍କୁ କଟକର ଦଶନମ୍ବର କ୍ୟାଣ୍ଟନ୍‌ମେଣ୍ଟ୍ ରୋଡ଼ସ୍ଥିତ ତାଙ୍କ ନିଜ ବାସଭବନ 'ପାରିଜାତ'ରେ ଦେଖା କଲି । ଖୁବ୍ ପ୍ରସନ୍ନତାର ସହିତ ସେ ମୋ ସହିତ କଥାବାର୍ତ୍ତା କଲେ । ଜଣେ ବଡ଼ଲୋକ ଯେ ଅକୃପଣ ଭାବରେ ନିଜର ସମୟକୁ ଗୋଟିଏ ପିଲାପାଇଁ ଦେଇପାରେ ତାହା ମୋତେ ତାଙ୍କ ଆଚରଣରୁ ଗଭୀରଭାବରେ ସ୍ପର୍ଶ କଲା । ସେହିଦିନଠାରୁ "ମୋତେ ସମୟ ନାହିଁ" ଏହି କଥା କାହାକୁ ମୋତେ କହିବାକୁ ଲାଜ ଲାଗେ ।

ମୁଁ କାଶୀ ଗଲି । ଖୁବ୍ ଉତ୍ସାହରେ ଗଲି । ପରିଜାସାହେବଙ୍କୁ ବନାରସରେ ଭେଟିଲି । ସେ ବିଶ୍ୱବିଦ୍ୟାଳୟର ଉପ-କୁଳପତି (ପ୍ରୋ-ଭାଇସ୍‌ଚାନ୍‌ସେଲର୍) ଥିଲେ । ସେ ଓଡ଼ିଶାର ବ୍ୟକ୍ତି ବୋଲି ମୋ ମନରେ ଗର୍ବ ଓ ଗୌରବ ଥାଏ । କିନ୍ତୁ ସେ ଆମ ଅଞ୍ଚଳର ବ୍ୟକ୍ତି ବୋଲି ମୁଁ କେବେ ଭାବିପାରୁ ନ ଥାଏ । ଏଡ଼େ ମୂଲ୍ୟବାନ ବ୍ୟକ୍ତିତ୍ୱକୁ ଆମ ଅଞ୍ଚଳରେ ରଖିବାକୁ ମୋ ମନ ହେଉ ନ ଥିଲା । ମୋର ସ୍ପଷ୍ଟବାଦିତା ଓ ନିର୍ଭୀକତା ଓ ଟିକିଏ ଅମଣିଆ ଭାବ ଦେଖି ଡକ୍ଟର ପରିଜା ଥରେ ଅନ୍ୟ ଜଣଙ୍କ ଆଗରେ ମତ ପ୍ରକାଶ କରିଥିଲେ, ଏ କ'ଣ ଜଣେ କମ୍ୟୁନିଷ୍ଟ ଦଳ ସଭ୍ୟ ?

କିନ୍ତୁ ପରବର୍ତ୍ତୀ ଜୀବନରେ ବହୁ ଘନିଷ୍ଠ ମୁହୂର୍ତ୍ତ ଆମେ ଏକାଠି କଟାଇବାରେ ମୋ ବିଷୟରେ ତାଙ୍କର ଅଭିମତ ସେ ସ୍ୱହସ୍ତରେ ଲିପିବଦ୍ଧ କରିଯାଇଛନ୍ତି । ମୁଁ ତାହା ସମ୍ପାଦି ରଖିଛି, କିନ୍ତୁ ତାହାକୁ ଦୁଇଥର ଦେଖିପାରେନା; ଲାଜରେ ମନ ଝାଉଁଳିଯାଏ । ଏଡ଼େ ବଡ଼ ଲୋକଟିଏ କି ସାମାନ୍ୟ ଲୋକ ପାଇଁ କି ଭାଷା ପ୍ରୟୋଗ କରିଛନ୍ତି ତାହା ତାଙ୍କ ମହାନ୍ ଉଦାରତାର ପରିଚୟ ଦିଏ । ତାଙ୍କ ଚାହିଁଲା ଭଳି ମଣିଷଟିଏ ହେବାକୁ ମୋର ଶକ୍ତି ଅଛି ବୋଲି ଭାବୁ ନାହିଁ । ତଥାପି ମୋର ବିଶ୍ୱାସ ଅଛି ଏଡ଼େ ବଡ଼ ଲୋକର ହୃଦଖୋଲା ମନ୍ତବ୍ୟ ବୃଥା ଯିବ ନାହିଁ ।

ବନାରସରୁ ଫେରି ସେ ଓଡ଼ିଶା ବିଧାନସଭାକୁ ସ୍ୱାଧୀନ ସଦସ୍ୟଭାବେ ନିର୍ବାଚିତ ହେବା ପାଇଁ ଠିଆ ହେଲେ । ଆମ ଅଞ୍ଚଳ ଥିଲା ତାଙ୍କ ନିର୍ବାଚନ ମଣ୍ଡଳି । ସେତେବେଳେ ସେ ଆମ କଟକ ଘରକୁ ଆସିଥିଲେ ଓ ଗାଁ ଘରକୁ ଯାଇଥିଲେ । ତାଙ୍କ ପାଦଧୂଳି ଆମ ଘରେ ପଡ଼ିଲା ବୋଲି ମୋ ପିତା କୃତାର୍ଥ ହୋଇ ଯାଉଥାନ୍ତି । ଡକ୍ଟର ପରିଜା ନିର୍ବାଚନରେ ଜିତିଲେ । ତାଙ୍କ ଲୋକପ୍ରିୟତା ପ୍ରମାଣିତ ହୋଇଗଲା ।

ବିଦ୍ୱାନ ଲୋକମାନେ ବିଧାନସଭାକୁ ଗଲେ ଦେଶବାସୀଙ୍କର ଉପକାର ହେବ, ଏ ବିଶ୍ୱାସ ଆମ ଅଞ୍ଚଳର ଲୋକମାନଙ୍କ ମନରେ ଢେଉ ଭାଙ୍ଗୁଥାଏ । ଏହିଭଳି ଲୋକଙ୍କ

ହାତରେ ଦେଶର ଭାଗ୍ୟ ସୁରକ୍ଷିତ ରହିବ ବୋଲି ବହୁ ଲୋକ ଗଦ୍‌ଗଦ ହୋଇ କହୁଥାନ୍ତି । ବୋଧହୁଏ ତାଙ୍କ ପ୍ରତିଦ୍ୱନ୍ଦ୍ୱୀମାନେ ମଧ୍ୟ ଏହାହିଁ ଭାବିଥିବେ । ମୋତେ ବୋଧ ହେଉଥିଲା ବାଇଶିଶହ ବର୍ଷ ତଳର ପ୍ଲେଟୋଙ୍କ ଭବିଷ୍ୟତବାଣୀ ସାର୍ଥକ ହୋଇଗଲା; ବିଦ୍ୱାନମାନେ ଶାସନ କ୍ଷମତା ଲାଭ କଲେ ।

କିନ୍ତୁ ମୁଁ ଜାଣିଛି ଯେ ଡକ୍ଟର ପରିଜା ଏହି କ୍ଷେତ୍ରରେ କ୍ରମଶଃ ମ୍ରିୟମାଣ ବୋଧ କଲେ । ସାଂସ୍କୃତିକ ସଭାସମିତି ସାରିଲା ପରେ ଏକ ଗାଡ଼ିରେ ଆମେ ଦୁହେଁ କଥାବାର୍ତ୍ତା ହୋଇ ଆସୁ । ସେ କାହାକୁ ଆକ୍ଷେପ କରି କିଛି କହନ୍ତି ନାହିଁ । କିନ୍ତୁ ସେ ଯେ କିଛି କହିପାରୁ ନାହାନ୍ତି ଓ ବିଶେଷକରି ସ୍ୱାଧୀନ ସଭ୍ୟ ହୋଇଥିବାରୁ କିଛି କରିପାରୁ ନାହାନ୍ତି, ଏହା ସେ ବରାବର କହୁଥିଲେ । ସେ ଜଣେ ମହାପୁରୁଷ, ଆମ ପାଇଁ ପ୍ରେରଣାର ଉତ୍ସ । ଜୀବନର ଦୂର ଦିଗନ୍ତରେ ସେ ଅଲିଭା ଧ୍ରୁବତାରା ।

(ଶ୍ରୀ ବସନ୍ତକୁମାର ରାୟଙ୍କ ସୌଜନ୍ୟରୁ ପ୍ରାପ୍ତ)



# Research Publications of Professor Pranakrushna Parija

**Respiration and Osmotic Pressure**

1. Blackman, F.F. and Parija, P. – Analytic studies in plant respiration I. The respiration of a population of senescent ripening apples. Proc. Roy. Soc. B. **103**, 412-445, 1928.

2. Parija, P. – Analytic studies in plant respiration. II. The respiration of apples in nitrogen and its relation to respiration in air. Proc. Roy. Soc. B. **103**, 446-490, 1928.

3. Parija, P. – Respiration of ripening ricinus fruits. Proc. Indian Sci. Congr., Part III, 218, 1927.

4. Parija P. – Differential respiratory activities of green and yellow leaves. Proc. Indian Sci. Congr., Part III, 240, 1929.

5. Parija, P. – Some aspects of respiration in higher plants. Presidential address, Section of Botany. 17th Indian Science Congress, Allahabad, Proc. Indian Sci. Congr., Part II. pp. 10, 1930.

6. Parija, P. and Saran, A.B. – The effect of light on the respiration of starved leaves, Ann. Bot. **48**, 347-354, 1934.

7. Parija, P. – Analytic studies in plant respiration. Parts IV to IX. In 'Analytic studies in plant respiration' F. F. Blackman, Cambridge University, Press, 1954.

8. Parija, P. – The Law of Modifications. Presidential address. 11th Annual session. The Indian Botanical Society, Nagpur, J.Indian bot. Soc., **10**, 63-71, 1931.

9 Parija, P. and Saran,A.B. – Variability of the osmotic strength of the sap of *Cuscuta reflexa*, Roxb. J. Indian bot. Soc. **12**, 271–276, 1933.

**Aquatic Weeds**

10. Parija, P. – A preliminary note on the physiology of the seedlings of the water hyacinth, *Eichhornia crassipes*, Agr. J. India, **25**, 386-391, 1930.

11. Parija, P. – Physiological investigations on water hyacinth, *Eichhornia crassipes* in Orissa with notes on some other aquatic weeds. Indian J. agr. Sci., **4**, 399-429, 1934.

12. Parija, P. – A note on the reappearace of water hyacinth seedlings in cleared tanks. Indian J. agr. Sci., **4**, 1049, 1934.

13. Parija, P. – Water hyacinth. Agr. and Livestoc in India. **5**, 124-)125, 1934.

**Experimental Morphology**

14. Parija, P. and Misra, P. – The 'root-thorn' of *Bridelia pubescens* Kurz. J. Indian bot. Soc., **12**, 227-233, 1933.

15. Parija, P. and Mallik, P. – The mechanism of the bursting of the fruits of *Impatiens balsamina* Linn. J. Indian bot. Soc., **15**, 59-61, 1936.

16. Parija, P. and Mallik, P. – The formation of cuticle in relation to external conditions, J. Indian bot. Soc., **15**, 63-70, 1936.

17. Parija, P. and Samal, K. – Extra-floral nectaries in *Tecoma capensis*, Lindl. J. Indian bot, Soc., **15**, 241-246, 1936.

18. Parija, P. and Mallik, P. – Nature of the reserve foods in seed and their resistance to high temperature. J. Indian bot. Soc., **19**, 223-229, 1940.

19. Parija, P. and Samantarai, B. – March of transpiration of a leaf since its measurable stage to its fall. J. Indian bot. Soc., **18**, 65-77, 1939.

20. Parija, P. – Xenocarpy in *Momordica dioica* Roxb. Curr. Sci., **36**, 106-107, 1967.

**Algae**

21. Parija, P. and Parija, B. – Algal succession on a rocky island, named Charaiguha, in the Chilka Lake. J. Indian bot. Soc., **25**, 375-379, 1946.

22. Parija, P., Pattnaik, H. and Rao, S.D. – Effect of growth and change of pigmentation in blue green algae in different light intensities and temperature. Proc. Orissa Assoc. for Adv. of Sci., **1**, 98-99, 1968.

23. Parija, P., Pattnaik, H. and Ray, U. – Microorganism in the mass culture of a blue green alga. Proc. Orissa Assoc. for Adv. of Sci., **1**, 98, 1968.

24. Parija, P., Pattnaik, H. and Mishra, R.K. – Studies on a new species of *Fischerella* in root nodules of *Amaranthus*. Proc. Orissa Assoc. for Adv. of Sci., **1**, 106, 1968.

25. Parija, P., Pattnaik, H. and Mishra, R.K. – Morphological studies of a new *Fischerella* species. Proc. Orissa Assoc. for Adv. of Sci., **1**, 106-107, 1968.

26. Parija, P., Pattnaik, H. and Rao. S.D. – Blue green algae in soils of Cuttack, Prakruti, Utkal Univ. J. Sci., **6**, 183-186, 1969.

27. Parija, P., Pattnaik, H. and Rao, S.D. – Some observations on a terrestrial blue green alga, *Oscillatoria tenuis*. Proc. Orissa Assoc. for Adv. of Sci., **2**, 73, 1969.

28. Parija, P., Pattnaik, H. and Rao, S.D. – Effect of light on respiration of blue green alga, *Oscillatoria tenuis*. Proc. 56th Indian Sci. Cong., Part III, 1969.

**Rice Physiology and Anatomy**

29. Parija, P. – Physiological studies in rice. In : Progress Report of the Orissa Rice Research Scheme for 1937-38, Orissa Government Press, Cuttack, 1939.

30. Parija, P. – Physiological studies in rice. In : Progress Report of the Orissa Rice Research Scheme for 1938-39, Orissa Government Press, Cuttack, 1940.

31. Parija, P. – Physiological studies in rice. In : Progress Report of the Orissa Rice Research Scheme for 1939-40, Orissa Government Press, Cuttack, 1941.

32. Parija, P. – Physiological studies in rice. In : Progress Report of the Orissa Rice Research Scheme for 1940-41, Orissa Government Press, Cuttack, 91-92, 1942.

33. Parija, P. – Physiological studies in rice. In : Progress Report of the Orissa Rice Research Scheme for 1941-42, Orissa Government Press, Cuttack, 53-59, 1943.

34. Parija, P. – On the pre-sowing treatment and phasic development. Curr. Sci., **12**, 88-89, 1943.

35. Parija, P. – Physiological Studies in rice. In : Progress Report of the Orissa Rice Research Scheme for 1942-43, Orissa Government Press, Cuttack, 1944.

36. Parija, P. – Annual Report for 1943-44 of the Scheme of Research on the Physiology of the Rice Plant with particular reference to flood, salinity and drought, Ravenshaw College, Cuttack, Orissa Government Press, pp. 29. 1944.

37. Parija, P. – Annual Report for 1944-45 of the Scheme of Research on the Physiology of the Rice Plant with particular reference to flood, salinity and drought, Ravenshaw College, Cuttack, Orissa Government Press, pp. 28, 1945.

38. Parija, P. – Final Report ending with 30th April, 1945 of the Scheme of Research on the Physiology of Rice Plant with particular reference to flood, salinity and drought, Ravenshaw College, Cuttack, Orissa Government Press, pp. 6, 1945.

39. Parija, P. – Abstract of practical results of the Rice Research Scheme, Orissa for the years 1937-45. Physiological Section, Orissa Government Press, 13-14, 1946.

40. Parija, P. and Chalam, G.V. – Studies on the anatomical features of the flood resistant varieties of rice and wild species of *Oryza*. Proc. 27th Indian Sci. Congr., Madras, Part III. 1940.

41. Parija, P. and Chalam, G.V. – Breaking of dormancy in winter rices. Proc. 27th Indian Sci. Congr., Madras, Part III, 1940.

42. Parija, P. and Pillay, K.P. – Inducing flood resistance in paddy by pre-sowing treatments. Curr. Sci., **13**, 183-185, 1944.

43. Parija, P. and Pillay, K.P. – Effect of pre-sowing treatment on the drought resistance in rice, Proc. nat. Acad. Sci., India, **15**, 6-14, 1945.

44. Parija, P. – Physiological studies in rice. J. Indian bot. Soc. **39**, 335-350, 1960.

**General**

45. Parija, P. – Impact of society on science. Presidential address, 47th Indian Science Congress, Proc. Indian Sci. Congr. Part II. 1-7, 1960.

46. Parija, P. – Science, its basis and its impact on human thought. Everyman's Science **2**, 20-24, 1967.

47. Parija, P. – Problems of agriculture. Indian Agriculturist, **12**, 7-11, 1968.

**Research publications under the guidance of Prof. P. Parija.**

1. Misra, P. – On the peg of the seedlings of *Cucurbita maxima* Duchesne. J. Indian bot. Soc. **14**, 325-334, 1935.

2. Samantarai, B. – Respiration of amphibious plants. I. *Scirpus articulatus* Linn., J. Indian bot. Soc. **17**, 195-204, 1938.

3. Chalam, G.V. - Anatomical studies of the shedding and non-shedding characters of genus *Oryza*, J. Indian bot. Soc. **21**, 339-349, 1942.

4. Chalam, G.V. - Comparative studies on the anatomy of two wild species in the genus *Oryza*. Ph.D. thesis, Patna University, 1943.

5. Chalam, G.V. - Anatomical studies on the germination of double kernelled rices. Curr. Sci., **18**, 401-402, 1949.

6. Chalam, G.V. - Studies on the comparative anatomy and physiology of two wild species of *Oryza*, Proc. Indian Sci. Congr., Part III, 1950.

7. Chalam, G.V. - Temperature resistance and viabiliy in rice. Proc. Indian Sci Congr., Part III, 1953.

8. Chalam, G.V. - Studies on the dormancy of winter rices. Proc. Indian Sci. Congr., Part IV, 1954.

9. Chalam, G.V. - Studies on saline resistance in rice. Rice News Teller, **2**, 125-129, 1954.

10. Chalam, G.V. - Correlation between the pre-flowering period and dormancy in winter paddies. Proc. Indian Sci. Congr. Part IV, 1954.

11. Chalam, G.V. - Anatomy of the open and compact panicles. Curr. Sci. **24**, 1955.

12. Chalam, G.V. - Emergence of buds in the cultivated and wild species of *Oryza*, Curr. Sci. **24**, 1955.

13. Chalam, G.V. - Island communities tackle saline soils. Indian Farming, 1955.

14. Pillay, K.P. - A short note on vernalization of gram ( *Cicer arietinum*, L.) Curr. Sci., **13**, 185-186, 1944.

15. Misra, B. - Occurrence of medullary cork in *Ipomoea crassicaulis* (Benth.) Robinson. Prakruti, Utkal Univ. J. Sci., **3**, 1-5 1963.

16. Misra, B.- Germination of seeds of *Ipomoea crassicaulis* (Benth.) Robinson. J. Indian bot. Soc., **42**, 358-366, 1963

17. Misra, B.- Autecology of *Ipomoea crassicaulis* (Benth) Robinson. Ph. D. thesis, Utkal University, 1965.

18. Pattnaik, H. and Rao, S.D.- Some terrestrial blue green algae found in the soils of Koraput and cuttack Districts. Proc. Orissa Assoc. for Adv. Sci. **1**, 101, 1968.

19. Rao, S.D. and Pattnaik, H.- Effect of blue green algae on the vegetative growth of two early varieties of rice. In : G.S. Venkataraman (Ed.), Nitrogen assimilation and crop productivity, 210-214.

20. Misra, B.- Origin and development of adventitious roots in *Ipomoea crassicaulis* (Benth) Robinson. J. Berhampur Univ. Science, **1**, 86-89, 1974.

21. Sampath, S. and Misra, R.K.- Occurrence of symbiosis of *Amaranthus*. Curr. Sci., **40**, 111-112, 1971.

